# ବଳଭଦ୍ର ଗ୍ରନ୍ଥାବଳୀ

(ପ୍ରଥମ ଭାଗ)




ବଡ଼କୁମାର ବଳଭଦ୍ରଦେବ

# ଅଗ୍ରଲେଖ

ବାମଣ୍ଡାର ବଡ଼କୁମାର ବଳଭଦ୍ରଙ୍କର ରଚନାବଳୀ 'ବଳଭଦ୍ର ଗ୍ରନ୍ଥାବଳୀ' ନାମରେ ଏଥିପୂର୍ବେ ପ୍ରକାଶ ପାଇଥିଲା । ତାହା ବର୍ତ୍ତମାନ ଦୁଷ୍ପ୍ରାପ୍ୟ—ଏପରି କି, ଏପରି ଏକ ଗ୍ରନ୍ଥାବଳୀ ଓଡ଼ିଆରେ ଅଛି ବୋଲି ଅନେକେ ଜାଣନ୍ତି ନାହିଁ । ବଡ଼କୁମାର ଥିଲେ କବିବର ରାଧାନାଥଙ୍କର ସମସାମୟିକ । ତାଙ୍କର ମୌଳିକ ରଚନାମାନଙ୍କ ଲାଗି ସେ ଯେତେଦୂର ପ୍ରସିଦ୍ଧ ନୁହନ୍ତି, 'ରଘୁବଂଶ' ଓ 'କାଦମ୍ବରୀ'ର ଓଡ଼ିଆ ଅନୁବାଦ ଲାଗି ତାହାଠାରୁ ଅଧିକ ଭାବରେ ପ୍ରସିଦ୍ଧ ।

'ରଘୁବଂଶର' ଅନୁବାଦରେ ଠାଏଁ ବଡ଼କୁମାର ଲେଖିଛନ୍ତି—

"ପଦାତି ପଦାତି ସହ, ରଥୀ ସହ ରଥୀ
ନିଷାଦୀ ନିଷାଦୀ ସହ, ସାଦୀ ସହ ସାଦୀ

× × × ×

"ସଙ୍ଗ୍ରାମରେ ଅଶ୍ୱଖୁରେ ଧୂଳିରାଶି ଉଠି
ରଥଚକ୍ରେ ସାନ୍ଦ୍ରହୋଇ କରି କର୍ଣ୍ଣତାଳେ
ପ୍ରସରି, ଭାସ୍କର ବିମ୍ବ ରୋଧିଲା ଆକାଶେ
ରଣ ଉତ୍ସବର ଯୋଗ୍ୟ ଚନ୍ଦ୍ରାତପ ରୂପେ"

(ପୃ. ୯୪-୯୫)

କିନ୍ତୁ "ମହାଯାତ୍ରା" କାବ୍ୟରେ ରାଧାନାଥ ଏହାର ବହୁପୂର୍ବରୁ ଲେଖିଛନ୍ତି—

"ପଡ଼ିଲା ପ୍ରଚଣ୍ଡ ବେଗେ, ରଥୀ ସହ ରଥୀ
ପଦାତି ପଦାତି ସହ, ସାଦୀ ସଙ୍ଗେ ସାଦୀ
ନିଷାଦୀ ନିଷାଦୀ ସହ × ×

× × × ×

ନଭୋଦେଶେ ଧୂଳିରାଶି ଅଶ୍ୱଖୁରେ ଉଠି
ରଥଚକ୍ରେ ସାନ୍ଦ୍ର ହୋଇ, କରି କର୍ଣ୍ଣତାଳେ
ପ୍ରସରି, ଭାସ୍କର ବିମ୍ବ :ରୋଧିଲା ଆକାଶେ
ରଣ ଉତ୍ସବର ଯୋଗ୍ୟ ଚନ୍ଦ୍ରାତପ ରୂପେ"

(ରାଃ ଗ୍ରନ୍ଥାବଳୀ ପୃ. ୨୧୦)

ରାଧାନାଥ ଯୁଗ-ସାହିତ୍ୟର ଆଲୋଚନା ପ୍ରସଙ୍ଗରେ ଏହାର ଅଂଶମାନ ଆମର କୌତୂହଳ ଉଦ୍ଦୀପନ କରିଥାଏ ।

ଓଡ଼ିଶା ସାହିତ୍ୟ ଏକାଡେମୀ, ଅନ୍ୟାନ୍ୟ ସାହିତ୍ୟିକ କାର୍ଯ୍ୟ-କଳାପ ମଧ୍ୟରେ, କେତେକ ପ୍ରାଚୀନ ଗ୍ରନ୍ଥର ପୁନର୍ମୁଦ୍ରଣ ଓ ଗ୍ରନ୍ଥାବଳୀ ପ୍ରକାଶ ପ୍ରଭୃତିକୁ ସ୍ଥାନ ଦେଇଛନ୍ତି । ସୁଖର କଥା, ଏହି ବଳଭଦ୍ର ଗ୍ରନ୍ଥାବଳୀ ବର୍ତ୍ତମାନ ପ୍ରକାଶିତ ହୋଇ ପାରିଛି । ବଳଭଦ୍ରଙ୍କର ମୌଳିକ ରଚନାବଳୀ ଓ ଅନୁବାଦଗୁଡ଼ିକ ଆଧୁନିକ ଓଡ଼ିଆ-ପଦ୍ୟ ସାହିତ୍ୟର କ୍ରମବିକାଶ ନିର୍ଦ୍ଦେଶରେ ଆବଶ୍ୟକ ।

ଶ୍ରୀ ହରେକୃଷ୍ଣ ମହତାବ

———

# ଦୁଇ ପଦ

ବାମଣ୍ଡା ଅଧିପତି ସ୍ୱର୍ଗତ ବାସୁଦେବ ସୁଢ଼ଳଦେବଙ୍କର ଦ୍ୱିତୀୟ ପୁତ୍ର ଥିଲେ ବଡ଼କୁମାର ବଳଭଦ୍ର ଦେବ । ତାଙ୍କର ଜନ୍ମ ୧୮୭୭ ସାଲ ନଭେମ୍ବର ୩୦ ତାରିଖରେ ଓ ପରଲୋକ ୧୯୩୭, ସେପ୍ଟେମ୍ବର ୨୧ ତାରିଖରେ । ପ୍ରାୟ ୧୫ ବର୍ଷ ବୟସରୁ ତାଙ୍କର କବିତ୍ୱ-ସ୍ଫୂର୍ତ୍ତି ହୋଇଥିଲା । ସେ ଜଣେ ନିଷ୍ଠାପର ଦେଶସେବୀ ଓ ନିରବଚ୍ଛିନ୍ନ ବାଣୀସାଧକରୂପେ ଜୀବନଯାପନ କରିଥିଲେ । ତାଙ୍କ ଜୀବନ ନାନାଭାବରେ କର୍ମବହୁଳ ଥିଲା । କିଛିଦିନ ବାମଣ୍ଡା ହାଇସ୍କୁଲରେ ଶିକ୍ଷକତା କରିବା ପରେ ସେ 'ସମ୍ବଲପୁର ହିତୈଷିଣୀ' ପ୍ରେସରେ ମଧ୍ୟ କାର୍ଯ୍ୟ କରିଥିଲେ ।

ତାଙ୍କର ସାହିତ୍ୟିକ ପ୍ରତିଭାର ବିକାଶ ଲାଗି ସୁଢ଼ଳଦେବ ତାଙ୍କୁ ସମସ୍ତ ସୁବିଧା-ସୁଯୋଗ ଦେଇଥିଲେ । ଓଡ଼ିଶା ଓ ଓଡ଼ିଶା ବାହାରରୁ ବିଶିଷ୍ଟ ପଣ୍ଡିତଙ୍କୁ ଆମନ୍ତ୍ରଣ କରି, ଓଡ଼ିଆ ଓ ସଂସ୍କୃତ ସାହିତ୍ୟରେ ବଳଭଦ୍ରଙ୍କର ଯେପରି ଗଭୀର ବ୍ୟୁତ୍ପତ୍ତି ଜନ୍ମେ, ସେ ତାର ସୁବ୍ୟବସ୍ଥା କରିଥିଲେ । ଫଳରେ, ଭାରତୀୟ ସାହିତ୍ୟିକ ପରମ୍ପରା ତାଙ୍କର ମନରେ ଦୃଢ଼ଭାବରେ ଅଙ୍କିତ ହୋଇ ରହିଥିଲା ।

ତାଙ୍କର ଜୀବନୀରୁ ଜଣାଯାଏ, ସେ ଥିଲେ ଏକାଧାରରେ ପାଠ ଓ ଖାଠରେ ଧୁରନ୍ଧର । ଘନ ଜଂଗଲରେ ବାଘ ଶିକାର କରିବାଠାରୁ କୃଷି କ୍ଷେତ୍ରର ନାନାବିଧ ଉନ୍ନତିରେ ଓ କେତେକ ଜନହିତକର କାର୍ଯ୍ୟରେ ମନୋନିବେଶ କରିବା ପର୍ଯ୍ୟନ୍ତ ବିଭିନ୍ନ ସ୍ଥଳରେ ତାଙ୍କର ରୁଚି ଓ ମନୋବୃତ୍ତି ପ୍ରକାଶ ଲାଭ କରି-ଥିଲା । ଓଡ଼ିଆ ସାହିତ୍ୟର ଉନ୍ନତି ବିଧାନ ଥିଲା ତାଙ୍କ ଜୀବନର ବ୍ରତ । ସେଥିପାଇଁ, 'ରଘୁବଂଶ' ଓ 'କାଦମ୍ବରୀ'ର ଓଡ଼ିଆ ପଦ୍ୟାନୁବାଦଠାରୁ ଆରମ୍ଭ କରି ନାନାବିଧ କାବ୍ୟ କବିତା ରଚନାରେ ସେ ମନପ୍ରାଣ ଢାଳିଦେଇଥିଲେ ।

'ବଳଭଦ୍ର ଗ୍ରନ୍ଥାବଳୀ'ର ଏହି ଦ୍ୱିତୀୟ ସଂସ୍କରଣରେ ପ୍ରଥମ ସଂସ୍କରଣର ବିଷୟ-ସଜ୍ଜୀକରଣ କ୍ରମର କିଛିଏ ପରିବର୍ତ୍ତନ କରାଯାଇଛି । ପ୍ରଥମ ସଂସ୍କରଣରେ ସ୍ଥାନଲାଭ ନ କରିଥିବା ଅନ୍ୟ କେତୋଟି ରଚନା ମଧ୍ୟ ଏଥିରେ ସନ୍ନିବେଶିତ କରାଯାଇଛି । ଏହା ଦୁଇଖଣ୍ଡରେ ବିଭକ୍ତ କରାଯାଇ, ପ୍ରଥମ ଖଣ୍ଡରେ କବିଙ୍କର ଦୁଇଟି ଅନୁବାଦ ସମାବେଶିତ କରାଯାଇଛି । ଦ୍ୱିତୀୟ ଖଣ୍ଡରେ କବିଙ୍କର ବିବିଧ ପଦ୍ୟ ଓ ଗଦ୍ୟ ରଚନାମାନ ସଙ୍କଳିତ ହୋଇଛି ।

ବୟସ ସୀମାର ତାରତମ୍ୟରେ ବଳଭଦ୍ରଙ୍କ ଥିଲେ ରାଧାନାଥ, ମଧୁସୂଦନ, ଫକୀର ମୋହନ, ଗଙ୍ଗାଧର, ନନ୍ଦକିଶୋର, ଗୋପବନ୍ଧୁ ପ୍ରମୁଖ ଓଡ଼ିଶାର ସ୍ୱନାମଧନ୍ୟ କବିମାନଙ୍କର ସମସାମୟିକ। ଏହିମାନଙ୍କର ଜୀବନ-ବ୍ୟାପୀ ସାଧନାହିଁ ଓଡ଼ିଆ ସାହିତ୍ୟର ବହୁମୁଖୀତ୍ୱ, ବୈଚିତ୍ର୍ୟ, ସମୃଦ୍ଧି ଓ ବ୍ୟାପକତା ସମ୍ପାଦନ କରିଅଛି। ସିଦ୍ଧିର ସ୍ତର ଭିନ୍ନ ହେଲେହେଁ ମାତୃଭାଷାର ଶ୍ରୀବର୍ଦ୍ଧନ ପ୍ରତ୍ୟେକ କବିଙ୍କର ଥିଲା ମୁଖ୍ୟ ଲକ୍ଷ୍ୟ, ସୁତରାଂ, ପ୍ରତ୍ୟେକେ ଆମ୍ଭ-ମାନଙ୍କର ସ୍ମରଣୀୟ। ସେମାନଙ୍କର ସୃଷ୍ଟିମୂଳକ ପ୍ରେରଣା ଓ ଅନୁପ୍ରାଣନ ଆମ୍ଭମାନଙ୍କର ଏକାନ୍ତ କାମ୍ୟ।

ଓଡ଼ିଶା ସାହିତ୍ୟ ଏକାଡ଼େମୀ ନୂତନ ଓ ପ୍ରାଚୀନ ଲେଖକମାନଙ୍କର ପୁସ୍ତକ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଦୁଷ୍ପ୍ରାପ୍ୟ ଗ୍ରନ୍ଥର ପୁନଃ ପ୍ରକାଶ ଲାଗି ମଧ୍ୟ ବ୍ୟବସ୍ଥା କରିଅଛନ୍ତି। 'ବଳଭଦ୍ର ଗ୍ରନ୍ଥାବଳୀ'ର ଏହି ଦ୍ୱିତୀୟ ମୁଦ୍ରଣ ସେହି ଯୋଜନାର ଅନ୍ତର୍ଗତ।

କାର୍ତ୍ତିକ ପୂର୍ଣ୍ଣିମା,
୧୯୭୧,
ଭୁବନେଶ୍ୱର।

ଶ୍ରୀ ଗୌରୀକୁମାର ବ୍ରହ୍ମା,
ସେକ୍ରେଟାରୀ,
ଓଡ଼ିଶା ସାହିତ୍ୟ ଏକାଡ଼େମୀ।

ପିତା ଧର୍ମ୍ମଃ ପିତା ସ୍ୱର୍ଗଃ ପିତା ହି ପରମଂ ତପଃ ।
ପିତରି ପ୍ରୀତିମାପନ୍ନେ ପ୍ରୀୟନ୍ତେ ସର୍ବଦେବତାଃ ॥

ପରମାରାଧ୍ୟ

ସ୍ୱର୍ଗୀୟ ବାମଣ୍ଡାଧିପତି

ଶ୍ରୀଯୁକ୍ତ ରାଜା ସାର୍ ବାସୁଦେବ ସୁଡ଼ଳଦେବ

C. I. E., K. C. I. E.

ପିତୃଦେବଙ୍କ

ସୁପବିତ୍ର ଚିରସ୍ମରଣୀୟ ନାମ

ଶିରୋମଣିରୂପେ ସନ୍ନିବେଶ କରି

ଏହି କାବ୍ୟ

ମହାସମ୍ମାନର ସହିତ

"ଉତ୍ସର୍ଗୀକୃତ"

ହେଲା ।

# ରଘୁବଂଶ

## ପ୍ରଥମ ସର୍ଗ

ପରସ୍ପର ସମ୍ମିଳିତ ଶବ୍ଦାର୍ଥ ପରି
ହେ ପର୍ବତରାଜପୁତ୍ରି—ଦେବ ଶୂଳପାଣି !
ଅଟ ପ୍ରଭୁ ଜଗତର ଜନନୀ ଜନକ,
ବନ୍ଦଇ ଏ ଦୀନଜନ କରପଦଯୋଡ଼ି,
ଶବ୍ଦାର୍ଥ ସମ୍ପଦର ପ୍ରତିପତ୍ତି ପାଇଁ,
ତୁମ୍ଭ ପଦେ ଭକ୍ତିଭରେ, ହୁଅ ସୁପ୍ରସନ୍ନ ।
କାହିଁ ଅବା ସୂର୍ଯ୍ୟବଂଶ ଭୁବନ ବିଦିତ
କାହିଁ ମୁହିଁ କ୍ଷୁଦ୍ରମତି, ପାଞ୍ଚୁଅଛି ଯିବା
ଭେଳାବାନ୍ଧି ତରିବାକୁ ଦୁସ୍ତର ସାଗର
ଅକ୍ଷମ ହୋଇ ଯେଣୁ ପ୍ରାର୍ଥନା କରୁଛି
ମହାକବିଙ୍କର ଯଶ, ତେଣୁ ମୁଁ ନିଶ୍ଚୟ
ଉଚ୍ଚଲୋକ-ଲଭ୍ୟ-ଫଳ ତୋଳିବାକୁ ଯାଇ
ଉର୍ଦ୍ଧବାହୁ ଖର୍ବପର ହେବି ହାସ୍ୟାସ୍ପଦ ।
ଅବା ପୂର୍ବ କବିଙ୍କର ପଥ ଅନୁସରି
ଅନାୟାସେ ପ୍ରବେଶିବି ଏହି ମହାବଂଶେ,
ଯନ୍ତ୍ର-ବଜ୍ର-ମଣି-ଗର୍ଭେ ସୂତ୍ରପଶେ ଯଥା ।
ଯେ ରଘୁବଂଶୀୟ ନୃପେ ଆଜନ୍ମ ବିଶୁଦ୍ଧ,
କାର୍ଯ୍ୟେ ନିଷ୍ଠାବନ୍ତ ଯେହୁ ଫଳଲାଭଯାଏ ।
ରଥେ ବସି ଯେହୁ ସଦା ଭ୍ରମନ୍ତି ସ୍ୱର୍ଗରେ,
ସସାଗରା ମହୀକୁ ଯେ କରନ୍ତି ଶାସନ,
ଯଥାକାଳେ ଦିଅନ୍ତି ଯେ ଅନଳେ ଆହୁତି,
ମହାବିପଦରେ ଯେହୁ ହେଲେହେଁ ପଡ଼ି
ନ୍ୟାୟ ନ ଛାଡ଼ନ୍ତି କେବେ, ପୂରଣ କରନ୍ତି
ଅର୍ଥି ମନୋରଥ ଯେହୁ ଧନ ବିତରଣେ ।

ଜାଗରିତ ହୁଅନ୍ତି ଯେ ଯଥା ସମୟରେ,
ସଞ୍ଚୟ କରନ୍ତି ଧନ ଦାନଲାଗି ଯେହୁ,
ମିଥ୍ୟା କହିବାର ଭୟେ ଜନସମାଜରେ
ସଦାବେଳେ ଅଳ୍ପ କଥା କହନ୍ତି ଯେମାନେ,
ଯଶ ପାଇଁ କରନ୍ତି ଯେ ବିଜୟ ଲାଳସା,
ସନ୍ତାନ କାମନା ଏକା ହୃଦୟରେ ବହି
ବିବାହ ହୁଅନ୍ତି ଯେହୁ କାମେ ବଶ ନୋହି ।
ପଢନ୍ତି ଯେ ବାଲ୍ୟକାଳେ, ଯୌବନ ସମୟେ
ବିଷୟୀ ହୁଅନ୍ତି ଯେହୁ, ବୃଦ୍ଧ ଅବସ୍ଥାରେ
ତପରେ ଯାହାଙ୍କ ମନ ରହଇ ସନ୍ତତ,
ସଂସାରର ଲୀଳାଶେଷେ ଅନ୍ତିମ ସମୟେ
ଅବଲମ୍ବି ଯୋଗ ତନ୍ତ୍ର ତେଜନ୍ତି ଯେମାନେ ।
ସେ ରଘୁବଂଶୀୟଙ୍କର ଗୁଣେ ମୁଗଧ ହୋଇ
ଲେଖିବା ପାଇଁ କି ଶକ୍ତି ନ ଥିଲେହେଁ ମୋର
ତାଙ୍କ ଯଶ ବର୍ଣ୍ଣିବାକୁ ବଳୁଅଛି ମନ,
ଗୁଣଦୋଷ ବିବେଚକ ହେ ବିଜ୍ଞମଣ୍ଡଳ !
ଶ୍ରବଣ କର ମୋ ଗ୍ରନ୍ଥ, ପରୀକ୍ଷା ହୁଅଇ
ସୁବର୍ଣ୍ଣର ଗୁଣଦୋଷ ସିନା ହୁତାଶନେ ।
ବେଦମନ୍ତ୍ର ଆରମ୍ଭରେ ଓଁକାର ପରାଏ
ସର୍ବ ନୃପତିଙ୍କ ଅଗ୍ରେ ଥିଲେ ପୂର୍ବକାଳେ
ବୁଦ୍ଧବୃନ୍ଦେ ବନ୍ଦନୀୟ ସୂର୍ଯ୍ୟଙ୍କର ସୁତ
ବୈବସ୍ୱତ ମନୁ ନାମେ ଏକ ମହାରାଜ ;
ଜନ୍ମିଥିଲେ ସୁବିଶୁଦ୍ଧ ସେ ମନୁବଂଶରୁ
ପ୍ରସିଦ୍ଧ ଦିଲୀପ ନାମେ ଏକ ନରମଣି,
କ୍ଷୀରାବ୍ଧିରୁ ନବୋଦିତ ଚନ୍ଦ୍ରମା ପରାଏ ।
କବାଟ ବିଶାଳ ବକ୍ଷ ଶାଳ ସମ ଉଚ୍ଚ,
ବୃଷସ୍କନ୍ଧ, ଦୀର୍ଘବାହୁ, ଥିଲେ ସେ ଦିଲୀପ
ମନେ ହେଉଥିଲା ଦେଖି ତାଙ୍କ ଅବୟବ
ପ୍ରତ୍ୟକ୍ଷ କ୍ଷତ୍ରିୟଧର୍ମ ଆସିଥିଲା ଅବା
ନିଜ କର୍ମ ସାଧିବାକୁ ଯୋଗ୍ୟ ଦେହଧରି ।

ସବୁଠାରୁ ବଳଶାଳୀ, ସବୁଠାରୁ ତେଜ,
ସବୁଠାରୁ ଉଚ୍ଚ ତନୁ ବହି ସେ ରାଜନ
ରହୁଥିଲେ ମେରୁପରି ଧରଣୀ ବକ୍ଷରେ;
ଥିଲା ତାଙ୍କ ସୁମଧୁର ଆକୃତି ସଦୃଶ
ବିଚକ୍ଷଣ ବୁଦ୍ଧିଶକ୍ତି, ବୁଦ୍ଧି ଅନୁରୂପ
ଶାସ୍ତ୍ରଜ୍ଞାନ, ଜ୍ଞାନସମ କାର୍ଯ୍ୟ ଅନୁଷ୍ଠାନ,
କାର୍ଯ୍ୟ ଅନୁପାତେ ପୁଣି ଶୁଭଫଳ ଲାଭ ।
କୋମଳ କଠୋର ଭାବ ଥିବାରୁ ତାଙ୍କର
ପ୍ରଜାମାନେ ଡରୁଥିଲେ ଆଶ୍ରୁଥିଲେ ସଦା,
ହିଂସ୍ରଙ୍କର ଜଳଜନ୍ତୁ ଉଜ୍ଜ୍ୱଳ ରତନେ
ସମୁଦ୍ର ଯେମନ୍ତ ଭାବ ଉପୁଜାଏ ମନେ ।
ମାତଙ୍କ ଓ ସେ ନରେଶଙ୍କ ସୁଶାସନ ଗୁଣେ
ମହର୍ଷି ମନୁଙ୍କ କୃତ ଆଚାରପଦ୍ଧତି
ନ ଲଙ୍ଘି ତିଳେଏ ସୁଦ୍ଧା ପ୍ରଜାନଙ୍କର
ହେଲେ ତାର ଅନୁଗାମୀ, ରଥ ଚକ ଯଥା
ଧାଉଁଥାଏ ତାର ଆଗ ଚକ ଗାରେ ଗାରେ;
ଅପୁଙ୍କ ଅସ୍ବରକଷ୍ଟ ଥିଲେହେଁ ଦିଲୀପ
ନେଉଥିଲେ ସଦାବେଳେ ପ୍ରଜାଙ୍କର ଠାରୁ
ଅଧିମତେ ରାଜକର, ପ୍ରଜାହିତପାଇଁ
ଗନ୍ତାଘର ଶୂନ୍ୟ କରି କରୁଥିଲେ ଦାନ,
ଷଡ଼୍ରସର ଅଧିପତି ସୂର୍ଯ୍ୟଦେବ ଯଥା
ଦେବାକୁ ସହସ୍ରଗୁଣେ ବୃଷ୍ଟିଜଳ ଛଳେ,
ନଅନ୍ତି ସଲିଳରାଶି ଧରଣୀବକ୍ଷରୁ ।
କରୁଥିଲେ ମନ୍ତ୍ରଣା ସେ ମାନିଧ ଭୂପାଳ
ଯଥାକାଳେ ଗୁପ୍ତଭାବେ ମନ୍ତ୍ରଣା ମନ୍ଦିରେ
ବିଚକ୍ଷଣ ମନ୍ତ୍ରୀସହ, ସେ ଗୂଢ଼ମନ୍ତ୍ରଣା
ଆକାର ଇଙ୍ଗିତେ କେବେ ନ ହୋଇ ପ୍ରକାଶ
ଅନ୍ତିମେ କାର୍ଯ୍ୟଶେଷେ ଯାଉଥିଲା ଜଣା,
ପ୍ରାଣୀଙ୍କର ପୂର୍ବଜନ୍ମ ବାସନା ଯେସନ
ଜଣାଯାଏ ସେମାନଙ୍କ ସୁଖଦୁଃଖ ଯୋଗେ,

ସଦାବେଳେ ରାଜନୀତି, ଶାସ୍ତ୍ର, ଅନୁସରି
ପୁଣି ଗୁଣ ଅବେକ୍ଷିଣ ଧନୁଶର ଧରି
ଦ୍ୱିଜମଣି, ସାଧୁଥିଲେ ସ୍ୱୀୟ ପ୍ରୟୋଜନ;
ଇଲାଗିସେ, ଚତୁରଙ୍ଗବଳ ଥିଲେ ଯାହା
ତାହାଙ୍କର ସେନାବାସେ ସେ କେବଳ ଥିଲା
ବାହାରର ରାଜସ୍ୱ ଆଡ଼ମ୍ବର ପାଇଁ ।
ଅଶକ୍ତଙ୍କ ହିତ ହୋଇ ଭୁଞ୍ଜୁଥିଲେ ସୁଖ
ନରବର ନିର୍ଲୋଭରେ ସାଧୁ ଉପାୟରେ
ଉପାର୍ଜନ କରୁଥିଲେ ସମ୍ପଦ ନିକର,
ସାଧୁଥିଲେ ଧର୍ମକର୍ମ ନ ହୋଇ ଆତୁର ।
ରକ୍ଷା କରୁଥିଲେ ଦେବ ନିର୍ଭୟ ହୃଦୟେ,
ଅକାତରେ ଦରିଦ୍ରଙ୍କୁ ସମ୍ପଦ ବିତରି
କରୁ ନ ଥିଲେ ସେ କେବେ ନିଜର ବଡ଼ାଇ,
ଶତ୍ରୁସଙ୍ଗେ କ୍ଷମାଗୁଣ ଥିଲା ତାହାଙ୍କର;
ଅଗାଧ ପାଣ୍ଡିତ୍ୟ ବହି ଜ୍ଞାନବାନ ହୋଇ
ରହୁଥିଲେ ମଉନେ ସେ ବକବକ ନୋହି,
ପଣ୍ଡିତ ପ୍ରତିଦ୍ୱନ୍ଦୀ ଏଣୁ ବୁଧମାନେ
ରହୁଥିଲେ ସହୋଦର ପରି ତାଙ୍କ ପାଖେ ।
ନ ଧରି କଳୁଷ ସ୍ୱର ଏକନିଷ୍ଠ ହୋଇ ।
ଶଠଦ୍ୱିବାସନାହୀନ ଧର୍ମ କିମ୍ବା ରତ
ସର୍ବବିଦ୍ୟା ବିଶାରଦ ଥିବାରୁ ଭୂପତି
ହୋଇଥିଲେ ବର୍ତ୍ତୀୟାନ ଜଗବସ୍ଥା ସମା;
ନିଜର ପ୍ରଜାଙ୍କୁ ସଦା ଭଦ୍ର ରକ୍ଷା କରି,
ଉପଯୁକ୍ତ ଶିକ୍ଷା ଦେଇ, ସେ ଯଶସ୍ୱୀ ଭୂପ
ହୋଇଥିଲେ ସେମାନଙ୍କ ପ୍ରକୃତରେ ପିତା
ଜନ୍ମଦାତା ଥିଲେ ମାତ୍ର ତାଙ୍କ ପିତାମାନେ
ଦେଉଥିଲେ ଦୋଷୀଜନେ ଦଣ୍ଡ ଦଣ୍ଡଧର
ସାମ୍ରାଜ୍ୟ ମଙ୍ଗଳ ପାଇଁ, ଗ୍ରହୁଥିଲେ ପତ୍ନୀ
ଏକା ପୁତ୍ରକାମନାରେ, ଅର୍ଥ କାମ ବେନି,
ଏଣୁ ସେ ବିଶ୍ୱବିଖ୍ୟାତ ଦ୍ୱିଜମଣିଙ୍କର

ହେଉଥିଲା ନ୍ୟାୟୋଚିତ ସିନା ଧର୍ମ ପାଇଁ;
ଲୋକ ହିତେ ଯଜ୍ଞକାର୍ଯ୍ୟ ସମ୍ପାଦନ ଲାଗି
ନେଉଥିଲେ ମେଦିନୀରୁ କର ସେ କେବଳ,
ଶସ୍ୟ ପାଇଁ, ଦେବରାଜ ଯେସନ୍ତ ସ୍ୱର୍ଗରୁ
ଉଭୟେ ଉଭୟ ଲୋକ ପାଳୁଥିଲେ ସଦା
ଏହିରୂପେ ବଦଳାଇ ନିଜ ନିଜ ଧନ;
ନପାରିଲେ ଅନୁକରି ସେ କାଳ ରାଜାଏ
ନରେଶ ଦିଲୀପଙ୍କର କୌଶଳେ ରକ୍ଷିତ-
ଚିରୋଜ୍ଜ୍ୱଳ ଯଶପୁଞ୍ଜ; ଯେଣୁ ତସ୍କରତା
ପରଧନ ପରିହରି ଶବ୍ଦେ କଲା ବାସ,
ବିଷଧର ଦଂଶନରେ କ୍ଷତ ଅଙ୍ଗୁଳିକୁ
ଅତିପ୍ରିୟ ହେଲେ ସୁଦ୍ଧା ଯେସନ ମାନବେ
ଫୋପାଡ଼ ଦିଅନ୍ତି ଦୂରେ କାଟି ସ୍ୱହସ୍ତରୁ,-
ତେସନ ସେ ପ୍ରିୟତମ ଦୁଷ୍ଟେ ଦୂର କରି
ସମାଦର କରୁଥିଲେ ଅପ୍ରିୟ ସଜ୍ଜନେ
ରୋଗୀ ତିକ୍ତ ଔଷଧ ଭକ୍ଷିଲା ପରାଏ
ମହାଭୂତ ଉପାଦାନେ ପ୍ରଜାପତି ସତେ !
ଗଢ଼ିଥିଲେ ସେ ଭୂପଙ୍କୁ, ଯେଣୁ ତାହାଙ୍କର
ଗୁଣରାଶି ଲାଗୁଥିଲା ପର ଉପକାରେ;
ସାଗର ପରିଖା ଶୋଭି, ଅନନ୍ୟ ଶାସିତା,
ବେଲା ବିମଣ୍ଡିତା ଏହି ବିଶାଳ ମହୀକୁ
ଖଣ୍ଡିଏ ନଗରୀ ପରି ସଦା ଅନାୟାସେ
କରୁଥିଲେ ଶାସନ ସେ ନରେନ୍ଦ୍ରମଣ୍ଡନ ।
ଯଜ୍ଞର ଦକ୍ଷିଣା ପରି ଥିଲେ ତାହାଙ୍କର
ସରଳା ସୁଶୀଳା ଭାର୍ଯ୍ୟା ଅତି ପ୍ରିୟତମା
ମଗଧର ରାଜଜେମା ସୁଦକ୍ଷିଣା ଦେବୀ;
ନବରେ ବହୁତ ରାଣୀ ଥିଲେହେଁ ତାଙ୍କର
ସାଧ୍ୱୀ ସୁଦକ୍ଷିଣା ପୁଣି ରାଜଲକ୍ଷ୍ମୀ ଯୋଗେ
ମଣୁଥିଲେ ନିଜକୁ ସେ ଭାର୍ଯ୍ୟାବନ୍ତ ବୋଲି ।
ବହୁବର୍ଷ ନୋହିବାରୁ ସନ୍ତାନ ଜନମ

ଏରୂପେ ସେ ନରବରଏ ଭଲେ ଅନୁକ୍ଷଣ
ବୃଥା ଆଶା କରି କରି ଅନେକ ସମୟ,
ଶେଷେ ପୁତ୍ର ଲଭ ବ୍ରତ ଆଚରିବା ପାଇଁ
ରାଜ୍ୟଭାର ମନ୍ତ୍ରୀ ହସ୍ତେ ସମର୍ପଣ କରି
ଅନୁବ୍ରତୀ ହୋଇ ସେହି ବେନି ଜାୟାପତି ।
ସନ୍ତତି କାମନା କରି, ପୂଜି ପ୍ରଜାପତି
ବାହାରିଲେ ଗୁରୁପତି ପାଦେ ଦେଇ ମତି
ଆଶ୍ରମ ସରଣୀ ଧରି ବନ ଅଭିମୁଖେ;
ସୁରଗଜ ସୌଦାମିନୀ ଆରୋହିଲା ପରି
ମେଘମଣ୍ଡଳରେ ସୁଖେ, ରାଜା ରାଣୀ ବେନି
ଚଢ଼େଇଲେ ସ୍ନିଗ୍ଧ ଧୀର-ନାଦ-ରଥବରେ ।
ଆଶ୍ରମର ପୀଡ଼ା ଭୟେ ଅଲ୍ପଲୋକ ସହ
ଯାଉଥିଲେ ହେଲେ ସୁଦ୍ଧା ସେ ରାଜଦମ୍ପତି
ରାଜକାନ୍ତି ଶକ୍ତିମନ୍ତ ପ୍ରଭାବ ବିଶେଷେ
ଦିଶୁଥିଲେ, ପାଖେ ଥିଲାପରି ସେନାପନ୍ତି ।
ସେବା କରୁଥିଲା ତାଙ୍କୁ ଯିବାବେଳେ ମାର୍ଗେ
ସଦ୍ୟ ଫୁଲରେଣୁ ବହି ସ୍ପର୍ଶ ସୁଖକର
ଶାଲଶୀର ସ୍ପୃଷ୍ଟ ବାତ, କାନନ କମ୍ପାଇ
ଧୀରେ ଧୀରେ ସେମାନଙ୍କ ବହି ଅନୁକୂଳେ ।
ରଥର ଘର୍ଘର ସ୍ୱରେ ଉଦ୍‌ଗ୍ରୀବ କେକୀଙ୍କ
ଦ୍ୱିଧାଭାବେ ଉଚ୍ଚାରିତ ଷଡ୍‌ଜ ସମ୍ବାଦିନୀ
ମନୋହର କେକା ଧ୍ୱନି ଶୁଣି ଆନନ୍ଦରେ
ଯାଉଥିଲେ ଜାୟାପତି ଯତି ମଠ ମୁଖେ;
ବେନିଏ ବେନିଙ୍କ ସ୍ମରୁ ନୟନ ବର୍ହାଣୀ
ଦେଖୁଥିଲେ ଆନନ୍ଦରେ ପଥ ପାଖେ ସ୍ଥିତ
ଇଥରେ ଅକୃଷ୍ଣ ଶ୍ୟାମ ସତରଙ୍ଗ ଦୃଷ୍ଟି—
ଉଦ୍‌ଗ୍ରୀବ ତହାଙ୍କ ସ୍ମରୁ କୁରଙ୍ଗ ନେତ୍ରରେ ।
ବନ୍ଧୁଥିଲା ଲକ୍ଷ୍ୟ ସିଦ୍ଧି ସୂଚକ ପବନ
ସେମାନଙ୍କ ଅନୁକୂଳେ, ଏଣୁ ବେନିଙ୍କର
ଅଳକ ଉଷ୍ଣୀଷ କାନ୍ତି ନ ପାରିଲ ନାଶି

ଅଶ୍ୱମାନଙ୍କର ଖୁରେ ସମୁତ୍ଥିତ ଧୂଳି ।
ସ୍ତମ୍ଭରହିତ ସ୍ୱର୍ଗ ତୋରଣ ସମାନ
ଉଡୁଥିଲେ ମନୋହର ବଳାକା ନଭର
ଅବ୍ୟକ୍ତ ମଧୁର ଧ୍ୱନି କରି ସଘନରେ,
ସେମାନଙ୍କ ମଞ୍ଜୁନାଦ ଶୁଣି ବୁଲୁହଲେ
ଦେଖୁଥିଲେ ଯେନ ହୋଇ ସେ ଶୋଭାରେ ମୁଗ୍ଧ ।
ଯାଉଥିଲେ ସୁଖେ ବେନ ମଠ ଅଭିମୁଖେ
ଅନୁଭବି ଅନୁଭବି ମନ ମୁଗ୍ଧକର
ସରସୀ ସମୀପେ ଧୀର ବୀଚ ବାତେ ଶୀତ,
ସ୍ୱ ନିଃଶ୍ୱାସ ପବନର ସମାନ ସୁଗନ୍ଧ
କମଳ ଫୁଲର ମୃଦୁ ମଧୁର ବାସନା ।
ନଜେ ପୋଡଥିବା * ଯୂପକାଷ୍ଠରେ ଚିହ୍ନିତ
ଯଜ୍ଞକାରୀ ବ୍ରାହ୍ମଣଙ୍କ ପବିତ୍ର ଶାସନେ
ଅଭ୍ୟର୍ଥନା ପାଇଁ, ତାହିଁ ହରଷେ ଦମ୍ପତି
ତପସ୍କର ଆଶୀର୍ବାଦ କରୁଥିଲେ ଲଭ ।
ସଦ୍ୟ ଘୃତହସ୍ତେ ଉଭା ବୃଦ୍ଧ ଗଉଡ଼ଙ୍କୁ
ବୁଝୁହଲେ ତାହିଁ ଅବା ପଥେ ଅବସ୍ଥିତ
ବନଗଛ ଲତା ନାମ ପଚାରି ପଚାରି
ଗମୁଥିଲେ ବେନ ମହା ଆନନ୍ଦିତ ମନେ ;
ଯିବାବେଳେ ରଥେ ବସି ସେ ରାଜଦମ୍ପତି
ଅପୂର୍ବ ସୁଷମା ବହେ ଦିଶୁଥିଲେ ଦୁହୁ
ଶିଶିର ବିମୁକ୍ତ ଚିତ୍ରା ଚନ୍ଦ୍ର ପରି;
ବୁଧ ପର ସୁଦର୍ଶନ ଦଳ୍ପତି ଗଜନ
ଦେଖାଇ ଦେଖାଇ ଏହି ମନୋହର ଛବି
ପ୍ରିୟତମା ମହିଷୀଙ୍କୁ ମାର୍ଗ ବେନ ପାଖେ,
ନପାରିଲେ ଅନୁଭବି ପଥଶ୍ରମ କ୍ଲେଶ;
ଏସ୍ବେ ରାଣୀଙ୍କ ସହ ଯଶସ୍ୱୀ ଭୂପତି
ସାୟଂକାଳେ ଦୂର ଶ୍ରମ କ୍ଲାନ୍ତ ବାହନରେ

* ଯୂପ—ଯଜ୍ଞ

ମୁନିଙ୍କର ତପୋବନେ ହେଲେ ଉପସ୍ଥିତ
କୁଶ କାଠ ହସ୍ତେ ଘେନି କାନନରୁ ଫେରି
ଫଳାହାରୀ ମୁନିମାନେ ପଶୁଥିଲେ ଯହିଁ
ଅଦୃଶ୍ୟ ହୋମାଗ୍ନି ଯୋଗେ ସମାଦର ପାଇ;—
କୁଟିଆ ଦ୍ୱାରରେ ସ୍ଥିତ ମୃଗର ବରଣ
ନୀବାରର ଭାଗ ଲିପ୍ସୁ କୃଷିଧାର ପରି
ଆଦରେ ପାଳିତ ହୋଇ ରହିଥିଲେ ଯହିଁ
ଋଷି ସୀମନ୍ତିନୀଙ୍କର ସନ୍ତାନ ପରାୟେ ।
ମୁନିକୁମାରୀଏ ଯହିଁ ସେଚନ ଶେଷରେ
ସଦ୍ୟ ତଳେ ପାଣିପାୟୀ ପକ୍ଷୀ ମାନଙ୍କର
ଅବିଶ୍ୱାସ ଦୂର ପାଇଁ ତରତର ହୋଇ
ସେହିକ୍ଷଣି ଆସୁଥିଲେ ତରୁତଳ ଛାଡ଼ି,
ଦିନ ଅବସାନ କାଳେ କ୍ରମେ ସଂଗୃହୀତ—
ନୀବାର ଧାନରେ ବ୍ୟାପ୍ତ କୁଟୀର ଅଙ୍ଗଣେ
ମହାସୁଖେ ଶୋଇ ଯହିଁ କୁରଙ୍ଗ ନିକର
ଧୀରେ ଧୀରେ କରୁଥିଲେ ଚର୍ବିତ ଚର୍ବଣ.* ।
ହୋମକୁଣ୍ଡେ ପ୍ରଜ୍ୱଳିତ ହୋମାଗ୍ନି ସୂଚକ-
ଆହୁତିର ଧୂମ ରେଖା ମନୋହର ଗନ୍ଧେ
ସଞ୍ଚରି ମୃଦୁଳ ବାତେ କରୁଥିଲା ତହିଁ
ଆଗତ ଅତିଥିଙ୍କର ମନକୁ ପବିତ୍ର ।
ଋଷିବର ବଶିଷ୍ଠଙ୍କ ସେ ପୁଣ୍ୟାଶ୍ରମରେ
ଜାୟା ସହ ଉପସ୍ଥିତ ହୋଇ ନରମଣି,
"ବିଶ୍ରାମ କରନ୍ତୁ ଅଶ୍ୱେ" ଦେଇ ଏ ଆଦେଶ
ସାରଥିକୁ, ଆନନ୍ଦେ ସେ ନିଜେ ଅବତରି
ରଥରୁ ପ୍ରଥମେ, ତହୁଁ ଉତ୍ତାରିଦେଲେ
ମହିଷୀଙ୍କି ନିଜହାତେ ତାଙ୍କ ହାତଧରି;
ସମ୍ମାନନା କଲେ ଅସି ଶିଷ୍ଟାଚାର ପଠୁ
ଜିତେନ୍ଦ୍ରିୟ ଯତିମାନେ ତହୁଁ ସମାଦରେ

* ପାକୁଳି

ବନସ୍ଥରେ ନସ୍ତ୍ରିର, ପୂଜ୍ୟ, ସପତ୍ନୀକ
ଭସ୍ମନାତା ସତ୍ୟପ୍ରିୟ ଶାସ୍ତ୍ରଜ୍ଞ ରଜାଙ୍କୁ ।
ସନ୍ଧ୍ୟା ଉପାସନା ଅନ୍ତେ ସତୀ ପତ୍ନୀ ସହ
ବସିଥିଲେ ସତ୍ୟନିଷ୍ଠ ବଶିଷ୍ଠ ମୁନୀନ୍ଦ୍ର,
ପ୍ରଭାମୟୀ ସ୍ୱାହା ସହ ହୁତାଶନ ପରି,
ପାଶେ ଯାଇ ମହାଦେବୀ ସହ ନରମଣି
ପ୍ରଣାମ କରନ୍ତେ ପଦେ, ଗୁରୁ ଗୁରୁପତ୍ନୀ
ସାଦରେ ସନ୍ତୋଷ ନେଲେ ଆଶୀର୍ବାଦ କରି ।
ପଥଶ୍ରମ ହରି ତାଙ୍କ ଆତିଥ୍ୟ ସତ୍କାରେ
ପଚାରିଲେ ସ୍ୱରାଜ୍ୟର ହିତାହିତ କଥା
ରାଜ୍ୟାଶ୍ରମ ତପସ୍ୱୀଙ୍କୁ, ବଶିଷ୍ଠ ମହର୍ଷି ।
ଅରାତିନଗରଜୟୀ ସୁମାନ୍ତ କୁଶଳ
ବାଗ୍ମଠୁ ସେ ନରନାଥ ବିନୀତ ସ୍ୱରରେ
ନିବେଦିଲେ ଭକ୍ତିଭାବେ ସଧୀରେ ଏମନ୍ତ—
ଅର୍ଥଯୁକ୍ତ କଥାମାନ କୁଳ ପୁରୋହିତେ—
ଗୁରୁଦେବ ! ଅଛ ଯେଣୁ ଦଇବୀ ମାନବୀ
ବେନିବିଧ ବିପଦର ପ୍ରତିକାର କର୍ତ୍ତା,
ତୁମ୍ଭ ପ୍ରସାଦରୁ ତେଣୁ ସପ୍ତାଙ୍ଗ-ମଣ୍ଡଳ
ସାମ୍ରାଜ୍ୟରେ ସଦା ମୋର ବିରାଜେ ମଙ୍ଗଳ;
ଦୃଷ୍ଟି-ଲକ୍ଷ-ଭେଦ-ପଟୁ ମୋ ମାର୍ଗଣ ଗଣ
ନହୁଅନ୍ତି ବ୍ୟବହୃତ ହେ ଦେବ ! ତୁମ୍ଭର
ପରୋକ୍ଷ ବିପକ୍ଷ ନାଶୀ ମନ୍ତ୍ରର ପ୍ରଭାବେ;
ଆହେ ହୋମକର୍ତ୍ତା ତବ ପ୍ରଦତ୍ତ ଆହୁତି
ଝଟରେ ବରଷାଜଳେ ପରିଣତ ହୋଇ
ରକ୍ଷା କରୁଅଛି ମୋର ପ୍ରଜାମାନଙ୍କର
ବିଷମ ଅନାବୃଷ୍ଟିରୁ କୃଷିଶସ୍ୟରାଶି;
ପୂର୍ଣ୍ଣାୟୁ ଗ୍ରହଣ କରି ସଦାବେଳେ ଯାହା
ମୋହର ପରଜାପୁଞ୍ଜ ନିରହନ୍ତି ପଣ୍ଡିତ
କେବେ ଦୈବ ଦୁର୍ବିପାକେ, ତବବ୍ରହ୍ମତେଜ
ତାହାର କାରଣ ପିତା ଅଟେ ଏକମାତ୍ର ।

ମୋର ଶୁଭ୍ରକାନ୍ତି ନଭେ ଯେଣୁ ମହାମତ
ତୁମ୍ଭେ ହେ ବ୍ରହ୍ମାଙ୍କ ସୁତ ସର୍ବସିଦ୍ଧିଦାତା,
କିପାଇଁ ନୋହିବ ତେଣୁ କହ ଅବହେଳେ
ସର୍ବାରମ୍ଭ ଶାନ୍ତ ପୁଣି ଅତୂର୍ଣ୍ଣ ଶ୍ରୀବୃଦ୍ଧି;
ସକଳ ବିଷୟେ ମୋର ମଙ୍ଗଳ କେ ଦେବ !
କେବଳ ତୁମ୍ଭର ବଧୂ ସୁଦକ୍ଷିଣା ଗର୍ଭେ
ବହୁବର୍ଷ ଗତହେଲା ନଦେଖି ଏପାଏ
ଉପଯୁକ୍ତ ସୁତମୁଖ; ସୁଖ ଲଗୁ ନାହିଁ
ସମ୍ପଦ ସମ୍ଭାରେ ପୂର୍ଣ୍ଣ ଥିଲେହେଁ ଏ ମନ୍ଦି;
ସ୍ୱଦେଶ ଗୁରୁଦେବ କି କଷ୍ଟର କଥା ।
ମୋର ଅନ୍ତେ ପିଣ୍ଡଲୋପ ହେବ ବୋଲି ଭୟେ
ପିତୃଲୋକେ, ଶ୍ରାଦ୍ଧକାଳେ ଦୁଃଖେ ସେ ପିଣ୍ଡରୁ
କରନ୍ତି ହଞ୍ଚୟୁ ଥୋକେ ନଭୁଞ୍ଜି ସମ୍ପୂର୍ଣ୍ଣ;
ପୁଣି ମୋର ଅନ୍ତେ ଅର୍ଘ ନମିଳିବ ବୋଲି
ମୋରଦତ୍ତ ଯେତେ ଯେତେ ତର୍ପଣର ଜଳ
ପାନ କରୁଛନ୍ତି ପିତୃପିତାମହଗଣ
ଦୁଃଖ ନିଶ୍ୱାସରେ ତାହା ଈଷଦୁଷ୍ଣକର;
ଯାଗକର୍ମ କରି ମୁହିଁ ଅରଜି ସୁକୃତ
ପୁଣି ଅପୁତ୍ରିକ ଦୋଷେ ଲୁପ୍ତବଶ ହୋଇ
ସୁଖେ ଦୁଃଖେ, ଲୋକାଲୋକ ଶୈଳବର ପରି
ସତେ କହେ ଗୁରୁଦେବ ରହିଛି ଜଗତେ
ପାଖେ ପ୍ରକାଶିତ ପାଖେ ଲୁକ୍କାୟିତ ହୋଇ;
କ୍ଷମା, ଦାନ, ତପସ୍ୟାଦି ପୁଣ୍ୟକାର୍ଯ୍ୟମାନେ
ବିତରନ୍ତି ସ୍ୱର୍ଗସୁଖ, ନଷ୍ଟଯୁ ଏକଥା
କିଏ ନମାନିବ ତାହା, ମାତ୍ର ସଦାକାଳେ
ଇହ ପାରତ୍ରିକ ସୁଖ ସମ୍ପଦ ଦାୟକ
ଅଟଇ ସୁଶୀଳ ଯୋଗ୍ୟ ବଂଶଧର ସୁତ;
ସ୍ନେହବଶେ ନିଜହସ୍ତେ ଜଳ ସେଚନରେ
ସଂବର୍ଦ୍ଧିତ—ତପୋବନ—ବନ୍ୟତରୁ ପରି
ପୁତ୍ରହୀନ ଦେଖି ମୋତେ ହେ କୃପାକ୍ରମଣି ।

ସଦୟ ହୃଦୟେ ବାରେ କହ ଜନା ମୋତେ
ନୋହୁଛି କ ଦୁଃଖ ଜାତ ତୁମ୍ଭ ମାନସରେ ;
ସ୍ନାନ ବରହିତ ମତ୍ତ ମତ୍ତଗଜ ଯଥା
ନଳର ବନ୍ଧନ ସ୍ତମ୍ଭେ ଲଭଇ ବେଦନା
ତେସନ ଦେବେବ ପିତୃମାନଙ୍କର ଋଣ
ସଦାବେଳେ ଦଏ ମୋତେ ଦୁଃସହ ଯାତନା ;
ହେ ପିତଃ ସେ ପିତୃଋଣୁଁ ମୁକ୍ତିର ଉପାୟ
କର ଶୀଘ୍ର ଦୟାବନ୍ତ, ତୁମ୍ଭର ଅଧୀନ
ଯେଣୁ ସବଂ ଶୁଭାଶୁଭ ଅଟଇ ସର୍ବଦା
ଆପଣଙ୍କ ଆଶ୍ରିତ—ଏ ଇକ୍ଷୁର କୁଳର ।
ଏ ବିନୟ ବାଣୀ ଶୁଣି ମୁଦ୍ରିତ ନୟନେ
ସୁପ୍ତମୀନ ହ୍ରଦ ସମ ସ୍ଥିର ହୋଇ କ୍ଷଣେ
ଧ୍ୟାନ ଯୋଗେ ଚିନ୍ତାଲଙ୍କ ମହର୍ଷି ବଶିଷ୍ଠ,
ସ୍ୱୀୟ ତପ ପ୍ରଭାବରେ ସ୍ଥିର କରି ତାଙ୍କ—
ଅପତ୍ୟ ଅଭାବ ହେତୁ, କହିଲେ ଏସନ—
ଇନ୍ଦ୍ରଙ୍କୁ ଭେଟିବା ପାଇଁ ପୂର୍ବକାଳେ ଯବେ
ଯାଇଥିଲ ହେ ରାଜନ ସୁର ନଗରକୁ,
ଫେରିବା କାଳରେ ତହୁଁ ପୁର ଅଭିମୁଖେ
ତୁମ୍ଭ ପଥ ଆଗୁଳିଲେ କଳ୍ପଦ୍ରୁମ ତଳେ
ଶୋଇଥିଲେ ସୁରଧେନୁ ସୁରଭି ସୁନ୍ଦରୀ ।
ଧୀରେନ୍ଦ୍ର ! ସେକାଳେ ତୁମ୍ଭେ ପୁଷ୍ପବତୀ ଜାୟା—
ଋତୁ ରକ୍ଷା କରିବାକୁ ତର ତର ହୋଇ
ଆସୁଥିଲ, ଏଣୁ ଭ୍ରମେ ପ୍ରଦକ୍ଷିଣ ଯୋଗ୍ୟା—
ପୁଣ୍ୟମୟୀ ଦୁଗ୍ଧବତୀ କାମଧେନୁ ପ୍ରତି
କଲ ନାହିଁ ଯଥୋଚିତ ସମ୍ମାନ ଅର୍ପଣ ।
"ମୋହର ସନ୍ତାନଙ୍କର ଆରାଧନା ବିନା
ନୋହିବ ସନ୍ତତି ତବ କଦାପି ନରେଶ
ହେୟ କଲ ଯେଣୁ ମୋତେ" ଏହି ଅଭିଶାପ—
ଦେଇଥିଲେ ସେକାଳରେ ପୂଜନୀୟା ଧେନୁ ।
ତେଣେ ଜଳେ—ଦିଗ୍‌ବାରଣ ମାଳେ ଉଦ୍‌ବେଳିତ—

ଗଗନ ଗଙ୍ଗାରଘୋର ଗମ୍ଭୀର ଗର୍ଜନେ
ସେ ଶାପ ନଥିଲା ପଡ଼ି ଅହେ ନୃପମଣି
ତୁମ୍ଭର ଅଥବା ତୁମ୍ଭ ସାରଥିର କର୍ଣ୍ଣେ ।
ଜନ୍ମିଅଛି ବାଧା ବତ୍ସ ପୁତ୍ରଲାଭ ପଥେ
ଗାଭୀଙ୍କ ସେ ଅପମାନେ, କରେ ଯିନା ସଦା
ସକଳ କୁଶଳ ନାଶ ଇଷ୍ଟ କାର୍ଯ୍ୟହାନ
ପୂଜ୍ୟମାନ୍ୟ ପ୍ରତି ପୂଜା ହେଲେ ବ୍ୟତିକ୍ରମ ।
ସଦା ଯଜ୍ଞକାରୀ ଦେବ ବରୁଣଙ୍କ ଯାଗେ
ହବି ଦେବା ପାଇଁ ଏବେ, ସେ ସୁରଭି ଯାଇ
ରହିଛନ୍ତି ସର୍ପେ ରୁଦ୍ଧ ପାତାଳପୁରରେ,
ତାଙ୍କସୁତା ନନ୍ଦିନୀଙ୍କୁ ପ୍ରତିନିଧି କରି
ସେବ ତୁହେଁ ସଦାସ୍ଥିର, ନନ୍ଦିନୀ ସନ୍ତୋଷେ
ଅବଶ୍ୟ ହୋଇବ ପୂର୍ଣ୍ଣ ତୁମ୍ଭ ମନୋରଥ ।
ଏହା କହୁ କହୁ ବନୁ କଲେ ଆଗମନ
ଋଷିଙ୍କର ହୋମଧେନୁ ଘୃତ ପ୍ରଦାୟିନୀ,
କୋମଳ ପଲ୍ଲବପରି ପାଟଳବରଣା ।
ଭାଲରେ ବଙ୍କିମ ଶ୍ୱେତ ଲୋମରେଖା ବହି
ମଧୁରମଞ୍ଜୁଳ ମୂର୍ତ୍ତି ବହିଥିଲେ ଯେହ୍ନେ
ନବଚନ୍ଦ୍ରକଳାଧାରୀ ସନ୍ଧ୍ୟାଦେବୀ ପରି ।
ବାଛୁରୀକୁ ଦେଖି ସ୍ନେହଭରେ ପୁଲକିତ
ଘଟପରି ସୁପୃଥୁଳ—ସ୍ତନରୁ ନିଃସୃତ
ଯଜ୍ଞଶେଷ ଅଭିଷେକୁ ଅଧିକପବିତ୍ର
ଈଷଦୁଷ୍ଣ ଦୁଗ୍ଧଧାରେ ଅଭିଷିକ୍ତ କରି—
ଧରାତଳ, ଆଶ୍ରମେ ସେ ହେଲେ ଉପସ୍ଥିତ ।
ନନ୍ଦିନୀ ଆସିବାକାଳେ ଖୁରୁ ଧୂଳିଉଠି
ସଧୀରେ ନରେନ୍ଦ୍ରଙ୍କର ଶରୀରରେ ଲଗେ
ତୀର୍ଥଜଳେ ଅଭିଷେକ କରାଇଲା ପରି
ଏକାବେଳେ ହୃଦୟକୁ କଲା ପବିତ୍ର ।
ନିମିତ୍ତଜ୍ଞ ତପୋଧନ ଦେଖି ସେ ସମୟେ
ଧନ୍ୟାଧେନୁ କୁଳେଶ୍ୱରୀ ଗାଭୀକୁ ସ୍ନେହାରେ

ଅଚମ୍ବିତେ ସମ୍ମୁଖରେ, କହିଲେ ହେ ବତ୍ସ
ଦେଖ ଏହି ଶୁଭଚିହ୍ନ, ମନୋରଥ ତବ
ପୂର୍ଣ୍ଣ ହେବ ଅତିଶୀଘ୍ର, ନାମ କରୁଁ କରୁଁ
କଲ୍ୟାଣୀ ହେଲେଣି ଯେଣୁ ସମୀପବର୍ତ୍ତିନୀ ।
କନ୍ଦମୂଳ ଖାଇ ଏଣୁ ବନ୍ୟବୃତ୍ତି ଧରି
ସନ୍ତତ ଏହାଙ୍କୁ ଭକ୍ତିଭାବେ ଅନୁସରି
ତୁଷ୍ଟ କର ନୃପମଣି, ବିଦ୍ୟାର୍ଥୀ ଯେସନ
ବିଦ୍ୟାକୁ ନିବିଷ୍ଟଚିତ୍ତେ କରନ୍ତି ସାଧନ ।
ଯିବାବେଳେ ସଙ୍ଗେ ଯାଇ ଉଭାକାଳେ ରହି
ବସିବା ସମୟେ ବସି, ସଙ୍ଗେ ଜଳ ପିଇ,
ନାନାରୂପେ ନନ୍ଦିନୀଙ୍କ କରିଅ ସନ୍ତୁଷ୍ଟ
ଅଚିରେ ପୂରିବ ତୁମ୍ଭ ସର୍ବ ମନୋରଥ ।
ସାଧ୍ୱୀ ରାଣୀ ମାତା ପୁଣି ତୁମ୍ଭର ପରାଏ
ପ୍ରତ୍ୟୁଷୁ ଅର୍ଚ୍ଚନା କରି, ଧୂପଦୀପ ଦେବେ,
ଶୁଦ୍ଧମନେ, ଭକ୍ତିଭରେ, ଯାଇ ସଙ୍ଗେ ସଙ୍ଗେ
ତପୋବନ ସୀମାଯାଏ ଦେବେ ପହଞ୍ଚାଇ,
ନନ୍ଦିନୀ ଆସିବାକାଳେ ସନ୍ଧ୍ୟା ସମୟରେ
ପାଛୋଟି ଆଣିବେ ପୁଣି ସେହିରୂପେ ଯାଇ,
ଏରୂପେ ଧେନୁଙ୍କ ସେବା କରି କେତେଦିନ
ସେ ତୁଷ୍ଟ ହୋଇବା ଯାଏ ଏକନିଷ୍ଠ ହୋଇ,
"ହେଉ ସବୁ ଶ୍ରେୟ ତୁମ୍ଭ" ତବ ପିତାପରି
କରିବେ ଯଶସ୍ୱୀ ଯୋଗ୍ୟ ପୁତ୍ରବର ଲାଭ ।
ଏହିରୂପେ ଆଶାପ୍ରଦ ଉପଦେଶ ଦେଇ,
ଆଶୀର୍ବାଦ କରି ମୁନି ଦ୍ୱୟଙ୍କେ ମଙ୍ଗଳ,
ସର୍ବଶାସ୍ତ୍ର ବିଶାରଦ ଦେଶକାଳ ଜ୍ଞାନ
ନରମଣି, ପତ୍ନୀ ସହ ନମସ୍କାର କରି
ଗୁରୁ ଗୁରୁପତ୍ନୀପଦେ ମହାହୃଷ୍ଟମନେ
ସେ ଅଶ୍ୱ ପାଳନେ ବ୍ରତେ ନିବେଶିଲେ ଚିତ୍ତ ।
ତହୁଁ ସନ୍ଧ୍ୟା ସମୟରେ ଉଦ୍ୟତପ୍ରଜ୍ଞ
ବ୍ରହ୍ମାପୁତ୍ର ବିଦ୍ୟାଜ୍ଞ ବଶିଷ୍ଠ ମହର୍ଷି,

ନାନାବିଧ ଅଳାପରେ ତୋଷ ଧରି ଚିତ୍ତ
ସ୍ୱର୍ଗ୍ୟବନ୍ତ ଭୂପତିଙ୍କୁ ଶୋଇବା ନିମିତ୍ତ
ଅଶୀର୍ବାଦ କରି ସୁଖେ ବହିଲେ ମେଲାଣି ।
ନିଜପୁରେ ସେହିରୂପେ ରାଜଋଷିବରେ
ରହୁଥିଲେ ନରବର ; ସେହିପରି ସବେ
ରାଜଭୋଗ ଉଚିତର ଦ୍ରବ୍ୟମାନ ଦେଇ
ଯୋଗବଳେ ମହାମୁନି କରି ପାରିଥାନ୍ତେ
ମାନ୍ୟଜ୍ଞାନ—ଅତିଥିର ଆତିଥ୍ୟ ସତ୍କାର,
ମାତ୍ରକ ନିୟମ ରକ୍ଷା ପାଇଁ ସେମାନଙ୍କ
କଲେ ବନ ଶଯ୍ୟା ବନ୍ୟ ଭୋଜନ ବ୍ୟବସ୍ଥା ।
ତଦନ୍ତର ମହାରାଜ ପ୍ରିୟଜାୟାରାଣୀ—
ସୁଦକ୍ଷିଣା ରାଣୀସଙ୍ଗ ସାନନ୍ଦ ମନରେ.
କୁଳପତି-ପ୍ରଦର୍ଶିତ କୁଟୀର କୋଳରେ
କୁଶାସନେ ପଦ୍ମଡ଼ଣ ଯାପି ରଜନୀ
ଉଠିଲେ ସକାଳୁ ; ଶୁଣି ଋଷିମାନଙ୍କର
ବେଦଧ୍ୱନି, ଜଟାଘନ କ୍ରମ ମନୋହର (୧)

(୧) ବେଦାଭ୍ୟାସ କ୍ରମ ବିଶେଷ

# ଦ୍ୱିତୀୟ ସର୍ଗ

ଏଥିଅନ୍ତେ ପ୍ରଭାତରୁ ସୁଦକ୍ଷିଣା ରାଣୀ
ଗନ୍ଧପୁଷ୍ପେ ବିଧିମତେ ପୂଜାକଲା ପରେ
ଋଷିଧେନୁ ନନ୍ଦିନୀଙ୍କୁ, ଦୁଗ୍ଧପାନ ଶେଷେ
ବାଛୁରୀକୁ ବାନ୍ଧି ତାର ; ବନଅଭିମୁଖେ
ଚରିବା ନିମନ୍ତେ ରାଏ କଲେ ମୋଚନ ।
ବେଦର ଅର୍ଥକୁ ସ୍ମୃତି ଅନୁସରେ ଯଥା
ତେସନ ସେ ପତିବ୍ରତା ପାଟମହାଦେଈ
ଶୁଦ୍ଧମନେ, ସେ ଧେନୁର ଗଲେ ପଛେ ପଛେ
ଖୁରରୁ ଉଠିତ ପୂତ ଧୂଳିପୂର୍ଣ୍ଣ ପଥେ ।
ଯଶସ୍ୱୀ ଅଯୋଧ୍ୟାଧିପ ପରମଦୟାଳୁ
ଅଧିବାଟୁ ପ୍ରେୟସୀଙ୍କୁ ଫେରାଇ ଆଦରେ,
ପୟୋଧର ପରିଣତ ସମୁଦ୍ରେ ଶୋଭିତା—
ଗୋରୂପ ଧାରଣୀ ଧରାସମ ନନ୍ଦିନୀଙ୍କ
ସେବାରେ ନିଯୁକ୍ତ ହେଲେ ଏକାନ୍ତ ମନରେ ।
ଗୋ ସେବାବ୍ରତରେ ରତ ରାଜର୍ଷି ଦିଳୀପ
ଲେଉଟାଇ ଦେଲେ ସଙ୍ଗୁ ଯେତେ ଅନୁଚର,
ଦେହରକ୍ଷା ଲାଗି ସୈନ୍ୟ ହୁଏ ନାହିଁ ଲୋଡା
ସୂର୍ଯ୍ୟବଂଶୀବୀରଙ୍କର, କାହିଁ କେଉଁକାଳେ,
ଆତ୍ମରକ୍ଷା କରନ୍ତି ସେ ସଦା ନିଜବଳେ ।
ଧେନୁ ସଙ୍ଗେ ସଙ୍ଗେ ଭ୍ରମି ବ୍ରତରକ୍ଷା ପାଇଁ,
ସୁକୋମଳ ସ୍ୱାଦୁତୃଣ ଖୁଆଇ ଆଦରେ
ସ୍ୱକରେ କୁଣ୍ଡାଇଦେଇ, ଦଂଶନ କାରଣେ
ଗାତ୍ରେ ବସୁଥିବା ବନ ମଶାକୁଳତଡ଼
ମୃଦୁଲପଲ୍ଲବ ଘାତେ ; ଏରୂପେ ନରପ
ଅବ୍ୟାହତ ଗତିଶୀଳା ପଥ ଅନୁସରି
ନରନାଥ ସେବା କଲେ ତାଙ୍କୁ ଅନୁବ୍ରତେ ।
ରହିବାକାଳରେ ରହି, ଯିବାକାଳେ ଯାଇ,
ବସିବାକାଳରେ ଭୂପ ସହିଁ ତହିଁ ବସି,

ଜଳପିଇବାର ବେଳେ ଜଳ ପାନ କରି,
ଶଯ୍ୟା ପରେ ଅନୁଗାମୀ ହେଲେ ସେ ଧେନୁଙ୍କ ।
ନଥିଲେହେଁ ଛତ୍ରଚାମରାଦି ରାଜଚିହ୍ନ
ରାଜଶ୍ରୀରେ ନରମଣି ଦିଶୁଥିଲେ ଚାରୁ,
ଅବ୍ୟକ୍ତ-ମଦରେଖା-ପ୍ରାପ୍ତ ଦ୍ୱିପେନ୍ଦ୍ରପରାଏ
ଭୂମିସ୍ପର୍ଶୀ ଜଟାଳିଆ ଲତା ତଳେ ତଳେ
ଗଳ ଗଳ ବୁଲିବାରୁ ତାଙ୍କ ଶିଖା ବାନ୍ଧି
ବାନ୍ଧିହୋଇ ଯାଉଥିଲା ବ୍ରତୀ ତନୁରେ ।
କଣ୍ଟକିତ ବନମଧ୍ୟେ ଯାଇଁ ଦଣ୍ଡଧାରୀ
ନନ୍ଦିନୀଙ୍କ ଅନୁସରି କେବେ ବା ସଳଖେ
କେବେ ବକ୍ରପଥ କରି ଯାଉଥିଲେ ଧୀରେ
ପଥର ଅସମସ୍ଥାନେ କେତେବେଳେ ତେଇଁ
କେବେ ବା ପାଷାଣେ ଚଢ଼ି କେବେ ଲଇଁ ଲଇଁ
ଛେଳକର କାଟୁଥିଲେ ବନେ ନୃପ କାଳ ।
ପ୍ରଚଣ୍ଡକୋଦଣ୍ଡେ କେହେ ଚଢ଼ାଇଶିଞ୍ଜିନୀ
ଗାଭୀ ପଛେ ପଛେ ବୀର ଯାଉଥିବା ଦେଖି
ମନେହେଉଥିଲା ଯେତେ, ଗାଭୀରକ୍ଷା ବ୍ୟାଜେ
ସତେ କିସେ ମହୀପାଳ ବନେ ଭ୍ରମୁଥିଲେ
ବନଦେଶେ, ଶ୍ୱାପଦଙ୍କ ସଂହାରିବା ପାଇଁ ।
ତରୁଣ ପ୍ରଥମ ସେହି ନରଲୋକପାଳ
ଏଥରେ ବିଜନ ବନେ କରନ୍ତେ ବିହାର
ତାଙ୍କ ସଂବର୍ଦ୍ଧନା ପାଇଁ ନବଟେର ସ୍ତୁତ—
ଶାଖାବଳୀ ପଲ୍ଲବିତ ପାଦପନିକର
ମଦମତ୍ତ କୋକିଳର ମୃଦୁସ୍ୱନ-ଛଳେ
ଉଚ୍ଚାରଣ କଲେ କିବା ଜୟ ଜୟ ଧ୍ୱନି ।
ପୁଷ୍ପସ୍ତବ୍ୟ ମନ୍ଦବାତେ ଆନ୍ଦୋଳିତ ହୋଇ
ସୁରଭିତା ସୁକୁମାରୀ ବନଲତାମାନେ
ସମୀପରେ ବୁଲୁଥିବା ଦିଲୀପଙ୍କ ଶିରେ
ପୌରର ଲାଜାରେ ପୁର ମହିଳାଙ୍କ ପରି
ବୃନ୍ତଚ୍ୟୁତ ପୁଷ୍ପବୃଷ୍ଟି କଲେ ଅବିରତ ।

ଧନୁଶର ଧରିଲେହେଁ ନରେନ୍ଦ୍ରମଣିଙ୍କ
ସଦୟ ହୃଦୟ ଦେଖି, ଦଳ ଦଳ ହୋଇ
କୋମଳ ସୁନ୍ଦରତନୁ-କୁରଙ୍ଗୀ ନିଚୟ
ଈକ୍ଷଣଙ୍କ ହୃଦୟେ ତାଙ୍କ ବିଗ୍ରହ ବିମଳ
ବିଲୋକି, ଲଭିଲେ ଚକ୍ଷୁ ବିସ୍ତୀର୍ଣ୍ଣତା ଫଳ ।
ଠାବେ ଠାବେ ଘନବନେ ମୃଦୁସମୀରଣ,
ପୂରୁଣା ବାଉଁଶ ରନ୍ଧ୍ର ମଝିରେ ପ୍ରବେଶି
ବଇଁଶୀ ବାଜିଲା ପରି କରୁଥିଲା ସ୍ୱନ,
ଦୂରେ ତରୁକୁଞ୍ଜେ ବସି, ଶୁଣି ଶୁଣି ତାହା
ନରମଣି, ମଣୁଥିଲେ ବନଦେବୀମାନେ
ଗାଉଥିଲେ ଉଚେ କିବା ତାଙ୍କ ଯଶ ଗୀତ ।
ପୁଷ୍ପସୁବାସରେ ପୂର୍ଣ୍ଣ ମୃଦୁଳ ଅନିଳ,
ତରୁବର ଶାଖାମାନ ଦୋହଲାଇ ଧୀରେ,
ଅସ୍ଫୁଟ ପବନଗାନ—ଛନ୍ଦବିବର୍ଜ୍ଜିତ
ସେ ନୃପଙ୍କୁ ସେବୁଥିଲା କାନନେ ନିରତ ।
ଅରଣ୍ୟରେ ନୃପମଣି ପ୍ରବେଶ ଦିଅନ୍ତେ
ଲିଭିଗଲା ଦାବାନଳ ବିନାବରଷାରେ,
ବୃଦ୍ଧିହେଲା ଫୁଲଫଳ ବହୁପରିମାଣେ,
ଦୁର୍ବଳ ଜୀବଙ୍କୁ ବାଧା ନଦେଲେ ପ୍ରବଳେ ।
ନଦନାଳ ସନ୍ନିତରେ ବୁଲି ବୁଲି ଭୂପ
ଦେଖିଲେ ଅନେକ ଦୃଶ୍ୟ କାନନ ମଧ୍ୟରେ,
ସରସୀ ଜଳରେ ପଶି କାନ୍ଧିବା ବସନ୍ତେ
ଲେଉଟୁଥିଲେ କାଦୁଅରେ ଘର୍ମବ୍ୟାକୁଳରେ,
ଫୁଲାଇ ଫୁଲାଇ କଣ୍ଠ ଉଚ୍ଚତରୁଡାଳେ
କାନ୍ଧି ବସି କେକୀମାନେ ଦେଉଥିଲେ ଡାକ,
ପାଦପ ବିରଳସ୍ଥାନେ କାହିଁ ମୃଗମାନେ
ମୃଦୁତୃଣ-ପ୍ରାଙ୍ଗଣରେ ବୁଲି ବୁଲି ଧୀରେ
ଚଞ୍ଚଳ ତରଙ୍ଗ ସ୍ନିଗ୍ଧ ଦୃଷ୍ଟି ଚାହାଣିରେ
କରୁଥିଲେ କାନନକୁ ଶ୍ୟାମଳବରଣ ।
ଏମନ୍ତେ ନରେନ୍ଦ୍ରମଣି ଧେନୁସଙ୍ଗେ ଭ୍ରମି

ଦିନଶେଷେ ଆଶ୍ରମକୁ ଆସିଲେ ବାହୁଡ଼ି
ନନ୍ଦିନୀଙ୍କ ପଛେ ପଛେ, ଦେଖି ହେଉ ପ୍ରତେ
ଶିଷ୍ଟସମ୍ମାନିତ—ଭୂପଯୋଗେ ସେ ନନ୍ଦିନୀ
ସତେକି ଅର୍ଚ୍ଚିତା ହୋଇ ସକଳପ୍ରକାରେ ?
ବିଧିଯୁକ୍ତ ଶ୍ରଦ୍ଧା ପରି ହେଲେ ସୁଶୋଭିନୀ ।
ପ୍ରବାଳ ପରାଏ ଲାଲ ବଶିଷ୍ଠଙ୍କ ଧେନୁ,
କାଞ୍ଚନ ଚୋରକ କାନ୍ତି-ସାନ୍ଧ୍ୟ ଦିନମଣି,
ଦୁହେଁ ଦିଗଦିଗନ୍ତର ସ୍ପନ୍ଦନ କରି
ଭ୍ରମଣେ ଦିବସ ଶେଷେ, କ୍ଳାନ୍ତ କଳେବରେ
ଫେରି ଭେଟିଲେ ନିଜ ନିଜ ନିକେତନେ ।
ସଧୀରେ ଚଳିଲେ ଏକ ଚରମାଚଳକୁ
ଏପରି ବଶିଷ୍ଠଙ୍କର ପବିତ୍ର ଆଶ୍ରମେ ।
ଏକେ ଦୁଗ୍ଧଦେଣ୍ଡ ଗାଈ, ତହିଁକେ ତାହାର
ମାଟିଅରୁ ବଳସ୍ତନ, ରଜାଙ୍କର ପୁଣି
ଗେଠା ମୋଟା ସୁକୁମାର ମୃଦୁ କଳେବର,
ଏଣୁ ଧୀରେ ଧୀରେ ଗୃହ ମନ୍ଥରଗତିରେ-
ତପୋବନ ଅଭିମୁଖେ ବନ୍ତୁ ଦୁହେଁ ଫେରି,
ପବିତ୍ର ଆଶ୍ରମପଥ କଲେ ଅଳଂକୃତ ।
ବନକୁ ଗମିଲା ବେଳୁଁ ପଥ ଗୃହିଁ ଗୃହିଁ
ରହିଥିଲେ ସୁଦକ୍ଷିଣା ମହାଉତ୍ସୁକରେ,
ଏବେ ନନ୍ଦିନୀଙ୍କସହ ନରକୁଳମଣି
ବାହୁଡ଼ି ଆସିବା ଦେଖି, ଉତ୍କଣ୍ଠିତ ପ୍ରାଣେ
ଉପବାସୀ ପ୍ରାୟ ସ୍ୱୀୟ ବିଶାଳ ନୟନେ,
ପାନକଲେ ତାଙ୍କୁ କିସେ ନିର୍ନିମେଷ ହୋଇ ।
ଅଗେ ଧେନୁ ତାଙ୍କପଛେ ଥିଲେ ନରମଣି,
ସମ୍ମୁଖେ ହୁଅନ୍ତେ ଉଭା ସୁଦକ୍ଷିଣାରାଣୀ,
ରାଜାରାଣୀଙ୍କ ମଧ୍ୟରେ ଦିଶିଲେ ନନ୍ଦିନୀ
ଦିବସ ରଜନୀ ମଧ୍ୟେ ଯେସନ୍ତେ ସନ୍ଧ୍ୟାରାଣୀ ।
ପୂଜା ଉପସ୍କର ଧରି ତହୁଁ ମହାଦେଈ
ଧେନୁକୁ ପ୍ରଣାମ ପୁଣି ପ୍ରଦକ୍ଷିଣ କରି

ପଥ ଯଦି— ସ୍ୱାର୍ଥରୂପୀ ଦୁରସ୍ତିଙ୍ଗମଧ୍ୟେ
ଟିକାଦେଇ ପୁଜାକଲେ ଅନ୍ତଭକ୍ତିଭରେ ।
ବତ୍ସୋତ୍ସୁକା ହୋଇଲେ ହେଁ ସେହି ପୂଜାମାନ
ନନ୍ଦିନୀ ନିଶ୍ଚଳ ହୋଇ ଗ୍ରହଣ କରନ୍ତେ
ପ୍ରୀତ ହେଲେ ସେ ଦମ୍ପତି, ଯେଣୁ ତାଙ୍କପରି
ମହାତ୍ମାମାନଙ୍କ ଶୁଭ ଅନୁଗ୍ରହଚିହ୍ନ
ଭକ୍ତଙ୍କର ଶୀଘ୍ରଫଳ କରଇ ପ୍ରକାଶ ।
ଗୁରୁ ଗୁରୁଜାୟାପଦେ ଓଳଗି ହୋଇଣ,
ଅସ୍ତ୍ର ବିଜୟୀ ଭୂପ ସାନ୍ଧ୍ୟକୃତ୍ୟଅନ୍ତେ
ଦୁଗ୍ଧଦୁହିଁ ସାରିଲରୁ, ଶୁଅନ୍ତେ ନନ୍ଦିନୀ
ତାହାଙ୍କ ସେବାରେ ପୁଣି ବଳାଇଲେ ମତି ।
ପୂଜା ଉପହାରମାନ ନିକଟରେ ଥୋଇ,
ଦୀପଜାଳି, ସେ ଗାଈଙ୍କୁ ନୀରାଜନା କରି
ବସିଲେ ଅଯୋଧ୍ୟାଧିପ ଅନନ୍ୟମନରେ,
କ୍ରମେ ଧେନୁ ଶୁଅନ୍ତେ ସେ ଶୋଇଲେ ଗହିରେ,
ପ୍ରଭାତେ ଉଠନ୍ତେ ପୁଣି ଉଠିଲେ ସତ୍ୱରେ ।
ଯୋଗ୍ୟ ପୁତ୍ର ଲଭିପାଇଁ ମହିଷୀ ସହିତ
ଏହିରୂପେ ସୁକଠୋର ବ୍ରତମାନ କରି
ବିପଦ-ମୋଚନ-କ୍ଷମ ପ୍ରଜାନାଥ ଯଶ—
ସ୍ୱଜନଙ୍କ ଗଣି ଏକବିଂଶତି ଦିବସ ।
ବୁଝିବା ପାଇଁକି ନିଜ ଭକତର ଭାବ,
ବଶିଷ୍ଠ ଋଷିଙ୍କ ଧେନୁ, ତହିଁଆରଦିନ
ଏଣେତେଣେ ଚରି ଚରି ଅଲକ୍ଷିତ ଭାବେ,
ଗଙ୍ଗା ପ୍ରପାତତର ସ୍ନିଗ୍ଧ ନବତୃଣେ ଶୋଭି—
ହିମାଳୟ ଗହ୍ୱରରେ ପ୍ରବେଶିଲେ ଯାଇ ।
ଏବେ ଋଷିକୁଳଶ୍ରେଷ୍ଠ ବଶିଷ୍ଠଙ୍କ ଧେନୁ,
ଦୂଜେ ବିଶ୍ୱବନ୍ଦନୀୟା ସୁରଭୀଙ୍କ ସୁତା
ତାଙ୍କୁ କି ପାରିବେ ହିଂସି ହିଂସ୍ରଜନ୍ତୁମାନେ ?
ଏହା ଭାବି ଏକମନେ ଗିରୀନ୍ଦ୍ରର ଶୋଭା
ଦେଖୁଥିଲେ ନୃପବର, ସହସା ଲଟିରୁ

ଅଲକ୍ଷିତେ ତେଇଁ ଏକା କରାଳ କେଶରୀ
ସେକାଳେ ଧେନୁକୁ ବଳେ କଲା ଆକ୍ରମଣ ।
କ୍ରୋଧୋନ୍ମତ୍ତ ମୃଗେନ୍ଦ୍ରର ଗମ୍ଭୀର ଗର୍ଜନ—
ନନ୍ଦିନୀର ଆର୍ତ୍ତସ୍ୱର, ଗିରୀନ୍ଦ୍ର ଗହ୍ୱରେ
ଘୋର ପ୍ରତିଧ୍ୱନି ଜାଗେ ପୁଷ୍ପଲତା ଭଙ୍ଗ,
ଦିଲୀପଙ୍କ ଗିରିଲଗ୍ନ ନେତ୍ରଯୁଗଳକୁ
ସୂତାରେ ଟାଣିଲାପରି ଓଟାରିଲା ବଳେ ।
ଦେଖିଲେ ସେ ଧନୁର୍ଦ୍ଧର ଚକିତେ ଚମକି
ରକ୍ତବର୍ଣ୍ଣ ଗାଭୀପୃଷ୍ଠେ ବସିଛି କେଶରୀ,
ଗୈରିକେ ଅରୁଣକାନ୍ତି ଅଧିତ୍ୟକାପରେ
ଧବଳକୁସୁମାଚ୍ଛନ୍ନ ଲୋଧ୍ରତରୁ ପରି ।
ଦେଖି ଏ ଅଚିନ୍ତନୀୟ ଦୃଶ୍ୟ ନରମଣି
ଅତ୍ୟନ୍ତ ଲଜ୍ଜିତ ହୋଇ, ବିଳମ୍ବ ନ କରି
ସିଂହକୁ ବଧିବାଲାଗି ଶୀଘ୍ର ଏକ ଶର
ତୂଣୀରୁ କାଢ଼ିବା ପାଇଁ ବଢ଼ାଇଲେ କର ;
ନିଜଭୁଜେ ବଳ ଆର ଅଚିନ୍ତ୍ୟ ସେ ଯେଣୁ
ସାମାନ୍ୟ ସିଂହକୁ କିପାଁ କରନ୍ତେ ଭ୍ରୂକ୍ଷେପ ।
ଚଞ୍ଚଳ ହସ୍ତରେ ବୀର ଟାଣୁ ଟାଣୁ ଶର
ନପାରିଲେ କାଢ଼ି ଆଉ, ରହିଲା ଲଟକି
ତୂଣୀର ଭିତରେ ସ୍ଥିତ ବାଣପ୍ରାନ୍ତେ ଲଗ୍ନ
ତାହାଙ୍କ ଅଙ୍ଗୁଳି ବେନ, ସୁରଞ୍ଜିତ କରି
ନଖପ୍ରଭା ଯୋଗେ ସେହି ଶର-କଙ୍କପତ୍ର ।
ବାହୁସ୍ତମ୍ଭ ହେବା ଯୋଗୁଁ ଚିତ୍ରାର୍ପିତ ପରି
ରହିଲେ ନିଶ୍ଚଳେ ନୃପ ; ତାହାଙ୍କ ଆଗରେ
ମାଡ଼ିବସି ନନ୍ଦିନୀଙ୍କୁ ଓଟାରୁଛି ସିଂହ,
ତଥାପି ଅକ୍ଷମ ହୋଇ ତାକୁ ମାରିବାରେ
ମନ୍ତ୍ରୌଷଧି ରୁଦ୍ଧବୀର୍ଯ୍ୟ ବିଷଧର ପ୍ରାୟ
ଦଗ୍ଧହେଲେ ନିଜେ ଶୂର ନିଜ ତେଜାନଳେ ।
ନନ୍ଦିନୀଙ୍କୁ ଦୃଢ଼ଭାବେ ଧରି ସେ କେଶରୀ,
ସାଧୁଜନ ପକ୍ଷପାତ, ସର୍ବବଶକେତୁ,

ବାହୁସ୍ତମ୍ଭଯୋଗୁଁ ଅମ୍ଭ ବିସ୍ମିତ-ନୃପଙ୍କୁ,
କହିଲା ବିସ୍ମିତତର ମନୁଷ୍ୟ ଭାଷାରେ—
ମହୀପାଳ ବୃଥାଶ୍ରମେ ମାତ୍ରୁଛ କିପାଇଁ
ହେବ ନାହିଁ କିଛି ଫଳ, ନିକ୍ଷେପ କଲେହେଁ
ମୋପରେ ସାୟକଜାଳ ଆରବାରକର,
ସ୍ୱଚ୍ଛନ୍ଦେ କି ଗିରି କେବେ ଟଳଇବ ପାରେ ?
ତରୁଉନ୍ମୂଳକ ଝଞ୍ଜା ବାତ୍ୟାର ଆଘାତେ ।
କୈଳାସ ଧବଳ ବୃଷେ ଆରୋହଣ କାଳେ,
କୃପାବଶେ କୃପାମୟ ଦେବ ଶୂଳପାଣି,
ଚରଣ ସ୍ଥାପନ କରି ମୋହର ପୃଷ୍ଠକୁ
କରିଛନ୍ତି ସୁପବିତ୍ର, ନିକୁମ୍ଭ-ବାନ୍ଧବ
କୁମ୍ଭୋଦର ନାମ ମୋର, ଜାଣ ମହାବୀର !
ଅଷ୍ଟମୂର୍ତ୍ତି ରୁଦ୍ରଙ୍କର ଅଟଇ କିଙ୍କର ।
ଏହି ଯେ ଦେଖୁଛ ସ୍ଥୂଳ ଦେବଦାରୁତରୁ
ନୃପମଣି ସମ୍ମୁଖରେ, ନିଜେ ବୃଷଧ୍ୱଜ,
ପୁତ୍ରଭାବେ କରିଛନ୍ତି ଏହାକୁ ଗ୍ରହଣ,
ଯା'କୁ ସ୍ତନରୂପୀ ହେମ କୁମ୍ଭ ପୟୋଦାନେ
ମହାଦରେ ଅବିରତ କେତେ ଯତ୍ନ କରି
ପାଳିଛନ୍ତି ସସ୍ନେହରେ ହିମାଦ୍ରି ତନୟା ।
ଦିନେ ମଦମତ୍ତ ଏକ ଅରଣ୍ୟ କୁଞ୍ଜର
ଅନାୟାସେ ବୁଲି ବୁଲି ଏବନେ ପ୍ରବେଶି,
କଣ୍ଡୂଳ କପୋଳ ଘଷି ପାଦପରୁ ଛାଲି
ଆନନ୍ଦେ ଉଠାଇଥିଲା, ଦେଖି ତା ଭବାନୀ
ଦୈତ୍ୟ ଅସ୍ତ୍ରାଘାତେ କ୍ଷତବିକ୍ଷତ-ଶରୀର—
ସ୍କନ୍ଦଙ୍କୁ ଦେଖିଲା ପରି ହୋଇଲେ ଦୁଃଖିତ ।
ସେହିଦିନୁ ଜାଣ ନୃପ ଶୂଳପାଣି ମୋର—
ଅଙ୍କାଗତ-ସତ୍ତ୍ୱ କରି ଜୀବିକା ବିଧାନ, (୧)
ବନହସ୍ତୀମାନଙ୍କର ଭୟଜାତ ପାଇଁ

(୧)—ନିକଟକୁ ଯେ ଆସିବ ତାହାକୁ ଖାଇ ବଞ୍ଚିବ ।

ଜଗୁଆଳ କରିଛନ୍ତି ମତେ ଏ ଗିରିରେ ।
ମହେଶ୍ୱରଙ୍କର ଦତ୍ତ ଖାଦ୍ୟରୂପେ ମୋର
ଆସିଛି ଏ ଧେନୁଗୋଟି, ରକ୍ତପାନ କରି
ଉପବାସୀ ଅଛି ମୁହିଁ ହେବ ପରିତୃପ୍ତ,
ସୁଧାକର ସୁଧାଦେଖି ଦେବରିପୁ ଯଦ୍ୱତ୍
କେବେ କି ମୁରୁଛି ତାକୁ ପାରେ ହେ ବୀରେନ୍ଦ୍ର !
ଏଣୁ ଏ ଧେନୁକୁ ରକ୍ଷା କରିବା ବିଷୟେ
କ୍ଷାନ୍ତହୁଅ ଧୀରମଣି, ନହୁଅ ଲଜ୍ଜିତ
ନପାରିଲ ରଖି ବୋଲି, କରିଛ ପ୍ରକାଶ
ଉପଯୁକ୍ତ ଶିଷ୍ୟଭକ୍ତି ଗୁରୁଠାରେ ତୁମ୍ଭେ,
ରକ୍ଷଣୀୟ ଦ୍ରବ୍ୟ ଶସ୍ତ୍ରେ ଅରକ୍ଷହୋଇଲେ
ରକ୍ଷାକର୍ତ୍ତା କୀର୍ତ୍ତି ଲୋପ ହୁଅଇକି ତଳେ ?
ସିଂହଠାରୁ ଶୁଣି ଏହି ପ୍ରଗଲ୍ଭ ବଚନ
ବୀର ବନ୍ଦନୀୟ ଧନ୍ୱୀ ଅଯୋଧ୍ୟାର ଭୂପ
ବୁଝିଲେ ପ୍ରକୃତକଥା, ଶିବଙ୍କ ପ୍ରସାଦେ
ନିଜଅସ୍ତ୍ର ପ୍ରତିହତ ହୋଇଅଛି ବୋଲି ;
ସ୍ୱୀୟସାମର୍ଥ୍ୟକୁ ଏଣୁ କରୁଥିଲେ ଯାହା
ଅବଜ୍ଞା, ମନରୁ ତାହା କଲେ ସେ ବର୍ଜ୍ଜନ ।
ଜୀବନେ ପ୍ରଥମେ ଏହି ଶର ମାରିବାରେ
ଏରୂପେ ଅକୃତକାର୍ଯ୍ୟ ହୋଇ ସେ ଚକିତେ,
ବଜ୍ର ପ୍ରହାରେଚ୍ଛୁ ଇନ୍ଦ୍ର ମହେଶଙ୍କୁ ଦେଖି
ଜଡ଼ୀଭୂତ ହେଲାପରି, କ୍ଷଣେ ସ୍ତବ୍ଧଭାବେ
ରହି, ଉତ୍ତରିଲେ ଭୂପ ଶିବଙ୍କ ସିଂହକୁ ।
ଶକ୍ତିହୀନ ହୋଇଛି ମୁଁ ଯେଣୁ ହେ କେଶରୀ !
ତେଣୁ ନିଶ୍ଚେ ଜାଣୁଅଛି ହେବ ହାସ୍ୟାସ୍ପଦ
କହିଲେ ମୋ ମନକଥା, ମାତ୍ର ତୁମ୍ଭେ ସାଧୋ !
ଜଗତେ ସକଳ ପ୍ରାଣୀମାନଙ୍କର ମନ
ଜାଣବୋଲି କରୁଅଛି ଏହି ନିବେଦନ—
ଚରାଚର ବିଶ୍ୱସୃଷ୍ଟି ସ୍ଥିତି ପ୍ରଳୟର—
ହେତୁଭୂତ ଭୂତନାଥ ଅବାଧ୍ୟ ଅଟନ୍ତି

ଶତଶତ ବାର ମୋର, ଏହାବୋଲି କହେ !
ଚରଣାଶ୍ରି ପୂଜ୍ୟଗୁରୁଦେବଙ୍କ ଗୋବତ୍ସ,
ମୋ ସମକ୍ଷେ ଅନାୟାସେ ହୋଇବ ବିନାଶ,
ନୀରବରେ ଠିଅହୋଇ ଦେଖୁଥିବ ମୁହିଁ;
ଏହାନୁହେ, ଅଜାଗତସତ୍ତ୍ୱ-ଭେଦୀ ତୁମ୍ଭେ
ହରୀଶ୍ୱର, (୧) ମୋ ଶରୀରେ ପୂର୍ଣ୍ଣକର ଅର୍ପି
ତୁମ୍ଭର ବିପଳକ୍ଷୁଧା, ଛାଡ଼ ଦୟାବନ୍ତ
ମୁନିବର ନନ୍ଦିନୀଙ୍କୁ, ଉତ୍ସୁକ ହେବନ,
ଡବା ଅବସାନ ହେଉ ତାହାଙ୍କ ବାତ୍ସଲ୍ୟ ।
ହରଙ୍କର ଅନୁଚର ସେ କେଶରୀ ତହୁଁ
ନରବରଙ୍କର ଏହୁ ବଚନ ଆକର୍ଣ୍ଣି,
ଗିରି ଗହ୍ୱରର ଯେତେ ଗାଢ଼ ଅନ୍ଧକାର,
ଦଶନ କାନ୍ତିରେ ହେଲେ ଖଣ୍ଡଖଣ୍ଡ କରି
ସ୍ମିତହାସ୍ୟେ ନରେନ୍ଦ୍ରଙ୍କୁ କହିଲା ଏସନ—
ଜଗତର ଆଧିପତ୍ୟ, ଏକମାତ୍ର ଛତ୍ର,
ନବୀନ ବୟସ, ଏହୁ କମନୀୟ ଗାତ୍ର,
ସର୍ବଦା ଅଟଇ ଭୂପ ଜଗତେ ଦୁର୍ଲ୍ଲଭ,
ପାଇଅଛ ଏକାଧାରେ, ତୁମ୍ଭେ ସେ ସକଳ,
ସାମାନ୍ୟ ଟାଙ୍କର ପାଇଁ ତାର ଅପଚୟ,
ହେ ଭୂପାଳକୁଳମଣି ଭାବଦେଖ ମନେ
କିଏ ବୁଦ୍ଧିମନ୍ତ ବିଜ୍ଞ କେ କରେ ଜଗତେ ।
ଧର୍ମ ଉପାର୍ଜ୍ଜନ ପାଇଁ ଅବା ଯେବେ ତୁମ୍ଭେ
ଜୀବପ୍ରତି ଦୟା କରି, ନିଜ ପ୍ରାଣ ଦେଇ
ଚାହୁଁଅଛ ରକ୍ଷିବାକୁ ବଶିଷ୍ଠ ଧେନୁକୁ
ତାହେଲେ ତୁମ୍ଭର ନାଶେ କେବଳ ମଙ୍ଗଳ
ହେବ ଏହୁ ନନ୍ଦିନୀର, ମାତ୍ର କିନ୍ତୁ ପଦ
ଥାଏ ନରନାଥ ତୁମ୍ଭେ ଥିଲେ ସ୍ୱରାଜ୍ୟରେ,
ପ୍ରଜାଙ୍କୁ କରନ୍ତ ରକ୍ଷା ନାନା ବିପଦରୁ

(୧)—ସିଂହ

ପିତା ପର, ଯହେ ଦୁଷ୍ଟକୁଳଉତ୍ପୀଡ଼ନ୍ତୁ ।
ଡରୁଛ କି ? ଅବା ତୁମ୍ଭ ଗୁରୁଦେବଙ୍କର
ଏକମାତ୍ର ଏହି ଧେନୁ ବିନଷ୍ଟ ହୋଇଲେ
ମହାକ୍ରୋଧେ ହୁତାଶନସମ ଚଣ୍ଡ ହୋଇ
ଅଭିଶାପ ଦେବେ ବୋଲି, ଚାହେଁଲେ କୋଟିଏ
ଏହିରୂପ ଦୁଗ୍ଧବତୀ ଗାଭୀ ଦାନ ଦେଇ
ତାହାଙ୍କ କୋପାଗ୍ନି କରି ପାରିବ ନିର୍ବାଣ,
ଧରାତଳେ ସର୍ବସୁଖ ଭୋଗେ ଅଧିକାରୀ
ତୁମ୍ଭର ଏ ତନୁ ଏଣୁ ରଖ ଯତ୍ନ କରି
ଦଣ୍ଡଧର ! ସୁବିଖ୍ୟାତ ରାଜ-ପଦବୀକୁ,
ଇନ୍ଦ୍ରତ୍ୱ କହନ୍ତି ଲୋକେ, ପ୍ରଭେଦ ଏତିକି
ରାଜପଦ ମହୀତଳେ ଇନ୍ଦ୍ରତ୍ୱ ସ୍ୱର୍ଗରେ ।
ମେଘଧ୍ୱନି ପରି ଘୋର ଘୋର ନିନାଦେ
କମ୍ପାଇଣ ଗିରିଗୁହା ନିବୃତ ହୁଅନ୍ତେ
ଏହା କହି ମୃଗରାଜ, ପ୍ରତିଧ୍ୱନି କରି
ସତେକି ପର୍ବତରାଜ ଗମ୍ଭୀର ହୁଙ୍କାରେ
ନିବେଦିଲେ ନରେଶଙ୍କୁ ସତର୍କ ପାଇଁକି ?
ସିଂହର ବଚନମାନ ପୁଣି ଅନୁପରେ ।
ଏମନ୍ତ କେଶରୀସଙ୍ଗ କଥା ହେଲାବେଳେ
ଭୟରେ ଚଞ୍ଚଳ ନେତ୍ର ଋଷିଙ୍କର ଧେନୁ
ଫେରାଇ ଫେରାଇ ମୁଖ ନରେନ୍ଦ୍ର ପାଖକୁ
ଚାହାନ୍ତେ ଅଧୀରଚିତ୍ତେ କଲବଲ ହୋଇ,
ତା ଦେଖି ଦୟାର୍ଦ୍ରଚିତ୍ତେ ଅତନ୍ତେ ନରେଶ
ଭଣିଲେ ସିଂହକୁ ଏହି ଯୁକ୍ତିଯୁକ୍ତ କଥା—
ଏ କ୍ଷତ୍ରିୟ ଶବଦର ବ୍ୟୁତ୍ପତ୍ତିକୁ ପରେ
ସ୍ମରୁଛ କି ମୃଗରାଜ, କ୍ଷତୁଁ ତ୍ରାଣ ଯେହୁ
କରଇ, କ୍ଷତ୍ରିୟ ନାମେ ହୁଏ ସେ ବିଦିତ
କ୍ଷତ୍ରିୟ ଶବଦ ବହି ତାର ବ୍ୟବହାର
କରିବା କଠିନ ଅତି ଅଟଇ ସଂସାରେ,
ସ୍ୱଭାବେ କ୍ଷତ୍ରିୟ ମୁହିଁ ଯୁଦ୍ଧ ବ୍ୟବସାୟୀ,

ସେ ଷଡ଼ିସୁ ଶବଦକୁ ବରୁଣାର୍ଥେ ଧରି
ଲୋକସମାଜରେ କେଣ୍ଟେ ଦେଖାଇବ ମୁଖ,
କି ଫଳ ପାଇବ ଅବା ଏ ଗ୍ରଜ ସ୍ନେଗରେ
କି ଫଳ ବା ହେବ କଳଙ୍କିତ ଏ ଶରୀରେ:
ଭୂପତି କହୁଛ ତୁମ୍ଭେ ! ମହାକ୍ରୋଧୀ ହୋଇ
ବୁଝିପାରୁ ନାହିଁ କଛ, କରିବ କେମନ୍ତେ
ମହର୍ଷିଙ୍କ କୋପଶାନ୍ତି ଅନ୍ୟ ଗାଭୀ ଦେଇ ?
ପୁଣ୍ୟମୟୀ ଏ ନନ୍ଦିନୀ କାମଧେନୁଠାରୁ
କଦାପି ନୁହନ୍ତି ନ୍ୟୂନ, ରୁଦ୍ର ତେଜେ ଯିନା
ଆକ୍ରମଣ କରିଅଛ ତୁମ୍ଭେ ତାଙ୍କୁ ଏବେ ।
କଥା ଏ ମୋହର ଶୁଣ ଅହେ ମୃଗେଶ୍ୱର !
ଅଙ୍କାଗତସତ୍ତ୍ୱ-ସ୍ନେହ ତୁମ୍ଭେ ସବୁକାଳେ
ଶୂଳପାଣିଙ୍କର ବରେ ଏ ବନ ଭିତରେ,
ଏଣୁ ନକେ ଉପସ୍ଥିତା ଏ ଗାଭି ତୁମ୍ଭର
ଯଥାର୍ଥ ଅଟଇ ପ୍ରାପ୍ୟ, ତାର ବଦଳରେ
ମୋର ଦେହ ରୂପ ମୂଲ୍ୟ ନେଇ ଦୟାବନ୍ତ
ଛାଡ଼ିଦିଅ ଯାନ୍ତୁ ସେହୁ, ତା'ହେଲେ ତୁମ୍ଭର,
ଉପବାସ ପାରଣାର ନୋହିବ ବ୍ୟାଘାତ
ଊଲେମାନ, ମହର୍ଷିଙ୍କ ଯାଗକର୍ମ ପୁଣି
ପୁର୍ବପରି ନର୍ବିଘ୍ନରେ ହୋଇବ ସମ୍ପନ୍ନ ;
ଅପର କଥା ଏ ଶୁଣ ହେ ଶିବକିଙ୍କର,
ରକ୍ଷଣୀୟ ଦ୍ରବ୍ୟଟିକୁ ବିନାଶି ରକ୍ଷକ
ଅକ୍ଲେଶେ, ଅକ୍ଷତଦେହେ, ପ୍ରଭୁର ସମକ୍ଷେ
ଯିବାପାଇଁ ହୁଅଇ କି କଦାପି ସମର୍ଥ ?
ଅଛିତ ତୁମ୍ଭଙ୍କୁ ଏହା ଭଲସ୍ୱେ ଜଣା,
ପରାଧୀନ ଅଟେ ବୋଲି ଦେଖତ କିପରି
କେତେ ଯତ୍ନେ, କେତେ ଶ୍ରମେ, କେତେ କଉଶଳେ,
ରକ୍ଷା କରୁଅଛ ଏହି ଦେବଦାରୁ ତରୁ !
ଅବା ଯେବେ ମନେ ମନେ କରିଛ ସଂକଳ୍ପ
ନ ବଧିବ ମୋତେ ବୋଲି, ତେବେ ଦୟାବନ୍ତ

ରକ୍ଷାକର ଅପାର୍ଥିବ ମୋର କୀର୍ତ୍ତି-ଦେହ
ଥରେ ସୁପ୍ରସନ୍ନ ହୋଇ, ହେ କେଶରୀବର !
ଜନ୍ମିଲେ ମରଣ ନଷ୍ଟେ, ଲକ୍ଷ ଲକ୍ଷ ପ୍ରାଣୀ
ଜନ୍ମି ଏହି ଧରାଧାମେ ମରୁଛନ୍ତି ନିତ୍ୟ,
କୀର୍ତ୍ତିକୁ ବିଲୋପ କରି ସେ ମୃତ୍ୟୁ ଭୟରେ,
କ୍ଷଣ ବିଧ୍ୱଂସିନୀ କାୟେ କିବା ପ୍ରୟୋଜନ ।
ସୁଜନେ, ସୁଜନେ, ସିଂହ ! ଦରଶନ ମାତ୍ରେ
ହୁଅଇ ବନ୍ଧୁତ୍ୱ ଲାଭ, ସେ ବନ୍ଧୁତ୍ୱ ପୁଣ
ସମ୍ଭାଷଣ ହେଲେ ହୁଏ ଅତି ଦୃଢ଼ତର,
ଏବେ ଆମ୍ଭ ଦୁହିଁଙ୍କ ତା’ ଅଲକ୍ଷିତ ଭାବେ
ମିଳିଲାଣି ଏକାନ୍ତରେ ଆସି ଏ କାନ୍ତାରେ,
ଏଣୁ ହେ ଶିବଙ୍କଭୃତ୍ୟ କରେ ନିବେଦନ
ବନ୍ଧୁର ପ୍ରାର୍ଥନା କେବେ ବିଫଳ ନ କର ।
ସାଧୁଚେତା ନୃପଙ୍କର ଏ ବଚନ ଶୁଣି
“ହେଉତେବେ” ବୋଲି ସିଂହ ବୋଲନ୍ତେ ତକ୍ଷଣ,
ଅସ୍ତ୍ରଶସ୍ତ୍ରମାନ ଛାଡ଼ି, ପ୍ରସନ୍ନବଦନେ,
କାର୍ଯ୍ୟମୁକ୍ତ ବାହୁ ହୋଇ, ନୃପ ସ୍ୱଶରୀର
ଆମିଷ ପିଣ୍ଡର ପରି କଲେ ସମର୍ପଣ ।
ଏହିଭାବେ ଯେକାଳରେ ଭୀଷଣ ସିଂହର
ଆକ୍ରମଣ ପ୍ରତୀକ୍ଷାରେ ଅବନତ ବଦନେ
ରହିଥିଲେ ମୌନଭାବେ ଧରାକୁ ସେ ଚାହିଁ,
ସେକାଳେ ତାହାଙ୍କ ଦେହେ ବିଦ୍ୟାଧରକୁଳ
କୁସୁମ ବର୍ଷଣ ଊର୍ଦ୍ଧ୍ୱୁଁ କଲେ ଅକସ୍ମାତେ ।
କିଛିକ୍ଷଣେ “ଉଠବତ୍ସ” ଏ ମଧୁର ବାଣୀ
ଶୁଣି, ନରମଣି ଧୀରେ ଗାତ୍ରୋତ୍ଥାନ କରି
ଦେଖିଲେ, କେଶରୀ ନାହିଁ, ମାତ୍ର ମାତାପରି
ଏକା ସେହି ପୁଣ୍ୟମୟୀ ନନ୍ଦିନୀ ରାଜନ୍ତି ।
କରୁଣ ବିସ୍ମୟତର ବିସ୍ମିତ ନୃପଙ୍କୁ
କହିଲେ ସେ ହୋମଧେନୁ ତହିଁ ସସ୍ନେହରେ,
“ହେ ସାଧୋ ! ପରୀକ୍ଷା ମୁହିଁ କରୁଥିଲି ସିନା

ଏହିରୂପେ ମାୟା କରି, ମୁନିବର ବରେ
ହିଂସ୍ର କୂରେ ଥାଇ ଯମ ନ ପାରଇ ହିଂସି ।
ଗୁରୁଭକ୍ତି ମୋର ପ୍ରତି ତୁମ୍ଭର ସୁଦୟା,
ଦେଖି ପ୍ରୀତ ହେଲି ବତ୍ସ, ମାଗିନିଅ ବର
ଯଥାରୁଚି, ଏକା ଦୁଗ୍ଧଦାତ୍ରୀ ବୋଲି ମୋତେ
ଜାଣ ନାହିଁ ନରସାଇଁ, ପରିତୃପ୍ତ ହେଲେ
ଭକ୍ତଙ୍କୁ ମୁଁ ଦେଇଥାଏ ତାଙ୍କ ଇଷ୍ଟଫଳ ।"
ନିଜ ଭୁଜବଳେ ବୀର ପଦ ଅଧିକାରୀ,
ଅର୍ଥୀସତ୍କାରକ, ତହିଁ ସେ ଲୋକପାଳକ
ମାଗିନେଲେ ଏହି ବର, ବଂଶପ୍ରବର୍ତ୍ତକ
ପୁଣ୍ୟ ଶ୍ଳୋକ ଚିରଯଶା ଏକ ସୁତରତ୍ନ
ଶୁଭେ ସୁଦକ୍ଷିଣା ଗର୍ଭେ ଜାତହେବା ପାଇଁ ।
ପ୍ରୀତେ 'ତଥାସ୍ତୁ' ବୋଲି ବର ଦେଇ ଧେନୁ
କହିଲେ ନୃପଙ୍କୁ ସ୍ନେହେ 'ହେ ବତ୍ସ ସାନନ୍ଦେ
ପତ୍ରପୁଟେ କରି ପାନ ଦୁହିଁ ମୋର ଦୁଗ୍ଧ ।'
ଭାଷିଲେ ଭୂପତି ଧୀରେ କରଯୋଡ଼ି କରି,
"ଅୟି ମାତା ମୋର ଇଚ୍ଛା ବତ୍ସପାନ ଅନ୍ତେ,
ଗୁରୁଙ୍କର ଅନୁମତେ, ହୋମକାର୍ଯ୍ୟ ଶେଷେ,
ତବ ଅବଶିଷ୍ଟ କ୍ଷୀର କରିବ ଗ୍ରହଣ,
ନିଏଁ ଯଥା ପୃଥିବୀର ଅଗ୍ରରୁ ଷଷ୍ଠାଂଶ ।
ଏଣୁବେ କାମଧେନୁ ତୋଷି, ଯଥାକାଳେ ଭୂପ
ଅଇଲେ ଆଶ୍ରମେ ଫେରି ତାହାଙ୍କର ସହ
ଅତି ଆହ୍ଲାଦରେ ପୂର୍ଣ୍ଣ ପ୍ରିୟତମଙ୍କର
ପ୍ରସନ୍ନ ଚନ୍ଦ୍ରମାମୁଖ ଦେଖୁଁ ଦେଖୁଁ ଅଗୁଁ
ଅନୁମାନ କରିଥିଲେ ନରେନ୍ଦ୍ର, ମହର୍ଷୀ
ପୁଣ୍ୟମୟୀ ନନ୍ଦିନୀଙ୍କ ବରଦେବା କଥା,
ସିଦ୍ଧମନୋରଥ ନୃପ ପୁନରୁକ୍ତ ପରି
ଅଗେ ଗୁରୁ ଅଗେ ପଛେ ତାହାଙ୍କ ପାଖରେ
ଆନନ୍ଦେ ଗଦ୍‌ଗଦ୍ ହୋଇ ପରେ ସେ ବୃତ୍ତାନ୍ତ
ଗୋଟି ଗୋଟି କରି ସବୁ କଲେ ନିବେଦନ ।

ସାନ୍ଧ୍ୟ ବିଧିମାନ ସାରି ତହୁଁ ନରପାଳ
ଭାହୁସ୍ୱର ପାନ ଅନ୍ତେ, ହୋମବିଧି ଶେଷେ
ବଶିଷ୍ଠଙ୍କ ଆଦେଶରେ ଅବଶିଷ୍ଟ କ୍ଷୀର
ମୁନିଧେନୁ ନନ୍ଦିନୀଙ୍କ ପାନ କଲେ ସୁଖେ,
ସ୍ୱୋପାର୍ଜ୍ଜିତ ମୂର୍ତ୍ତିମାନ ଶୁଭ୍ରଯଶ ପରି ।
ମହାମନା ମୁନି ତହୁଁ ପରଦିନ ପ୍ରାତେ
ପୂର୍ବୋକ୍ତ ଗୋସେବା ବ୍ରତେ କରିବ ପାରଣା,
ପ୍ରସ୍ଥାନ କାଳର ଶୁଭ ମାଙ୍ଗଳିକ ପରେ
ଦମ୍ପତିଙ୍କୁ ପଠାଇ ଦେଲେ ନିଜର ନଗରେ ।
ଗୁରୁଦେବ, ଅରୁନ୍ଧତୀ, ହୋମ ହୁତାଶନ,
ସବତ୍ସା, ଧେନୁକୁ ପୁଣି ପୂଜାକରି ଦୁହେଁ,
ସୁପବିତ୍ର ସେ ମଙ୍ଗଳ କ୍ରିୟା ଅନୁଷ୍ଠାନେ
ଧରି ସମଧିକତର ସମୁଜ୍ଜ୍ୱଳ କାନ୍ତି,
କଲେ ନିଜ ରାଜଧାନୀ ଅଡ଼କୁ ପ୍ରସ୍ଥାନ ।
ଧର୍ମ୍ମପତ୍ନୀ ସହ ସୁଖେ ସହସ୍ର ଶାସକ
ବସିଲ ପରି ସ୍ୱ ପୂର୍ଣ୍ଣ ମନୋରଥ ରଥେ,
ପ୍ରତିଘାତ (୧) ବିରହିତ—ଅତି ସୁଖକର—
ସ୍ନିଗ୍ଧ ମନ୍ଦ୍ରଧ୍ୱନି-ପୂର୍ଣ୍ଣ ବିମାନେ ଆରୋହି
ପଥ ଅତିକ୍ରମ କଲେ ବିବିଧ ଆଳାପେ ।
ନ ଦେଖି ସେ ନରେନ୍ଦ୍ରଙ୍କୁ ବହୁତ ଦିନରୁ
ରହିଥିଲେ ମନଦୁଃଖେ ଦେଶବାସୀମାନେ,
ପୁତ୍ର ପାଇଁ ଦୃଢ଼ ବ୍ରତ ପାଳନ କ୍ଲେଶରେ
କୃଶ ତନୁ ସେ ନରେଶ ପ୍ରବେଶନ୍ତେ ଆସି
ନଗରେ ଉତ୍ସୁକମନେ ଏବେ ମହାନନ୍ଦେ
ନବୀନ ଉଦିତ ଶିଶୁଚନ୍ଦ୍ରକଳାପରି
ପାନ କଲେ ଯଥା ତାଙ୍କୁ ଅନିମେଷ ନେତ୍ରେ ।
ଇନ୍ଦ୍ର ତୁଲ୍ୟ ପରାକ୍ରମୀ ଭୂପ ସ୍ୱ ନଗରେ
ଯଥାବିଧି ପୌରବର୍ଗେ ସମ୍ବର୍ଦ୍ଧିତ ହୋଇ,

(୧) ଜାର୍କିଂ—(Jarking) ଝଟକା ।

ଚେତନତ ନଚେତନେ ପ୍ରବେଶି ଅନନ୍ତେ,
ବିଶାଳ ଭୁଜଙ୍ଗରାଜ ସମ ସାର ଭୂତେ
ପୁଣି, ନବେଷ୍ଟିଲେ ଏହୁ ଧରଣୀର ସ୍ତର
ଅତ୍ରି ମୁନିଙ୍କର ନେତ୍ର ନିର୍ଗତ ଜ୍ୟୋତିକୁ
ଧରିଥିଲା ପୂର୍ବକାଳେ ଯଥା ନଭସ୍ଥଳୀ,
କିମ୍ବା ଯଥା ବହ୍ନି ତ୍ୟକ୍ତ ଶର୍ବର ତେଜକୁ
ବହିଥିଲେ ଭାଗୀରଥୀ ମହା ସମାଦରେ,
ତେମନ୍ତେ କୁଳଧନ ଅନ୍ତେ ନନ୍ଦନୀଙ୍କ ବରେ
ଦେବତାଙ୍କ ସୁଦୁଃସହ ଅଂଶେ ତେଜୋମୟ—
ସୁବିଖ୍ୟାତ ସୂର୍ଯ୍ୟବଂଶ ମଙ୍ଗଳକାରକ—
ଗର୍ଭକୁ ଧାରଣ କଲେ ନାରୀ ଶିରୋମଣି
ମହାରାଣୀ ସୁଦକ୍ଷିଣା ପୁଣ୍ୟମୟୀ ଦେବୀ ।

---

# ତୃତୀୟ ସର୍ଗ

ଅନ୍ତଃସତ୍ତ୍ୱା ହେଲେ ଯହୁଁ ରାଜେନ୍ଦ୍ର ମହିଷୀ,
ଦେଖି ଦମ୍ପତିଙ୍କ ହୃଦ ନାଚଇ ଉଲ୍ଲାସେ,
ସଖୀମାନଙ୍କର ନେତ୍ରେ ଆନନ୍ଦର ଜ୍ୟୋତ୍ସ୍ନା
କ୍ରୀଡ଼ା କଲା ଅବିରତ, ପ୍ରସର ହୁଅନ୍ତେ
ବାୟୁବେଗେ ଏ ବାରତା ବିଶାଳ ସାମ୍ରାଜ୍ୟ,
ଶୁଣି ଦେଶବାସୀମାନେ ହୋଇଲେ ଗଦ୍‌ଗଦ
ମହାନନ୍ଦେ, ରବିକୁଳ ରକ୍ଷା ହେବ ଭାବି ।
ଦିନୁ ଦିନୁ ମହିଷୀଙ୍କ ପ୍ରଫୁଲ୍ଲ ଆନନ
ଦିଶିଲା ପାଣ୍ଡୁରବର୍ଣ୍ଣ ଲୋଧଫୁଲ ପରି,
କୃଶ ହୋଇଗଲା ତନୁ, ପିନ୍ଧି ସୁକୁମାରୀ
ଅଳ୍ପ ଅଳ୍ପ ଆଭରଣ ଦିଶିଲେ ସୁନ୍ଦର,
ଆସନ୍ନ ପ୍ରଭାତସନ୍ଧି, ବିରଳ ତାରାରେ,
ସ୍ୱଳ୍ପକାନ୍ତି ଚନ୍ଦ୍ରେ, ଯଥା ହୁଅଇ ଲକ୍ଷିତ ।
ବାସିଲା ମୃତ୍ତିକା ପରି ତାହାଙ୍କ ବଦନ
ଅରେମାନ ଘ୍ରାଣୀତାକୁ ଏଣୁ ଲୋକପାଳ
ନୋହି ତୃପ୍ତ ଚୁମ୍ବୁଥିଲେ ବାରବାର କରି ।
ଗ୍ରୀଷ୍ମକାଳ ଅବସାନେ ବରଷା ପାଣିରେ—
ସିକ୍ତ-ପଲ୍ୱଳକୁ ଲଭି ବନଗଜ ଯଥା ।
ସୁରପତି ସୁରଲୋକ ଭୋଗ କଲାପରି
ଚଳାଇ ଝଡ଼ବେଗେ ସ୍ୱବିଜୟ ରଥ
ନିଜ ସୁତ, ଭୋଗିବେ ଏ ଭୂଲୋକକୁ ହେଲେ,
ଦୋହଲ୍‌ଅବା, ସୁଦକ୍ଷିଣା ବଳାଇଲେ ମନ
ମାଟି ଆସ୍ୱାଦନ ପାଇଁ, ଆଗୁଁ ପରିହରି
ଅନ୍ୟାନ୍ୟ ସୁସ୍ୱାଦୁ ଭୋଗ୍ୟ ପଦାର୍ଥ ନିକର ।
ସର୍ବଦା ପଚ୍ଛୁରୁଥିଲେ ଅନ୍ତରେ ରାଜନ
ସଖୀବୃନ୍ଦେ, ଲଜ୍ଜାବଶେ ନ କହନ୍ତି କିଛି
ପାଟମହାଦେଈ କେବେ ମୋର ଆଗେ ଆସେ,
କହ ତୁମ୍ଭେ କି କି ଦ୍ରବ୍ୟ ବଳାନ୍ତି ସେ ଚିତ୍ତ,
କାହିଁରେ ତାହାଙ୍କ ମନ ହୋଇବ ପ୍ରଫୁଲ୍ଲ ।

ଗର୍ଭପାତନାରେ କ୍ଷୀଣା ପାଟମହାଦେଈ
ଦେଉଥିଲେ ଯହିଁ ମନ, ଅଚିରେ ତା ଆସି
ଉପସ୍ଥିତ ହେଉଥିଲା ମନୋମତରୂପେ,
ଦିଲୀପ ଭୂପଙ୍କ ଚଣ୍ଡ କୋଦଣ୍ଡ ଅଗରେ
ସ୍ୱର୍ଗର ସମ୍ପଦ ହୁଆ ନ ଥିଲା ଦୁର୍ଲ୍ଲଭ ।
ଗର୍ଭର ଦୁଃସହକ୍ଳେଶ ଅତିକ୍ରମ କରି,
ଅଳ୍ପ ଅଳ୍ପ ପୁଷ୍ଟ ହୋଇ, ନବ କାନ୍ତି ଲଭି,
ମହିଷୀ ବହିଲେ ଶୋଭା, ବସନ୍ତ ଆଗମେ
ପାଚିଲା ପତରମାନ ପଡ଼ିଲାରୁ ଖସି
ନବୀନ ପଲ୍ଲବେ ମଞ୍ଜୁ ମଞ୍ଜରୀ ପରାଏ ।
ତମାଳ ଶ୍ୟାମଳସ୍ତୁ ଚୂଚୁକ ଶୋଭନା
ମହିଷୀଙ୍କ ସ୍ତନ ଦେନ, କନ୍ଦ୍ରକନ୍ତ୍ର ବଢ଼ି
ଅତ୍ୟନ୍ତ ପୃଥୁଳ ହୋଇ, ଧିକ୍କାରିଲା ହେଲେ
ଅଳିଯୁକ୍ତ କମନୀୟ କମଳକଳିକୁ ।
ଅଭ୍ୟନ୍ତରେ ବହ୍ନି ଧରି ଶମୀଲତା ଯଥା
ତେସନ ଗର୍ଭରେ ସୁତ ବହି କୋମଳାଙ୍ଗୀ
ଆଭାଷିଲେ, ଅନ୍ତର୍ଜଳା ସରସ୍ୱତୀ ସମ ।
ତାଙ୍କୁ ଦେଖି କେତେମତେ କହୁଥିଲେ ସମ୍ୱେ
ପ୍ରେମାଦରେ ବହ୍ନିଗର୍ଭ ବସୁମତୀ ବୋଲି ।
ସମ୍ପାଦିଲେ ପୁଂସବନ ଆଦିବିଧିମାନ
ମହୋଲ୍ଲାସେ ନରମଣି, ଅଳବସ୍ତ୍ର ଦେଇ
ଦରିଦ୍ରଙ୍କୁ, ବାଣ୍ଟିଦେଲେ ଧନରତ୍ନ ଆଦି
ଅତୁଳ ସମ୍ପଦରାଜି ବ୍ରାହ୍ମଣ ନିକରେ,
ସୁବିପୁଳ ଧନଜାଲ ବିତରଣ କରି
ଯେଉଁ ଉଦାରତା ଭୂପ କରିଲେ ପ୍ରକାଶ
ସୂଚୁଥିଲା ତାହା ସିନା ସକଳ ମତରେ
ପ୍ରେୟସୀଙ୍କ ପ୍ରତି ତାଙ୍କ ଗାଢ଼ ଅନୁରାଗ ।
ବଡ଼ ଖୁସି ହେଉଥିଲେ ସେ ଲୋକପାଳକ
ସ୍ନେହେ ପ୍ରତ୍ୟାବୃତ୍ତ ହୋଇ, ରାଜକାର୍ଯ୍ୟ ଶେଷେ,
ଗୁରୁଗର୍ଭ ଗୌରବରେ ନତମୁଖୀ ହୋଇ

ଭୂମିପରେ କରସ୍ପର ଦେଇ ଧୀରେ ଧୀରେ
ସମାଦର କରି ତାଙ୍କ ଅଭ୍ୟର୍ଥନା ଲାଗି,
ଚଞ୍ଚଳଲୋଚନା ରାଣୀ ଉଠିବାର ଦେଖି ।
ବାଳକ ଅବସ୍ଥା ଶାସ୍ତ୍ର-ଦକ୍ଷ ବୈଦ୍ୟ ଯୋଗେ
ଗର୍ଭରକ୍ଷା କ୍ରିୟାମାନ ଯତ୍ନେ ସମ୍ପନ୍ନ,
ପ୍ରସବ ଉନ୍ମୁଖୀ ସେହି ନରେନ୍ଦ୍ର ମହିଷୀ
ପଶିଲେ ରୁଚିରତର, ଅନ୍ତର୍ବାଷ୍ପ ଯଥା
ନବନୀରଦକୁ ତାର ଅଭ୍ୟନ୍ତରେ ବହି ।
ନୈସାଧନା ଶକ୍ତି ଯଥା କରଇ ପ୍ରସବ,
ଅକ୍ଷୟ ସିଦ୍ଧିକୁ ହେଲେ, ଇନ୍ଦ୍ରାଣୀ ସଦୃଶ
ତେସନ ସେ ରାଜେନ୍ଦ୍ରାଣୀ, ଶୁଭେ ଜନ୍ମ କଲେ
ଯୋଡ଼ିଏ ତନୟରତ୍ନ, ଉଚ୍ଚ ସ୍ଥାନସ୍ଥିତ—
ରବିଙ୍କ ସମ୍ପର୍କଶୂନ୍ୟ ପଞ୍ଚ ଶୁଭଗ୍ରହ
ପରସ୍ପର ମିତ୍ରଭାବେ ଏକ ସ୍ଥାନେ ରହି
ଜାତଶିଶୁ ସୌଭାଗ୍ୟକୁ ଦେଉଥିଲେ କହି ।
ସେ କାଳରେ ଦଶଦିଗ ହୋଇଲା ନିର୍ମଳ
ବହିଲା ମୃଦୁଳବାୟୁ, ଦକ୍ଷିଣ ମୁଖରେ
ଲେଳିଲେ ଅନଳ ହବି, ସକଳ ପ୍ରକାରେ
ପ୍ରକାଶିଲା ଶୁଭଚିହ୍ନ, ଲୋକହିତ ପାଇଁ
ଜନ୍ମିଥାନ୍ତି ସିନା ଭବେ ଏରୂପ ମାନବ ।
ହୀନପ୍ରଭ ହୋଇଗଲା ପ୍ରଦୀପ ନିକର
ସୁଗନ୍ଧିର ରଜନୀରେ ସୂତିକା ଗୃହରେ
ସେ ସୁଜନ୍ମା ବାଳକର ସ୍ୱାଭାବିକ ତେଜେ ।
"ପୁତ୍ର ଜନ୍ମ ହେଲା" ଏହି ଅତି ମଧୁମୟ
ଅକ୍ଷର ନିକର, ଆସି ପ୍ରକାଶିଲା ଆଗେ ।
ଅନ୍ତଃପୁରୁ ଯେଉଁ ଦାସୀ ଦଳପଙ୍କ ଆଗେ,
ଶଶାଙ୍କ-ଧବଳ-ଛତ୍ର ଚାମର ଯୁଗଳ—
ବିନା, ଅନ୍ୟ ଦ୍ରବ୍ୟ କିଛି ନ ଥିଲା ଅଦେୟ
ସେକାଳେ, ସେ ସୁତସ୍ନେହୀ ନରେନ୍ଦ୍ରମଣିଙ୍କ ।
ନକ୍ଷର୍ମ କମଳ ପର ନିସ୍ପନ୍ଦ ନୟନେ

ନରେଶ ପିଇଲେ ସୁତ ବଦନ ଶୋଭନ,
ଉଚ୍ଛୁଳ ପଡ଼ିଲା ହୃଦୁ ଆନନ୍ଦ ଲହରୀ
ପୁତ୍ରପ୍ରେମ ଗଦଗଦେ, ବିଧୁଙ୍କ ଦର୍ଶନେ
ଜଳନିଧି ଜଳରାଶି ଉଚ୍ଛୁଳଇ ଯଥା ।
ଜନମ ସଂସ୍କାର ବିଧି କରନ୍ତେ ସକଳ
କୁଳଗୁରୁ ପୁରୋହିତ ବଶିଷ୍ଠ ମହର୍ଷି
ବନ୍ଦୁ ଆସି, ମନୁସୁତ ସେ ଦିଲୀପ ସୁନୁ
ଶାଣେଯନ୍ତ୍ର—ସୁମାର୍ଜିତ ଖଣିଜାତ ମଣି-
କାନ୍ତି ଭଳି, ଅଧିକନ୍ତୁ ହେଲେ ଶ୍ରୀମନ୍ତ ।
ସୁତଜନ୍ମ ଉପଲକ୍ଷେ ବିବିଧ ଆମୋଦ
ଅନୁଷ୍ଠିତ ହେଲା ରାଜ୍ୟେ, ବାଜିଲା ସଘନେ
ବିବିଧ ମଙ୍ଗଳବାଦ୍ୟ ଜମାଇ ଅବନୀ;
ସ୍ୱରୁଚଳ୍ପୀ ବିଳାସିନୀ ସୁଗ୍ରୁବୁ ହାସିନୀ
ନର୍ତ୍ତକୀ ଗଣିକାଚୟ କେବଳ ଉଲ୍ଲାସେ
ରଙ୍ଗେ ଅଙ୍ଗଭଙ୍ଗି କରି ରସାଇ ମାନସ
ନାଟ କରୁଥିଲେ ତହିଁ ଅଯୋଧ୍ୟା ନଗରେ;
ଅନୁରୂପ ତାର ପୁଣି କର୍ଣ୍ଣ ରସାୟନ
ସୁମଧୁର ତୂର୍ଯ୍ୟ ଧ୍ୱନି ଚୌଦିଗ ଜମାଇ
ଉଠୁଥିଲା ତାଳେ ତାଳେ ସୁରପୁରେ ସୁଦ୍ଧା
ଏ ଉତ୍ସବେ, ନୃତ୍ୟସହ ଗୀତ ଲହରୀରେ ।
ସୁଶିକ୍ଷାମୂଳକ ତାଙ୍କ ସୁଶାସନ ଗୁଣେ
ସଂଶୋଧନ ହୋଇଥିଲା ପ୍ରଜାଙ୍କ ଚରିତ୍ର,
ମୁକ୍ତି ଦେବା ପାଇଁ ଏଣୁ ପୁତ୍ର ଜନ୍ମୋତ୍ସବେ
ନ ଥିଲେ ଗୋଟିଏ ବନ୍ଦୀ ଜେହେଲଖାନାରେ.
ମୁକତ ଲଭିଲେ ସିନା କେବଳ ସେ ନୃପ
ପିତୃଋଣ ବନ୍ଧନରୁ ତନୟ ପାଇ ।
ଶାସ୍ତ୍ର ପୁଣି ଶସ୍ତ୍ର ଏହି ଉଭୟରୁ ଲଙ୍ଘି,
ଯଥାକାଳେ ବିଶ୍ୱଜୟୀ ହୋଇବ କୁମର
ଏଣୁ ଅର୍ଥଜ୍ଞାନୀ ଭୂପ ଆଲୋଚନା କରି
"ଲଙ୍ଘିଧାତୁ" "ଗମନାର୍ଥ" ପରିଜନ ସହ

ମନୋହର ରଘୁ ନାମ ରଖିଲେ ସୂତର ।
ସବୁ ସମ୍ପଦର କର୍ତ୍ତା ଥିବାରୁ ଦିଲୀପ
ତାଙ୍କ ସଙ୍ଗେ ଦେଖି ଦେଖି ହେଲା ତନୟର
ଶରୀରର ଟମୋଲଛି, ସ୍ୱର୍ଣ୍ଣକର ଲଭି
ଚନ୍ଦ୍ର ଯଥା ଦନୁ ଦନୁ ହୁଅନ୍ତ ବର୍ଦ୍ଧିତ ।
ଜୟନ୍ତକୁ ଦେଖି ଯଥା ବାସବ ବାସବୀ,
କିମ୍ବା ସେନାନୀଙ୍କୁ ପାଇ ଯଥା ହରଗୌରୀ,
ହୋଇଥିଲେ ଆନନ୍ଦିତ ପୁରୁବ କାଳରେ,
ଜୟନ୍ତ ସେନାନୀ ସମ ସୁଗୁଣ ସମ୍ପନ୍ନ
ତେସନ ରଘୁକୁ ପାଇ, ରଜା ରାଣୀ ବେନି
ହର୍ଷ ସୁଧାସାଗରରେ ହେଲେ ନିମଗନ ।
ରଥାଙ୍ଗ ରଥାଙ୍ଗୀ ସମ ବେନିଙ୍କ ଉପରେ,
ଥିଲା ଯେଉଁ, ବେନିଙ୍କର ପ୍ରେମମୟ ଭାବ,
ତହୁଁ ଏବେ ଭାଗ, ସୁତ ଗ୍ରହଣ କରନ୍ତେ,
ସେ ପୁତ୍ରାନୁରାଗ ତାଙ୍କ ବଢ଼ିଲା ଦ୍ୱିଗୁଣେ ।
ଅର୍ଦ୍ଧସ୍ଫୁଟ ସ୍ୱରେ ଶିଶୁ ଅନୁଗୃତି କରଣ
ଧାତ୍ରୀର ବଚନମାନ, ଚଳି ଧୀରେ ଧୀରେ
ପଦେ ପଦେ ସେ ଧାତ୍ରୀର ଅଙ୍ଗୁଳକୁ ଧରି,
ଉଠି ବସି, ମୃଦୁହାସ୍ୟେ, ତୃପ୍ତ କରୁଥିଲା
ତନୟବତ୍ସଳ ନୃପ ଦମ୍ପତ୍ତିଙ୍କ ମନ ।
ପୁତ୍ରକୁ କୋଳରେ ଧରି ଆଦରେ ନୃମଣି
ସ୍ପର୍ଶ ସୁଖେ ଭୋଳ ହୋଇ ଭାବୁଥିଲେ ମନେ
ହେଉଛି କି ତାଙ୍କ ଦେହେ ଅମୃତ ବର୍ଷଣ,
ଯାଉଥିଲା ମହାସୁଖେ ନିମୀଳିତ ହୋଇ
ନୟନର ପ୍ରାନ୍ତ ଭାଗ, ଅପାର ଆନନ୍ଦେ,
କେତେ ବ୍ରତ କରି ଅହା କେତେ ଯାତନାରେ
ବହୁଦିନେ ଲଭିଥିଲେ ସିନା ସେ ଏ ସୁଖ ।
ସ୍ୱବିନ୍ଦୁ ବିଧାତା ଯଥା, ନିଜ ରୂପାନ୍ତର—
ସର୍ବ ଗୁଣାଶ୍ରୟ ବିଷ୍ଣୁ ଅବତାରେ ପୁତ
ହୁଏ ବୋଲି ନିଜ ସୃଷ୍ଟେ, ତେସନ ଭୂପତି

ମନେ କରୁଥିଲେ ସ୍ନେହେ, ସ୍ୱ ଅଂଶରୁ ଜାତ
ଏ ସୁଜନ୍ମା କୁମାରର ବିପୁଳ ଯଶରେ
ପ୍ରତିଷ୍ଠା ଲଭିବ ବୋଲି ଆପଣାର ବଂଶ ।
ଚୂଡ଼ାକର୍ମ ଶେଷେ ରଘୁ ଜନକ ଆଦେଶେ
ସୁଚଞ୍ଚଳ ଶିଖାଧାରୀ, ସମାନବୟସ୍କ,
ମନ୍ତ୍ରୀ ପୁତ୍ରଗଣ ସଙ୍ଗ କରିଲେ ପ୍ରବେଶ
ଶବ୍ଦଶାସ୍ତ୍ରେ, ଯଥାବିଧି ବର୍ଣ୍ଣମାଳା ଶିଖି,
ସାଗରେ ପଶିଲା ପରି ନଦୀମୁଖ ଦେଇ ।
ଶୁଭେ ଏକାଦଶ ବର୍ଷେ ବଢ଼ିଲା ତାହାଙ୍କ
ବ୍ରତ ବିଧି, ଶିକ୍ଷାଦେଲେ ବହୁ ଯତ୍ନ କରି,
ଗୁରୁପ୍ରିୟ-ବିଦ୍ୟାର୍ଥୀଙ୍କୁ ସୁଜ୍ଞାନୀ ଶିକ୍ଷକେ,
ଫଳବତୀ ହେଲା ତାଙ୍କ, ଯତ୍ନ ଅଲ୍ପାୟାସେ,
ସତ୍ପାତ୍ରେ ନିହିତ ବିଧି ହୁଅଇ ସଫଳ,
ସବୁକାଳେ ସବୁଠାରେ ବିଦିତ ଜଗତେ ।
ଦିଗ୍ମଣ୍ଡଳ ଅତିକ୍ରମ କରନ୍ତି ଯେସନ
ପବନ୍ତୁ ଚଞ୍ଚଳତର ଘୋଟକ ଯୋଗରେ
ପ୍ରଭାକର, ତେସନ ସେ ସୁବୋଧ କୁମାର
ଅତି ଶୀଘ୍ର ଅତିକ୍ରମ କଲେ ବୁଦ୍ଧିବଳେ
ସିନ୍ଧୁ ଚତୁଷ୍ଟୟ ପରି ବିଦ୍ୟା ଚତୁଷ୍ଟୟ ।
ତର୍ଦ୍ଧ ଅଲ୍ପଦିନ ଅନ୍ତେ ଅଧ୍ୟୟନ ଶେଷେ,
ପବିତ୍ର ହରିଣ ଚର୍ମ ପିନ୍ଧି ଯୁବାମଣି,
ମନ୍ତ୍ର ସହ ଅସ୍ତ୍ରବିଦ୍ୟା ଶିଖିଲେ କୌଶଳେ
ପିତାଠାରୁ, ତାହାଙ୍କର ପୁଜନୀୟ ପିତା
ନ ଥିଲେ କେବଳ ପ୍ରଜାମଧ୍ୟେ ଅଦ୍ୱିତୀୟ,
ଥିଲେ ପୁଣି ଅଦ୍ୱିତୀୟ ଧାନୁଷ୍କମଣ୍ଡଳେ ।
କ୍ରୀଡ଼ାଶୀଳ ହାତୀ ଛୁଆ ବଢ଼ିଲା ପରାଏ
ଗଜେନ୍ଦ୍ରର ସୁଷମାକୁ ଅଥବା ଯେସନ
ବତ୍ସତରୀ ବୃଷଭତ୍ୱ ଲଭିଲା ପରାଏ
ବାଳକ ପ୍ରକୃତି ଧୀରେ ହୋଇ ବିଶ୍ଳେଷିତ
ମନୋଜ୍ଞ ଯୌବନ ଯୋଗେ ନବକାନ୍ତି ବହି

ଗାମ୍ଭୀର୍ଯ୍ୟ ଗୌରବ ବପୁ କଲେ ସେ ଧାରଣ ।
ତନୟର ଅଭ୍ୟୁଦୟ ଦେଖି ନରମଣି
କୁନ୍ତଳ ଛେଦନ କାର୍ଯ୍ୟ ସମାପନ କରି
ଆନନ୍ଦେ, ବିବାହ ବିଧି କଲେ ସମାପନ ।
ରଘୁଙ୍କର କରେ କର ଛନ୍ଦ ମହୋଲ୍ଲାସେ
ସରୂପେ ମନୋମତ ସତ୍‌ପାତ୍ର ଲକ୍ଷଣ
ନରେନ୍ଦ୍ର କୁମାରୀମାନେ, ହେଲେ ସୁଶୋଭିତା,
ଦକ୍ଷବାଳାଗଣ ଯଥା ବରି ସୁଧାକରେ ।
ସୁଆଁଳ କାଠରୁ ବଳ ବେନି ଦୀର୍ଘ ଭୁଜେ,
କବାଟ ବିସ୍ତୀର୍ଣ୍ଣ ବକ୍ଷେ, ସମୁନ୍ନତ ସ୍କନ୍ଧେ,
ବଳବାନ ଯୁବାମଣି ବିଜୟ କଲେହେଁ
ବର୍ଷୀୟାନ ଜନକଙ୍କୁ, ବିନୟ ଗୁଣରେ
ତାଙ୍କଠାରୁ ସାନ ହୋଇ ପାଉଥିଲେ ଜଣା
ସ୍ୱଭାବେ ବିନୀତ ଯୁବା, ଶିକ୍ଷାଯୋଗେ ପୁଣି
ସେ ବିନୟ ଗୁଣ ଅତି ଦିଶିଲା ସୁନ୍ଦର,
ତା ଦେଖି ନରେନ୍ଦ୍ରମଣି ଅଭିଷିକ୍ତ କଲେ
ଯୁବରାଜ ପଦେ ତାଙ୍କୁ, ହେବାକୁ ଲଘବ
ରାଜ୍ୟଶାସନର ତାଙ୍କ ମହାଗୁରୁଭାର ।
ମୃଦୁପଦେ ଅଲକ୍ଷିତେ ଧୀରେ ଧୀରେ ଆସି
ବିଜେ କଲେ ଲକ୍ଷ୍ମୀଦେବୀ ଗୁଣାନୁରାଗିଣୀ
ନରେନ୍ଦ୍ର ପ୍ରଧାନ ସ୍ଥାନୁ ଯୁବରାଜ ପଦେ
କିୟଦଂଶେ, ବିକଶିତ ଶତଦଳ ମଧ୍ୟୁଁ
ଯାଆନ୍ତି ସେ ଯଥା ଦରଫୁଟ ଶତଦଳେ ।
ବାୟୁରୁ ସାରଥୀ ପାଇଁ ହୁତାଶନ ଯଥା,
କିମ୍ବା ଶରତରୁ ଲଭି ଯେସନ ତପନ,
ଅବା ମଦଧାର ଧରି ବାରଣେ ଯେମନ୍ତ,
ଦ୍ୱିଗୁଣ ପ୍ରବଳ ସଦା ହୁଅନ୍ତି ଏ ଭବେ,
ସୁତଙ୍କ ସାହାଯ୍ୟ ପାଇ ତେସନ ଦିଲୀପ
ହୋଇଲେ ଦୁଃସହତର ଅରାତିମଣ୍ଡଳେ ।
ବଳସ୍ଥ ରଘୁଙ୍କୁ ଏଣୁ ନିଯୁକ୍ତ କରିଣ

ଯଜ୍ଞ ଅଶ୍ୱ ରଖିବାକୁ, ତାହାଙ୍କ ସହାୟେ,
ବିନା ବିଘ୍ନେ ନରବର ସମ୍ପନ୍ନ କରିଲେ
ଅଶ୍ୱମେଧ ମହାଯଜ୍ଞ ଊନଶତ ଥର,
ଶତସଂଖ୍ୟା ଯଜ୍ଞପୂର୍ଣ୍ଣ ହୋଇବା ସମୟେ,
ଯାଜ୍ଞିକ-ଦିଲୀପ ଯୋଗେ ଯଜ୍ଞ ପାଇଁ ମୁକ୍ତ—
ଅବ୍ୟାହତ ଭ୍ରମଣଶୀଳ ସେ ପୂତ ଅଶ୍ୱକୁ
ହରିନେଲେ ଦେବରାଜ ଅଦୃଶ୍ୟ ସ୍ୱଦେହରେ
ଅଚମ୍ବିତେ, ଧନୁର୍ଦ୍ଧର ରକ୍ଷୀଗଣ ଆଗୁଁ ।
ଦେଖି ଏ ଅଦ୍ଭୁତ ଦୃଶ୍ୟ କୁମାରଙ୍କ ସେନା
ବିଷାଦେ ବିସ୍ମିତ ହୋଇ ରହିଲେ ସକଳେ
ସ୍ତବ୍ଧଭାବେ, ପରସ୍ପର ମୁଖକୁ ଅନାଇ ।
ସୌଭାଗ୍ୟେ ଏକାଳେ ମହା ପ୍ରଭାବଶାଳିନୀ
ସ୍ୱେଚ୍ଛାକ୍ରମେ ବୁଲି ବୁଲି ବଶିଷ୍ଠଙ୍କ ଧେନୁ
ସେମାନଙ୍କ ଆଗେ ଆସି ଦେଲେ ଦରଶନ ।
ସାଧୁଶ୍ରେଷ୍ଠ ନୃପସୁତ ପୁଣ୍ୟମୟୀ ସେହି
ନନ୍ଦିନୀଙ୍କୁ ଦେଖି ଆଗେ ତାହାଙ୍କ ଇଙ୍ଗିତେ
ପବିତ୍ର ମୂତ୍ରରେ ଚକ୍ଷୁ କରି ପ୍ରକ୍ଷାଳନ,
ଦେଖିଲେ ସମ୍ମୁଖେ, ବୀର ନେଉଛନ୍ତି ହରି
ଗିରିପକ୍ଷଚ୍ଛେଦୀ ବଜ୍ରୀ, ଯଜ୍ଞ-ତୁରଙ୍ଗମ
ରଥର ରଜ୍ଜୁରେ ବାନ୍ଧି, ବହୁ ଯତ୍ନ କରି
ବାରବାର ଛାଟପିଟି ନବାରେ ସାରଥୀ
ତେଜିବା କାଳରେ ସେହି ଅଶ୍ୱ ଦୁଷ୍ଟାମିକୁ ।
ନିମେଷ ରହିତ ଶତ ଶତ ବିଲୋଚନ,
ପୁଣି ସ୍ୱର୍ଣ୍ଣବର୍ଣ୍ଣ ଅଶ୍ୱ ରଥେ ଯୋଖି ଦେଖି,
ସେ ଅଶ୍ୱ ଚୋରକୁ କଳି ଦେବରାଜ ବୋଲି,
ଗଗନ କମ୍ପାଇ ଉଚ୍ଚ ଗମ୍ଭୀର ବଚନେ
କହିଲେ, ତାହାଙ୍କୁ ବୀର, ଫେରିବା ପାଇଁକି ।
"ହେ ଦେବେନ୍ଦ୍ର, ! କହନ୍ତି ପଣ୍ଡିତ ସକଳ
ଯଜ୍ଞଭାଗ—ଭୋକ୍ତା ମଧ୍ୟେ ସର୍ବଶ୍ରେଷ୍ଠ ବୋଲି
ତୁମ୍ଭକୁ ତ୍ରିପୁର ମଧ୍ୟେ, ତେବେ କିମ୍ପା କହ,

ଅବିରତ ଯଜ୍ଞେଯୁକ୍ତ ପୂଜାମାତ୍ର ମୋର
ଜନକର ଈପ୍ସା ସେପେ ହେଉଛି ପ୍ରବୃତ୍ତ ।
ତ୍ରିଲୋକର ଅଧିପତି, ପୁଣି ସର୍ବଦର୍ଶୀ,
ହୁଅ ତୁମ୍ଭେ ହେ ସୁରେନ୍ଦ୍ର! କର୍ତ୍ତବ୍ୟ ତୁମ୍ଭର,
ଯଜ୍ଞ ବିଘ୍ନକାରୀଗଣେ ଦମନ କରିବା,
ତାର ପରିବର୍ତ୍ତେ ଏବେ, ଘଟାଉଛ ଆପେ
ଧର୍ମ କର୍ମେ ମହାବିଘ୍ନ ଧାର୍ମିକମାନଙ୍କ;
ତୁମ୍ଭପରି ମହାମାନ୍ୟ ପୂଜିତ ଲୋକର
ଏ ଧର୍ମ ବିରୁଦ୍ଧ କାର୍ଯ୍ୟେ, ଜାଣ ହେ ନିଶ୍ଚୟ,
ବେଦୋକ୍ତ ଧର୍ମର ନାଶ ହେବ ଅଳ୍ପଦିନେ ।
ଯଜ୍ଞର ପ୍ରଧାନ ଅଙ୍ଗ ଏ ଘୋଟକଟି
ଛାଡ଼ିଦିଅ ଏଣୁ ଶୀଘ୍ର ଅହେ ସୁରପତି,
ସନ୍ମାର୍ଗଦର୍ଶକ ମହାମନାଃପି ଏ ଜନେ
କେବେ କି ପଶନ୍ତି ହୀନ ମଳିନ ମାର୍ଗରେ ?”
ରଘୁଙ୍କ ପ୍ରଗଲ୍‌ଭ ଗିର ଏହିରୂପେ ଶୁଣି,
ସବିସ୍ମୟେ ଲେଉଟାଇ ହେମରଥବର,
ଗମ୍ଭୀରେ ତ୍ରିଦିବନାଥ ଉତ୍ତରିଲେ ତାଙ୍କୁ,—
“ହେ ରାଜକୁମାର ! ସତ୍ୟ ଯା କହିଲ ତୁମ୍ଭେ,
ମାତ୍ର ଭାବ ଦେଖ ନିଜ ମାନସରେ ଥରେ,
ଯଶ ଯାହାଙ୍କର ଅଟେ ଏକମାତ୍ର ଧନ,
ସେ ଧନ ରକ୍ଷଣେ ସଦା ଇତର ହସ୍ତରୁ
ଅଟଇ କି ଅନୁଚିତ ? ଜନକ ତୁମ୍ଭର
ସମୁଦ୍ୟତ ହେଉଛନ୍ତି ଦେବାକୁ ଲିଭାଇ
ଅବିରତ ଅଶ୍ୱମେଧଯଜ୍ଞ କରି କରି,
ଜଗତେ ପ୍ରସିଦ୍ଧି ମୋର ସମୁଜ୍ଜ୍ୱଳ କୀର୍ତ୍ତି ।
ଅଟନ୍ତି ‘ପୁରୁଷୋତ୍ତମ’ ଏକା ଯଥା ବିଷ୍ଣୁ,
‘ମହେଶ୍ୱର’ ଏକା ଯଥା ଶଶାଙ୍କଶେଖର,
ସେହିରୂପ ମୁନିମାନେ “ଶତକ୍ରତୁ” ବୋଲି
ବୋଲନ୍ତି କେବଳ ମତେ, ଏହି ଆଖ୍ୟା କେବେ
ନ ହୁଏ ଦ୍ୱିତୀୟଗାମୀ ହେ ନରେନ୍ଦ୍ର ସୂନୁ !

କପିଳମୁନଙ୍କ ପଥ ଏଣୁ ଅନୁସରି
ହରଣ କରୁଛି ମୁହିଁ ତବ ଜନକର
ଯଜ୍ଞଅଶ୍ୱ, ପଣ୍ଡଶ୍ରମେ ମାଗୁଛ କପାଇଁ
ହେବ ନାହିଁ କିଛି ଫଳ, ନ ଦିଅ ଚରଣ
ସଗର ସନ୍ତାନଙ୍କର ପଦବୀରେ ବୃଥା ।"
ଉତ୍ତରଲେ ସୁଗମ୍ଭୀରେ ଘୋଟକ ରକ୍ଷକ
ନିର୍ଭୀକ କୁମାର ରଘୁ, ମେଘମନ୍ଦ୍ର ନାଦେ
ବୀରତ୍ୱବ୍ୟଞ୍ଜକସ୍ୱରେ, ଉପହାସ କରି
ବାସବେ, "ସୁରେନ୍ଦ୍ର! ଯେବେ ଏପରି ସଙ୍କଳେ
ଅଭିଳାଷ ଥାଏ ତବ, ଗ୍ରହଣ କର ହେ
ଶରାସନ, ବିଳମ୍ବରେ ନାହିଁ କାର୍ଯ୍ୟ କିଛି,
ସ୍ୱବ ନାହିଁ ଥିଲେ ମନେ ସନ୍ତୁଷ୍ଟଚେତନ,
ନ ହଣି ରଘୁକୁ ପୂର୍ଣ୍ଣ ମନୋରଥ ହୋଇ
ଯିବ ଏଠାରୁ ପଳାଇ ଅଶ୍ୱ ସହକାରେ ।"
ଏହା କହି ଊର୍ଦ୍ଧ୍ୱମୁଖେ ରହିଲେ ବୀରେନ୍ଦ୍ର
ଶରଯୁକ୍ତ କରିବାକୁ ସ୍ୱୀୟ ଶରାସନେ,
ଦେଖି ଦେଖି ଦେହକାନ୍ତି ବଢ଼ିଲ ଦ୍ୱିଗୁଣେ,
ଅଲୀଢ ଭଙ୍ଗୀରେ ବୀର ଅବସ୍ଥିତ ହୋଇ
ହରିନେଲେ ଅବହେଳେ ମହାପ୍ରଭାବରେ,
ତ୍ରିପୁର ବିନାଶୋଦ୍ୟତ ଶିବଙ୍କ ସୁଷମା ।
ଲଗିଲା ବିଷମ ଯୁଦ୍ଧ ଉଭୟ ପକ୍ଷରେ,
ରଘୁଙ୍କର ଶରାଘାତେ ମର୍ମାହତ ହୋଇ
କୋପନ ସ୍ୱଭାବ ଇନ୍ଦ୍ର, ଶୈଳ ବିଦାରକ,
ନବମେଘ ମଣ୍ଡଳର ମୂର୍ତ୍ତି-ମଣ୍ଡନ—
କାର୍ମୁକେ, ସନ୍ଧାନ କଲେ ଅବ୍ୟର୍ଥ ଶାୟକ ।
ଭୀଷଣ ଦାନବଙ୍କର ରକ୍ତ ଶୋଷଣରେ
ଚିରଅଭ୍ୟସ୍ତ ସେ ଶାୟକେ, ଧାଇଁ ସନସନେ
ପ୍ରବେଶି ଦିଲୀପ ସୁତ—ବିଶାଳ ଉରରେ,
ଅତି କୁତୂହଳ ବଶେ ପିଇଲେ କିବା ସେ ?
ପୂର୍ବର ଅନାସ୍ୱାଦିତ ମାନବ ରୁଧିର ।

ସ୍ୱନାମ ଅଙ୍କିତ ବାଣେ କୁମାର ଜନମ-
କୁମାର, କରିଲେ ମଧ୍ୟ ପ୍ରଚଣ୍ଡ ଆଘାତ
ଶଚୀମୁଖେ ପଦାବଳୀ-ରଚନା-କୌଶଳ—
ବାସବଙ୍କ ମହାଭୁଜେ, ଅଙ୍କିଣି ଅଙ୍କିଣି
ଐରାବତ ଦୃଢ଼ତନ୍ତୁ ଯେ ସ୍ୱମ ଭୁଜର
ହୋଇଥିଲା ଦୃଢ଼ତର ଅଙ୍ଗୁଳିନଖର ।
ଛେଦନ କରନ୍ତେ ଧନୁ ଅବ୍ୟର୍ଥ ସନ୍ଧାନେ
କଙ୍କପକ୍ଷ ବିଭୂଷିତ ଅନ୍ୟ ଏକ ଶରେ
ବଜ୍ରୀଙ୍କର ବଜ୍ରଧ୍ୱଜ, କାଟିଲେ ସେ ବେଗେ
ବଳାତ୍କାରେ ତାଙ୍କ ଅଗ୍ରେ ସୁରଲକ୍ଷ୍ମୀଙ୍କର
କେଶଗୁଚ୍ଛା କଟା ହେଲା ବୋଲି ମନେ ଗଣି
ପରସ୍ପର ଜୟୋଲ୍ଲାସ ହେନ ବୀର ମଧ୍ୟେ
ବାଧିଲା ତୁମୁଳ ଯୁଦ୍ଧ, ଭୀଷଣ ଦର୍ଶନ
ପକ୍ଷଧର ସର୍ପସମ ନାରାଚ ସକଳ
ଅଧୋମୁଖେ ଊର୍ଦ୍ଧ୍ୱମୁଖେ ଧାଇଁଲେ କେବଳ ।
ଆକାଶରେ ସିଦ୍ଧଗଣ ଭୂତଳେ ସୈନିକେ
ତଟସ୍ଥ ହୋଇଣ ସର୍ବେ ରହିଲେ ଅନାଇ ।
ନ ପାରେ ଲଙ୍ଘିଇ ଯଥା ଜଳଧାରା ପାତେ
ଜଳଧର, ସ୍ୱ ପ୍ରସୂତ ବଜ୍ରାନଳ କଣା,
ନିବାରି ପାରିଲେ ନାହିଁ ତେସନ ମହେନ୍ଦ୍ର,
ବନ୍ଧୁସହେ, ଦେବତାଙ୍କ ଅଂଶରୁ ଜନମ
ରଘୁଙ୍କର ଅବିରତ କ୍ଷିପ୍ତ ଅସ୍ତ୍ରବୃଷ୍ଟି ।
ଛେଦନ କରିଲେ ତହୁଁ ଅର୍ଦ୍ଧଚନ୍ଦ୍ର ବାଣେ
କ୍ଷୁଭିତକ୍ଷୀରୋଦସମ ସୁଗମ୍ଭୀରନାଦୀ
ଧନୁର୍ଗୁଣ ବାସବଙ୍କ, ବୀରେନ୍ଦ୍ର ବନ୍ଦିତ
ଭୂପେନ୍ଦ୍ର, ଜଳ୍ପସ୍ମିତ ପଲକମାତରେ,
ଶ୍ରୀହରିଚନ୍ଦନାଙ୍କିତ ପ୍ରକୋଷ୍ଠ ପାଖରୁ ।
ମହାଅପମାନେ ଶକ୍ର 'ଋଷମ କ୍ରୋଧରେ
ପରିହରି ଶରାସନ, ଭୀମବୈରୀ ନାଶେ
ଗିରିପକ୍ଷଛେଦକାରୀ ପ୍ରଭ ଉଦ୍‌ଭାସିତ

ଦମ୍ଭୋଳକୁ ଧରି ବୃତ୍ରେ ନିକ୍ଷେପିଲେ ବଳେ
ଦମ୍ଭୋଳିଦାମ୍ଭିକବଳୀ ଅବନ୍ତନନ୍ଦନ ।
ବକ୍ଷଃସ୍ଥଳେ ଶକ୍ତ୍ରାଘାତ ଲଭି କୁଳଗିରି
ପଡ଼ିଲେ ଅଚେତ ଯଥା ସେନା ଅଶ୍ରୁବହି
ଭୂତଳେ, ନିମିଷେ ପୁଣି ଯନ୍ତ୍ରଣା ସମ୍ଭରି
ଉଠିଲେ ତାହାଙ୍କ ହର୍ଷଧ୍ୱନି ସହିତରେ ।
ବଜ୍ର ଅଘାତକୁ ଗଲେ ନ ଗଣି ମନରେ,
ଉତରି ଶଦ୍ରବରି ତାହାଙ୍କ 'ସମ୍ମୁଖେ
ଉଗ୍ର ହୋଇ ସମ୍ଭରେ, ତଥାପି ଯୁବକ
ଶରେ ପ୍ରହରି କରି ନର୍ଭୟ ହୃଦୟେ
ଅଚଳସାହସେ ଦ୍ୱନ୍ଦ୍ୱେ ଯୁଝୁଥିବା ଦେଖି
ବଜ୍ରପାଣି, ପରିତୁଷ୍ଟ ହେଲେ ମନେମନେ,
କେ ନ ଜାଣେ, ସଦାବେଳେ ସକଳ ସ୍ଥାନରେ
ଗୁଣର ଆଦର ହୁଏ ପ୍ରସିଦ୍ଧ ଏ କଥା ।
ବଖାଣିଲେ ସୁନାସୀର ସୁସ୍ପଷ୍ଟ ବଚନେ
ସ୍ନେହଗୀରେ ଧୀରେ ଧୀରେ, "ହେ ରାଜତନୟ !
ସୁଦୃଢ଼ ଶୈଳରେ ସୁଦ୍ଧା ଅବାରିତ ଗତି
ମୋର ଏହି ଘାତ୍ରମନ୍ତ ବଜ୍ରର ଅଘାତ,
ତୁମ୍ଭ ବିନା ଭବେ କେହି ନ ପାରନ୍ତି ସହି
ପ୍ରସନ୍ନ ହେଲି ମୁଁ ଦେଖି ଅଦ୍ଭୁତ ବୀରତ୍ୱ
ତୁମ୍ଭର ହେ ଯଶୋବନ୍ତ, ମାଗିନିଅ ବର
ଯଜ୍ଞଅଶ୍ୱ ବିନା ଯହିଁଥାଏ ଅଭିରୁଚି ।"
ସେକାଳେ ତୂଣୀର ମଧ୍ୟୁଁ ଅର୍ଦ୍ଧ କ୍ଷିପ୍ରକରେ
ହେମପୁଙ୍ଖେ ସମୁଜ୍ଜ୍ୱଳ ଶାୟକକୁ ସାହା
ଟାଣିଥିଲେ ଅଙ୍ଗୁଳିରେ ନରେନ୍ଦ୍ରନନ୍ଦନ
ପ୍ରିୟମ୍ବଦ; ସେ ଶରକୁ ତେଜି ତୂଣୀରରେ
ମୃଦୁଗୀରେ ଉତ୍ତରିଲେ ଦେବେନ୍ଦ୍ର ବାସବେ ।
"ଯଥାବିଧି ଯଜ୍ଞ ଶେଷ କଲେ ଯେଉଁ ଫଳ
ହୁଅନ୍ତି, ସେସବୁ ଫଳେ କରି ଅଧିକାରୀ
ହେ ପ୍ରଭୁ ! ନିରତ ସାପାରତ ମୋ ପିତାଙ୍କୁ

ଅସ୍ତ୍ର ଛାଡ଼ିବାକୁ ଯେବେ ନ ଥାଏ ମାନସ,
ପୁଣି ଆଉ ଏକ କଥା ନବେଦୁଛି ମୁହିଁ
ଶିବଙ୍କର ଅଂଶଧାରୀ-ଜନକ ମୋହର
ଅନ୍ୟର ଅଗମ୍ୟ ପୂତ-ଯଜ୍ଞ ସଦନରେ
ରହିଛନ୍ତି ବ୍ରତୀ ହୋଇ, ଯଜ୍ଞ ଶେଷ ଆଗେ,
ଯେପରି ପାରିବେ ଶୁଣି ଏ ସକଳ କଥା
ତୁମ୍ଭର ଦୂତର ମୁଖୁଁ ବିନା ବିଳମ୍ବରେ,
କର ହେ କୃପାବ୍ଧି ! ଶୀଘ୍ର ସେଥିର ବିଧାନ ।
ରଘୁଙ୍କର ମନୋରଥ ପୂରାଇବା ପାଇଁ
ପ୍ରତିଶ୍ରୁତ ହୋଇ ତହୁଁ ଦେବ ଶଚୀକାନ୍ତ
ବାହୁଡ଼ିଲେ ସୁରପୁରେ, ମାତଳିସାରଥି
ଅଶ୍ୱକୁ ସଂଯତ କରି ଚଳାଇଲା ରଥ ।
ଯୁଦ୍ଧ ଜୟ କରିଲେ ହେଁ ଇନ୍ଦ୍ରଙ୍କ ଉପରେ
ଠକି ହୋଇ, ସୁଦକ୍ଷିଣା ତନୟ ଏ ବେଗେ
ଅନନ୍ତ ଆନନ୍ଦେ ଧୀରେ ନବର୍ତ୍ତିଲେ ପୁରେ ।
ରଘୁଙ୍କ ପ୍ରବେଶ ଆଗୁଁ ଏ ଶୁଭ ସନ୍ଦେଶ
ଅବଗତ ହୋଇଥିଲେ ଦିଲୀପରାଜନ
ବାସବଙ୍କ ଦୂତ ମୁଖୁଁ ; ଏଣୁ ଯୁବରାଜ
ପୁରେ ପ୍ରବେଶିବା ଦେଖି, ଅତି ହରଷରେ
ମସ୍ତକ ଆଉଁଷି ଧୀରେ କଲେ ଆଲିଙ୍ଗନ ।
ବଜ୍ରର ଭୀଷଣ ଘାତ-ଅଙ୍କିତ ହୃଦୟ
ତନୟର, ବାରବାର ସାଉଁଳି ନୃମଣି
ବୀରତ୍ୱର ଭୂଷା ପ୍ରାୟ ମଣି ମାନସରେ
ସୁମିଷ୍ଟ ବାକ୍ୟରେ କେତେ କଲେ ପ୍ରଶଂସା ।
ସୋପାନ ସଂକଳ୍ପ ପରି ସ୍ୱର୍ଗାରୋହଣର,
ପୂର୍ଣ୍ଣ କରି ଅନେଷ୍ଟତ ଯଜ୍ଞ ଅବହେଳେ
ଆୟୁ ଅବସାନ କାଳେ ଅତି ପ୍ରୀତ ମନେ
ଏହିରୂପେ ମହୀମାନ୍ୟ ଶାସକ ଦିଲୀପ
ସ୍ୱର୍ଗକୁ ଗମିବାପାଇଁ ବଳାଇଲେ ମନ ।
ବୀତସ୍ପୃହ ହୋଇ ନିତ୍ୟ ବିଷୟ ଭୋଗରେ

ଦାନ କର ରାଜଚିହ୍ନ ଶ୍ୱେତଛତ୍ର ଆଦି
ଯଥାବିଧି ଯୁବାପୁତ୍ରେ, ସୁଦକ୍ଷିଣା ସଙ୍ଗ
ତପସ୍ୱୀ ସେବିତ ଘନବନ ତରୁଛାୟା
ଆଶ୍ରିଲେ ଅନ୍ତିମକାଳେ, ବୃଦ୍ଧ ବୟସରେ
ଇକ୍ଷ୍ୱାକୁ କୁଳର ଏହା ଅଟେ କୁଳବ୍ରତ ।



# ଚତୁର୍ଥ ସର୍ଗ

ତନୟଙ୍କୁ ସିଂହାସନେ ବସାଇ ବାର୍ଦ୍ଧକେ
ତପସ୍ୟା ନିମନ୍ତେ ରାଜେ ଗମନ୍ତେ ବନକୁ,
ଅଧିକ ପ୍ରଭାବଶାଳୀ ହୋଇଲେ ରଘୁବୀର
ସେହି ସିଂହାସନ ଲଭି, ହୁତାଶନ ଯଥା
ଦ୍ୱିଗୁଣ ଉଜ୍ଜ୍ୱଳ ହୁଏ ସନ୍ଧ୍ୟା ସମୟରେ
ଅସ୍ତଗାମୀ ସୂର୍ଯ୍ୟଙ୍କର ତେଜପୁଞ୍ଜ ପାଇ ।
ସର୍ବଦା ଲୁକ୍କାୟିତ ଥିଲା ଭିତରେ ଭିତରେ
ଗୁପ୍ତ ଶତ୍ରୁଙ୍କର ହୃଦେ ଯେ ଈର୍ଷା ଅନଳ,
ପିତୃ ପରେ ସିଂହାସନେ ଏବେ ତାଙ୍କୁ ଦେଖି
ସେ ଧୂମିତ ବହ୍ନି ପୁଣି ଜଳିଲା ପ୍ରଖରେ ।
କ୍ରମେ କ୍ରମେ ରଘୁଙ୍କର ବଢ଼ିଲା ପ୍ରଭାବ,
ତାଙ୍କ ନବ ଅଭ୍ୟୁଦୟ ଉତ୍ଫୁଲ୍ଲ ନୟନେ
ବିଲୋକି ଅଯୋଧ୍ୟାବାସୀ ହୋଇଲେ ପୁଲକିତ,
ନବଶାରଦକୁ ଦେଖି ଯେସନ କୃଷକେ ।
ଗଜେନ୍ଦ୍ରଗଣ୍ଡରେ ଯୁବା କଲେ ଅଧିକାର
ଜନକ ପ୍ରଦତ୍ତ ଶ୍ରେଷ୍ଠ ରାଜସିଂହାସନ
ସହ, ସର୍ବ ଅରିକୁଳ-ରାଜ୍ୟ ଏକାବେଳେ ।
ଦିବ୍ୟ ପ୍ରଭାମଣ୍ଡଳରେ ହୋଇଲେ ସୁଶୋଭିତ,
ରାଜ ଅଭିଷେକେ ବୀର, ଦେଖି ହେଲା ପ୍ରାତେ,
ସତେ ଅବା ଲକ୍ଷ୍ମୀଦେବୀ ପଦ୍ମଛତ୍ର ଘେନି,
ନିଯୁକ୍ତ ହୋଇଲେ କି ନିଜେ ତାହାଙ୍କ ସେବାରେ ।
ବନ୍ଦୀକୁଳ ବଦନରେ ଦେବୀ ସରସ୍ୱତୀ
ତାହାଙ୍କ ସମୀପେ ଆସି, ଯଥାର୍ଥ ବାକ୍ୟରେ
ସେବିଲେ ସେ ଭୂପେ ସ୍ତୁତି କରି ନାନାରୂପେ ।
ମନୁଆଦି ମହାମାନ୍ୟ ନରପତିମାନେ,
ଉପଭୋଗ କରିଥିଲେ ଏହି ଅବନୀକୁ,
ମାତ୍ର ସେ ମେଦିନୀ ଏବେ ରଘୁରାଜେ ପାଇ
ଅନନ୍ୟସେବିତା ଧନ୍ୟା ନୂତନା ପରାଏ,
ପ୍ରକଟ କରିଲେ ନାନା ନୂଆ ନୂଆ ଭାବ ।

ସମୋଷ୍ଣ ଶୀତଳ ଗୁଣେ ଦକ୍ଷିଣା ପବନ
ହରେ ଜନ ମନ ଯଥା, ତେସନ ସେ ଗୁଣୀ,
ଆଣିଲେ ଓଟାରି ସର୍ବ ପ୍ରଜାଙ୍କର ଚିତ୍ତ,
ସମଭାବେ ଦେଇ ଦଣ୍ଡ ସମଦୋଷୀ ଜନେ ।
ଅତି ସ୍ୱାଦୁ ସହକାର ଫଳ ଲଭି ଯଥା,
ପାଶୋରି ପକାନ୍ତି ଲୋକେ ତାର ମୁକୁଳକୁ,
ତେସନ ଦଲ୍ଲୀପଙ୍କର ବିୟୋଗେ ବିଧୁର—
ପ୍ରଜାପୁଞ୍ଜ ଉତ୍କଣ୍ଠାକୁ କଲେ ଅନ୍ତର,
ପ୍ରକାଶି ଅଧିକ ଗୁଣ ରଘୁ ନୃପବର ;
ନୀତି ବିଶାରଦ ଶ୍ରେଷ୍ଠ ରାଜମନ୍ତ୍ରୀମାନେ
ଭଲ ମନ୍ଦ ସବୁକଥା କଲେହେଁ ସ୍ଥାପିତ
ନବୀନ ନୃପତିଠାରେ, ଛାଡ଼ି ସେ ଯେତେକ
ମନ୍ଦକଥା, ନେଉଥିଲେ ଅବହେଳେ ବାଛି
ମହା ସମାଦରେ ଭଲ ବିଷୟମାନଙ୍କୁ ।
ନବଗୁଣେ ସ୍ୱକ୍ତହୋଇ ପଞ୍ଚମହାଭୂତ
ସାଜିଲେ ନବୀନବର୍ଣ୍ଣେ, ନବୀନନୃପର
ନବୀନରାଜତ୍ୱେ, ଅତି ମନୋହର ବେଶେ ।
ଆହ୍ଲାଦଗୁଣରେ ଚନ୍ଦ୍ର, ପ୍ରତାପେ ଯେସନ
ଦିନମଣି, ଜଗତରେ ଅଟନ୍ତି ପ୍ରସିଦ୍ଧ
ତେସନ ବୀରେନ୍ଦ୍ରମଣି ରାଜାନାମ ତାଙ୍କ (୧)
ସାର୍ଥକଲେ ଅବିରତ ପ୍ରକୃତିରଞ୍ଜନେ ।
ବିଶାଳ ନୟନେ ବେନ ଥିଲେହେଁ ବିସ୍ତୃତ
କର୍ଣ୍ଣପାଏ ତାହାଙ୍କର, ସର୍ବସିଦ୍ଧିଦାତା
ଶାସ୍ତ୍ରବଳେ, ଥିଲେ ନୃପ ଦିବ୍ୟଚକ୍ଷୁଷ୍ମାନ ।
ନୂତନ ନୟମମାନ ପ୍ରଣୟନ କରି
ନାନା କୌଶଳରେ ରାଜ୍ୟେ, ଯେତେ ବିଶୃଙ୍ଖଳା
ଦୁରୀଭୂତ କରି ସେହି, ନିରୁଦ୍ବେଗମନେ
ହୁରଥିଲେ ଯେତେବେଳେ, ସେ କାଳରେ ଆସି
ଉପସ୍ଥିତ ହେଲା ଅନ୍ୟ ରାଜଲକ୍ଷ୍ମୀ ପରି,

(୧)—ରଞ୍ଜୟିତା ରାଜା ।

ପଙ୍କରୁହ-ସଙ୍କଟତା ଶରତ-ସୁନ୍ଦରୀ ।
ଜଳଶୂନ୍ୟ ହୋଇଗଲେ ନୀରଦନିକର,
ନ ହେଲା ବରଷା ଆଉ, ଶୁଖିଗଲା ପଙ୍କ,
କର୍ଦ୍ଦମବର୍ଜିତ ଶୁଷ୍କ ସୁଗମ୍ୟ ମାର୍ଗରେ
ରବି ରବିକୁଳମଣି ମଣ୍ଡଳେଶ୍ୱରଙ୍କ,
ଶକ୍ରତେଜ ବ୍ୟାପ୍ତହେଲା ଦିଗଦିଗନ୍ତରେ ।
ମହୀରୁ ବରଷାକାଳ ହୁଅନ୍ତେ ଅନ୍ତର,
ସମ୍ବରିଲେ ଇନ୍ଦ୍ରଧନୁ ଦେବସୁରପତି,
ଧରିଲେ ଅମଦଚ୍ଛେଦ-ବିଜୟ-କୋଦଣ୍ଡ
ଦଣ୍ଡଧର, ପ୍ରଜାହିତ ପାଇଁ ସିନା ବେଣ,
ବହୁଥିଲେ ଯଥାକ୍ରମେ କରେ ଶରାସନ ।
ରୁଚିର ଶରତକାଳ ଉପସ୍ଥିତ ହୋଇ,
ନବ ନରମଣିଙ୍କର ସମାନ ହେବାକୁ,
ଶ୍ୱେତପଦ୍ମଦଳଛତ୍ର ଟେକାଇ ଶିରରେ,
ମୃଦୁ ମୃଦୁ ଗନ୍ଧବହେ କାଶକୁସୁମରେ,
ଚାମର ଚଳାଇ ରଙ୍ଗେ ନ ପାରିଲା ଲଭି
ବହୁଯତ୍ନେ ତାହାଙ୍କର କମନୀୟ କାନ୍ତି ।
ଶରତର ଆଗମନେ ଯେମନ୍ତ ଚନ୍ଦ୍ରମା
ସୁଧାକିରଣରେ ବିଶ୍ୱ କରିଲେ ମୋହିତ,
ତେସନ ପ୍ରଫୁଲ୍ଲ ମୁଖେ ଦିଲୀପ ତନୟ
ଜନ୍ମାଇଲେ ପ୍ରୀତି ସର୍ବ ଦର୍ଶକ ନୟନେ ।
କ୍ରମେ କ୍ରମେ ତାହାଙ୍କର ସୁବିମଳ ଯଶ
ବ୍ୟାପ୍ତହୋଇ ଭୂମଣ୍ଡଳେ, ତାସ୍ୱମାଳଛଳେ
ପ୍ରସରିଲା ନଭସ୍ଥଳେ, କାଶତଣ୍ଡି ଫୁଲେ,
ହଂସଯୂଥେ, କୁମୁଦରେ କମନୀୟ ଜଳେ ।
ସ୍ୱାଦୁଶାଳୀ ଇକ୍ଷୁଲତା ଘନଛାୟାତଳେ
ବସି, ଏକମନେ ସେହ ରକ୍ଷାକର ତାଙ୍କୁ,
ଆକୁମାର ଗୁଣୋଦୟ ଯଶୋଗୀତମାଳା,
ସୁମଧୁର ତାନ ଧରି ଗାଇଲେ ଆଦରେ
ସରଳେ, ସରଳମନା କୃଷକ ବାଳାଏ ।

ଉଦିଲେ ଅଗସ୍ତ୍ୟତାରା ସନ୍ଧ୍ୟା ସମୟରେ
ଜଗତର ତାରଣୀ ସୁପ୍ରସନ୍ନ କର,
ମାତ୍ର ବୀରବର ରଘୁ ହେଲେ ଅଭ୍ୟୁଦୟ
ପରାଜୟ ଭୟେ ଭୀତ ରିପୁମାନଙ୍କର—
ମାନସକୁ ପୂର୍ଣ୍ଣରୂପେ କଲୁଷିତ କରି ।
ଅତିବଡ଼ କକୁଦରେ ପୃଷ୍ଠଦେଶମଣ୍ଡି
ମଦମତ୍ତ ବଳଦୃପ୍ତ ବୃଷଭନିକର,
ତଟମାନଙ୍କର ମାଟି ଶିଂଗେ ତାଡ଼ି ତାଡ଼ି
ରଘୁଙ୍କ ବିକ୍ରମ ପର ଦେଖାଇଲେ ଅଣ୍ଟ ।
ରମ୍ୟସପ୍ତପର୍ଣ୍ଣୀଫୁଲ ଫୁଟିଲା ଚୌଦିଗେ,
ତାର ଗନ୍ଧବାସନାରେ ଚଞ୍ଚଳ ହୋଇଲେ
ଲୁବ୍ଧବାରଣଗଣ, ସପ୍ତ ଅଙ୍ଗୁ ତାଙ୍କ
ସ୍ରବିଲା ପ୍ରବଳବେଗେ ମଦବାରିଧାରା,
ଗିରିପ୍ରସ୍ରବଣ ପରି ସପ୍ତଧାରରେ ।
ତରଣୋପଯୋଗୀ କରି ତଟିନୀମାନଙ୍କୁ,
ଶୁଖାଇ ମାର୍ଗରୁ ପଙ୍କ, ଶରତ ସମସ୍ତ
ଏକାଳେ ରଘୁଙ୍କ ଆଗେ ଉପସ୍ଥିତ ହୋଇ
ଇଚ୍ଛାପୂର୍ବ ଯୁଦ୍ଧ ପାଇଁ କଲା ଉତ୍ସାହିତ ।
ଯୁଦ୍ଧଯାତ୍ରା ପୂର୍ବେ ବୀର ବିହିତବିଧାନେ
ଆଚରିଲେ ଅଶ୍ୱପୂଜା, ହୋମବିଧି ସବୁ ;
ନୀରାଜନାକାଳେ ସେହି ହୁତ ହୁତାଶନ
ପ୍ରଦକ୍ଷିଣ ଶିଖାଚ୍ଛଳେ ହସ୍ତତୋଳି କିସେ
ବିଜୟ ପ୍ରଦାନ କଲେ ବିବେକୀ ନୃପଙ୍କୁ ।
ପ୍ରାନ୍ତଦୁର୍ଗ, ପୃଷ୍ଠଦେଶ ସ୍ୱରାଜଧାନୀରେ
ଉପଯୁକ୍ତରୂପେ ରକ୍ଷୀ କରିଣ ନିଯୁକ୍ତ,
ଷଡ଼ବିଧ ସେନାଙ୍କ ଯୋଗେ ଶୁଭଅନୁକୂଳେ
ଦିଗ୍‌ବିଜୟ ଆଶେ ଭୂପ କଲେ ଅଭିଯାନ ।
ମନ୍ଦରେ ମନ୍ଥିଲା ବେଳେ କ୍ଷୀରସାଗରକୁ
କ୍ଷୀରକଣା ପଡ଼ି ଯଥା ଦିଶନ୍ତି ଅଚ୍ୟୁତ,
ପ୍ରଭୁ ବାହାରିବାବେଳେ ତେସନ ବୀରେନ୍ଦ୍ର

ନଗରର ବୟୋବୃଦ୍ଧା ନାରୀମାନଙ୍କର
ଶୁଭ୍ର ଲଜାଞ୍ଜଳୀ ଯୋଗେ ହେଲେ, ସମାପର୍ଣ୍ଣ ।
ବିଜେ କଲେ ନରମଣି, ଅନୁକୂଳବାତେ
ଉଡ଼ିଲା କେତନବର ରଥର ଚୂଳରେ,
ଦେଖି ମନେ ହେଲା ପ୍ରତେ, ଧ୍ୱଜ ସଙ୍କେତରେ
ତର୍ଜି ରିପୁଗଣେ କିବା, ବାସବ ପରାୟେ,
* ବାସବ ଦଗରେ ଧନ୍ୱୀ ହେଲେ ଅଗ୍ରସର ।
ବାହାରିଲେ ଚତୁରଙ୍ଗ, ରଥର ଚକରେ
ଉତ୍ଥିତ-ପରାଗକୁଳେ ନଭକୁ, ଭୂତଳେ,
ଭୂତଳକୁ, ନବଘନ ସନ୍ନିଭ ସୁକାନ୍ତ
ଦନ୍ତାବଳମାଳେ, ବ୍ୟୋମ କରି ପରିଣତ ।
ସୈନ୍ୟଙ୍କର ଗତି ଦେଖି ହେଲା ଅନୁମିତ,
ଚଳୁଥିଲା ଆଗେ କିସେ ପ୍ରଚଣ୍ଡ ପ୍ରତାପ,
ଅନନ୍ତର ଘୋରନାଦ; ତଦୂର୍ଦ୍ଧ୍ୱ ରେଣୁରାଶି,
ତା ପଛରେ ରଥ ଆଦି ଯେତେ ଅନୀକିନୀ,
ମହାଦମ୍ଭେ, ମହାତେଜେ, ଘୋରଅବସ୍ଥେ ।
ଜଳଶୂନ୍ୟ ପ୍ରଦେଶରେ ନିଜ ଶକ୍ତିବଳେ
ସୁଗଭୀର କୂପ ଖୋଳି ଜଳପାନ କରି,
ନିର୍ମାଣି କୌଶଳେ ସେତୁ ନଦୀମାନଙ୍କରେ,
ଗହନବିପିନରାଜି ଛେଦି ଅନାୟାସେ,
ଗନ୍ତବ୍ୟ ମାର୍ଗକୁ ତ୍ୱରେ କରିଣ ଉନ୍ମୁକ୍ତ
ବାଧାବିଘ୍ନ ଦୂରକରି ଚାଲିଲେ ଉଲ୍ଲାସେ ।
ହରଜଟାଭ୍ରଷ୍ଟା ଗଙ୍ଗାନଦୀକୁ ପଛରେ
ଚଳାଇ, ଶ୍ରୀ ଭଗୀରଥ ଦିଶୁଥିଲେ ଯଥା,
ତେସନ ସେ ନୃପବର ହୋଇଲେ ଶୋଭିତ,
ପୂର୍ବସିନ୍ଧୁମୁଖେ ଚାଲି ବରିଷ୍ଠବାହିନୀ ।
ଫଳଶୂନ୍ୟ, ଉତ୍ପାଟିତ, ଛିନ୍ନଭିନ୍ନ କରି,
ମହାମହୀରୁହରାଜି, ଗଜେନ୍ଦ୍ର ଯେସନ,
ଉନ୍ମୁକ୍ତ କରଇ ପଥ, ତେସନ ନରେନ୍ଦ୍ର,

* ବାସବଦଗ—ପୂର୍ବଦଗ ।

ବିପକ୍ଷ ନୃପଙ୍କ ଦଳ ଭୈରବ ବିକ୍ରମ,
ନିଷ୍କଣ୍ଟକ କଲେ ନିଜ ପିତା ସରଣୀକୁ ।
କ୍ରମେ କ୍ରମେ ବଳବାନ ସେନାଗଣ ସଙ୍ଗ,
ଜୟ କରି ପୂର୍ବ ଦିଗ ଜନପଦାବଳୀ
ଜୟଶୀଳ, ବିସ୍ତାରିଲେ ଅବାରିତ ଗତି ।
ଘନତାଳୀବନ ଶ୍ୟାମ ମହୋଦଧିତୀରେ,
ସେ ଦେଶର ଅଧିବାସୀ ସୁହ୍ମ ରାଜଗଣ,
ବେଗବାନ ସିନ୍ଧୁନନ୍ଦନର ଦ୍ରୁତଗାମୀ—
ଜଳପ୍ଲବତଙ୍କ ଅଗ୍ରେ କଲେ ଅଗ୍ରରକ୍ଷା
ଯଥା ପରତର ଭୟେ, ବନସ୍ରୋତେ କୁହାର
ବେତସ ସଦୃଶ ନତ ହୋଇ ତାଙ୍କ ପଦେ ।
ସ୍ଥାପିଲେ ଜୟସ୍ତମ୍ଭ, ଦମି ବାହୁବଳେ
ଜଳଯୁଦ୍ଧେ ମହାଦକ୍ଷ ବଙ୍ଗ ସେନାମାନଙ୍କୁ,
ଗଙ୍ଗାର ପ୍ରବଳ ସ୍ରୋତ ମଧ୍ୟବର୍ତ୍ତୀ ଦ୍ୱୀପେ ।
ଯୁଦ୍ଧେ ଉଠାଇଣ ରାଜ୍ୟ ସ୍ୱବଶକୁ ଆଣି
କେବଳ ଦମନ କରି ବଙ୍ଗବାହିନୀଙ୍କୁ,
ସ୍ୱରାଜ୍ୟେ ତାହାଙ୍କୁ ପୁଣି କରନ୍ତେ ସ୍ଥାପନ,
କୃତଜ୍ଞତାବଶେ ସେହି ବଙ୍ଗ ବୀରଗଣ
ସମ୍ବର୍ଦ୍ଧନା କଲେ ତାଙ୍କୁ, ଅବନତ ହୋଇ
ଲୁଟେ ପାଦପଦ୍ମେ ଯାଏ, ଶାଳୀଧାନ ଯଥା
ଉତ୍ପାଟିତ ପୁଣି ପ୍ରତିରୋପିତ ହୋଇଣ
ଫଳେ ଲଭି, ପ୍ରକାଶଇ ନିଜ କୃତଜ୍ଞତା ।
ବଙ୍ଗଦେଶ ଜୟ କରି ନିଜ ବାହୁବଳେ,
ହେଲେ ତହୁଁ ଅଗ୍ରସର, ଗଜସେତୁ ଯୋଗେ
ପାର ହୋଇ ସସୈନ୍ୟରେ ସୁବର୍ଣ୍ଣରେଖାକୁ
ଉତ୍କଳ ଦର୍ଶିତ ପଥେ କଳିଙ୍ଗ ଅଭିମୁଖେ ।
ସେ ଦେଶରେ ଅବସ୍ଥିତ ମହୋଚ୍ଚ ମହେନ୍ଦ୍ର-
ମହୀଧର ମସ୍ତକରେ ଶ୍ରୀବିଜୟୀ ରଘୁ
ବିରଚିଲେ ସେନାବାସ, ମାହୁନ୍ତ ଯେସନ,
ମଦମତ୍ତ କରୀବର କୁମ୍ଭେ ମହାଦମ୍ଭେ,

ସୁତୀକ୍ଷ୍ଣ ଅଙ୍କୁଶମୁନ କରିଏ ପ୍ରବେଶ ।
ମହାକାୟ ଗଜ-ସୈନ୍ୟମାନେ ସଜ ହୋଇ
କଳିଙ୍ଗ, ସଶସ୍ତ୍ରେ ତାଙ୍କୁ କଲେ ଆକ୍ରମଣ,
ପକ୍ଷଚ୍ଛେଦେ ସମୁଦ୍ୟତ—ବାସବଙ୍କୁ ଦେଖି,
ଭୀଷଣ ପାଷାଣବୃଷ୍ଟି କରି ପୂର୍ବକାଳେ
ଧାଇଁଥିଲେ ଶୈଳମାନେ ଯେସନ ବେଗରେ ।
ହେଲା ତହିଁ ଘୋରଯୁଦ୍ଧ ଉଭୟ ପକ୍ଷରେ ।
ମାତ୍ର ରଘୁ ଜୟଲକ୍ଷ୍ମୀ ଲଭିଲେ ଅଚିରେ,
ରିପୁମାନଙ୍କର ଶର-ବୃଷ୍ଟି-ଧାରା-ଜଳେ
ଅଭିଷେକ ହୋଇ କି ସେ ପ୍ରସନ୍ନ ମନରେ ।
ପିଇଲେ ସେ ଗିରିଶିରେ ରଚି ପାନଭୂମି,
ତାହାଙ୍କ ଫଙ୍କଜଚୟ ମହାମଣ୍ଡଳରେ
ପାନପତ୍ରେ ଠୁଳି କରି ନାରିକେଳ ମଧୁ (୧)
ରଣଜୟ କୀର୍ତ୍ତିରାଶିସହ ଏକାବେଳେ ।
ଯୁଦ୍ଧରେ ପରାସ୍ତ ହୋଇ, ସେନା ନିବାସରେ
ବନ୍ଦୀହୋଇ ରହିଥିଲେ ନଜରବନ୍ଦୀରେ
ଦୁଃଖରେ ମହେନ୍ଦ୍ରନାଥ; ସଦୟ ହୃଦୟେ;
ବନ୍ଧନୁଁ ବିମୁକ୍ତ କରି ହରି ନେଲେ ଏକା
ତାହାଙ୍କର ଠାଣପଣ ସେ ଧର୍ମବିଜୟୀ
ରଘୁବୀର ହୃତରାଜ୍ୟ ସମ୍ପ୍ରଦାନ କରି ।
ବିଜେ କଲେ ତହୁଁ ବୀର ଦକ୍ଷିଣ ଦିଗକୁ
ଅଗସ୍ତିଙ୍କ ପ୍ରିୟଭୂମି, ଫଳପୁଞ୍ଜେ ନମ୍ର—
ଗୁଆଗଛ ବିମଣ୍ଡିତ ସିନ୍ଧୁ ତଟେ ତଟେ ।
ବିରାଟ ବାହିନୀସହ ପାରିହେବା କାଳେ,
ଗଜମଦେ ସୁବାସିତ କରି କାବେରୀକୁ,
ତାର ସିନ୍ଧୁପତି ମନେ ଉପୁଜାଇ ଯେଣେ
ସୈନ୍ୟମାନଙ୍କର ସହ ଉପଭୋଗ ଶଙ୍କା,
ଚିରଜୟୀ ରଘୁବୀର ବିଶ୍ରାମିଲେ ସୁଖେ,

(୧) ଠୁଳି—ପତ୍ରନିର୍ମିତ ପାତ୍ର ।

ମରକତ କାନନଶ୍ରେଣୀ ହରଡ଼ ପର୍ଣ୍ଣରେ
ସୁଶୋଭିତ; ମଲୟାଦ୍ରି ଉପତ୍ୟକା ପରେ ।
ଅଶ୍ୱଖୁରେ ଦଳି ହୋଇ ଏଲାଚ ଲତାରୁ
ଉଡ଼ ଫଳ ରେଣୁରାଜି ଲଗି ଅନାୟାସେ
ଦନ୍ତୀ ହାତୀଙ୍କର ଗଣ୍ଡେ, ନ ପଡ଼ଇ ଜଣା
ବାସୁଥିଲା ତାହା ଯେଣୁ ମଦେ ସେହିପରି ।
ସବଳେ ଛିଣ୍ଡାଇ ଦେଇ ପଛ ବନ୍ଧନକୁ
ସେ ବନେ ବିଶ୍ରାମକାଳେ ବନ୍ଧା ହୋଇଥିବା
କରୀଏ ଚଳେହେଁ ବଳେ ଯେତେ ଝିଙ୍କାଝୁଙ୍କି
ନ ପାରିଲେ ଢିଲେ ସୁଦ୍ଧା ସ୍ଥାନଚ୍ୟୁତ କରି
ସମ୍ମୁଖର ଦୃଢ଼ତର କଣ୍ଠ ଶାଙ୍କୋଳୀକୁ,
ବନ୍ଧା ହୋଇଥିଲା ଯାହା ଚନ୍ଦନ ଗଛର
ଭୁଜଙ୍ଗ ବେଷ୍ଟିତ ଅଙ୍କେ ଅନ୍ଧ କଉଶଳେ ।
ସୂର୍ଯ୍ୟଙ୍କର ତେଜ ସୁଦ୍ଧା ଦକ୍ଷିଣକୁ ଗଲେ
ହୋଇଯାଏ କ୍ଷୀଣ, ମାତ୍ର ରଘୁଙ୍କ ପ୍ରତାପ
ବଢ଼ିଲା ଦ୍ୱିଗୁଣତର, ତାହାର ଆଗରେ
ଟିକି ନ ପାରିଲେ ତଳେ ପାଣ୍ଡ୍ୟଦେଶ ବୀରେ ।
ସିନ୍ଧୁ ପାଶେ ତାମ୍ରପର୍ଣ୍ଣୀ ନଦୀ ମୁହାଣରୁ
ପାଇଥିଲେ ଯେତେ ମୁକ୍ତା ସେ ଦେଶବାସୀଏ
ସବୁ ସମର୍ପିଲେ ଆଣି ରଘୁଙ୍କ ଛାମୁରେ
ସୁଚିର ସଞ୍ଚିତ ସ୍ୱୀୟ କୀର୍ତ୍ତିରାଜିସହ ।
ଦକ୍ଷିଣ ଦିଗ୍‌ବଧୂଙ୍କର ସ୍ତନଯୁଗ୍ମ ପରି
ବିରାଜଇ ତ   ଯେଉଁ ସମୁନ୍ନତ ଦେନି
ଚନ୍ଦନ ଅଞ୍ଚଳ ତଟ 'ମଳୟ' 'ଦର୍ଦ୍ଦୁର'
ଧରାଧର, ତହିଁପରେ ମହା ଆନନ୍ଦରେ
ଇଚ୍ଛା ଅନୁସାରେ ସୁଖେ ବଳସି, ବୀରେନ୍ଦ୍ର
ଅତିକ୍ରମ କଲେ ଦୂର ସିନ୍ଧୁ ଜଳରୂପୀ
ନୀଳବସ୍ତ୍ର-ପରିତ୍ୟକ୍ତ ସହ୍ୟ ଗିରୀନ୍ଦ୍ରକୁ,
ସ୍ଖଳିତ ବସନା ସେହ୍ନ ଦିଗ୍‌ବାଳାରମଣୀ
ପୃଥୁଳ ନିତମ୍ବ ପରି ଦିଶେ ଯା ମଞ୍ଜୁଳ ।

ପରଶୁରାମଙ୍କ ଶରେ ବିତାଡ଼ିତ ହୋଇ
ଯାଇଥିଲା ପୂର୍ବେ ସିନ୍ଧୁ ବହୁଦୂର ଘୁଞ୍ଚି,
ଏବେ ରଘୁବାହିନୀଙ୍କ ବିଜୟ କାଳରେ
ଜଣାଗଲା ହେଲାପରି ସହ୍ୟ ଶୈଳେ ଲଗ୍ନ ।
ରଣୋନ୍ମତ୍ତ ବୀରଙ୍କର ଆଗମନ ଶୁଣି
ଭୟେ ଛାଡ଼ିଥିଲେ କେଶ କେରଳ କାମିନୀ,
ସେନାଗମନରେ ଉଠି ଏବେ ଧୂଳିରାଶି
ବସିଗଲା ସେମାନଙ୍କ ରୁକ୍ଷ କୁନ୍ତଳରେ,
କୁଙ୍କୁମାଦି ସୁରୁ-ବାସ-ବାସ୍ପ-ଚୂର୍ଣ୍ଣ ଛଳେ ।
ମୁରଳା ତଟିନୀସ୍ପୃଷ୍ଟ ମୃଦୁ ସମୀରଣ
କେତକୀ ପରାଗ ହରି, ଧୀରେ ଧୀରେ ବହି,
ସେନାଙ୍କର କବଚରେ ଦାନ କରୁଥିଲା
ବହୁମୂଲ୍ୟ ମନୋହର ପଟ୍ଟବସ୍ତ୍ର ଶୋଭା ।
ଧାଉଁଥିଲେ ବାଜିରାଜି ବିବିଧ ଗତିରେ,
ସେମାନଙ୍କ ପୃଷ୍ଠସ୍ଥିତ ଚର୍ମକବଚରୁ (୧)
ଶ୍ରୁତିମଞ୍ଜୁ ଧ୍ୱନି ଉଠି, ତୁଚ୍ଛ କରୁଥିଲା
ବାତଧୂତ ତାଳୀବନ ମର୍ମର ଧ୍ୱନିକୁ ।
ମହାକାୟ ଗଜବୃନ୍ଦ ବନ୍ଧା ହୋଇଥିଲେ
ଖର୍ଜୁରୀ ଗଛର ଉଚ୍ଚ ସ୍କନ୍ଧ ପ୍ରଦେଶରେ,
ଉତ୍କଟ ଆଘ୍ରାଣ ପାଇ ତାହାଙ୍କ ମଦର,
ଛାଡ଼ି ନାଗେଶ୍ୱର ଫୁଲ, ଉଲ୍ଲାସେ ଅଳିଏ
ଲପି ହେଲେ ଯାଇ ସେହି କରୀଙ୍କ ଗଣ୍ଡରେ ।
ପରଶୁରାମଙ୍କ ଘୋର ଭ୍ରୂକୁଟି ଭୟରେ
ଦେଇଥିଲା ତାଙ୍କୁ ସ୍ଥାନ, ପୂର୍ବେ ରତ୍ନାକର,
ମାତ୍ର ଏବେ ରଘୁଙ୍କର ପ୍ରତାପକୁ ଦେଖି
ସାଧ୍ୱସେ କମ୍ପିତ ହୋଇ ଯାଚି ଦେଲା କର
ଦକ୍ଷିଣର କରଦାତା ନରପତି ବ୍ୟାଜେ ।
ମଦୋତ୍କଟ ଦନ୍ତୀ ଦନ୍ତେ ଲେଖାଇ କୌଶଳେ

(୧) ଚର୍ମକବଚ—ଜିନ୍

ସ୍ୱଭଜୟ ବର୍ଣ୍ଣାବଳୀ ଅଙ୍କ ଜୟ ସ୍ତମ୍ଭ-
ସଦୃଶ ଗଗନ ଚୁମ୍ବି—ହିକୂଟ ଅଚଳେ,
ଧନୁର୍ଦ୍ଧାରୀ ରଘୁଙ୍କର ବୀର ଯୋଦ୍ଧାଗଣ
ବାହାରିଲେ ସ୍ଥଳପଥେ ପାରଶିକ ଜୟେ,
ସଂଯମୀ ଯେସନ ସ୍ୱୀୟ ଇନ୍ଦ୍ରିୟକୁ ଦମି
ଅନ୍ତରର ଦୃଏ ହର୍ଷେ ତତ୍ତ୍ୱଜ୍ଞାନ ପଥେ ।
ପଦ୍ମ ବଦନଙ୍କୁ ନବ ପ୍ରଭାକର ପ୍ରଭା
ଅକାଳ ଉଦୟ ଘନ ଲଭଏ ଯେସନ,
ପ୍ରବେଶି ସତେଜେ ବଳୀ ପାରଶ୍ୟ ଦେଶରେ,
ଯବନୀ-ବଦନ-ପଦ୍ମ-ମଦରାଗ-ମାର୍ଜିତ—
ରକ୍ତିମା, ତେସନ ବଳେ କଲେ ଦୂରୀଭୂତ ।
ମାଡ଼ିଲେ ତୁମୁଳ ରଣେ ସଶବାୟ ଚମୂ
ଅଶ୍ୱାରୋହୀ ପାରଶୀକେ, କୋଦଣ୍ଡ ଟଙ୍କାରେ
ଲକ୍ଷ୍ୟ କରି ପ୍ରତି ବୀରେ ବିପକ୍ଷ ପକ୍ଷଙ୍କୁ
ରେଣୁରାଜି ଅନ୍ଧାବୃତ ସମର ପ୍ରାଙ୍ଗଣେ ।
ଶ୍ମଶ୍ରୁଳ ଯବନ ମୁଣ୍ଡ ଶତ ଶତ ଭୂମେ
ପଡ଼ାଇ ଖଡ଼ଗ ସ୍ରୋତେ, ଛାଇଁଦେଲେ କି ସେ
ଶ୍ମଶ୍ରୁ-ମଧୁକର ଶୋଭ—ମଧୁଚକ୍ରେ ମଗ୍ନ ।
ଶିରୁଁ ଶିରସ୍ତ୍ରାଣ କାଢ଼ି, ତାଙ୍କ ପଦେ ପଡ଼ି
ହତ ଅବଶିଷ୍ଟ ସେନା, ପଶିଲେ ଶରଣ
ହାତଯୋଡ଼ି ନତମୁଖେ ପ୍ରାଣରକ୍ଷା ପାଇଁ,
ଶରଣବତ୍ସଳ ରଘୁ ମୁକ୍ତଦେଲେ ତାଙ୍କୁ,
ମହାତ୍ମାମାନଙ୍କ କୋପ ଦୂର ଲଗି ଏକା
ପ୍ରଣିପାତ ପ୍ରତିକାର ଅଟଇ ଜଗତେ ।
ସେ ଦେଶକୁ ଜୟ କରି, କିଛିକାଳ ରହି,
ହରିଲେ ସମରଶ୍ରମ ବିଜୟୀ ବାହିନୀ
କୃଷ୍ଣାଜିନ ଆସନରେ ବସି ଆନନ୍ଦରେ
ଦ୍ରାକ୍ଷାଫଳ ସମୁତ୍ପନ୍ନ ମଦ୍ୟ ପାନ କରି,
ସୁକୋମଳା ଦ୍ରାକ୍ଷାବଲ୍ଲୀ ସ୍ନିଗ୍ଧ ଛାୟାତଳେ ।
ଦକ୍ଷିଣକୁ ପଛେ ରଖି ବାହାରିଲେ ତହୁଁ

ଉତ୍ତର ଦିଗକୁ ବଳୀ, ଶରବୃଷ୍ଟି କରି
ଧର୍ଷିବାକୁ ବୈରିକୁଳ, ପ୍ରଭଞ୍ଜନ ଯଥା
ସହସ୍ର କରଣ ବର୍ଷି ପ୍ରବଳ ବେଗରେ
ନାଶିବାକୁ ନଦୀ ନଦ ସରରୁ ସଲିଳ
ଦୁରନ୍ତ ଉତ୍ତରାୟଣ ଅୟନ ଚଳରେ ।
ଯିବାବେଳେ ସେ ଦିଗକୁ, ସିନ୍ଧୁନଦ ତୀରେ
ବିଶ୍ରାମ ପାଇଁକି ଶୂର କଲେ ଅବସ୍ଥାନ,
ସେ ନଦ ତଟରେ ସୁପ୍ତ ତୁରଙ୍ଗମରାଜି
ମାର୍ଗ ଅତିକ୍ରମ କ୍ଲେଶ ଦୂର ଅନାୟାସେ,
ହୃଷ୍ଟମନେ ଉଡ଼ାଇଲେ ନାଗେଶ୍ୱର ରେଣୁ,
କେଶର ମଣ୍ଡିତ ସ୍କନ୍ଧ ପ୍ରକମ୍ପିତ କରି ।
ପ୍ରବେଶିଲେ ହୂଣ ରାଜ୍ୟ ଏଥୁଅନ୍ତେ ଯାଇ
ସମ୍ମୁଖାଗ୍ନି ବୀରମଣି, ଅଗ୍ରସର ହୋଇ
ରୋଧିଲେ ତାଙ୍କୁ ବାଟେ ହୂଣବୀରଗଣ,
ମାତ୍ର ନ ପାରିଲେ ରୋଧି; ରଘୁଙ୍କ ପ୍ରତାପେ
ପଳାଇଲେ ଅସ୍ତବ୍ୟସ୍ତ ଛିନ୍ନଭିନ୍ନ ହୋଇ;
କେତେ ଯେ ମରିଲେ ହୂଣ ନାହିଁ ସଂଖ୍ୟା ତାର,
ସ୍ୱାମୀ ପୁତ୍ର ଶୋକାତୁର ନାରୀମାନଙ୍କର
ଦଳିତ ସିନ୍ଦୁରକାନ୍ତ ଗଣ୍ଡ ସ୍ଥଳଦେଶ,
କହୁ ଦେଉଥିଲା ସିନା, ରଘୁବୀରଙ୍କର
ସେ ଦେଶରେ ଘୋରତର ଯୁଦ୍ଧ ସମାଚାର ।
ହୂଣରାଜ୍ୟ ଜୟ କରି କାମ୍ବୋଜ ଦେଶରେ
ଉପସ୍ଥିତ ହୋଇ ବେଗେ ରାଘବୀୟ ଚମୂ
ଅଦମିଲେ ଭୀମବଳେ ସେ ଦୁର୍ଗବାସୀଙ୍କୁ,
କାମ୍ବୋଜର ଶୂରଶ୍ରେଣୀ ତାହାଙ୍କ ବିକ୍ରମ
ସମରେ ନପାରି ସହି; ଅବନତ ହେଲେ
ହାଟକକାସିବା ନମ୍ର, କଂଳାର ସହିତ ।
ସୁଲକ୍ଷଣଯୁକ୍ତ ଅଶ୍ୱ, ବହୁ ଧନରାଶି,
ଉପାୟନ ଦେଇ ଆସି ଭେଟିଲେ ସମରେ,
ଏତେ ଧନରତ୍ନ ତହୁଁ ଲଭିଲେହେଁ ବୀର

ହୃଦୟରେ ଥିଲେ ସୁଦ୍ଧା ନୋହିଲେ ଗର୍ବିତ,
ମହତ ଲୋକର ସଦା ଅଟଇ ଏ ରୀତି
କ୍ଷୁଦ୍ରଲୋକ ଯେବେ କିଛି ସମ୍ପଦ ଲଭଇ
ଠେକ ହୋଇଥାଏ ସିନା ହୃଦୟ ଫୁଲଇ ।
ଶୈଳରାଜ ଗୌରୀଗୁରୁ ଉଚ୍ଚ ହିମାଳୟେ
ଅନନ୍ତର ଆରୋହିଲେ ଚତୁରଙ୍ଗ ସେନା;
ଅଶ୍ୱଖୁର ସମୁତ୍ଥିତ ଗୈରିକ ରେଣୁରେ
ଶୃଙ୍ଗଶ୍ରେଣୀ ଉଚ୍ଚତାକୁ ବଢ଼ାଇଲା ପର ।
ଦେଖିଲେ ସେନାଏ ତହିଁ, ଗମନ କାଳରେ;
ରଘୁଙ୍କ ସମାନ ବଳୀ, ଗୁହାକୋଡ଼ଶାୟୀ,
ହିମାଦ୍ରିକାନ୍ତାରବର୍ତ୍ତୀ କେଶରନିକର,
ଅଳଙ୍କମାଙ୍କର ଘୋର କୋଳାହଳ ଶୁଣି
ନ କରି ଟିକିଏ ସୁଦ୍ଧା, ଅଟଳ ସ୍ୱଭାବରେ
ଧୀରେ ଧୀରେ ବଦନକୁ ବୁଲାଇ ପଛକୁ
ଅଟଳ ଚାହାଣି ଯୋଗେ ବ୍ୟକ୍ତ କରୁଥିଲେ
ସୈନ୍ୟଙ୍କ ସମ୍ମୁଖେ ତାଙ୍କ ନିର୍ଭୀକ ସ୍ୱଭାବ ।
କମ୍ପାଇ ମର୍ମର ଶବ୍ଦେ ଭୂର୍ଜପତ୍ରଦଳ,
ବାଉଁଶ ରନ୍ଧ୍ରରେ ମୃଦୁ ଧ୍ୱନି ଉପୁଜାଇ,
ସୁରଧୁନୀ ସୁବାସିତ ଶୀତଳ ସମୀର
ଗିରିମାର୍ଗେ ସେ କାଳରେ ଧୀରେ ଧୀରେ ବହି,
କୋଶଳେଶ୍ୱରଙ୍କୁ ସେବା କରିଲା ମାର୍ଗରେ ।
ଯିବାବେଳେ ଦୁରାରୋହ ଶୈଳେ ଉଠି ଉଠି
ଶ୍ରମ ଦୂର କରୁଥିଲେ ତାହାଙ୍କ ସେନାଏ,
ସ୍ଥୂଳ ଦେବଦାରୁ ତରୁ ଘନଛାୟା ତଳେ,
ମୃଗନାଭି ସୁରଭିତ ଶିଳାଖଣ୍ଡେ ବସି ।
ସେ ସ୍ଥାନେ ନିବାସ କାଳେ ଶୂରଙ୍କ ଶିବିରେ
ବନ୍ଧାଥିବା ହାତୀଙ୍କର କଣ୍ଠ ଶିକୁଳରେ
ପଡ଼ି ଜ୍ୟୋତିର୍ଲତା ଜ୍ୟୋତି ରଜନୀ ସମୟେ,
କରୁଥିଲା ତୈଳହୀନ ପ୍ରଦୀପର କାର୍ଯ୍ୟ ।
ଗିରୀନ୍ଦ୍ରର ପୃଷ୍ଠଦେଶେ ଠାବେ ଠାବେ କାହିଁ

ହସ୍ତୀମାନଙ୍କର କଣ୍ଠରଜ୍ଜୁ ଘର୍ଷେ ହୋଇ
ଛଡ଼ ଯାଉଥିଲା ଛାଲ ଦ୍ରୁମମାନଙ୍କର,
ସେ ଚିହ୍ନରୁ ଉଚ୍ଚତାକୁ ଅନୁଭବ କରି
କଷ୍ଟେ ହାତୀଙ୍କ ମାପ କଲେ ନରୂପଣ।
ଏହିରୂପେ ବୀରବର ନାନାସ୍ଥାନେ ବୁଲି
ପର୍ବତସ୍ଥ ଜାତିସହ ଯୁଝିଲେ ସଦର୍ପେ,
କ୍ଷିପ୍ର ଦାଢ଼ ଭନ୍ଦପାଲ ନାରାଚ ପଥର
ସଙ୍ଘର୍ଷଣେ ଜନମାଇ ଅନଳ ସ୍ଫୁଲିଙ୍ଗ।
'ଉତ୍ସବ ସଙ୍କେତ' 'ଗଣ' ନାମେ ସେ ପର୍ବତେ
ବାସ କରୁଥିଲେ ଏକ ବଳବାନ ଜାତି
ମହାଦମ୍ଭୀ, ସେମାନଙ୍କୁ ଦଳି ବୀରମଣି
ବାହୁବଳେ, ଗୁଆଇଲେ କିନ୍ନରୀ କଣ୍ଠରେ,
ବଳଦୃପ୍ତ ସ୍ୱବାହୁର ପ୍ରଶଂସା ସଙ୍ଗୀତ।
ନାନା ମୂଲ୍ୟବାନ ଦ୍ରବ୍ୟ ଉପହାର ଘେନ
ପ୍ରବେଶ ହୁଅନ୍ତେ ଆସି ସେହି 'ଗଣ'ମାନେ,
ସ୍ୱର୍ଣ୍ଣପ୍ରସ୍ଥ ହମାଦ୍ରର ଦୁର୍ଲ୍ଲଭ ବଭବ
ଯେମନ୍ତ ଜାଣିଲେ ସଏ, ହିମାଳୟ ତଥା
ତାହାଙ୍କର ବାହୁବଳେ କଲେ ଅନୁଭବ।
ଦଶାନନ ଉତ୍ତୋଳିତ—କୈଳାସ ଶିଖର
ଲଜ୍ଜା ଜନ୍ମାଇଲ ପର, ସ୍ଥାପି ତାର ଶିରେ
ଅକ୍ଷୟ ଉଜ୍ଜ୍ୱଳ କୀର୍ତ୍ତି, ଉତ୍ତର ତଟରୁ
'କାମାକ୍ଷା'ର ଅଭମୁଖେ ହେଲେ ଧାବମାନ।
ରଘୁଙ୍କ ଲୌହିତ୍ୟା ନଦୀ ପାର ହେବା ଶୁଣି
ହାତୀ ବନ୍ଧା ହେଉଥିବା ମଞ୍ଜଗଛ ପରି,
ଭୟେ ପ୍ରାଗ୍‌ଜ୍ୟୋତିଷପତି ହେଲା କମ୍ପମାନ,
ମେଘ ସମାଚ୍ଛନ୍ନ ଘୋର ବର୍ଷାଦିନ ପରି
ରଘୁ ଚମୂବେଧୀ ସାନ୍ଦ୍ର, ରଥଚକ୍ର ଧୂଳି
ଝଟେଲକ, ଆତଙ୍କେ ତାର ହଜିଗଲା ଜ୍ଞାନ,
ସେନାଙ୍କର ମହାତେଜ ସହିବ ସେ କାହୁଁ।
ହାତଯୋଡ଼ ଠିଆ ହୋଇ ବନୟେ ଯୁହାର

ହେମପୀଠେ ରଘୁଙ୍କର ପଦଦ୍ୱେନ ଥୋଇ
ସୁବାସିତ ଜଳେ ଧୋଇ, ଗନ୍ଧ ପୁଷ୍ପ ସହ,
ବହୁ ବନ୍ୟ ବସ୍ତୁମାନ ଉପହାର ଦେଇ,
ଭକ୍ତିଭରେ ପୂଜା କରି କାମରୂପ ଭୂପ
ଅକ୍ଷମ ଯୁଦ୍ଧରେ ଆସି ପଶନ୍ତେ ଶରଣ,
ଅଭୟ ପ୍ରଦାନ କରି ସ୍ନେହେ ବୀରମଣି
ସ୍ୱରାଜ୍ୟରେ ପୁଣି ତାଙ୍କୁ କରିଲେ ସ୍ଥାପନ ।
ବାହୁଡ଼ିଲେ ଜୟଶୀଳ ଧଣି ତଦନ୍ତର,
ଛତ୍ରହୀନ ନୃପଙ୍କର ଉଜ୍ଜ୍ୱଳ କିରୀଟ
ରଥସମୁତ୍ଥିତ-ରଜେ ଅସ୍ୱଚ୍ଛ କରି,
ଏହିରୂପେ ଧୀରେ ନିଜ ରାଜଧାନୀ ମୁଖେ ।
ତହୁଁ କିଛିଦିନ ଅନ୍ତେ ନଗରେ ପ୍ରବେଶି,
ବିଶ୍ୱଜିତ ମହାଯଜ୍ଞ କରି ନରମଣି,
ଦକ୍ଷିଣାସ୍ୱରୂପ ତାର କରିଲେ ପ୍ରଦାନ
ଜୟଲବ୍ଧ ଯେତେ ଧନ ପ୍ରସନ୍ନ ମନରେ,
ସାଗରୁ ଶୋଷଇ ଜଳ ପୟୋଦ ଯେସନ
ବୃଷ୍ଟିକୁ ରକ୍ଷା ପାଇଁ, ତେସନ ସାଧୁଏ
ନଅନ୍ତି କେବଳ ଧନ ବିତରଣ ପାଇଁ ।
ଅମାତ୍ୟ ବେଷ୍ଟିତ ହୋଇ ଏ ଭବେ କାକୁସ୍ଥ
ମହତ ସମ୍ମାନ ଦାନେ ସାମନ୍ତ ନୃପଙ୍କ
ଶଙ୍କାଶେଷେ, ପରାଜୟ-ବିଷାଦ ଘୁଞ୍ଚାଇ,
ଆଦେଶିଲେ ବାହୁଡ଼ିବା ଲାଗି ସ୍ୱ ନଗରେ,
ସୁଚିର ବିରହେ ତାଙ୍କ ପୁର ଥିବ ବୋଲି ।
କେତନ-କୁଳିଶ, ଛତ୍ର, ରେଖାରେ ଚିହ୍ନିତ
ଅନୁଗ୍ରହଲଭ୍ୟ ସେହୁ ସମ୍ରାଟଙ୍କ ପଦେ
ବଦାନ୍ୟ ପ୍ରମାଣ କାଳେ ସାମନ୍ତ ରାଜାଏ,
ଭକ୍ତିରେ ମସ୍ତକ ଲଗ୍ନ କରି କରି, ନିଜ–
ଶିରସ୍ତ୍ରାଣସ୍ଥିତ-ଫୁଲ-ମଧୁ-ମକରନ୍ଦେ
ପାଦର ଅଙ୍ଗୁଳି ତାଙ୍କ କଲେ ଗୌରବର୍ଣ୍ଣ ।

---

# ପଞ୍ଚମ ସର୍ଗ

ବିଶ୍ୱଜିତ ମହାଯଜ୍ଞ ଦକ୍ଷିଣା ଦାନରେ
ସର୍ବସ୍ୱାନ୍ତ ହୋଇ ଯେବେ ଦିଲୀପ ତନୟ
ରହିଥିଲେ ଦୈନ୍ୟ ପୁରେ, ପ୍ରବେଶିଲେ ଆସି
ହେନକାଳେ ପ୍ରଥିତ-ଯଶା ବରତନ୍ତୁ ଶିଷ୍ୟ
କୌତ୍ସମୁନି, କରିବାକୁ ଅଭୀଷ୍ଟ ଗ୍ରହଣ ।
ଅଭ୍ୟର୍ଥନା କଲେ ଶ୍ରେଷ୍ଠ ବେଦ-ବିଶାରଦ
ଅତିଥିଙ୍କୁ ଭକ୍ତିଭରେ ଅମୂଲ୍ୟ ସ୍ୱଭାବ
ସ୍ୱଯଶ ଗୌରବାନ୍ୱିତ ଅତିଥେୟ ରଘୁ,
ମୃତ୍ତିକା ପାତ୍ରରେ ଅର୍ଘ୍ୟ କରିଣ ସ୍ଥାପନ,
ଯଜ୍ଞ ଦକ୍ଷିଣାରେ ପୂର୍ବେ ଦାନ କରି କରି
ସରିଥିଲା ସବୁ ଯେଣୁ ଥିଲା ନାହିଁ କିଛି ।
ଆସନରେ ବସାଇଣ ସେ ତପୋଧନଙ୍କୁ
ବିହିତ ବିଧାନେ ପୂଜା ମାର୍ଜନା କରି
ଶାସ୍ତ୍ରଜ୍ଞ, କାର୍ଯ୍ୟଜ୍ଞ, ସର୍ବ ଅପପଗସ୍ୱରୁ
ନରନାଥ; ତାଙ୍କ ପାଖେ କୃତାଞ୍ଜଳିପୁଟେ
କହିଲେ, ଏରୂପ ଧୀର ବିନମ୍ର ବଚନେ ।
ଚୈତନ୍ୟ ଲଭିଲା ପରି ତପନରୁ ଲୋକେ
ପାଇଛି ଅଶେଷ ଜ୍ଞାନ ଯା ଯୋଗୁଁ ଆପଣ,
ହେ କୁଶାଗ୍ରମତି ! ଭବ୍ୟ ବେଦ-ବିଶାରଦ
ଋଷିକୁଳ ଅଗ୍ରଗଣ୍ୟ ଆପଣଙ୍କ ସେହି
ଗୁରୁଦେବ, କୁଶଳେ ତ ଅଛନ୍ତି ଆଶ୍ରମେ ?
କାୟମନୋବାକ୍ୟ ଦ୍ୱାରା ନିରତ ସଞ୍ଚିତ
ଇନ୍ଦ୍ରଙ୍କର ଧୈର୍ଯ୍ୟଧ୍ୱଂସୀ ଯେ ବିବିଧ ତପ
ବରତନ୍ତୁ ମହର୍ଷିଙ୍କ, କିଛି ଗୁରୁତର
ବାଧାବିଘ୍ନ ଯୋଗେ ହୋଇ ନାହିଁତ ବିନଷ୍ଟ ?
ଯତ୍ନେ ବିନିର୍ମିତ, ମନ୍ତ୍ରମାନଙ୍କେ ରକ୍ଷିତ,
ପ୍ରିୟପୁତ୍ର ନିର୍ବିଶେଷ ସ୍ନେହରେ ବର୍ଦ୍ଧିତ,
ସ୍ନିଗ୍ଧ ଛାୟାଦାନଦକ୍ଷ, ବୃକ୍ଷ ଯେ ସବୁ

ପତ୍ର ପୁଷ୍ପ ଫଳ ଶୋଭି ଆଶ୍ରମପାଦପେ,
ହେଉ ନାହାନ୍ତି ତ ଧ୍ୱଂସ ବାୟୁ ବନାଗ୍ନିରେ ?
ବହୁ କଷ୍ଟେ ଆହରିତ ପୂତ କୁଶରାଜି
ଭକ୍ଷିଲେହେଁ, ମୁନିମାନେ ନ କହନ୍ତି କିଛି
ବତ୍ସଳେ ଯାହାକୁ କେବେ, ଯାଙ୍କ ନାଭିନାଳ
ହୁଅଇ ସ୍ଖଳିତ ତାଙ୍କ ଅଙ୍କ ଶଯ୍ୟାପରେ,
ମୁନୀନ୍ଦ୍ର! ତାହାଙ୍କ ସେହି ମୃଗଶିଶୁମାନେ
ନାଶ ହେଉନାହାନ୍ତି ତ ଆଶ୍ରମେ ଅକାଳେ ।
କରନ୍ତି ତପସ୍ୱୀମାନେ ନିତ୍ୟ ନିତ୍ୟ ସ୍ନାନ
ଯେ ପବିତ୍ର ତୀର୍ଥଜଳେ, ତର୍ପଣ ବେଳରେ
ଯେଉଁ ନୀର ପିତୃଗଣେ କରନ୍ତି ପ୍ରଦାନ,
ସୁପାଳକ ଯୋଗେ ରାଜ୍ୟେ ମଙ୍ଗଳ ହେବାକୁ
ଉଞ୍ଛଧାନ୍ୟଷଷ୍ଠ ଯାକୁ କରନ୍ତି ଉତ୍ସର୍ଗ,
ସେ ପୂତ ତୀର୍ଥଜଳର ମଙ୍ଗଳ ତ ସବୁ ?
ଅତିଥିମାନଙ୍କ ଚିର ଅଭ୍ୟର୍ଥନା ପାଇଁ
ରଖା ହୋଇଥାଏ ଗୃହ ଯହିଁ ଯଥାକାଳେ,
ବନବାସୀ ମୁନିଙ୍କର ଷଷ୍ଠିବରଷଙ୍କ
ତବ ସେହି ନୀବାରର ପରିପକ୍ୱ ଧାନ୍ୟ,
ବିନଷ୍ଟ ତ ହେଉ ନାହିଁ ହେ ତପିପୁଙ୍ଗବ,
ଗ୍ରାମତ୍ୟକ୍ତ ଯୂଥଭ୍ରଷ୍ଟ ବେର ଷଣ୍ଢ ଯୋଗେ ?
ସର୍ବ ବିଦ୍ୟା ଶିକ୍ଷାଦାନ ସମାପନ କରି
ତୁଷ୍ଟମନେ ମହାମାନ୍ୟ ତବ ଗୁରୁଦେବ
ଦେଇଛନ୍ତି ଆଦେଶ ତ ପ୍ରବେଶିବା ପାଇଁ
ଗୃହାଶ୍ରମେ, ପରୀକ୍ଷାରେ ପରିତୁଷ୍ଟ ହୋଇ ?
ସର୍ବ ଉପକାରକ୍ଷମ ଦ୍ୱିତୀୟ ଆଶ୍ରମେ
ପଶିବାକୁ ଯେଣୁ ଏହା ଉପଯୁକ୍ତ କାଳ ।
ହେଉ ନାହିଁ ମୋର ମନ କେବଳ ସନ୍ତୁଷ୍ଟ
ଲଭି ତୁମ୍ଭ ଶୁଭାଗମ, ଆଜ୍ଞା ପାଳିବାକୁ
ସତତ ଉତ୍ସୁକ ହୁଏ ଚିତ୍ତସ୍ପୃହା ଏବେ,
ଗୁରୁଙ୍କ ନିଯୋଗେ କିବା ନିଜେ କୃପା କରି

ଆସିଅଛ ଉପକୃତ କରିବାକୁ ଦାସେ,
ହେ ପୁଣ୍ୟାତ୍ମାବର ! ଧରେ କହ କୃପା କରି ।
ଏରୂପେ ରଘୁଙ୍କ ଶୁଣି ଉଦାର ବଚନ,
ସବୁ ଧନ ଯଜ୍ଞକର୍ମେ ବ୍ୟୟ ହୋଇଥିବା
ମୃତ୍ତିକାର ଅର୍ଘ୍ୟପାତ୍ର ଅନୁମାନ କରି,
ନଷ୍ଟମନୋରଥ ହୋଇ ସ୍ୱବାଞ୍ଛା ପୂରଣେ
ବରତନ୍ତୁ ଶିଷ୍ୟ କୌତ୍ସ, କହେ ବଲେ ଧୀରେ,
ହେ ସ୍ୱଜନ ! ସବୁ କାର୍ଯ୍ୟେ କୁଶଳ ଆମ୍ଭର,
ଉପସ୍ଥିତ ଥାଉଁ ଥାଉଁ ତବଭୁଲ୍ୟ ନାଥ,
ପାରେ କି ଅଶୁଭ ହୋଇ ପ୍ରଜାମାନଙ୍କର ?
ଯେତେବେଳେ ଚଣ୍ଡାଂଶୁ ଅଂଶୁ ପ୍ରଦାନେ ଉଜ୍ଜ୍ୱଳ
କରନ୍ତି ଧରଣୀବକ୍ଷ, ସେତେବେଳେ ତମିର
ପାରଇ କି ଲୋକଚକ୍ଷୁ ଆବରଣ କରି ?
ପୂଜନୀୟପଣ୍ଡ ଭକ୍ତି ଚିରକାଳ ତୁମ୍ଭ—
କୁଳଗ୍ରନ୍ଥ, କରିଅଛ ଅତିକ୍ରମ ସିନା
ସେ ଭକ୍ତିବଳରେ ତୁମ୍ଭେ ପିତୃ ପିତାମହେ
ମହେଶ ! ଯାଚକରୂପେ ଅତିକମି କାଳ
ଆସିଲି ଗମୁକୁ ମୋର ଏହିମାତ୍ର ଦୁଃଖ ।
ହେ ବଦାନ୍ୟ ଶିରୋମଣି ! ପକ୍ୱ ଅବଚଣ୍ଡ
କେଣ୍ଡ୍ରାଘାନ ଧାନ୍ୟଗଛ ପରି ଏ ସର୍ବସ୍ୱ-
ସତ୍ପାତ୍ରରେ ଦାନ କରି ପାଉଅଛ ଶୋଭା,
ସାର୍ବଭୌମ ହୋଇ ସୁଦ୍ଧା ଯଜ୍ଞ ଦକ୍ଷିଣାରେ
ଲଭିଛ ଯେ ଦରିଦ୍ରତା, ସାଜେ ଏତା ତାହା
ତୁମ୍ଭଙ୍କୁ, ଦେବତାମାନେ ପାନ କରି କରି
କ୍ଷୟ କରିଦେଲେ ଯେତେ କଳା ଚନ୍ଦ୍ରମାରୁ
ଚତୁର୍ଦ୍ଦଶ ଦିବସରେ, ବାକି କଳାଟିକ
ପ୍ରଶଂସିତ ଅଟେ ସିନା ପୂର୍ଣ୍ଣଚନ୍ଦ୍ରଠାରୁ ।
ବାଞ୍ଛିତ ପଦାର୍ଥ ମୋର ଏଣୁ ତୁମ୍ଭଠାରେ
ମିଳିବାର ଆଶା ଆଉ ଦିଶୁ ନାହିଁ କିଛି
ଅନ୍ୟାନ୍ୟ ଉପାୟେ ଏଣୁ ତାହା ଆହରଣେ

ଯାଉଛି ମୁଁ ଅନ୍ୟ ଦ୍ୱାରେ, ଅଶାସ୍ତ୍ରୀ ଚାତକ
ବିଗଳିତ ଜଳଗର୍ଭ ଶାରଦ ନୀରଦେ
କଦାପି କରଇ ନାହିଁ ସଲିଳ ପ୍ରାର୍ଥନା ।
ହେଉ ତବ ବାଞ୍ଛା ପୂର୍ଣ୍ଣ କରେ ଆଶୀର୍ବାଦ
ଏହା କହି ଯିବା ପାଇଁ ଉଠନ୍ତେ ତପସ୍ୱୀ
ଯିବାକୁ ନିଷେଧ କରି ବିନମ୍ର ବଚନେ
ପୃଚ୍ଛିଲେ ଭୂପତି, କହ ହେ ପଣ୍ଡିତବର !
ବିଦ୍ୟାବନ୍ତ, ତୁମ୍ଭ ଗୁରୁଦେବଙ୍କ ଦକ୍ଷିଣା
କି ସମ୍ପତ୍ତି, ପୁଣି ତାର ପରିମାଣ କେତେ ?
ନିବେଦନ କଲେ ତହୁଁ ବ୍ରହ୍ମଚାରୀ କୌତ୍ସ
ସଦାଚାରୀ ସତ୍ୟପ୍ରିୟ ବର୍ଣ୍ଣାଶ୍ରମ ଗୁରୁ,
ନରେନ୍ଦ୍ରଙ୍କୁ ଯଥାଯଥ ଦକ୍ଷିଣା ବିଷୟ,
ବିଦ୍ୟା ଅଧ୍ୟୟନ ଶେଷେ ଦକ୍ଷିଣା ଦେବାକୁ
ଜଣାଣ କରନ୍ତେ ପାଶେ ସବିନୟେ ଯାଇ
କହିଥିଲେ ଗୁରୁଦେବ ସଦୟେ ହେ ବତ୍ସ !
ମୋର ପ୍ରତି ତୁମ୍ଭ ସେହି ଅଖଣ୍ଡ ଭକତି
ଦକ୍ଷିଣାଠାରୁ ମୁଁ ମଣେ ତାକୁ ଶ୍ରେଷ୍ଠ କରି,
ଅନ୍ୟ ଦକ୍ଷିଣାରେ ମୋର କିସ ପ୍ରୟୋଜନ ।”
ମାତ୍ର ପାଠ ପଢିସାରି ଗୁରୁଙ୍କ ଦକ୍ଷିଣା
ଦେବାର ଅଟଇ ରୀତି ଏଣୁ ଆଗ୍ରହରେ
କହନ୍ତେ ମୁଁ ଯାଇ, ମୋର, ନିର୍ବନ୍ଧାତିଶଯ୍ୟ
ଦେଖିକି, ସରୋଷେ ମନେ ଭାଳି ନଶ୍ୱର
ଶିଷ୍ୟର ଏ ମହାଘୋର ଦାରିଦ୍ର୍ୟ ଅବସ୍ଥା,
ଆଦେଶିଲେ ଚତୁର୍ଦ୍ଦଶ ବିଦ୍ୟା ଅନୁସାରୀ
ଦେବା ପାଇଁ ଚତୁର୍ଦ୍ଦଶ କୋଟି ସ୍ୱର୍ଣ୍ଣ ମୁଦ୍ରା ।
ଅର୍ଘ୍ୟପାତ୍ରୁ ଦେଖିଲି ଯେ ସର୍ବସ୍ୱ ତ୍ୟାଗି
ବିଶ୍ୱଜିତ ଦକ୍ଷିଣାରେ, ରାଜନ ଏକା
ଅବଶିଷ୍ଟ ଅଛି ତବ, ଅଧୀତ ବିଦ୍ୟାର
ଏଣୁ ମୂଲ୍ୟରୂପ ସେହି ପ୍ରଭୂତ ସମ୍ପଦ
ତୁମ୍ଭଙ୍କୁ ମାଗିବା ପାଇଁ ବଳୁ ନାହିଁ ମନ ।

ଶ୍ରବଣ କର ଏ ଗିର ନିଷ୍ପାପ ଇନ୍ଦ୍ରସୁ
ଧରାର ଏକାଧିପତି ଅନ୍ତଥେସୁ ରଘୁ
ସୁମଧୁର ବଚନରେ ପୁଚ୍ଛିଲେ ବିନୟେ
ବେଦବିଶାରଦଶ୍ରେଷ୍ଠ ମୁନିତନୟଙ୍କୁ ।
ଗୁରୁଙ୍କ ଦକ୍ଷିଣା ଦାନେ ଅସମର୍ଥ ହୋଇ
ଶାସ୍ତ୍ରପାରଦର୍ଶୀ ଗୁଣୀ ଯାଚକ ବ୍ରାହ୍ମଣ,
ଯେବେ ଧନ ଲଭିବା ଲାଗି ରଘୁ ପାଶେ ଆସି
ଫେରିଗଲେ ଭଗ୍ନମନେ ଅନ୍ୟଦାତା ଗୃହେ,
ଏମନ୍ତ ନୂତନ ନିନ୍ଦା ବଂଶେ ଜାତ ହୋଇ
ସତେକି ସକଳ ଯଶ କରିବ ମୋ ନାଶ ।
ସୁପୂଜିତ ମୋର ଏହି ହେତାଗ୍ନି ମନ୍ଦିରେ
ଚତୁର୍ଥ ଅନଳ ପରି ରହ ତପୋଧନ
ଦିନେ ଦୁଇଦିନ ମାତ୍ର, ପ୍ରୟୋଜନ ତବ
ସାଧିବାକୁ, ଯାଉଛି ମୁଁ କରିବ ଯତନ ।
ଅବ୍ୟର୍ଥ ପ୍ରତିଜ୍ଞାବାକ୍ୟ ରଘୁମୁଖୁଁ ଶୁଣି
'ତଥାସ୍ତୁ ତଥାସ୍ତୁ' କହି ବିପ୍ର ମହାଶୟ
ଗଦଗଦେ ଆଶ୍ରା ନେଲେ ହେତାଗ୍ନି ମନ୍ଦିରେ !
ସକଳ ସମ୍ପଦହୀନା ମେଦିନୀକୁ ଏବେ
ମେଦିନୀ-ବାନ୍ଧବ ରଘୁ କରି ନିରୀକ୍ଷଣ,
ଇଚ୍ଛିଲେ କୁବେରଠାରୁ ଆଣିବାକୁ ଧନ,
ଅବ୍ୟାହତ ଥିଲା ଯେଣୁ ତାଙ୍କ ରଥ ଗତି
ମହାଋଷି ବଶିଷ୍ଠଙ୍କ ମନ୍ତ୍ରର ପ୍ରଭାବେ
ସାଗରେ, ଭୂଧର ଶିରେ, ଅନନ୍ତ ଆକାଶେ ।
ପ୍ରଦୋଷେ ପରାକ୍ରମୀ ସେହି ନରମଣି
ଅସ୍ତ୍ରଶସ୍ତ୍ରେ ସଜହୋଇ ରଥର ଉପରେ
ଶୋଇଲେ ବଳେ କାଢ଼ି ଆଣିବାକୁ ଧନ,
ସାମନ୍ତ ସ୍ୱଜନ ପରି କୁବେରକୁ ଗଣି,
ନାନାରତ୍ନେ ପରିପୂର୍ଣ୍ଣ ତାର ଗର୍ଭାଗାରୁ ।
ରଘୁଙ୍କ ସଂକଳ୍ପ ଜାଣି ଭୟେ ଧନପତି
ଯୁଦ୍ଧଯାତ୍ରା ପୂର୍ବରୁ କଲେ ସ୍ୱର୍ଣ୍ଣବୃଷ୍ଟି

ଝଲସିତେ ରଜନୀରେ ତାହାଙ୍କ ଭଣ୍ଡାରେ ।
ଆଚମ୍ବିତେ ଧନପୂର୍ଣ୍ଣ ଗର୍ଭାଗାର ଦେଖି,
ଭଣ୍ଡାର ରକ୍ଷକଗଣ ସବିସ୍ମୟମନେ
ନିବେଦିଲେ ଯାଇ ଏହି ଶୁଭସମାଚାର
ପ୍ରସ୍ତେ ପ୍ରସ୍ଥାନୋଦ୍ୟତ ନୃପଙ୍କ ଛାମୁରେ
ଯୁଦ୍ଧଯାତ୍ରା ଆଗୁଁ ପାଇ କୁବେର ପାଖରୁ,
ବଜ୍ରରେ ଚୂର୍ଣ୍ଣିତମେରୁ ଖଣ୍ଡ ସଦୃଶ
ସୁନ୍ଦର ଉଜ୍ଜ୍ୱଳବର୍ଣ୍ଣ ଏ ସୁବର୍ଣ୍ଣ ରାଶି,
କୌତ୍ସଙ୍କୁ ଭୂପତି ତାହା କରିଲେ ପ୍ରଦାନ ।
ଗୁରୁ ଦକ୍ଷିଣାରୁ ବଳି ସମ୍ପଦ ନେବାକୁ
ଅନିଚ୍ଛୁକ ଯାଚକଙ୍କୁ, ପୁଣି ଯାଚକର
ପ୍ରାର୍ଥନାରୁ ଅତିରିକ୍ତ ଧନ ଦେବା ପାଇଁ
ପ୍ରବୃତ୍ତ ଦାତାକୁ ଦେଖି, ଅଯୋଧ୍ୟା ବାସିଏ
ଉଭୟଙ୍କୁ ପ୍ରଶଂସିଲେ ବିବିଧ ପ୍ରକାରେ ।
ଶତ ଶତ ଓଟ, ଘୋଡା ପୃଷ୍ଠପରେ ଲଦି
ଅତୁଳ ସମ୍ପତ୍ତି ରାଶି, ମୁନିବର କୌତ୍ସ
ଯିବାକୁ ଉଦ୍ୟତ ହୋଇ ଆହ୍ଲାଦିତମନେ
ସ୍ପର୍ଶକରି ଭୂପତିର କହିଲେ ଏସନ :—
ହେ ରାଜନ ! ରାଜନୀତିନିପୁଣ ପ୍ରଜାଏ
ଲଭନ୍ତି ଯେବେହିଁ ଧନ ଧରଣୀ ମଣ୍ଡଳେ
କି ବିଚିତ୍ର ଅଛି ତହିଁ, ଯେଣୁ ତୁମ୍ଭେ ବୀର
ଇଚ୍ଛାମତେ ସବୁବେଳେ ବାଞ୍ଛିତ ବିଷୟ
ସ୍ୱର୍ଗଲୋକୁଁ ଅନାୟାସେ କରିଅଛ ଲାଭ,
ଏ ଭବେ ଅଚିନ୍ତନୀୟ ପ୍ରଭାବ ତୁମ୍ଭର ।
ମନୁଷ୍ୟ ଜନମ ବହି ଏ ମର୍ତ୍ତ୍ୟମଣ୍ଡଳେ
ଯାହା ଯାହା ଲୋକମାନେ କରନ୍ତି ବାସନା,
ମାନବର ସୁଖ ପାଇଁ ଯାହା ଯାହା ଲୋଡା,
ପୁଣ୍ୟବଳେ ତୁମ୍ଭଠାରେ ଅଛି ସେ ସକଳ,
କି ଆଶିଷ କରିବି ମୁଁ ପୁନରୁକ୍ତି ପରି ?
କେବଳ ସନ୍ତାନ ନାହିଁ ତୁମ୍ଭର କୋଳରେ

ଏଣୁ ଆଶୀର୍ବାଦ କଲେ ପ୍ରସନ୍ନ ଚିତ୍ତରେ,
"ଆତ୍ମଗୁଣ ଅନୁରୂପ ପ୍ରିୟତମ ସୁତ
ଲଭ ହେ ଯଶସ୍ୱୀ ନିଜ ଜନକ ପରାଏ ।"
ଏହିରୂପେ ଆଶୀର୍ବାଦ କରି କୌତ୍ସ ମୁନି
ଦାନ ଧନ ଗୁରୁପାଶେ ଗମିଲେ ତ୍ୱରିତ ।
ଜୀବଲୋକ ସୂର୍ଯ୍ୟଠାରୁ ପାଇଲା ପରାଏ
ଅଚିରେ, ମୁନିଙ୍କ ବରେ ନରେନ୍ଦ୍ର-ମହିଷୀ
ଲଭିଲେ ଆଶାପ୍ରଦ ଗର୍ଭ ଯଥାକାଳେ ।
ପ୍ରସବିଲେ ରଘୁରାଣୀ ଦଶମାସ ଅନ୍ତେ
କୁମାରରତନ ସୁତ ବ୍ରାହ୍ମମୁହୂର୍ତ୍ତରେ,
ବ୍ରହ୍ମନାମ ଅନୁଯାୟୀ ଏଣୁ ପିତା ରଘୁ
ରଖିଲେ ସେ ତନୟର ନାମ "ଅଜ" ବୋଲି ।
ତେଜସ୍ୱୀ ଶରୀରେ ଶୌର୍ଯ୍ୟେ ମହତ୍ତ୍ୱ ପ୍ରକାଶେ
ନ ଥିଲା ବଦଳ କିଛି ଏହି କୁମାରର
ଜନ୍ମଦାତା ପିତାସହ, ପ୍ରଦୀପ୍ତ ପ୍ରଦୀପ
ପ୍ରଦୀପକ ଯାସୁଁ ଯଥା ନ ପାଏ ବଦଳ ।
କ୍ରମେ କ୍ରମେ ବାଲ୍ୟକାଳ ଅତିକ୍ରମ କରି
ସବିଧିରେ ଗୁରୁଦତ୍ତ ବିଦ୍ୟା ପଢି ସାରି
ଯୌବନ ସୀମାରେ ଅଜ କଲେ ପଦାର୍ପଣ,
ନବ ଯୌବନରେ ମଞ୍ଜୁ ରାଜପୁତ୍ରେ ଦେଖି
ହେଲେହେଁ ଅଭିଳାଷିଣୀ ରାଜଲକ୍ଷ୍ମୀ ଦେବୀ
ତାଙ୍କ ପାଶେ ଯିବା ପାଇଁ, ସର୍ବତୋଭାବରେ
ରଘୁରାଜ ଆଦେଶକୁ ରହିଲେ ଅନାଇ,
ବରଣଯୋଗ୍ୟା ତନ୍ୱୀ କୁମାରୀ ଯେସନ
ରହଇ ଅପେକ୍ଷା କରି ଜନକ ଆଦେଶ ।
ପୁତ୍ରର ବିବାହକାଳ ଉପସ୍ଥିତ ଜାଣି
ଖୋଜୁଥିଲେ ଭଲ ପାତ୍ରୀ ମନେ ମନେ ଭୂପ,
ଏକାଳେ ବିଦର୍ଭାଧିପ ଭୋଜ ରାଜନଙ୍କ
ପ୍ରେରିତ ବିଶ୍ୱସ୍ତ ଦୂତ ରଘୁଙ୍କ ନିକଟେ
ପ୍ରବେଶି, ଜୁହାର କରି କହିଲା ବିନୟେ,

ଉପଗତ ହେବା ପାଇଁ ଯୁବରାଜ ଅଜ
ଭୋଜ ଭଗ୍ନୀ ଇନ୍ଦୁମତୀଙ୍କର ସ୍ୱୟମ୍ବରେ ।
ଅଜଙ୍କ ବିବାହ କାଳ ଏବେ ଉପସ୍ଥିତ,
ଦ୍ୱିତୀୟରେ ଭୋଜ ବଂଶେ ସମ୍ବନ୍ଧ କରିବା
ମହାଗୌରବର କଥା, ଏହା ଭାବି ଭୂପ
ପ୍ରୀତମନେ ଯିବା ପାଇଁ କରିଲେ ଆଦେଶ
ଯୁବରାଜେ, ସସୈନ୍ୟରେ ଅଜ ଆଡ଼ମ୍ବରେ
ସମୃଦ୍ଧିଶାଳିନୀ ଧନ୍ୟା ବିଦର୍ଭ ନଗରେ ।
ବାହାରିଲେ ଯୁବରାଜ ଶୁଭ ଅନୁକୂଳେ
ସୁସଜ୍ଜିତ ସୈନ୍ୟ ମଧ୍ୟେ ପାଦମିତ୍ରସହ,
ଯିବାବେଳେ ମାର୍ଗେ ତାଙ୍କୁ ନାନା ଉପସ୍ଥରେ
ଉପହାରମାନ ଦେଇ ଗ୍ରାମବାସୀମାନେ
ପ୍ରଚାରିଲେ ରାଜଭକ୍ତି, ଚଟିମାନଙ୍କରେ
ଗ୍ରାମୀଣ ସମ୍ଭାରେ ପୂର୍ଣ୍ଣ ସଜ୍ଜିତ ଶିବିରେ
ସୁଖେ ରଜନୀକାଳ ଯାପି ନରେନ୍ଦ୍ର ତନୟ,
ବିଦେଶ ଗମନ ଦୁଃଖ ତେଜି ମାନସରୁ
ଉଦ୍ୟାନ ବିହାର ସୁଖ ଲଭୁଥିଲେ ମନେ ।
ଏହିରୂପେ ନାନାସ୍ଥାନ ଅତିକ୍ରମ କରି
ଧୂଳି ଧୂସରିତ କେତୁ କ୍ଳାନ୍ତ-ସୈନ୍ୟସହ
ପ୍ରବେଶିଲେ ବୀରମଣି ଉତ୍ଫୁଲ୍ଲ ଆନନେ,
ପବନ କମ୍ପିତ ସ୍ନିଗ୍ଧ ଜଳଲବସିକ୍ତ—
ଶ୍ୟାମଳ କରଞ୍ଜ ବୃକ୍ଷମାଳରେ ଶୋଭିତ
ଶ୍ରମହା-ସୁଖଦା-ରେବା-ତଟିନୀ ତଟରେ ।
ଉପସ୍ଥିତ ହୋଇ ସେହି ସୁରମ୍ୟ ସ୍ଥାନରେ
ହରୁଥିଲେ ପଥଶ୍ରମ ଆନନ୍ଦେ ସେନାଏ,
ଏକାଳେ ଘଟିଲା ଏକ ଅଦ୍ଭୁତ ଘଟଣା,
ସହସା ନର୍ମଦାନୀର ବିଦାରଣ କରି
ଦେଖାଦେଲା ମଦମତ୍ତ ଏକ ବନ୍ୟହସ୍ତୀ
ସମ୍ମୁଖେ, ଉଭୟଗଣ୍ଡୁ ମଦଜଳଧାର
ଧୋଇ ହୋଇଥିଲେ ସୁଦ୍ଧା ତଟିନୀର ଜଳେ,

ସେ ମଦ ଗନ୍ଧରେ ଅନ୍ଧ, ଚୌଦଗୁଁ ଆଗତ,
ଉପରେ ଉଡ୍ଡୀୟମାନ ଭ୍ରମରଙ୍କୁ ଦେଖି
ଜଣାପାଉଥିଲା ତାର ଉଠିବା ସ୍ୱନରୁ
ଜଳ ଭିତରେ ସେ ବୃଢ଼ ବହୁଥିଲା ବୋଝ ।
ଧୋଇ ହୋଇଯାଇଥିଲା ସମ୍ପୂର୍ଣ୍ଣ ରୂପରେ
ଗୈରିକାଦି ଧାତୁରାଗ ତାହାର ଦନ୍ତରୁ,
ଯହୁଁ ତହୁଁ ବସିହୋଇ ଶୋଭା ହୋଇଥିଲା
ସେ ସୁଦୀର୍ଘ ଦନ୍ତବେନି, ତହୁଁ ପଡ଼ିଥିବା
ଲମ୍ବ କଳାରେଖାମାନ ଜହ୍ନୁ ଦେଉଥିଲା
ପଥୁରିଆ ପର୍ବତରେ କ୍ଷଣକାଳ ଆଗେ
ଦନ୍ତ ମାରି ସେ ଗଜେନ୍ଦ୍ର ଖୋଳୁଥିଲା ମାଟି ।
ସଙ୍କୋଚ ବିସ୍ତାର କରି ଯୋରପାଦ ତାର
ତରଙ୍ଗନିବହ ଭେଦି ଉଚ୍ଚ ନାଦରେ
ଧାଇଁଲା ସେ ଗଜବର ତଟ ଅଭିମୁଖେ
ଉପରକୁ ପୁଚ୍ଛ ଟେକି, ପ୍ରବଳ ବେଗରେ
ବନ୍ଧା ହୋଇଥିଲେ ଯହିଁ ପର ହାତୀମାନେ
ତାହାର ଉଦ୍ୟମ ଦେଖି ଜଣାଗଲା ଦୂରୁଁ
ଦଉଡ଼ୁଛି କି ସେ ଦମ୍ଭେ ଭାଙ୍ଗିବା ପାଇଁକି
ଅଜଙ୍କର ଗଜଶାଳା ଦୃଢ଼ ଅର୍ଗଳକୁ ।
ଜଳରେ ପ୍ରବଳବେଗେ ଅସନ୍ତେ ପହଁରି
ଚଞ୍ଚଳ ପାଦରେ ତାର ସଂଗତ ପ୍ରବାହ
ତୀରେ ଲୁଟି ହେଲା ଆଗ, ପଛେ ଶୈଳସମ
ଆକର୍ଷି ବିଶାଳବକ୍ଷେ ଶୈବାଳନିକର
ଉଠିଲା ନର୍ମ୍ମଦାଗର୍ଭୁଁ ସେ ବାରଣବର
ଏକୁଟିଆ ସେ ଗଜର ଗଣ୍ଡସ୍ଥଳ ବେନି
ହୋଇଥିଲା ମଦଶୂନ୍ୟ ଜଳେ ଧୋଇ ହୋଇ,
ବାହାରିଲା ତହୁଁ ପୁଣି ଅନର୍ଗଳ ସ୍ରବେ
ଯୁବରାଜଙ୍କର ହାତୀମାନଙ୍କୁ ନିରେଖି
ସପ୍ତଚ୍ଛଦ ପାଦପର କ୍ଷୀରସମ କଟୁ
ଆଘ୍ରାଣି ଅଭ୍ୟସ୍ତତର ତାର ମଦଗନ୍ଧ

ପଳାଇଲେ ମହାଭୀତ ଯୁଦ୍ଧ ଗଜବୃନ୍ଦ
ମହାନାଦେ, ମାହୁନ୍ତର ଅଙ୍କୁଶ ଆଘାତ
ନ ମାନି, ଉତ୍ତୋଳି ଶୁଣ୍ଡ ଅସ୍ତବ୍ୟସ୍ତ ହୋଇ ।
ଉଠାଇଲ ଅଳକ୍ଷଣେ ସେ କାନନ ଭସ୍ତି
ଶିବିର ଭିତରେ ମହା ତୁମୁଳ ବ୍ୟାପାର,
ପଳାଇଲେ ତୁରଙ୍ଗମେ ଯେଣୁ ତାକୁ ଦେଖି
ଅଧୀରେ ଛିଣ୍ଡାଇ ଦୃଢ଼ ରଥର ବନ୍ଧନ *
ପଡ଼ିଲେ ଭଗ୍ନ ହୋଇ ସ୍ଖଳିବାରୁ ଅକ୍ଷ
ରଥ ସହ ବାମାଗଣ ଅସ୍ତବ୍ୟସ୍ତ ହୋଇ,
ରକ୍ଷିଏ ଯତନେ ତାଙ୍କ ହୋଇଲେ ନିଯୁକ୍ତ,
ନୁହେ ବଧ୍ୟ ବନଚାରୀ ରାଜାମାନଙ୍କର
ଜ୍ଞାତଥିଲା କୁମାରଙ୍କୁ ଭଲରୂପେ ଏହା,
ଅଳ୍ପ ଆକର୍ଷଣ କରି କାର୍ମୁକକୁ ଏଣୁ
ଆଘାତ କରିଲେ ବାଣ, ତାଙ୍କ ଅଭିମୁଖେ
ଧାଇଁଥିବା ମଦମତ୍ତ ସେ କରିକୁମ୍ଭରେ
କେବଳ ତାହାକୁ ଏଥୁ ନିବାରିବା ପାଇଁ ।
ଶରବିଦ୍ଧ ହେବାମାତ୍ରେ ହସ୍ତୀରୂପ ଛାଡ଼ି,
ଚମକାଇ ଆଶ୍ଚର୍ଯ୍ୟ ସେ ସୈନ୍ୟକୁଳ ମନେ ।
ଲଭିଲା ସ୍ଫୁରିତ ପ୍ରଭାପୁଞ୍ଜ ଉଦ୍ଭାସିତ
ସ୍ୱର୍ଗୀୟ ସୁନ୍ଦରତର ଦେବକଳେବର ।
କଳ୍ପଦ୍ରୁମ ପୁଷ୍ପରାଜି ସ୍ୱପ୍ରଭାବେ ଆଣି
କୁମାର ମସ୍ତକେ ଧୀରେ କରଣ ବର୍ଷଣ,
ନିବେଦିଲ ତହୁଁ ସେହୁ ବାକ୍‌ପଟୁ ପୁରୁଷ
ଉରରେ ପୃଥୁଳ ସ୍ଥୁଳ ମୁକ୍ତାହାର କାନ୍ତି
ଦ୍ୱିଗୁଣ ଉଜ୍ଜ୍ୱଳ କରି ଦଶନ ପ୍ରଭାରେ ।
ପୂର୍ବେ ଅନ୍ଧ ଗର୍ବେ ମୁହିଁ ମାତଙ୍ଗ ଋଷିଙ୍କ
କୋପେ ପଡ଼ି, ଶାପଯୋଗେ ମତ୍ତଗଜରୂପୀ
ହୋଇଥିଲି ବୀରମଣି, କିନ୍ତୁ ଅଟେ ମୁହିଁ

* ଯୁତ

ପ୍ରିୟଦର୍ଶନ ନାମକ ଗନ୍ଧର୍ବ ପୁତ୍ରର
ପ୍ରିୟପୁତ୍ର, ସୁବିଖ୍ୟାତ ନାମ ପ୍ରିୟମ୍ବଦ ।
ଋଷିଙ୍କ କୋପରେ ପଡ଼ି ଜ୍ଞାନଶୂନ୍ୟ ହୋଇ
ଶାପମୁକ୍ତି ପାଇଁ ମୂର୍ଦ୍ଧି କରନ୍ତେ ଗୁହାର
ବିନୟେ ପ୍ରଣାମ କରି ତାହାଙ୍କର ପଦେ,
ଶାନ୍ତ ହେଲେ ମହାଋଷି, ଅହେ ଯୁବରାଜ,
ଅଗ୍ନି କିମ୍ବା ରବିଙ୍କର ତେଜ ଉତ୍ତାପରେ
ଅଳକ୍ଷଣ ପାଇଁ ଉଷ୍ଣ ହେଲେହେଁ ସଲିଳ,
ନୈସର୍ଗିକ ଗୁଣ ତାର ଅଟେ ଶୀତଳତା ।
ଆଦେଶିଲେ ତପୋଧନ "ଇକ୍ଷ୍ୱାକୁବଂଶୀୟ
ଯୁବରାଜ ଅଜ ଯେବେ କରିବେ ଭେଦନ
ବାଣମୁନେ ତବ କୁମ୍ଭ, ତେବେ ପୁନରାୟ
ଏହି ମନୋହର ତନୁ ଲଭିବ ନିଶ୍ଚୟ"
ଦରଶନ ଆଶେ ଭୂପ ! ରହିଥିଲି ଠାବ
ସେହିଦିନୁ, ମହାଗଜ କଳେବର ବହି,
ଶାପମୁକ୍ତ ହେଲି ଏବେ, ତୁମ୍ଭରି ବଳମେ,
ଏଣୁ ତାର ବିନିମୟେ ପ୍ରତି ଉପକାର
ନ କରିବି ଯେବେ କିଛି, ତେବେ ଚିରଦିନ
ଅକୃତଜ୍ଞ ହୋଇ ଦିନ କାଟିବି ଦୁଃଖରେ ।
ତେଣୁ ହେ କୁମାରବର ଘେନ ମୋହଠାରୁ
ଏ ଗନ୍ଧର୍ବ ଅସ୍ତ୍ରବର, ସମ୍ମୋହନ ନାମ
ଅଟଇ ଏହାର ଖ୍ୟାତି, ପ୍ରୟୋଗ ସହାରେ
ଭିନ୍ନ ଭିନ୍ନ ମନ୍ତ୍ରଯୁକ୍ତ, ଏ ଅସ୍ତ୍ର ପ୍ରୟୋଗେ
ନ ହୁଅଇ ବୈରୀ ହିଂସା, ଯେଣୁ ଏକାଠବେଳେ
ନ ମରି ବିପକ୍ଷମାନେ ବନ୍ଧୁବେଳଯାଏ
ରହନ୍ତି ମୂର୍ଚ୍ଛାଗତ ସମର କ୍ଷେତ୍ରରେ ।
ଲଭ ହୁଏ ଜୟଲକ୍ଷ୍ମୀ ଏଣୁ ସଦାବେଳେ
ଏହି ଅସ୍ତ୍ର ପ୍ରେରକର ସମର କ୍ଷେତ୍ରରେ ।
କିହାରେ କି ପ୍ରୟୋଜନ ପ୍ରକାଶ କରିଲ
ମୋତେ ମାରିବାକୁ ଯାଇ ମୂହୂର୍ତ୍ତି ମାହତେ

ଯେଉଁ ଦଶା, ହେ ଯଶସ୍ୱୀ ତାହାର ବଦଳେ
କୃତଜ୍ଞତା ଚିହ୍ନପରି ଦେଉଅଛି ମୁହିଁ,
ପ୍ରତ୍ୟାଖ୍ୟାନ କର୍କଶତା ନ କର ପ୍ରୟୋଗ,
ପ୍ରାର୍ଥନା କରଇ ତୁମେ ଅହେ ଦୟାମୟ ।
ପବିତ୍ର ନର୍ମଦାନଦୀ ନୀରେ ସ୍ନାନ କରି
ଉଚାରି ତଥାସ୍ତୁ ବାଣୀ, ଉତ୍ତରାସ୍ୟ ବସି
ଘେନଲେ ଅଜଙ୍କଠାରୁ ଗନ୍ଧର୍ବାସ୍ତ୍ର ମନ୍ତ୍ର
କୁମାରମଣ୍ଡଳମଣି ଶାସ୍ତ୍ରଜ୍ଞ ରାଘବ ।
ଅଚିନ୍ତ୍ୟ କାରଣେ ପଥେ ଦୈବଘଟଣାରୁ
ଜନ୍ମିଲା ପ୍ରଗାଢ଼ ପ୍ରୀତି ବେନିଜଣଙ୍କର
ରମଣୀୟ ଚୈତ୍ରରଥ ଉଦ୍ୟାନ ଅଭିମୁଖେ
ଚଳିଲେ, ଅପର ପୁଣି ସୁଖାସନେ ବସି
ଗମିଲେ ସୌରାଜ୍ୟ ରମ୍ୟ ବିଦର୍ଭ ନଗରେ ।
ଅଜ ଆଗମନେ ଅତି ଆହ୍ଲାଦିତ ମନେ,
ବିଦର୍ଭ ଈଶ୍ୱର ଭୋଜ କଲେ ଅଭ୍ୟର୍ଥନା
ଆଦରେ ଆଗେଇ ଯାଇ ପୁରସୀମା ଯାଏ,
ଆବାହନକରେ ଯଥା ଊର୍ମିମାଳା ସିନ୍ଧୁ
ସମୁଦିତ ଊର୍ମିମାଳେ ପୂର୍ଣ୍ଣସୁଧାକରେ ।
ରମାଭରେ ଭଜେ ଭରି ଭୋଜ ନୃପଙ୍କର
ଆଗେ ଆଗେ ଯୁବରାଜ ନମ୍ରୋଭୂତ କରି
ନିଜ ମାନ୍ୟବନ୍ଧୁଲତା ଭୋଜଙ୍କ କାର୍ଯ୍ୟରେ
ଉପସ୍ଥିର କଲେ ତାଙ୍କୁ ଏପରି ସ୍ୱତରେ ।
ଯା ଦେଖି ଆଗତଜନେ ମଣିଲେ ମନରେ
ଅଜଙ୍କୁ ଗୃହସ୍ଥ, ଭୋଜେ ଅତିଥି ସ୍ୱରୂପେ,
ବାସ୍ତବିକ ଯାତ୍ରୀମାନେ ଯୁବାର ବିନୟେ,
ହାତ ଯୋଡ଼ିକରି ଆଗେ ଠିଆହୋଇଁ ଅଛି,
ସେମାନଙ୍କ ସହସ୍ରଣେ ଶିବିରର ଶୋଭା
ଏପାଖେ ସେପାଖେ ଯୁବ ଦେଖିଲ ଉତ୍ତରୁ,
ସୁନ୍ଦର ତୋରଣ ପାଖେ କ୍ଷୁଦ୍ର ବେଦୀପରେ
ମଙ୍ଗଳ ସୁବର୍ଣ୍ଣଘଟ ଶୋଭି ପଟ୍ଟବାସେ

ବିସ୍ତରିଲେ ସ୍ୱବଂଶଜ, ମଦନ ଯେସନ
ଜଘନ ଉରଜ ଶୋଭି ନବ ଯଉବନେ ।
ଅପର ନାରୀରେ ରତ ସ୍ୱକାନ୍ତଙ୍କୁ ଦେଖି
ଗୋପନାମାନଙ୍କ କାନ୍ତା ଯଥା ବଦ୍ଧ ଛଣେ,
ଅନେକ ବିନୟେ ଧୀରେ ଅସଇ ବଣକୁ,
ତେଣେ କମନୀୟା ସେହି କନ୍ୟା ରତନକୁ
(ଯା ଯୋଗୁଁ ନୃପତିମାନେ ସ୍ୱୟମ୍ବରେ ଠୁଳ)
ଦେଖିବାକୁ ସମ୍ମୁଖ ଯୁବରାଜଙ୍କର
ନୟନରେ, ନିଦ୍ରାଦେବୀ ବଦ୍ଧିତ ବିଳୟେ
ଅନ୍ତ ମୁହୂର୍ତ୍ତେ ଆସି ହେଲେ ଉପଗତ ।
ଶିଶିହୋଇ ବିଛଣାରେ ଲଭିପାଇଥିଲା
କୁଙ୍କୁମାଦି ଅଙ୍ଗରାଗ ଯାହାଙ୍କ ଅଙ୍ଗରୁ,
କୁଣ୍ଡଳ ଚୁମ୍ବିତ ଗଣ୍ଡ ସେ ରଘୁ-ସୁତଙ୍କୁ
ଜାଗରିତ କଲେ ପ୍ରାତେ ସମାନବୟସ୍କ
ସୂତପୁତ୍ରମାନେ ଉଚ୍ଚେ ନାନା ସ୍ତୁତି କରି ।
ପାହିଲାଣି ବିଭାବରୀ ହେ ସୁବୋଧବର !
ଛାଡ଼ ଶଯ୍ୟା ତେଣୁ ଏବେ, ଦ୍ୱିଜଗେ ବିଭକ୍ତ
ଏ ଧବର ସ୍ୱର ସିନା କରଛନ୍ତି ଧାଡ଼ା,
ଏକ ଭଗ ଦେଖ ତହିଁ ବହୁଛନ୍ତି ଏବେ
ଜନ୍ମଦାତା ଗୁରୁ ତବ, ଜାଗରତ ହୋଇ
ବୀରେନ୍ଦ୍ର ଅପର ଭଗ କର ହେ ବନ୍ଦନ ।
ଉତ୍କଣ୍ଠିତା ଲକ୍ଷ୍ମୀଦେବୀ କାନ୍ତକୁଳେଶ୍ୱରୀ
ନିଦ୍ରାବଶେ ତୁମ୍ଭ ଯୋଗେ ଉପେକ୍ଷିତା ହୋଇ,
ଯାହାସହ କରୁଥିଲେ ଚକ୍ଷୁବିନୋଦନ,
ପରିତ୍ୟାଗ କରି ତବ ଆନନ ସୁଷମା
ହେଲେଣି ବିଗତଲକ୍ଷ୍ମୀ ସେ ଚନ୍ଦ୍ରମା ଏବେ ।
ସୁଚପଳ ତୋଳାଗୋଟି ଏଣୁ ତୁମ୍ଭ ନେତ୍ର
ଅମନ୍ଦ ମିଳନଯୁକ୍ତ କମଳ ସହିତ
ଏକାବେଳେ ସୁରପତେ ଉନ୍ମେଷିତ ହୋଇ
ବେନଙ୍କ ତୁଳନା ଏବେ କରନ୍ତୁ ବେଢ଼ଏ ।

ପୁଷ୍ପବରେ ସୁବାସିତ ତୁମ୍ଭ ଶ୍ୱାସସହ
ସମାନ ହେବାକୁ ସିନା ପ୍ରାତଃ ସମୀରଣ
ରବିକରେ ବିରସ୍ଫୁଟ ସଜସରସିଜକୁଁ
ସଉରଭ ସ୍ୱେଗକର ହରୁଅଛ ଦେଖ
ଶିଥିଳ ସୁମନମାଳ ପାଦପ ଡାଳରୁ ।
ମାଣ୍ଡିତ ମୁକ୍ତାଫଳ ପର ମନୋହର
ଦେଖ ବୀର ଶୁକ୍ଳବର୍ଣ୍ଣ ହିମବିନ୍ଦୁଜାଳ,
ତରୁତାମ୍ରବର୍ଣ୍ଣ ନବ ପଲ୍ଲବରେ ପଡ଼ି
ବଢ଼ାଇ ଦ୍ୱିଗୁଣ କାନ୍ତି ଶୋଭଇ କେମନ୍ତ
କରଜା ଧବଳ ଦନ୍ତ କାନ୍ତିରେ ଉଜ୍ଜ୍ୱଳ
ଅଧରୋଷ୍ଠେ ତୁମ୍ଭ ମୃଦୁ ଈଷାହାସ୍ୟପରି ।
ପ୍ରକାଶ ହୋଇବା ଅଗ୍ରୁଁ ଉଦୟ ଅଚଳେ
ତପନ ପ୍ରତାପନିଧି, ଝଟିତ ଅନ୍ତରୁ
ଧରାରୁ ଅନ୍ଧାରରାଶି କରନ୍ତ ସଂହାର,
ଶତ୍ରୁହନ୍ତା ଧନୁର୍ଦ୍ଧାରୀ ତୁମ୍ଭେ ଥାଉଁ ଥାଉଁ
ପିତା ତବ ଅରିନାଶ କରିବେ କି ନିଜେ ।
ଆକର୍ଷଣ କରି ପାଖେ ମୂଳର ଶୃଙ୍ଖଳ,
ଉଭୟ ପାର୍ଶ୍ୱରେ ନିଦ୍ରାସୁଖ ଅନୁଭବୀ,
ଉଠୁଛନ୍ତି ଶଯ୍ୟାଛାଡ଼ି ତବ ଗଜବୃନ୍ଦ,
ତରୁଣ ଅରୁଣ ରାଗେ ହୋଇ ଜଳ ଜଳ
ଦଶନଯୁଗଳ ଯାଙ୍କ, ପ୍ରକାଶିତ କରେ
ଗିରୀନ୍ଦ୍ର ଗୈରିକ ତଟ ଉତ୍‌ଖାତନକୀତା ।
ହେ ଯଶସ୍ୱୀ ଦୀର୍ଘପଟ୍ଟମଣ୍ଡପରେ ବନ୍ଧା
ପାରସ୍ୟ ଦେଶୀୟ ତୁମ୍ଭ ଶ୍ରେଷ୍ଠ ବାଜୀବ୍ରଜ,
ସୁଖ-ନିଦ୍ରା ପରିହରି ମଳନ କରନ୍ତି,
ସମ୍ମୁଖେ ଚାଟିବା ପାଇଁ ଥୁଆ ହୋଇଥିବା
ଧବଳ ସୈନ୍ଧବଶିଳା ମୁଖଉଷ୍ମାନଳେ ।
ଉପହାର ପୁଷ୍ପହାର ମଳିନତା ଭଜି
ଗୋଟି ଗୋଟି ବିରଳରେ ରହିଲଣି ଦେଖ
ଉଜ୍ଜ୍ୱଳ କିରଣମାଳ ଗୁଡ଼ଯାକ ଦୀପ,

ଲଭିଲଣି ଦୀପଶିଖା, ଅଭ୍ୟାସ କରଇ
ପିଞ୍ଜରସ୍ଥ କଳକଣ୍ଠ ଏଣୁ ଶୁକପଙ୍କ୍ତୀ,
ତୁମ୍ଭ ଜାଗରଣେ ଯୁକ୍ତ ଆମ୍ଭ ସ୍ତୁତି ଗିର ।
ଏଣୁରୂପେ ବନ୍ଦୀଗଣ ମୃଦୁ ସ୍ତୁତି ଗୀତେ
ଶଯ୍ୟାସ୍ଥ ଜାଗରିତ ହେଲେ ଯୁବରାଜ
ଉଠନ୍ତ ଯେସନ ପ୍ରାନ୍ତ ଶୟନ ଉପେକ୍ଷି
ସୁପ୍ରତୀକ ଦେବଦନ୍ତୀ, ଗାଙ୍ଗେୟ ପୁଳିନ୍ତ
ଆନନ୍ଦ ମଧୁରରବେ ରାଜହଂସଙ୍କର ।
ସମାପି ପ୍ରଭାତକୃତ୍ୟ ଶାସ୍ତ୍ର ଅନୁସାରୀ
ସଖାବାଳେ ଅଟେକହେଲେ ଯୁବରାଜ ଅଜ,
ଦକ୍ଷଭୃତ୍ୟ ଯୋଗେ ରଚି ମନୋମତ ବେଶ,
ରାଜାକୁଳ ସମାକୀର୍ଣ୍ଣ ସ୍ୱୟମ୍ବର ସ୍ଥଳେ ।

---

# ଷଷ୍ଠ ସର୍ଗ

ଦେଖିଲେ ସେ ସଭାସ୍ଥଳେ ଉପସ୍ଥିତ ହୋଇ
କୁତୂହଳେ ରଘୁସୁତ, ରାଜଉପଯୁକ୍ତେ
ସୁସଜ୍ଜିତ ମନୋହର ମଞ୍ଚର ଉପରେ
ସିଂହାସନେ ବସିଛନ୍ତି ଚାରୁବେଶଧର
ସକଳ ସୌଭାଗ୍ୟବନ୍ତ ନରପତିମାନେ,
ଆକାଶେ ବିମାନସ୍ଥିତ ଦେବଗଣ ପରି ।
ରତିଙ୍କ ବିନୟେ ପ୍ରୀତ ସଦାଶିବ ବରେ
ପୁନର୍ବାର ଅଙ୍ଗପ୍ରାପ୍ତ କମନୀୟକାନ୍ତ—
ମୂର୍ତ୍ତିମାନ ମନ୍ମଥର ପରି ଯୁବରାଜ
ପ୍ରବେଶ ହୁଅନ୍ତେ ସେହି ସଜ୍ଜିତ ସଦନେ,
ମଞ୍ଜୁମୂର୍ତ୍ତି ଦେଖି ତାଙ୍କ ଯେତେ ଭୂପଗଣ
ଇନ୍ଦୁମତୀ ଲାଭଆଶା ତେଜିଲେ ମନରୁ ।
ସୋପାନ୍ତ ସୋପାନେ କ୍ରମେ ଚରଣ ପକାଇ
ଗଜରାଜ ଦେଖାଇବା ପଥେ କୁତୂହଳେ
ଉଠିଲେ ସେ ମଣ୍ଡପରେ ରଘୁରାଜ-ସୁତ,
ଉଠଇ ଯେସନେ ଉଚ୍ଚ ଭୂଧର ଶିଖରେ
ଅକ୍ଳେଶେ କେଶରୀ ଶିଶୁ ନିର୍ଭୀକ ସ୍ୱଭାବରେ ।
ନାନାବର୍ଣ୍ଣେ ସୁରଞ୍ଜିତ, ଗୃଦରେ ଶୋଭିତ
ଜରୀ କର୍କରିତ ରତ୍ନଖଚିତ ଆସନେ
ବସି ରଘୁରାଜ-ସୁତ ଅଜ ଯୁବରାଜ
ସ୍ୱକାନ୍ତ ପ୍ରଭାରେ ଶର ହେଲେ ଉପମିତ
ଶିଖୀପୃଷ୍ଠାରୋହୀ ଦେବ ଷଡାନନ ସହ ।
ମହୋଜ୍ଜ୍ୱଳ ପ୍ରଭାପୁଞ୍ଜେ ଚକ୍ଷୁ ଚମକାଇ
ନୃପମାନଙ୍କର ମଧ୍ୟେ ଶତ ଶତ ଗୁଣେ
ଅଚିରେ ବିଭକ୍ତ ହୋଇ ଲକ୍ଷ୍ମୀଦେବୀ କାନ୍ତି
ମନୋହର, ଉଗ୍ରନୀଳ ସୁନୀଳଗଗନେ
ବାରିଦ ପଂକ୍ତିରେ ଯେସନେ ଚଳ ବିଦ୍ୟୁଲ୍ଲତା ।
ମହୋଜ୍ଜ୍ୱଳ ଅଳଂକାରମାଳେ ମଣ୍ଡି ହୋଇ

ମହାମୂଲ୍ୟ ସିଂହାସନେ ବିଜେ କରିଥିଲେ
ତହିଁ ଯେତେ ନରପତି, ସେମାନଙ୍କ ମଧ୍ୟେ,
ବସି ଯୁବରାଜ ଅଜ ରତ୍ନସିଂହାସନେ
ସ୍ୱକାନ୍ତି ପ୍ରଭାରେ ଶୂର ହେଲେ ସୁଶୋଭିତ,
କଳ୍ପଦ୍ରୁମ ମଣ୍ଡଳରେ ପାରିଜାତ ଯଥା
ପୁରଜନଙ୍କର ଅକ୍ଷି ସହସ୍ରା ତହିଁତେ
ସର୍ବନୃପଙ୍କୁ ଛାଡ଼ି ଅଜଙ୍କ ଉପରେ
ନିପତିତ ହୋଇ ଯାଇ, ଭୃଙ୍ଗଶ୍ରେଣୀ ଯଥା
ପୁଷ୍ପିତ ପାଦପ ଛାଡ଼ି ଉଡ଼ି ଦଳେ ଦଳେ
ପଡ଼ନ୍ତି କାନନମତ୍ତ ମାତଙ୍ଗ ଗଣ୍ଡରେ ।
ବଂଶବିବରଣଜ୍ଞାନୀ ବୈତାଳିକ ଗଣ
ଚନ୍ଦ୍ରବଂଶୀ ସୂର୍ଯ୍ୟବଂଶୀ ଭୂପତିମାନଙ୍କ
ଆରମ୍ଭନ୍ତେ ଯଶୋଗାନ, ମୃଦୁପବନରେ
ଚନ୍ଦନ ଧୂପର ଧୂମ ସଞ୍ଚାରିତ ହୋଇ
ଉଠନ୍ତେ କେତନବେଦୀ, ପୁର ଦିଗ୍‌ମଣ୍ଡଳ
ମାଙ୍ଗଳିକ ବାଦ୍ୟଧ୍ୱନିସହ ଶଙ୍ଖରବ
ବାଜନ୍ତେ ଗମ୍ଭୀର ଘୋଷେ ମେଘନାଦ ପରି,
ନଗରର ଉପକଣ୍ଠ-ଉପବନେ ସ୍ଥିତ
କଳାପୀକୁଳ କୁରଙ୍ଗେ ନାଚନ୍ତି ଉଲ୍ଲାସେ ।
ବିଜେହେଲେ ମଞ୍ଚଶ୍ରେଣୀ ମଧ୍ୟ ରାଜମାର୍ଗେ
ପରିଣୟ ଯୋଗ୍ୟବେଶା ସ୍ୱୟମ୍ବରାର୍ଥିନୀ
ରାଜଜେମା ଇନ୍ଦୁମତୀ, ମହାରମ୍ଭେ ହୋଇ
ପଥିଜନେ ପରିବୃତା, ଅଶେଷା ସୁନ୍ଦରୀ
ନରସ୍କନ୍ଧେ-ଧୃତ-ରମ୍ୟ ହେମତାମଯାନେ ।
ଶତ ଶତ ନୟନର ଏକମାତ୍ର ଲକ୍ଷ୍ୟ
ବିଧାତାଙ୍କ ଅଲୌକିକ ସୃଷ୍ଟି ସ୍ୱରୂପିଣୀ
ଜେମାମଣି ଇନ୍ଦୁମତୀ ପ୍ରବେଶନ୍ତେ ତହିଁ
ନୃପମାନଙ୍କର ହୃଦ ତାହାଙ୍କ ସୌନ୍ଦର୍ଯ୍ୟେ
ଲଖିଗଲା ଅନାୟତ୍ତେ, ରହିଲା କେବଳ
ଦେହମାତ୍ର ସେମାନଙ୍କ ସିଂହାସନପରେ ।

ଜେମାଙ୍କୁ ଲଭିବା ପାଇଁ ନରେନ୍ଦ୍ର-ସମାଜ
ସେମାନଙ୍କ ପ୍ରଣୟର ଅଗ୍ରଦୂତୀ ପରି
କେତେମତେ ହାବଭାବ କରିଲେ ପ୍ରକାଶ,
ନବପଲ୍ଲବର ଶୋଭା ପାଦପେ ଯେସନ ।
ଲୀଳା କମଳର ସ୍ୱଚ୍ଛ ମୃଣାଳଦଣ୍ଡକୁ
ଧରି କେହିଁ ନରମଣି; ଘୂରାଇଲେ ରଙ୍ଗେ
ଭ୍ରମରମାନଙ୍କୁ ତଳ ପାଖୁଡ଼ା ଅଘାତେ,
ଉଡାଇ ମଣ୍ଡଳାକାରେ ସେ ପଦ୍ମକୋଷର
ମନୋଜ୍ଞ ସୌରଭମୟ ପରାଗନିକର ।
ସ୍କନ୍ଧଦେଶୁଁ ଖସିପଡ଼ି ମଞ୍ଜୁ ମୁକ୍ତାହାର
ମଣିମୟ ବାଜୁବନ୍ଧ ଅଗ୍ରଭାଗେ ଯାଇ
ଲାଗିଯାଇଥିଲା, କେହିଁ ବିଳାସୀ ଭୂପର
ଯଥାସ୍ଥାନେ ସନ୍ନିବେଶ କଲେ ସେ ତା ନେଇ
ଅଳ୍ପ ଲେଉଟାଇ ତାଙ୍କ ସ୍ୱଚ୍ଛଚନ୍ଦ୍ରାନନ ।
କେହ ସ୍ତୃତୁ ସ୍ୱହାଣିଙ୍କ କଟସ୍ୱେ ଚାଳି
ଅଙ୍ଗୁଳି ସଙ୍କୋଚ କରି କେହୁ ନିଜ ପଦ
ହେମମୟ ପଦପୀଠେ କରିଲେ ଘର୍ଷଣ
ବକସ୍ୱେ ଅବସ୍ଥିତ ନଖର ପ୍ରଭାରେ
ସେ ପାଦପୀଠକୁ ଭୂପ କରି ସୁରଞ୍ଜିତ ।
ବାମଭୁଜ ରଖି କେହୁ ଆସନ ଅର୍ଦ୍ଧରେ
ବନ୍ଧୁ ସହିତରେ ସୁଖେ କରଲେ ଆଳାପ
ବାହୁପରେ ଭର ଦେଇ ଅର୍ଦ୍ଧବକ୍ର ହୋଇ
ବସିବାରୁ ସ୍କନ୍ଧଦେଶ ହୋଇଲା ଉନ୍ନତ
ସ୍ୱସ୍ଥାନରୁ ରତ୍ନମାଳ ଖସାଇ ତଳକୁ ।
କରକମଳେ କେ ଅବା କଲେ ବିଦାରଣ
ବିଳାସିନୀ ବାଳାଙ୍କର କର୍ଣ୍ଣଭୂଷାରୂପୀ
ଅତ୍ୟଳ୍ପ ପାଣ୍ଡୁର କାନ୍ତ କେତକୀଦଳକୁ ।
ନିଜ ରତ୍ନମୁଦ୍ରିକାର ପ୍ରଭାରେ ଉଜ୍ଜ୍ୱଳ
ଗଜଦନ୍ତ ପଶାକାଠିମାନ କେହୁ ଯିବା
ଓଲଟ ପାଲଟ କଲେ ବିଳାସ ଭଙ୍ଗୀରେ

ଧ୍ୱଜରେଖା ସୁଶୋଭିତ କରତଳେ ଧରି ।
ଥିଲେହେଁ ନର୍ଦ୍ଦିଷ୍ଟ ସ୍ଥାନେ ପୁର୍ବପରି ରହି
ଖସି ଯାଉଅଛି ଯେବେ ଆପଣା ସ୍ଥାନରୁ
ଦେଖାଇ ଏମନ୍ତ ଭାବ, କେହିଁ ନରନାଥ
ନବେଶ କରିଲେ ନେଇ ସ୍ୱକର କରିଟେ,
ସେ କରିଟ ପ୍ରଶ୍ନପୁଞ୍ଜେ ରଞ୍ଜି ନଖାବଳୀ ।
ସୁନନ୍ଦା ନାମରେ ଧାଇ ଜେମାଦେଈଙ୍କର
ଥିଲା ରାଜଅନ୍ତଃପୁରେ, ଜାଣିଥିଲା ସେହି
ରାଜାମାନଙ୍କର କୁଳ ସ୍ୱଭାବ ସକଳ,
ପୁରୁଷ ପରିଏ ବାମା ବାକ୍ୟପଟୁ ଥିବାରୁ
ମଗଧ ରାଜାଙ୍କ ପାଖେ, ଆଗେ ସୁକୁମାରୀ—
କୁମାରୀଙ୍କୁ ନେଇ ଧୀରେ କହିଲା ଏସନ ।
ମଗଧର ଅଧୀଶ୍ୱର ଏହି ଯୁବାମଣି
ଗମ୍ଭୀର ପ୍ରକୃତି ସଦା ପରଜାରଞ୍ଜନେ
ବିଚକ୍ଷଣ, ଶରଣାର୍ଥୀମାନଙ୍କର ଏହି
ଅଟନ୍ତି ଆଶ୍ରୟଦାତା, ପରନ୍ତପ ନାମ
ସବୁମତେ ଏହାଙ୍କର ହୋଇଛି ସାର୍ଥକ ।
ଥିଲେହେଁ ଅସଂଖ୍ୟ ରାଜା ଅବନୀମଣ୍ଡଳେ
ପୃଥିବୀ ଏହାଙ୍କ ଯୋଗେ ଏକା ରାଜନ୍ୱତୀ
ତାରା ଗ୍ରହ ନକ୍ଷତ୍ରରେ ହେଲେହେଁ ଭୂଷିତା
ବିଭାବରୀ, ଜ୍ୟୋତିଷ୍ମତୀ ବିନା ଚନ୍ଦ୍ର ଯୋଗେ ।
ଅବିଚ୍ଛିନ୍ନ ଯଜ୍ଞକର୍ମ କରନ୍ତି ଏ ଭୂପ
ଏଣୁ ନିମନ୍ତ୍ରଣ ଦେଇ ସେ ଯଜ୍ଞସ୍ଥଳରେ
ରଖନ୍ତି ସାଦରେ ସଦା ଶଚୀବଲ୍ଲଭଙ୍କୁ,
ଇନ୍ଦ୍ରଙ୍କର ଅଦର୍ଶନେ ବିରହବିଧୁରା
ସ୍ୱର୍ଗପୁର ରାଣୀଙ୍କର ପାଣ୍ଡୁ ଗଣ୍ଡସ୍ଥଳେ,
ମନୋହର ପାରିଜାତ ଫୁଲଶନ୍ୟ ହୋଇ
ବିଶଇ ଅଳକାବଳୀ ଧୂସର ବରଣ ।
ଏହି ବରଣୀୟ ଭୂପ କର ଧରିବାକୁ
ଅଭିଳାଷୀ ହୁଅ ଯେବେ, କରଗୋ ! ତା'ହେଲେ

ଶୁଭ୍ର ସୌଧ ଗବାକ୍ଷରେ ଲୋଚନଲଲାମୀ
ପୁଷ୍ପପୁର ରମଣୀଙ୍କ ନୟନ ରଞ୍ଜନ ।
ଏମନ ସୁନନ୍ଦାଠାରୁ ଶୁଣି ଶଶିମୁଖୀ
ଅନାଇଁ ମଗଧେଶ୍ବରେ କିଛିହିଁ ନ କହି,
ବକ୍ରଭଙ୍ଗୀଶୂନ୍ୟ ଏକ ନମସ୍କାର କରି
ବାହୁଡ଼ିଲେ ତାଙ୍କ ପାର୍ଶ୍ବୁଁ, ପ୍ରଣାମ ସମୟେ
ଦୂର୍ବାଙ୍କ ମଧୂକମାଳା ଦୋଳାଇ ସଧୀରେ ।
ସମୀରଣ ସମୁତ୍ଥିତା ମୃଦୁ ବୀଚିମାଳା,
ଏକ ପଦ୍ମଠାରୁ ଅନ୍ୟ ପଦ୍ମ ନିକଟକୁ
ମାନସର ମରାଳକୁ ନିଅଇ ଯେସନ,
ମଗଧମଣ୍ଡନ ପାଶୁଁ ଅନ୍ୟ ନୃପ ପାଶେ
ତେସନ କୋମଳ ଧାଈ ସୁନନ୍ଦା ସାଦରେ
ଘେନିଯାଇ ସୁକୁମାରୀ ନରେନ୍ଦ୍ରବାଳାକୁ
କହିଲ ଗୋ ସୁଲକ୍ଷଣି ! ଦେଖ ଦେଖ ଏହି
ଅଙ୍ଗଦେଶ ଅଧୀଶ୍ବର, କାମନା କରନ୍ତି
ସୁରଅଙ୍ଗନାଏ ସଦା ଯଉବନ ଭୋଗ
କାନ୍ତକାନ୍ତ ଏ [illegible]ବାର, ବାରଣମାନଙ୍କୁ
ଗଜଶାସ୍ତ୍ର ବିଚକ୍ଷଣ ମାହୁନ୍ତଙ୍କ ଯୋଗେ
ଶିକ୍ଷା ଦେଇ, ଭୁଞ୍ଜୁଛନ୍ତି ଦେବେନ୍ଦ୍ର ସମ୍ପଦ
ବସତି କଲେହେଁ ମର୍ତ୍ତ୍ୟେ ଏ ରାଜନବର !
ରଣେ ସଦା ନାଶ କରି ବିପକ୍ଷ ପକ୍ଷଙ୍କୁ
ବିରହବିଧୁରା ତାଙ୍କ ବନିତାଙ୍କ କଣ୍ଠୁ
ଛିଡ଼ାଇ ବଲ୍ଲଭଦତ୍ତ ହାର ମହାତେଜେ,
ମୁକ୍ତାଫଳ ପରି ସ୍ଥୂଳ ଅଶ୍ରୁ ବିନ୍ଦୁମାଳ
ଥୋପିଥୋପି ପକାଇଣ ସୁଥୂଳ ଉରଜେ
ପିନ୍ଧାଇ ଦିଅନ୍ତି ଏହି ପ୍ରତାପୀ ନରେଶ
ସୂତ୍ରବିନା ଗୁନ୍ଥି ତହିଁ ମଞ୍ଜୁମୁକ୍ତାମାଳ ।
ଲକ୍ଷ୍ମୀ ସରସ୍ବତୀ ବେନି ଭିନ୍ନ ଭିନ୍ନ ସ୍ଥାନେ
ସ୍ବଭାବେ କରନ୍ତି ବାସ, ମାତ୍ର ନିର୍ବିବାଦେ
ରହନ୍ତି ଏହାଙ୍କ ପାଶେ ଏକତ୍ର ଆନନ୍ଦେ,

ସୁମଧୁର ଗୀରେ, ଅଙ୍ଗ ସୁନ୍ଦର ଗଠଣରେ
ତୁମ୍ଭେ ଏକା ଅଟ ଲକ୍ଷ୍ମୀ ସରସ୍ୱତୀ ପରି,
ଏଣୁ ସେମାନଙ୍କ ପରି ଏ ଭୂପଙ୍କୁ ବର
ହେ କଲ୍ୟାଣି ! ଭୁଜଙ୍କାଳା ହୁଅ ଗୋ ଦ୍ୱିତୀୟା ।
ଅଙ୍ଗରାଜ ଅଙ୍ଗଦେଶୁଁ ପାଲଟାଇ ଆଖି
ଚଳ ବୋଲି ମୃଦୁସ୍ୱରେ କହିଲେ କୁମାରୀ
ମାତୃସଖୀ ସୁନନ୍ଦାକୁ, ଅଙ୍ଗଦେଶ ପତି
ନ ଥିଲେ ସେ ରୂପବନ୍ତ ନୁହଇ ଏମନ୍ତ,
ସୁନ୍ଦର ଗ୍ରାହିକା ଶକ୍ତି ରାଜକୁମାରୀଙ୍କ
ନ ଥିଲା ଏ ରୂପ ନୁହେଁ, ମାତ୍ର ସଂସାରରେ
ଭିନ୍ନ ଭିନ୍ନ ରୁଚି ଘେନି ବସନ୍ତି ସକଳେ ।
ନବୋଦିତ ଚନ୍ଦ୍ରପରି ସେ ଚନ୍ଦ୍ରମୁଖୀକୁ
ଅନ୍ୟ ଏକ ରାଜା ତହୁଁ ଦେଖାଇ ଆଗରେ
କହିଲା ସୁନନ୍ଦା ମୃଦୁ ବଚନେ ସୁନ୍ଦରି !
ରିପୁକୁଳ ଧୂମକେତୁ କମନୀୟ ମୂର୍ତ୍ତି
ଅବନ୍ତିନାୟକ ଏହୁ, ସୁବିଶାଳ ଉର,
ଦୀର୍ଘ ବାହୁ, କୃଶ କଟୀ ବର୍ତ୍ତୁଳ ଆକାରେ
ପାଉଅଛି କେତେ ଶୋଭା, ବିଶ୍ୱକର୍ମାଙ୍କର
ଶାଣଯନ୍ତ୍ର ଯୋଗେ ସଦ୍ୟ କୁନ୍ଦା ହୋଇଥିବା
ତେଜୋମୟ ସୂର୍ଯ୍ୟପରି ଦିଶନ୍ତି ଉଜ୍ଜ୍ୱଳ ।
ଅଖଣ୍ଡ ପ୍ରତାପଶାଳୀ ଏ ଭୂପତିମଣି
ଯୁଦ୍ଧଯାତ୍ରା କଲାବେଳେ ମହାଆଡ଼ମ୍ବରେ
ଅଗ୍ରଗାମୀ ବାଜୀ ରାଜି ଟାପୁ ସମୁତ୍ଥିତ
ଧୂଳିରେ ମଳିନ ହୁଏ ସାମନ୍ତ ରାଜାଙ୍କ
ଚୂଡ଼ାମଣି ନିକରର ଦିବ୍ୟ ତେଜଃପୁଞ୍ଜ ।
ଏହାଙ୍କ ନଗର ପାଖେ ବିରାଜି ଅଛନ୍ତି
ମହାକାଳ ନିକେତନେ ଚନ୍ଦ୍ରଚୂଡ଼ାମଣି
ମହାଦେବ, ତାଙ୍କ ଶିର ଚନ୍ଦ୍ରଚନ୍ଦ୍ରିକାରେ
ପ୍ରିୟତମା ସହ ଏହୁ କୃଷ୍ଣପକ୍ଷେ ସୁଦ୍ଧା
କୌମୁଦୀ ଉଜ୍ଜ୍ୱଳ ରାତ୍ରି କରନ୍ତି ଯାପନ ।

କରୁଛି କି ମନ ତବ ବିହରିବା ପାଇଁ
ସିପ୍ରାନଦୀ ବୀଚି ମୃଦୁ ବାତରେ କମ୍ପିତ
ଉଦ୍ୟାନ ପଂକ୍ତିରେ ଏହି ଯୁବା ନୃପସହ ?
ତା'ହେଲେ ଏହାଙ୍କ କର ଧର କରସ୍ନେରୁ !
ସ୍ୱ ପ୍ରତାପେ ଶତ୍ରୁ-ପକ୍ଷ-ବଶ୍ୟତ୍ୱ-କାରକ,
ମିତ୍ର-ପଦ୍ମ-ପ୍ରକାଶକ ଯେ ଭୂପଙ୍କଠାରେ
ଆସକ୍ତ ନୋହିଲା ଜଳେ ସୁକୁମାରୀ ମନ,
ଇନ୍ଦୁ-ପ୍ରଣୟିନୀ ଧନୀ କୁମୁଦିନୀ କେବେ
ରସଇ କି ଦେଖି ରବି ସମୁଜ୍ୱଳ ପ୍ରଭା ?
କମଳକେଶରକାନ୍ତି ସୁଦନ୍ତ ଶୋଭିନୀ
ବିଧାତାର ସୁମଧୁର ସୃଷ୍ଟି ସ୍ୱରୂପିଣୀ
ଗୁଣବତୀ ତନ୍ୱୀ ନୃପନନ୍ଦନୀଙ୍କୁ ତହୁଁ
ଅନୂପଦେଶର ନୃପ ସନ୍ନିଧିକୁ ନେଇ
ସୁନନ୍ଦା, କହିଲ ପୂର୍ବେ କାର୍ତ୍ତବୀର୍ଯ୍ୟନାମେ
ଥିଲେ ଏକ ଯୋଗୀ-ରାଜା, ମହାତେଜୋବନ୍ତ,
ବାହାରେ ସହସ୍ରବାହୁ ସଂଗ୍ରାମେ ତାହାଙ୍କ
ସଦାକାଳେ, ସ୍ଥାପିଥିଲେ ବାହୁବଳେ ସେହୁ
ନିଜ ଯଜ୍ଞସ୍ତମ୍ଭାବଳୀ ଅଷ୍ଟାଦଶ ଦ୍ୱୀପେ,
ତାଙ୍କପରି ରାଜା କେହି ନ ଥିଲେ ସେକାଳେ,
କାର୍ଯ୍ୟେ ପାପ ଆଚରିବା କଥା ତେଣେ ଥାଉ
ଅନ୍ୟାୟ ବାସନା ଜାତ ହୋଇବା ମାତ୍ରକେ
ପ୍ରଜାମାନଙ୍କର ମନେ, ଧନୁଶର ଧରି
ଅନାୟାସେ ଧର୍ମ୍ମରକ୍ଷା ବ୍ରତେ ସଦା ବ୍ରତୀ
ମାନବ ନିୟନ୍ତା ଏହି ପ୍ରତାପୀ ନରେଶ,
ନାଶ କରୁଥିଲେ ତାହା ଉଚିତ ଶାସନେ ।
ଅନ୍ୟ ବୀରଙ୍କର କଥା ପଚ୍ଛରୁଛି କିଏ,
ବାସବବିଜୟୀ ନିଜେ ଦଶାନନ ପୂର୍ବେ
ଧନୁର୍ଗୁଣେ ବନ୍ଦୀ ହୋଇ ନିଶ୍ଚଳ ଭାବରେ
ମୁହୁର୍ମୁହୁ ଦଶମୁଖେ ଦୀର୍ଘଶ୍ୱାସ ଛାଡ଼ି
ଅନୁକ୍ଷଣ ରହି ରହି ଯା'ଙ୍କ କାରାଗାରେ

ରହିଥିଲ ଅନାସୃଷ୍ଟେ ବନ୍ଧୁବନ ଯାଏ ।
ତାହାଙ୍କ ବଂଶରେ ଜାତ ଏ ପ୍ରତାପୀ ଭୂପ
ମହାଜ୍ଞାନୀ, ଅବିରତ ବେଦ ବିଶାରଦ
ପଣ୍ଡିତମାନଙ୍କ ସଙ୍ଗ କରନ୍ତି ଆଳାପ,
ରହିଛନ୍ତି ସଦାବେଳେ ଏହାଙ୍କ ନଗରେ
ଆନନ୍ଦେ, ଅଚଳା ହୋଇ ବନ୍ଦନୀୟା ଲକ୍ଷ୍ମୀ
ଚଞ୍ଚଳା ଅପବାଦକୁ ଦୂରକରି ହେଲେ ।
ଅଗ୍ନିଙ୍କୁ ତପରେ ଏହୁ ପରିତୃପ୍ତ କରି,
ତାଙ୍କର ସାହାଯ୍ୟ ଲଭି ରଣ ସମୟରେ,
ଷହୀକାଳବହ୍ନିସମ ପର୍ଶୁରାମଙ୍କର
ସର୍ବଦା ଶୋଣିତ ଲିପ୍ତ ଖଡ୍ଗ ଦାଢ଼କୁ
ପଦ୍ମଦଳ ଧାରପରି ମଣନ୍ତି ମନରେ ।
ଦେଖିବାକୁ ମନ ଯେବେ ବଳାଅ ବାଳୀଶ !
ପ୍ରାସାଦ ଗବାକ୍ଷେ ବସି, ପ୍ରିୟତମ ମେଳେ
ଜଳବେଣୀରମ୍ୟା ରେବା ତଟିନୀର ଶୋଭା,
ତେବେ ଏହି ଦୀର୍ଘବାହୁ ପ୍ରତୀପ ଭୂପଙ୍କ
ଅଙ୍କଲକ୍ଷ୍ମୀ ହୁଅ ଆଗୋ ପଙ୍କଜବଦନା !
ମେଘ ଆବରଣ ମୁକ୍ତ ସମୁଜ୍ଜ୍ୱଳ କାନ୍ତି
ଶାରଦ-ପୂର୍ଣ୍ଣିମାଚନ୍ଦ୍ର, ନ ହୁଅଇ ଯଥା
ନଳିନୀର ରୁଚିକର, ତେମନ୍ତେ ବୀରବର
ନରକୁଳେଶ୍ୱର ପ୍ରିୟଦର୍ଶନ ପ୍ରତୀପ
ହେଲେ ନାହିଁ କୁମାରୀଙ୍କ ନେତ୍ରାନନ୍ଦକର ।
ଲେଉଟି, ସୁନନ୍ଦା ତହୁଁ କହିଲା, ଯାହାଙ୍କୁ
ଦଳାହରିତାଳ ଗୌର ଦେଖୁଛ ଅଗରେ
ସୁଷେଣ ତାହାଙ୍କ ନାମ, ସୁରସେନ ନାଥ
ଶୁଦ୍ଧାଚାରୀ, ଜନପୁର ଶାସନ କରନ୍ତି
ଏହାଙ୍କର ଯଶୋଗୀତ, ଅଟନ୍ତି ଏ ଶୂର
ଜନକ ଜନନୀ ବେନି କୁଳର ପ୍ରଦୀପ
ଯାଗ କାର୍ଯ୍ୟେ ରତସଦା, ଜନମି ଅଛନ୍ତି
ବିଖ୍ୟାତ କଦମ୍ବବଂଶୁଁ, ବୈରୀଭବ ତେଜି

ସିଦ୍ଧଆଶ୍ରମରେ ଯଥା ବନ୍ୟଜୀବଗଣ
ବିହରନ୍ତି, ତେଣ୍ଟେ ସର୍ବ ସ୍ୱଭାବ ବିରୋଧୀ
ଗୁଣାବଳୀ, କରଛନ୍ତି ଏହାଙ୍କ ଆଶ୍ରୟ,
ଅନ୍ୟାନ୍ୟ ବିରୋଧ ଭାବ ପାଶୋରି ମନରୁ ।
ସୁଧାକର ପରି ପୁରେ ବିରାଜେ ଯାହାଙ୍କ
ନୟନରଞ୍ଜନ ଅତି ସୁଶୀତଳ କାନ୍ତି,
ମାତ୍ର ବୈରିକୁଳ ହର୍ମ୍ୟଚୂଳେ ଚଳାପାଙ୍ଗି !
ଉଠିଲେଣି ତୃଣାଙ୍କୁର ମରକତରୁଚି ।
ଅନ୍ତଃପୁର ବିହାରଣୀ କୁରଙ୍ଗ ନୟନା
ପୀନପୟୋଧରୁ ସ୍ରସ୍ତ ଚନ୍ଦନ ସକଳ
ଧଉତ ହେବାରୁ ଯା'ଙ୍କ ଜଳକେଳିକାଳେ,
ପ୍ରବାହିତା ହୋଇଲେହେଁ ମଥୁରା ନଗରେ
ଶୋଭନ୍ତି କଲିନ୍ଦ କନ୍ୟା, କେତେ ଶୋଭାପାଏ
ଭଗୀରଥୀ ପ୍ରବାହରେ ମିଶିଗଲା ପରି ।
ନାଗେନ୍ଦ୍ର କାଳୀୟ ପୂର୍ବେ ଖଗେନ୍ଦ୍ର ତ୍ରାସରେ
ଲୁଚିଥିଲା ଯମୁନାର ଅନନ୍ତ ଗରଭେ,
ତାହାକୁ ଅଭୟ ଦେଇ ଭୂପେନ୍ଦ୍ର ସୁଷେଣ
ଲଭିଛନ୍ତି ଏକ ମଣି, ଦେଖ ଗୋ କେମନ୍ତ
କଣ୍ଠଲମ୍ବି ସେହି ମଣି ଔବ୍ୟଝ୍ଠକରେ ।
ଝଲକାଇ ଉରସ୍ଥଳ କରନ୍ତି ଲକ୍ଷିତ
କୌସ୍ତୁଭରେ ବିଭୂଷିତ କମଳାକାନ୍ତଙ୍କୁ,
କାନ୍ତପଦେ ଏକାନ୍ତରେ ବର ଏ ଯୁବାଙ୍କ,
ମନୋହର ଚୈତ୍ରରଥସମ ବୃନ୍ଦାବନେ
ମୃଦୁଳ ପଲ୍ଲବ ସ୍ନିଗ୍ଧ ଆସ୍ତରଣଶୋଭି
ପୁଷ୍ପତଳେ, ଅଲୋଦର କରିବ କୃତାର୍ଥ,
ଯୌବନଶିରୀକୁ ଯେବେ ପ୍ରଣୟ କୌତୁକେ ?
ମନୋହର ଗୋବର୍ଦ୍ଧନ ଗିରିକନ୍ଦରରେ
ମୟୂରଙ୍କ ନୃତ୍ୟ ଯେବେ ଦେଖିବ ସୁନ୍ଦର,
ଶିଳାଙ୍କରୁ ସୁରଭିତ ଜଳଲବ ସିକ୍ତ
ଚକ୍ଷୁଣପାଷାଣ ପରେ ବସି ଆନନ୍ଦରେ ?

ସିନ୍ଧୁମୁଖେ ପ୍ରବାହିଣୀ ତଟିନୀ ଯେସନ
ଗନ୍ତବ୍ୟମାର୍ଗରେ ଭେଟି ମହାମହୀଧରେ
ଅଟକି ତହିଁରେ କ୍ଷଣେ, ଅନ୍ୟପଥ ଦେଇ
ଅତିକ୍ରମ କରି ଯାଏ ସେ ଗିରିବରକୁ,
ଅବନ୍ତିମଣ୍ଡଳାନାଥ ଭୋଜଙ୍କ ଭଗିନୀ
ତେସନ, ସୁଷେଣ ତାଙ୍କେ ଉପେକ୍ଷିତ ହୋଇ
ରହି ତହିଁ କ୍ଷଣକାଳ, ଗନ୍ଧବହ କରି
ଘଡ଼ି ତାଙ୍କୁ, ସମ୍ମୁଖକୁ କରିଲେ ଗମନ,
ମାନସ ହଂସଙ୍କୁ ଯଥା ବରିବା କମଳେ ।
ଅପର ନୃପତି ପାଶେ ନେଇ କୁମାରୀକୁ
ଉପମାତା ତହିଁ ଧୀରେ କହିଲ ଗୋ ଏହି
କଳିଙ୍ଗ ଦେଶର ରାଜା, ରିପୁଦର୍ପହାରୀ
ହେମାଙ୍ଗଦ ନାମେ ଖ୍ୟାତ, ଅନାଥ ରୂପସୀ !
କେୟୂର ଭୂଷିତଭୁଜ ଦେଖ କି ରୁଚିର,
ମହେନ୍ଦ୍ର ଭୂଧର ସମ ସାରବନ୍ତ ଏହି
ହେମାଙ୍ଗଦ, ସୁବିଖ୍ୟାତ ରାଜନ ଅଟନ୍ତି
ନୀଳ ଜଳଧିର ପୁଣି, ମହେନ୍ଦ୍ରଗିରିର,
ଅଭିଯାନକାଳେ ଯାଙ୍କ କୁଳାଚଳପତି (୧)
ମହେନ୍ଦ୍ର ପର୍ବତବର, ଗଜପରି ଦିଶେ,
ମଦସ୍ରାବୀ ସୈନ୍ୟଗଜ ଛଳେ ଆଗେ ଆଗେ ।
ଧନୁର୍ଦ୍ଧାରୀ ଅଗ୍ରଗଣ୍ୟ ଏ ନରବରଙ୍କ
ଗୁଣ ଘର୍ଷେ ହୋଇ ହୋଇ ବାମ କରେ, ଦେଖ
ହେମନ୍ତ ଅସିତବର୍ଣ୍ଣେ ଜଳାରେଖା ଦିଶେ,
ଦେଖି ମନେ ହୁଏ ପ୍ରତେ, ସତେକି ଏ ଭୂପ
କଜ୍ଜଳାକ୍ତ ଅଶ୍ରୁଜଳେ ଶ୍ୟାମଳବରଣ
ରିପୁରାଜ ଲକ୍ଷ୍ମୀଙ୍କର ଚରଣକୁ ବଳେ
ବନ୍ଦୀ କରିଛନ୍ତି ଦୃଢ଼େ ସ୍ୱଭୁଜ ବେଡ଼ନରେ ।
ସୌଧପୃଷ୍ଠ ବାତାୟନ ଅଳଙ୍କୃତ ହୁଏ

(୧)—ମହେନ୍ଦ୍ର ସପ୍ତକୁଳାଚଳ ଅନ୍ତର୍ଗତ ।

ଲୁଚଖାଚମାଳ ଯାର, ସେହୁ ରତ୍ନାକର
ତୂର୍ଯ୍ୟଧ୍ୱନି କଲ୍ଲୋଳର ମୃଦୁମନ୍ଦ୍ର ନାଦେ
ଉଠାଏ ଏହାଙ୍କୁ ସୁଖ ଶଯ୍ୟାରୁ ସକାଳେ ।
ଏହାଙ୍କ ସହିତ ଯେବେ ପୂର୍ଣ୍ଣଚନ୍ଦ୍ରମୁଖୀ !
ବିହରନ୍ତି ପୟୋନିଧି ତଟେ କୁତୂହଳେ,
ଲୁଟିର ଲବଙ୍ଗଫୁଲ ସଉରଭବାହୀ
ସୁଶୀତଳ ଗନ୍ଧବହ ଦ୍ୱୀପାନ୍ତରୁ ଆସି
ସେବଇ ଦମ୍ପଙ୍କୁ ସଦା, ଅପନୋଦ କରି
ଶ୍ରମ ସ୍ୱେଦବିନ୍ଦୁମାଳ ସୁକୁମାର ଦେହୁଁ ।
ସେ କାଳେ ସଙ୍ଗୀତ ପରି ହିନ୍ତାଳ କାନନ
ମଧୁର ମର୍ମର ଧ୍ୱନି ଶୁଣାଇବ ରଙ୍ଗେ ।
ଦେବ ପ୍ରତିକୂଳେ ଯଥା ଯାଆନ୍ତି ଲେଉଟି
ଦୂରରୁ ପୁରୁଷାକାରେ ଉପନୀତା ଲକ୍ଷ୍ମୀ,
ତେଣେ ଜେମା ଇନ୍ଦୁମତୀ ହେଲେହେଁ ଲୋଭିତା
ଧାତ୍ରୀ ପ୍ରଲୋଭନବାକ୍ୟେ, ଫେରି ଚଳିଗଲେ
ଅନ୍ୟ ପାଖେ, ହେମାଙ୍ଗଦେ ପରିତ୍ୟାଗ କରି ।
କଙ୍କଣୀ ସୁନନ୍ଦା ତହୁଁ ଜେମା ସହ ଯାଇ
ରୂପବନ୍ତ ନାଗପୁର ନୃପଙ୍କ ପାଖରୁ
କହିଲା ଗୋ ଦେଖ ଦେଖ ଚକୋରନୟନା !
କେମନ୍ତ ଗମ୍ଭୀରେ ଏହି ତେଜସ୍ୱୀ ଯୁବକ
ବସିଛନ୍ତି ସ୍ୱର୍ଣ୍ଣାସନେ, ଅତ୍ୟନ୍ତ ସରଳ
ଅଟଇ ଏହାଙ୍କ ମନ, ହସି ହସି ସଦା
ଯେମନ୍ତ ମଧୁରାଳାପ କରନ୍ତି ସ୍ୱପୁରେ
ତେମନ୍ତ କହାନ୍ତି ଦୁଃଖେ ଶତ୍ରୁ ମହିଳାଙ୍କୁ,
ନିଜ ମହା ପ୍ରତାପରେ ଯମପୁରେ ପ୍ରେରି
ସେମାନଙ୍କ ପ୍ରିୟତମ ପ୍ରାଣବଲ୍ଲଭଙ୍କୁ ।
ନିବାରିଲେ ଯେହୁ ବିନ୍ଧ୍ୟଗିରିର ଉନ୍ନତି,
ସମୁଦ୍ରର ଜଳଶୋଷି ଉଦ୍‌ଗାରିଲେ ଯେହୁ,
ପ୍ରୀତିଭରେ ଶୁଦ୍ଧାତ୍ମା ସେ ଅଗସ୍ତ୍ୟ ମୁନି
ପଚାରନ୍ତି ତାହାଙ୍କର ଶୁଭସ୍ଥାନ କଥା,

ଅଶ୍ୱମେଧ ଯଜ୍ଞକାର୍ଯ୍ୟ ଶେଷ କରି ଯେବେ
ବହ୍ନାନ୍ତ ମାଜଣାବଧି ଏହି ନରନାଥ ।
ଦୁର୍ଲ୍ଲଭ ଶାସ୍ତ୍ରକ ଏକ ଲଭିଛନ୍ତି ଏହି
ଶିବଙ୍କୁ ତପରେ ତୋଷି, ସେ ଶର ପ୍ରଭାବେ
କାହାକୁ ଗଣନ୍ତି ନାହିଁ ସମର ପ୍ରାଙ୍ଗଣେ ।
ଫୁଲ୍ଲଇନ୍ଦୀବରଶ୍ୟାମସୁନ୍ଦର ମୂରତି
ଅଟନ୍ତି ଏ ନରମଣି, ତୁମ୍ଭେ ଜେମାମଣି
ସ୍ୱଭାବେ ଗଉର ଅଟ ଗୋରଚନା ପରି,
ପ୍ରଣୟସଙ୍ଗମରଙ୍ଗ ଉତ୍ସବ କାଳରେ
ଶ୍ରୀଅଙ୍ଗଶାୟିନୀ ହେଲେ ଏ ଯୁବା ଭୂପଙ୍କ,
ମେଘରେ ବିଜୁଳିଲତା ଜଡ଼ିଲେ ପରି
ହେବ ଏ ହେନଙ୍କ ପକ୍ଷେ ଦିଶିବ ସୁନ୍ଦର ।
ସୁନନ୍ଦାର ଉପଦେଶ ସୁନ୍ଦରୀ ହୃଦୟେ
ନୋହିଲା ପ୍ରବେଶ ତଳେ, ଦିନ ଅବସାନେ
ସୂର୍ଯ୍ୟକନା ବିନିଦ୍ରିତା ପଦ୍ମିନୀକୋରକେ
ନବୋଦିତ ଶଶିକର ପାରଇ କି ପଶି ?
ଇନ୍ଦୁମତୀ ମନଜାଣି ଉପମାତା ତହୁଁ
ଅନ୍ୟ ଏକଯୁବା ପାଶେ ଉପସ୍ଥିତ ହୋଇ
କହିଲା କନକଲତା ! ଅନାଅ ଏଣକୁ
କେମନ୍ତ ସୁନ୍ଦର ଏହି ପାଣ୍ଡ୍ୟଦେଶାଧିପ,
ସୁରଞ୍ଜିତ କରି ରକ୍ତଚନ୍ଦନେ ସ୍ୱତନୁ,
ସ୍କନ୍ଧରେ ଲମ୍ବାଇ ରମ୍ୟ ମୁକୁତାର ହାର
ଦିଶନ୍ତି ଅରୁଣରାଗେ ରକ୍ତସାନୁଶୋଭୀ,
ଝରେନ୍ଦ୍ରାଶ୍ରି ଗିରିରାଜ ହିମାଳୟ ପରି ।
ଜନସ୍ଥାନ ଅବମର୍ଶ ଶଙ୍କା କରି ମନେ
ବଳଦୃପ୍ତ ଦଶାନନ ଏହାଙ୍କ ସହିତ
ଆଗ ସନ୍ଧି କରି କଷ୍ଟେ ଦେବଲୋକେ ପଛେ
ଯାଇଥିଲା ସୁରପୁର ବିଜୟ ଆଶାରେ ।
ପ୍ରସିଦ୍ଧ କୁଳୀନ ଏହି ଷୋଡଶପଣ୍ଡଙ୍କର
କିଶୋର ! ଗ୍ରହଣ କରି ଯଥାବିଧିପାଣି

ସମୁଦ୍ର-ମେଖଳା-ମଞ୍ଜୁ-ଦକ୍ଷିଣ ଦିଗର
ପାଣ୍ଡ୍ୟ ରାଜଲକ୍ଷ୍ମୀସମ, କୁହ ଗୋ ସହଚରୀ
ନାଗବଲ୍ଲୀ ବଳୟିତ ଗୁଆଗଛେ ପୂର୍ଣ୍ଣ
ଦେବତାବାଞ୍ଛିତ ରମ୍ୟ ମଳୟ ପର୍ବତେ
(୧) ଏଳାଲତା ଆଲିଙ୍ଗିତ ଚନ୍ଦନବୃକ୍ଷରେ
ଶ୍ୟାମଳ-ତମାଳ-ପତ୍ର ମୃଦୁ ଆସ୍ତରଣେ
ବିହରିବ ଯେବେ ସଦା ଇଚ୍ଛାଅନୁକୂଳେ
ସେତେମତେ ସ୍ୱୀକାର କର ପାଣ୍ଡ୍ୟନାଥଙ୍କର
ରୂପଗୁଣ ବ୍ୟକ୍ତ କଲ ଉକ୍ତିରେ ସୁନନ୍ଦା
ନମାନିଲ ତହିଁ ମନ ଇନ୍ଦୁମତୀଙ୍କର ।
ବର୍ଷାବାରିବିନ୍ଦୁସ୍ନେହୀ ଚାତକ କେବେ କି ?
ରସଇ ଉଲ୍ଲାସେ ସ୍ୱଚ୍ଛ ପଦ୍ମାକରେ ଯାଇ ।
ସଞ୍ଚାରଣୀ ଦୀପଶିଖା ଅତିକ୍ରମ କଲେ,
ରଜନୀରେ, ହର୍ମ୍ୟଶ୍ରେଣୀ ହୁଅଇ ଯେସନ
ଅନ୍ଧକାରେ ସମାଚ୍ଛନ୍ନ, ତେଣେ ସ୍ୱୟମ୍ବର
ସଞ୍ଚରଣଶୀଳାବାଳା, କରିଲେ ଗମନ
ଯାହାକୁ ଯାହାକୁ ଛାଡ଼ି, ସେହି ସେହି ନୃପ
ଲଜ୍ଜାରେ କାଳିମାଭିଳ ଦିଶିଲେ ବିବର୍ଣ୍ଣ ।
ପ୍ରବେଶ ହୁଅନ୍ତେ ତହିଁ ମନ୍ଦୁର ଗନ୍ଧରେ
ଯୁବରାଜ ଅଜ ଅଗେ ବରମାଳାକରେ
ସୁରୁଶୀଳା ନୃପବାଳା, ବରିବେ କି ନାହିଁ
ଏହି ଭାବନାରେ କ୍ଷଣେ ବ୍ୟାକୁଳିତ ହେଲେ
କୁମାର, ସେକାଳେ ତାଙ୍କ ଦକ୍ଷିଣ ବାହୁର
ସ୍ପନ୍ଦନେ କେୟୂରକୋଠୀ କମ୍ପି ଘନଘନ
ଦୂର କଲା ମନ୍ତୁ ସେହି ସଂଶୟ ସତ୍ୱରେ ।
ସର୍ବଦୋଷଶୂନ୍ୟ ରାଜକୁମାରଙ୍କୁ ଦେଖି,
କୁମାରୀ ବିରତହେଲେ ଯିବାକୁ ଅପର
ରାଜାପାଖେ, ପ୍ରଫୁଲ୍ଲିତ ମଞ୍ଜୁ ଉପବନେ

(୧) (ଏଳା)—ଅଳାଇଚ ।

ମୁକୁଳ ପୁଷ୍ପିତ ଚୂତ ସହକାର ତରୁ
ମଧୁକରୀ, ରସଜ୍ଞ ? ଅନ୍ୟ ବୃକ୍ଷେ ଯାଇ ?
ଇନ୍ଦୁପ୍ରଭ ଇନ୍ଦୁମତୀ ଭୋଜ ଭଗିନୀଙ୍କ
ମାନସ, ଚଳନ୍ତି ଯୁବା ରଘୁସୁତଠାରେ
ଅନୁମାନ କର, କାବ୍ୟରଚନାଚତୁରୀ
ଉପମାତା ସବସ୍ତାରେ ଭୂଷିଲ ଏସନ :—
ଥିଲେ ଅତି ପୂର୍ବକାଳେ ଇକ୍ଷ୍ୱାକୁ ବଂଶରେ
ପ୍ରସିଦ୍ଧ କକୁତ୍‌ସ୍ଥ ନାମେ ଏକ ଶ୍ରେଷ୍ଠ ରାଜା
ଖ୍ୟାତଯଶା, ବହୁଛନ୍ତ ତାହାଙ୍କରଠାରୁ
ଉତ୍ତର କୋଶଳେଶ୍ୱର ସଦାଗସ୍ତୁଗଣ
ସଂଶ୍ଲାଘନୀୟ ଏହି କାକୁତ୍‌ସ୍ଥ ଉପାଧି ।
ପରେନ୍ଦ୍ର ସେ ବୃଷରୂପୀ ଶତଙ୍କ ପିଠିରେ
ମାହେଶ୍ୱରୀ ଲୀଳା ରଣେ ବହୁ ଅବହେଳେ,
ସଚକିତ ପତ୍ରଲେଖା ଦେଉଥିଲେ ପୋଛି
ଦାନବରମଣୀଙ୍କର ପାଣ୍ଡୁଗଣ୍ଡସ୍ଥଳ ।
ସ୍ୱାଭାବିକ ମୂର୍ତ୍ତି ଯେବେ ବହୁଥିଲେ ଇନ୍ଦ୍ର
ତାଙ୍କସହ ଏକାସନେ ବସୁଥିଲେ ସେହୁ
ସୁରଗଜ ଐରାବତ ପୃଷ୍ଠେ ଅମାରୀରେ,
ସେ କଟୀର ଅସ୍ଫାଳନେ ଘଷି ହେଉଥିଲ
ଯାହାଙ୍କର ବହୁମୂଲ୍ୟ ବାହୁ ଅଳଙ୍କାର
ଦେବରାଜଙ୍କର ଶୂନ୍ୟ ବାଜୁବନ୍ଧ ସହ,
ତାଙ୍କ କୁଳେ ଜନ୍ମିଥିଲେ କୁଳର ପ୍ରଦୀପ
ପ୍ରସିଦ୍ଧ ଦିଲୀପଭୂପ, ସ୍ୱବାହୁବଳରେ
ସମ୍ପାଦନ କରି ଯେହୁ ଅନେଶତ ଥର
ଅଶ୍ୱମେଧ ମହାଯଜ୍ଞ, କଲେ ନାହିଁ ପୂର୍ଣ୍ଣ
ଶତସଂଖ୍ୟା; ଇନ୍ଦ୍ରଙ୍କର ଈର୍ଷା ରକ୍ଷା ପାଇଁ ।
ଯାହାଙ୍କ ବିଶାଳ ମହୀ ଶାସନକାଳରେ
କେଳି ପ୍ରାଙ୍ଗଣର ଅର୍ଦ୍ଧ ପଥରେ ନିଦ୍ରିତା—
ମଦ ଉନ୍ମାଦକ ମଦ୍ୟ ନିଶାରେ ବିହ୍ୱଳା
ନର୍ତ୍ତିକାମାନଙ୍କ ଦେହୁ ଖସିଲ ଦୁକୂଳ

ଉଡ଼ାଇ ନେବାକୁ ତୀବ୍ର ପ୍ରଭଞ୍ଜନ ସୁଦ୍ଧା
ନ କରେ ସାହସ କେବେ, ହାତ ବଢ଼ାଇବ
ହରିବାକୁ କିଏ ପୁଣି ଆବରଣମାନ ।
ସେହି ଦିଲୀପଙ୍କ ସୁତ ରଘୁ ନରନାହା
ପିତୃପଦ ଅନୁସରି ପାଳନ୍ତି ଧରଣୀ,
ବିଶ୍ୱଜିତ ମହାଯଜ୍ଞ ସମାଧି ଯେ ଏବେ
ଚଉଦିଗୁଁ ସମାହୃତ ଯେତେ ଧନରାଶି
ସେ ଯଜ୍ଞଦକ୍ଷିଣାରୂପେ ସବୁ ଦାନ କରି
ମାଟିପାତ୍ର ରଖିଛନ୍ତି ମାତ୍ର ତାଙ୍କ ପାଖେ ।
ଯାହାଙ୍କ ତ୍ରିକାଳବ୍ୟାପୀ ଅବିଚ୍ଛିନ୍ନ ଯଶ
ଅଗମ୍ୟ ଉତ୍ତୁଙ୍ଗ ଗିରି, ଲଙ୍ଘି ରତ୍ନାକର,
ପ୍ରବେଶି ପାତାଳପୁରେ, ବ୍ୟାପି ରହିଅଛି
ଦେବଲୋକେ କାହା ସାଧ୍ୟ ସଂଖ୍ୟା କରେ ତାର ।
ସୁରପତି ଇନ୍ଦ୍ରଠାରୁ ଜୟନ୍ତ ପରିଏ
ରଘୁଠାରୁ ଜନ୍ମିଛନ୍ତି ଏ କୁମାରମଣି
ଶିଖିବା ସମୟୁ ଏବେ ହେଲେହେଁ ଏହାଙ୍କ
ଧୁରନ୍ଧର ଜନକର ସହ ବହିଛନ୍ତି
ତୁଲ୍ୟରୂପେ ଗୁରୁତର ଏ ମହୀର ଭାର ।
କୌଳିନ୍ୟେ; ସୌନ୍ଦର୍ଯ୍ୟଶୀଳେ, ନବଯଉବନେ
ବିନୟାଦି ଗୁଣଗ୍ରାମେ ସବୁମତେ ଏହୁ
ତୁମ୍ଭ ଅନୁରୂପ ବର, ବରି ଏ ଯୁବାଙ୍କୁ
ମଣି-କାଞ୍ଚନର ଯୋଗ କର କାଞ୍ଚନାଙ୍ଗି !
ସୁନନ୍ଦା ବଚନ ଶେଷେ ନରେନ୍ଦ୍ରନନ୍ଦିନୀ
ଲଜ୍ଜା-ସଙ୍କୋଚିତ-ନେତ୍ରେ ଅନାଇ ଅଧୀରେ
ପ୍ରଣୟ ଉତ୍ଫୁଲ୍ଲ ସ୍ନିଗ୍ଧ-ଦୃଷ୍ଟିରେ ଅଜଙ୍କୁ
ସତେକି ସେ ବରମାଲ୍ୟେ କରିଲେ ବରଣ ।
ଦପାରେ ସୁନ୍ଦରୀଙ୍କର ଗାଢ଼ ଅନୁରାଗ
ଅସ୍ପଷ୍ଟ ହେଲେହେଁ ବାକ୍ୟେ, ପୁଲକ ଛଳରେ
ମନୋଭବ ଅଙ୍ଗଭେଦି ହୋଇଲା ପ୍ରକାଶ ।
କେମାଙ୍କୁ ନୀରବ ଦେଖି ସେ ପ୍ରତିହାରିଣୀ

ସୁନନ୍ଦା ସପରିହାସେ କହିଲ ଗୋ ଭଲ
ଚଳାପାଙ୍ଗି ! ଯିବା ଅନ୍ୟ ନୃପ ସନ୍ନିଧାନେ,
କୁଟିଳ କଟାକ୍ଷପାତ କରିଲେ ସରୋଷେ
ଶୁଣି ତା ଅଜଙ୍କ ଅନୁରାଗିଣୀ କୁମାରୀ ।
ମାଙ୍ଗଳିକ ଚୂର୍ଣ୍ଣଯୋଗେ ଆରକ୍ତବରଣ
ବରମାଳା ସମର୍ପିଲେ ସୁନନ୍ଦା କରରେ
ରଘୁନନ୍ଦନଙ୍କ କଣ୍ଠେ, ଯାହା କମ୍ବୁକଣ୍ଠି,
ମାଳା ନୁହେ, ମୂର୍ତ୍ତିମନ୍ତ ଅନୁରାଗ ତାହା
ଅର୍ପଣ କରିଲେ ସିନା ପରମ ଆଗ୍ରହେ ।
ଲମ୍ବାଇ ବିଶାଳବକ୍ଷେ ଧରଣୀସୁ ଅଜ
ଫୁଲ୍ଲଫୁଲେ ବିରଚିତ ସେ ବରଣମାଳା
ମହାଦରେ, ମନେ ମନେ ମଣିଲେ ଜେମାଙ୍କ
ବାହୁପାଶେ ଲଗ୍ନ ହେଲ ତାଙ୍କ କଣ୍ଠଦେଶ ।
ପରସ୍ପର ତୁଲ୍ୟଗୁଣ ବରକନ୍ୟାଙ୍କର
ମିଳନେ ଆନନ୍ଦ ହୋଇ ନାଗର ନାଗରୀ
କର୍ଣ୍ଣଶୂଳ ଉପୁଜାଇ ଅନ୍ୟ ଭୂପକର୍ଣ୍ଣେ
ପରସ୍ପର କଥାବାର୍ତ୍ତା ହେଲେ ଏହିପରି
"ମେଘମୁକ୍ତ ଚନ୍ଦ୍ରସହ ମିଶିଗଲ ସିନା
ଚନ୍ଦ୍ରିକାସୁନ୍ଦରୀ ରଙ୍ଗେ, ଭାଗୀରଥୀ ଅବା
ଅନୁରୂପ ଜଳଧିରେ ହୋଇଲେ ମିଳିତା ।
ଅବସିଲ ସମାରୋହ ସ୍ୱୟମ୍ବର ସ୍ଥଳ
ହର୍ଷୋତ୍ଫୁଲ୍ଲ ଅଜପକ୍ଷେ, ଭଗ୍ନମନୋରଥ
ବିଷଣ୍ଣବଦନ ଯେତେ ରାଜନଙ୍କ ଯୋଗେ,
ପ୍ରଫୁଲ୍ଲିତ କମଳରେ, ନିଦ୍ରିତ କୁମୁଦେ
ଉଷାକାଳେ ସ୍ୱଚ୍ଛଜଳା ସରୋବର ଯଥା ।

# ସପ୍ତମ ସର୍ଗ

ପ୍ରତ୍ୟକ୍ଷ ସ୍କନ୍ଦଙ୍କ ସହ ଦେବସେନା (୧) ପର
ଅନୁରୂପ କାନ୍ତ ସଙ୍ଗେ ଯେବେ ଅନୁଜାଙ୍କୁ
ଗମିଲେ ଆନନ୍ଦେ ସ୍ୱୀୟପୁର ଅଭିମୁଖେ ।
ପ୍ରସ୍ଥାନ କଲେ ଏଣେ ସ୍ୱ ସ୍ୱ ସେନାବାସେ
ବ୍ୟର୍ଥମନୋରଥ କ୍ଷୋଭ ନରପତିମାନେ,
ପ୍ରଭାତେ ଧୂସରବର୍ଣ୍ଣ ତାରାପନ୍ତି ପରି
ମ୍ଳାନ ଭବେ କେତେମତେ ନିନ୍ଦା କରି କରି
ନିଜରୂପ, ବେଶଭୂଷା ଆଦି କ୍ଷୁଣ୍ଣମନେ ।
ବଞ୍ଚିଥିବାରୁ ସେହି ସ୍ୱୟମ୍ବର ସ୍ଥଳେ
ଇନ୍ଦ୍ରପ୍ରିୟା ଶଚୀଦେବୀ, ନ ପାରିଲେ କେହି
ବିଘ୍ନ ଉତ୍ପାଦନ କରି ସେହି ଉତ୍ସବର,
ଅଜଙ୍କ ଉଦ୍ଦେଶେ ମହା ଈର୍ଷାରେ ସକଳେ
ଜଳିଲେହେଁ, କ୍ରୋଧ ତାଙ୍କ କରିଲେ ଦମନ ।
ପ୍ରବେଶନ୍ତେ ସୁଖାସନେ ବର-ବଧୂ ବେନି,
ନୂଆ ନୂଆ ଉପାୟନ ମାଳେ ପରିପୂର୍ଣ୍ଣ—
ଇନ୍ଦ୍ରଧନୁ ବର୍ଣ୍ଣ ଶୋଭି ତୋରଣମଣ୍ଡିତ—
ଶତଧ କେତନ ଘନଚ୍ଛାୟାରେ ଶୀତଳ—
ମନୋହର ରାଜମାର୍ଗେ ମହା ସମାରୋହେ,
ଉପେକ୍ଷି ଅନ୍ୟାନ୍ୟ କାର୍ଯ୍ୟ, ମାଡିଲେ ଆନନ୍ଦେ
ଅଟ୍ଟାଳିକା ଛଳାପିଣ୍ଡା ପୁରନାରୀମାନେ
ବାତାୟନେ ଦେଖିବାକୁ ବ୍ୟସ୍ତ ସହକାରେ ।
ଗମନ କରନ୍ତେ କେହୁ, ଚଞ୍ଚଳ ଚରଣେ
ସହସା ଗବାକ୍ଷ ପଥେ, ଖସିଗଲା ଯୋଷା
ଖୋଷାରୁ କୁସୁମଗୁଚ୍ଛ ଫିଟି କେଶପାଶ
ଅସ୍ତବ୍ୟସ୍ତେ କରେ ଯେବେ ଗମିଲା ସେ ଖରେ
ବାନ୍ଧିବାକୁ ନ ପାଇଲା ଅବସର କ୍ଷଣେ ।
ଲକ୍ଷାରୁଣୀ କରେ ଯେବେ ରଞ୍ଜିଥିଲା ଯାହା—

(୧)—ସ୍କନ୍ଦଙ୍କ ପତ୍ନୀ ।

ମଞ୍ଜୁପାଦ ଅଳତାରେ, ଚାଣି ଆଣି ବେଗେ
ସେ ଅଦ୍ରଚରଣ ବାଳା, ଚଞ୍ଚଳ ଗତିରେ
ଗମିଲା ଅଳତାବୋଳା ଚରଣ ଚିହ୍ନରେ
ସରଣୀ ରଞ୍ଜିତ କରି ବାତାୟନ ପାଏ ।
ଅଞ୍ଜନେ କେ ଖଞ୍ଜନାକ୍ଷୀ ଦକ୍ଷିଣ ନୟନ
ରଞ୍ଜି, କରେ ସ୍ନେହଭରେ ଶଳାକାକୁ ଧରି
ବାତାୟନ ନିକଟକୁ ଗଲା କ୍ଷିପ୍ର ପାଦେ,
ନ ଦେଇ ଅଞ୍ଜନ ବାମନେତ୍ରେ ସେ ନବୀନା ।
ଗବାକ୍ଷେ ଗୁହଁଲା ବେଳେ ଲହଁ ତରତରେ
ଫିଟିଗଲା ନୀବୀବନ୍ଧ କେଉଁ ଲଳନାର,
ନବାନ୍ଧି ବାନ୍ଧବୀ ତାହା, ଦୃଢ଼େ ହସ୍ତେ ଧରି
ଫିଟିଥିବା ନୀବୀବନ୍ଧ, ରହିଲା ସେସ୍ଥବେ
ନାଭି ଦେଶ ରଞ୍ଜି କରକଙ୍କଣ ପ୍ରଭାରେ ।
ଅର୍ଦ୍ଧେକ ଗ୍ରଥିତ ରତ୍ନ ମେଖଳାକୁ କେହି
କରଦ୍ୱୟେ ଧରି, ଉଠି ସତ୍ୱର ଗମନେ
ପ୍ରତିପଦେ ହୀର ହୀର, ଗଳିଗଲା ସବୁ
ରତ୍ନରାଜି ରସନାରୁ, ରହିଲା ଶେଷରେ
ଅଙ୍ଗୁଳି ମୂଳରେ ତାର ସୂତ୍ର ଅବଶିଷ୍ଟ ।
ମଦ୍ୟବାସନାରେ ପୂର୍ଣ୍ଣ, କୁତୂହଳାକ୍ରାନ୍ତ
ମହିଳାମାନଙ୍କ ରମ୍ୟ ବିଧୁ ବଦନରେ
ସମନ୍ୱିତ ହୋଇ ହର୍ମ୍ୟ ବାତାୟନରାଜି
ବସ୍ତ୍ରାଗଲେ ଦିବ୍ୟପ୍ରଭା, ସଦେକ ସତନେ
ବିଭୂଷିତ ହେଲେ ସେହି ଗବାକ୍ଷସକଳ
ଭ୍ରମରଶୋଭିତ ରମ୍ୟ ଶତଦଳ ଦଳେ ।
ଅନେକ ମଧୁରମୂର୍ତ୍ତି ସତୃଷ୍ଣ ନୟନେ
ନିରେଖି ରମଣୀଗଣ ମହା ଉତ୍ସବରେ,
ଅନ୍ୟାନ୍ୟ ଯେତେକ କଥା ବିସ୍ମରିଲେ ମନ,
କର୍ଣ୍ଣ ଆଦି ଇନ୍ଦ୍ରିୟର କ୍ରିୟାମାନ ଯାକ
ଏକାବେଳେ ନୟନରେ ଲୀନ ହେଲା ଆସି ।
[illegible]ପୁର ସ୍ତ୍ରୀମାନେ କହିଲେ ଏମନ୍ତ :—

ପୂର୍ବେ କେତେ ରାଜାମାନେ କଲେହେଁ ପ୍ରାର୍ଥନା
ସୁଭ୍ରୂମାସ୍ତ୍ରୀ ବାମାମଣି ଉପେକ୍ଷି ତାହାଙ୍କୁ,
ବଳାଇଲେ ମନ ଯାହା ସ୍ୱୟମ୍ବର ଲାଗି,
ହତହେଲା ତାହା ଏବେ, ନୋହିଲେ କି କେବେ
ବସ୍ତୁଙ୍କୁ ଲଭନ୍ଦସ୍ପଣ ପାରଥାନ୍ତେ ବର
ନିଜ ଅନୁରୂପ ବର ଇନ୍ଦୀବରନେତ୍ରା ।
ସ୍ପୃହଣୀୟ ଶୋଭାଶାଳୀ ଏ ବରକନ୍ୟାଙ୍କୁ
ମିଳାଇ ନଥାନ୍ତେ ଯେବେ ପ୍ରଜାପତିବିଧି
ପରସ୍ପରେ, ତେବେ ସେ ଯା କେତେ ଯତ୍ନକର
ଗଢ଼ିଥିଲେ ଏ କୋମଳ ସୁନ୍ଦରୀ ସୁନ୍ଦର
ବରବପୁ ଶରଧାରେ, ଯାଇଥାନ୍ତା ସିନା
ପଣ୍ଡହୋଇ ଦଣ୍ଡକରେ ସର୍ବସହ ତାଙ୍କ ।
ଅବତୀର୍ଣ୍ଣ ହୋଇଛନ୍ତି ପତିପତ୍ନୀ ରୂପେ
ରତି ରତିପତି ଅବା, ନୋହିଲେ କିପରି
ନିର୍ବାଚନ କଲା ବାଳା ଅବଲୀଳାକ୍ରମେ
ଆତ୍ମଗୁଣ ଅନୁରୂପ କାନ୍ତ, ନୋହିଅନ୍ତ
ସହସ୍ରସ୍ୱଜନ ମଧ୍ୟେ, ଜାଣିପାରେ ସିନା
ଜନ୍ମାନ୍ତର ସଙ୍ଗତିକୁ ଭବେ ପ୍ରାଣିମନ ।
ଏହିରୂପ ନାନାବିଧ କର୍ଣ୍ଣରସାୟନ—
କଥାମାନ ଶୁଣି ଶୁଣି ନରନାରୀ ମୁଖୁଁ
ବୀରମଣି ରଘୁସୁତ, ଉପନୀତ ହେଲେ
ମଙ୍ଗଳସମ୍ଭାରଶୋଭି ଶ୍ୱଶୁର ଆଳୟେ ।
କାମରୂପେଶ୍ୱର କରେ କରଭରଦେଇ
ଓହ୍ଲାଇ ସଧୀରେ ବୀର କରଣୀ ପୃଷ୍ଠରୁ ।
ପ୍ରବେଶିବା ବେଳେ ଭୋଜ ନିର୍ଦ୍ଦିଷ୍ଟ ପ୍ରାଙ୍ଗଣେ
ପଶିଲେ ସେ ହଠେ ସିନା ତହିଁ ଉପନୀତା
କାମିନୀଙ୍କ ସୁକୋମଳ ହୃଦୟମନ୍ଦିରେ ।
ମଧୁପର୍କ ଯୁକ୍ତରତ୍ନ, ଅର୍ଘ୍ୟ, ସହିତରେ
ଭୋଜଙ୍କର ଉପହୃତ ଦୁକୂଳ ଯୁଗଳ
ନାରୀଙ୍କ କଟାକ୍ଷସହ ଘେନିଲେ ସେ ସୁଖେ ।

ମହାନନ୍ଦେ ମହୀକାଏ ତୁଳନ୍ତୁଳଦେଇ
ନେଲେ ସେ ତୁକୂଳଶୋଭି ଗୃଜନନ୍ଦନଙ୍କୁ
ନନ୍ଦନୀ ସମୀପେ ଧୀରେ, ନଅଇ ଯେସନ
ଫେନଗୁଚ୍ଛ ବଗୃଢ ମହାସାଗରକୁ
ବେଳାପାଖେ, ଅଭନବ ସ୍ତୂଚନ୍ଦ୍ରକର ।
ତର୍ଦ୍ଧ୍ୱେ ଶ୍ରେଜ ନରେଶଙ୍କ କୁଳପୁରୋହିତ
ସୁବାସିତ ସଦ୍ୟଘୃତେ ଅଦ୍ଭୁତ ପ୍ରଦୀପ୍ତ
ହୁତାଶନେ, ସେ ଅଗ୍ନିକୁ ସାକ୍ଷୀ କର ଆଗେ,
ଶୁଭଲଗ୍ନେ ଯୋଗିଦେଇ ବରକନ୍ୟାଙ୍କର
କରବେନ, ବାନ୍ଧଦେଲେ କୌତୁକ ସୂତ୍ରରେ ।
ସୁକୋମଳା କନ୍ୟାକର ସ୍ୱକୀୟ କରରେ
ଧରଲେ କୁମାରବର, ଜହ୍ନଗଳଙ୍କରେ
ରୁଚର ଅଶୋକ ଲତା ମୃଦୁପଲ୍ଲବରେ
ସନ୍ନିହିତ ରସାଳର ନବୀନପ୍ରବାଳ ।
କଣ୍ଟକତ ହେଲ ବର କପୋଳ ପ୍ରଦେଶ,
ଭିଜଗଲ ବନ୍ଦୁ ବନ୍ଦୁ ଝାଳେ କୁମାରୀର
ଚମ୍ପକ ଅଙ୍ଗୁଳମାନ, ହସ୍ତଗ୍ରନ୍ଥିକାଳେ
ହୀଜ ଧରାଧର ହେଉଁ, ସାତ୍ତ୍ୱିକ ବକାରେ,
କଲେ କବା ସମସ୍ତଙ୍କେ ବଭକ୍ତ ସେ କାଳେ
ସୁକୁମାର ସ୍ୱବୃତ୍ତିକୁ ଫୁଲଶରେ ମାର ?
ତୁହିଙ୍କୁ ଦେଖିବା ପାଇଁ ଲାଳାୟିତ ହୋଇ
ତୁହିଙ୍କ ସତୃଷ୍ଣ ଦୃଷ୍ଟି ଧାଇଁ ଅହରହ,
ଅପାଙ୍ଗ ପର୍ଯ୍ୟନ୍ତ ଆସି ଫେରୁଥିଲ ପୁଣି,
ଅଲକ୍ଷିତେ ଏକହରେ ହେଲେ ସମ୍ମିଳିତ,
ଲଜ୍ଜା ସନ୍ତଣାରେ ଧର ଅପୂର୍ବ ସୁଷମା ।
ପ୍ରଜ୍ୱଳିତ ହୋମାନଳ ପ୍ରଦକ୍ଷିଣକରୁଁ
କଶୋର କଶୋରବେନ ବହିଲେ ସୁଷମା
ପରସ୍ପର ସମ୍ମିଳିତ ହୋଇ, ଦନ ଗ୍ରଢ
ଆବର୍ତ୍ତନ କଲପରି ସୁମେରୁ ଶିଖରୁ ।
ମଦମତ୍ତ ମଦଗ୍ରସ୍ତୀ ମୃଗଗ୍ରାଜମଧ୍ୟା

ଲଜ୍ଜାବତୀ ବଧୂ, ରାଜା କଲେ ବିସର୍ଜ୍ଜନ
ହୁତାଶନେ, ବ୍ରହ୍ମାରୂପୀ ପୁରୋହିତ ଗିରେ ।
ହବି, ଶମୀ, ପଲ୍ଲବସ୍ତ ଲାଜସୁରଭିତ
ସୁପବିତ୍ର ଧୂମପନ୍ତି, ପାବକରୁ ଉଠି,
ପ୍ରସରି କୁମାରୀଗଣ୍ଡେ କଲା ସମ୍ପାଦନ
ମୁହୂର୍ତ୍ତକ ପାଇଁ କର୍ଣ୍ଣଭୂଷଣର ଶୋଭା ।
ବଧୂ ବିଧୁବଦନରେ ଲାଗିବାରୁ ସେହି
ସେ ଅଗ୍ନିର ଧୂମଶିଖା, ଆକୁଳିତ ହୋଇ
ଅଞ୍ଜନ ମିଶ୍ରିତ ବାଷ୍ପ ଜଳେ ଚକ୍ଷୁ ବେନି,
ମ୍ଳାନ ହୋଇ ଯବାଙ୍କୁର କର୍ଣ୍ଣପୁର କର୍ଣ୍ଣେ,
ଫୁଟିଲା ପାଟଳ ବର୍ଣ୍ଣେ ବେନି ଗଣ୍ଡସ୍ଥଳ ।
ଆଶୀର୍ବାଦ କଲେ ତହୁଁ ସ୍ନାତକ ମଣ୍ଡଳ,
ସବାନ୍ଧବ ଭୋଜପତି, ପତିପୁତ୍ରବତୀ
ବାମାବୃନ୍ଦ, ଯଥାବିଧି କୌଳିକ ପ୍ରଥାରେ
ହଳଦିଆ ଚାଉଳରେ ବନ୍ଦାଇ ବେନିଙ୍କୁ ।
ଏହିରୂପେ ଭଗିନୀଙ୍କ ଶୁଭ ପରିଣୟ
ସମାପନ କରି ଶ୍ରେଷ୍ଠ ଭୋଜକୁଳପତି
ଆଦେଶିଲେ ଅନୁଚରେ, ପ୍ରତ୍ୟେକ ଭୂପଙ୍କୁ
ଏକେ ଏକେ କରିବାକୁ ବିଧିରେ ସତ୍କାର ।
ଭୀଷଣ କୁମ୍ଭୀର ଗର୍ଭେ ଲୁକ୍କାଇ ଯେସନ
ଗଭୀର ସଲିଳା ହ୍ରଦ ଦିଶେ ମନୋହର ।
ତେସନ ସେ ଭୂପମାନେ ଅନ୍ତରର ଈର୍ଷା
ଗୁପତରେ ରଖି ହୃଦେ ; ଦେଖାଇ କପଟେ
ବାହାରେ ଆନନ୍ଦ ଚିହ୍ନ, ହୋଇଲେ ମେଲାଣି ।
ଉପଢୌକନର ଛଳେ ପ୍ରତ୍ୟର୍ପଣ କରି
ବିଦର୍ଭପତିଦତ୍ତ ସମ୍ଭାର ସକଳ ।
ପସ୍ମମତି ଅନୁଯାୟୀ କାର୍ଯ୍ୟସିଦ୍ଧି ଲାଗି,
ଯାଇ ତହୁଁ ସେ ଭୂପାଳେ ରହିଲେ ଅଗୋର
ଗୁପ୍ତଭାବେ ଅଜଙ୍କର ଫେରିବା ମାର୍ଗକୁ,
ବଳାତ୍କାରେ ନେବାପାଇଁ ଆକ୍ରମଣ କରି

ଭୋଜବଂଶୀମାନଙ୍କୁ ପଥୁଁ ପ୍ରସ୍ଥାନକାଳରେ ।
ବିଧିମତେ ଅନୁଜ୍ଞାର ବିବାହ ବନ୍ଧାଇ,
ଏଣେ, ଭୋଜରାଜ ନିଜଶକ୍ତି ଅନୁଯାୟୀ
ଯୌତୁକ ପ୍ରଦାନ କରି, ଭରୁ ବିଦାଦେଇ,
ସେମାନଙ୍କ ସହ ଅପେ କରିଲେ ଗମନ ।
ଜନପ୍ରରେ ସୁବିଖ୍ୟାତ ଅଜଙ୍କ ସହିତ
ଛନସ୍ୱଜ ବାସ କରି ଏପେ ମହାନନ୍ଦେ,
ବିଷାଦେ, ମେଇଣିମାଗି ବାହୁଡଲେ ତହୁଁ
ଭୂରିନ ଈଷ୍ଟର ତେଜ, ସୁଧାଂଶୁ ଯେସନ
ଫେରନ୍ତି ସୂର୍ଯ୍ୟଙ୍କ ପାଶୁଁ ଅମାବାସ୍ୟା ପରେ ।
ଜଳୁଥିଲେ ଈର୍ଷାବଳେ ପୁର୍ବୁଁ ନୃପମାନେ
ମହାରାଜା ରଘୁଙ୍କର ଦିଗ୍‌ବିଜୟ କାଳେ
ସମୂଳେ ବିନଷ୍ଟ ହୋଇ ; ଏଣୁ ସିଦ୍ଧମତେ,
ନାରୀରତ୍ନ ସହ ଦେଖି ତାଙ୍କ ପୁତ୍ରଙ୍କର,
ପୁର୍ବର ବୈରତା ସ୍ମରି, ନ ପାରିଲେ ସହି ।
ଅବରୋଧ କଲେ ବେଗେ ସଦଳବଳରେ
କନ୍ୟା ଘେନ ଯିବା କାଳେ ମାର୍ଗେ ରାଘବଙ୍କ୍
ପ୍ରଚଣ୍ଡ ବିକ୍ରମେ ଦୃଷ୍ଟ ରାଜନ୍ୟମଣ୍ଡଳ,
ରୋଧିଥିଲେ ଶକ୍ର ଶତ୍ରୁ ପ୍ରହ୍ଲାଦ ଯେସନ
ବଳିଙ୍କର ଦାନ ସଙ୍ଗ ସମସ୍ତ ସହିତ
ତ୍ରିବିକ୍ରମ ବିଷ୍ଣୁଙ୍କର ବିଶାଳ ପାଦକୁ ।
ଏରୂପେ ଅକାନ୍ତ ହୋଇ ବିପକ୍ଷଙ୍କ ଯୋଗେ
ଯୁବରାଜ, ନଯୋଗିଲେ ପିତୃ ସଚିବଙ୍କୁ
ଇନ୍ଦୁମତୀ ରକ୍ଷାଲାଗି ବହୁସେନା ସହ,
ରାଜନ୍ୟ ବୀରବୃନ୍ଦ ସଙ୍ଗତରେ ଘେନ
ପ୍ରତିଆକ୍ରମଣ ତହୁଁ କଲେ ମହାଦମ୍ଭେ
ଦମ୍ଭୀଶ୍ରେଷ୍ଠ ବୀରମଣି, ଶୋଣନଦୀ ଯଥା
ଉତ୍ତୁଙ୍ଗ ତରଙ୍ଗମାଳେ ସ୍ରୋତ ଉପୁଜାଇ
ଅତିମନ୍ଦ ତୀବ୍ରବେଗା ଜାହ୍ନବୀ ବେଗକୁ ।
ପଦାତ ପଦାତ ସହ, ରଥୀସହ ରଥୀ,

ପୁଚ୍ଛରୁ ଉତ୍ଥିତ ସାନ୍ଦ୍ର ଧୂମପଟଳ ପର ।
ମାତେ ମୂର୍ଚ୍ଛାଗତ ରଥୀ ପଡ଼ନ୍ତେ ରଥରେ,
ସାରଥୀ ସେ ରଥ ବେଗେ ନେଲା ବାହୁଡ଼ାଇ
ଅନ୍ୟ ପାଖେ ରଣସ୍ଥଳୁ, ଚେତାପାଇ ଷଣେ
ସେ ବୀର, ଧିକ୍କାର କରି ରୋଷେ ସାରଥିକୁ
ପୁଚ୍ଛଦୃଷ୍ଟ କେଳୁଚକ୍ରେ ପ୍ରହାରକାରୀର
ଭେଟପାଇ, ମହାକ୍ରୋଧେ ଗର୍ଜି ହୁଁହୁଁକାରେ
ମାରବାକୁ ଅଗ୍ରସର ହେଲା ଉଚ୍ଚାଘାତେ ।
ଶାସ୍ତ୍ରୀନ ସନ୍ଧାନପଟୁ କାହିଁ ଧନୁର୍ଦ୍ଧାରୀ
ଠାଣି ମାରିବାରୁ ଶର, ବତପଥ ବାଣରେ
ବାଟରେ ତା ଛିନ୍ନ ହୋଇ, ତୀବ୍ର ବେଗବଶେ
ପଡ଼ିଲା ଚଳିଲେ ଯାଇ ନିର୍ଦ୍ଦିଷ୍ଟ ଲକ୍ଷ୍ୟରେ
ଫଳକ, ମଣ୍ଡିତ ସେହି ବାଣର ପୁର୍ବାର୍ଦ୍ଧ ।
ସ୍କନ୍ଧରୁ ବିଚ୍ଛିନ୍ନ ହୋଇ କୃପାଣ ଶ୍ରେଷ୍ଠରେ
ମାହୁନ୍ତର ମୁଣ୍ଡ, ଚଣ୍ଡ ବାରଣ ଯୁଦ୍ଧରେ
ପଡ଼ିଲା ବହୁତକ୍ଷଣେ ଭୂତଳେ ଗଗନୁ,
ସେ ସ୍ଥାନରେ ଉଡ଼ୁଥିବା ଶ୍ୟେନଙ୍କ ନଖରେ
ଲଗି ରହିବାରୁ ତାର କୁନ୍ତଳଅବଳୀ ।
ସାଦୀ ସାଦୀ ପରସ୍ପର ଯୁଦ୍ଧ ହେବାକାଳେ
ମଟରେ, ପ୍ରହାର ଖାଇ ତହୁଁ ଜଣେ କାହିଁ
ମୂର୍ଚ୍ଛାଗତ ପଡ଼ିଥିଲା ଅବନୀ ଉପରେ,
ମୂର୍ଚ୍ଛା ଭାଙ୍ଗିବାରୁ ଉଠି ସ୍ୱ ଅଶ୍ୱରେ ଚଢ଼ି
ଝପଟାଇ ତୁରଙ୍ଗମ ଦେଖିଲା ବୈରୀକୁ
ତା ଅଶ୍ୱର ସ୍କନ୍ଧଦେଶେ ମୂର୍ଚ୍ଛିତଦଶାରେ
ରହିଅଛି, ଲଢ଼ିବାକୁ ନାହିଁ ଶକ୍ତି ଭଲେ,
ଏପରି ଦୁର୍ଦ୍ଦଶା ଦେଖି ନ ବଧି ତାହାକୁ
ମୂର୍ଚ୍ଛାଭଙ୍ଗଯାଏ ସେହି ରହିଲା ଅନାଇ ।
ପଗ୍ରଣର ମାସ୍ତା ଛଡ଼, ବସ୍ତିଧାରୀ କେହି
ସ୍ୱମବେଗେ କୋଷମୁକ୍ତ ଖଣ୍ଡା ମାରିବାରୁ
ପ୍ରମତ୍ତ ମାତଙ୍ଗଦନ୍ତ ଅତଶସ୍ତ୍ର ବେଗେ

ଅନଳ ସ୍ଫୁଲିଙ୍ଗ ଜନ୍ମି ଲଭିଲା ତତ୍‌କ୍ଷଣେ
ଭୟେ ଶୀତକରୀ-କର-ଶୀକର-ଆଶାରେ
କୃତାନ୍ତର କେଳିଭୂମିପର ଭୟଙ୍କର
ଦିଶିଲା ସଂଗ୍ରାମସ୍ଥଳୀ, ଛେଦାଇଲେ ତହିଁ
ଶିଳୀମୁଖ ବାଣଛିନ୍ନ ନରମୁଣ୍ଡମାଳ
ଫଳ ବୋଲି, ପାନ କଲେ କଣ୍ଠପାତ୍ରରେ
ପ୍ରବାହିତ ରକ୍ତସ୍ରୋତ-ମଦିରା ଆନନ୍ଦେ,
ଭୈରବ ଭୈରବୀକୁଳ ନାଚ ଅଟ୍ଟହାସ୍ୟେ
ପେଟର ଉପାନ୍ତନାଡ଼ି ଥଣ୍ଟରେ ଆକର୍ଷି
ଶିକ୍ଷୁଥିଲେ ଗୃଧ୍ରଗଣୁଁ, ସବଳେ ଓଠାର
ବାହୁଖଣ୍ଡେ ତାହାଠାରୁ ଏକାଳେ ଶୃଗାଳ
ଖାଆନ୍ତେ ଛେଦାଇ ଭୁଜ ବଳୟ ଅଗ୍ରରେ
ତାଳୁଦେଶ ଫୁଟିଗଲା, ପଳାଇଲା ଭୟେ
ହେଲେହେଁ ସେ କ୍ଷୁଧାକୁଳ ଭୁଜଆଶା ଛାଡ଼ି ।
ସଦମ୍ଭେ ବିପକ୍ଷ ସହ ଯୁଝି କେଉଁ ବୀର
ପ୍ରାଣପଣେ, ସେ ବିପକ୍ଷ କୃପାଣ ଆଘାତେ
ଛିନ୍ନମୁଣ୍ଡ ହୋଇ, ସଦ୍ୟ ବିମାନେ ଆରୋହି
ଏକ ଅପ୍ସରୀଙ୍କ ଘେନ ବାମ ପାଶେ ତାର,
ଦେଖିଲା କୁତୂହଳେ ସମର ପ୍ରାଙ୍ଗଣେ,
ଶୋଣିତଶଯ୍ୟାରେ ନିଜ କବନ୍ଧର ନାଚ ।
ସାରଥୀ ମରନ୍ତେ ରଣେ କେଉଁ ବୀର ବେନ
ରଥୀ ସାରଥିର କାର୍ଯ୍ୟ କଲେ ସମାଧାନ ;
ଏକାବେଳେ ରଥ-ଅଶ୍ୱ ହତ ହେବା ଯୋଗେ,
ଅବତରି ସ୍ୟନ୍ଦନରୁ ବହୁକ୍ଷଣ ଯାଏ
ମତ୍ତ ହେଲେ ଗଦାଯୁଦ୍ଧେ, ଗଦା ଭାଙ୍ଗିଲାରୁ
ଗାଢ଼େ ଜଡ଼ାଜଡ଼ି ହୋଇ, ଭୂମିତଳେ ପଡ଼ି,
ବାହୁଯୁଦ୍ଧେ ବେନ ବୀରେ ମୁଦିଲେ ନୟନ ।
ଏକାବେଳେ ହତ ହୋଇ କେଉଁ ବୀର ବେନ
ପରସ୍ପର ଅସ୍ତ୍ରାଘାତେ, ଏକାବେଳେ ଲଭି
ଦୁର୍ଲ୍ଲଭ ଦେବତ୍ୱ ଦୁହେଁ, ଦେବ ବିମାନରେ,

ଏକ ଦେବକନ୍ୟା ପାଇ ସହଚରୀ ରୂପେ,
ଉଭୟେ ପ୍ରବୃତ୍ତ ହେଲେ ତର୍କ ବିବାଦରେ ।
ଅନୁକୂଳ ପ୍ରତିକୂଳ ପବନ ବେଗରେ
ମହାର୍ଣ୍ଣବ ଊର୍ମି ଯଥା ପର୍ଯ୍ୟାୟ କ୍ରମରେ
ବଢ଼ୁଥାଏ ଛିଡ଼ୁଥାଏ ଉଭୟ ଦଳରେ,
ତେମନ୍ତେ ସେ ବାହିନୀ ବେନି ଅନିଶ୍ଚିତ ରୂପେ
ଲଭୁଥିଲେ କେବେ ଜୟ କେବେ ପରାଜୟ ।
ନିଜବଳ ଭଙ୍ଗ ଦେଖି ମହାବୀର ଅଜ
ଅଗ୍ରସର ହେଲେ ଆପେ ଶତ୍ରୁ ଅଭିମୁଖେ
ଧନୁ ଧରି, ଧୂମ ରାଶି ସିନା ସବୁକାଳେ
ସମୀରଣ ସଞ୍ଚାରଣେ ହୁଏ ଇତସ୍ତତ,
ମାତ୍ର ବହ୍ନି ନିଜ କାର୍ଯ୍ୟ କରଇ ସାଧନ
ଏକ ସ୍ଥାନେ ସେ ତୃଣରେ ଅବସ୍ଥିତ ହୋଇ ।
ନିଷଙ୍ଗୀ କବଚୀ ଖଡ୍ଗୀ ରଥୀ ଧନୁର୍ଦ୍ଧାରୀ
ଏକ ଶୂର ବାରିଲେ ସେ ସର୍ବ ରାଜନଙ୍କୁ
ପ୍ରଳୟେ ବରାହରୂପୀ ମୁରାରି ଯେମନ୍ତ
ଉଦ୍‌ବେଳ ଜଳଧିଜଳ କଲେ ପ୍ରଶମିତ ।
ତୂଣ ଲଗ୍ନ ହୋଇ ସଦା ଦକ୍ଷ କର ତାଙ୍କ
ସମାଦିଲ୍ଲ ଶୋଭ୍ଭ, କେହି ନପାରିଲେ ଜାଣି
କେତେବେଳେ କରୁଥିଲେ ସେ ଶରସନ୍ଧାନ,
ଆକର୍ଣ୍ଣ ଆକୃଷ୍ଟ ହୋଇ ମଣ୍ଡଳ ଆକାରେ
ଶୋଭିଲ୍ଲ କୋଦଣ୍ଡ କରେ, ପ୍ରସରୁ ଥିଲ୍ଲ କି
ଅଭୁତେ ଶିଞ୍ଜିନୀ ତାଙ୍କ ତୀବ୍ର ବାଣମାନ ।
ରୋଷଦଂଷ୍ଟ୍ର ଅରୁଣାକ୍ଷ ଅଧରୋଷ୍ଠ ଶୋଭି
କୁଟିଳ ଭ୍ରୁକୁଟି-ସ୍ପଷ୍ଟ-ଊର୍ଦ୍ଧ୍ୱ ରେଖାଯୁକ୍ତ
ଶତ୍ରୁଙ୍କର ମୁଣ୍ଡମାଳ ହୁଁକାରବ୍ୟଞ୍ଜକ,
କକ୍ଷାରେ ଛିଣ୍ଡାଇ ବୀର ପୂର୍ଣ୍ଣକଲେ ମହୀ ।
ସର୍ବସୈନ୍ୟେ ସର୍ବନୃପେ, ବାରଣ ପ୍ରଧାନ
ସର୍ବବଳେ, ବର୍ମଭେଦୀ ସର୍ବଅସ୍ତ୍ରେ ତାଙ୍କୁ
ଏକାବେଳେ, ଆକ୍ରମିଲେ ସର୍ବ ପରାକ୍ରମେ ।

ଭିନ୍ଦୀପାଳ କରବାଳ ଶକ୍ତି କୁଠାର
ବାଣ ଭଲ୍ଲ ଶୂଳ ଗଦା ଆଦି ଅସ୍ତ୍ରବ୍ରଜ
ଚଉଦିଗୁଁ ଆସି, ଶୀଘ୍ର ଆଚ୍ଛାଦନ କଲା
ରଥ ତାଙ୍କ ଦେଖୁ ଦେଖୁ, ଦିଶିଲା କେବଳ
ବର୍ଣ୍ଣୋଜ୍ଜ୍ୱଳ ଧ୍ୱଜପ୍ରସ୍ତ ଜଳ ଜଳ ହୋଇ,
ନୀହାର ମଣ୍ଡଳେ ମଗ୍ନ ଦିନ ପୂର୍ବଭାଗେ
ଅଲୋହିତ ଅଭିନବ ରବି ଛବି ପରି ।
ମଦନ-ସୁନ୍ଦର ଯୁବା ପ୍ରତ୍ୟୁତ୍ପନ୍ନମତି
ପ୍ରୟୋଗ କରିଲେ ତହୁଁ ପ୍ରିୟମ୍ବଦଦତ୍ତ
ରିପୁକୁଳ କାଳାନ୍ତକ ଭୀମ ଗାନ୍ଧର୍ବାସ୍ତ୍ର ;
ନିଦ୍ରାପରତନ୍ତ୍ର ହେଲେ ସେ ଅସ୍ତ୍ର ପ୍ରଭାବେ
ମଣ୍ଡପର ସସୈନ୍ୟରେ ନରପତିମାନେ ।
ଧ୍ୱଜସ୍ତମ୍ଭେ କଳେବର ରହିଲା ଆଉଜି ;
ଶ୍ଳଥ ହୋଇଗଲା କର ପଡ଼ିଲା ଅଳିଗେ
ଶରାସନେ ସଂଯୋଜିତ ଶାୟକ ସହିତ,
ଶିରଭ୍ରଷ୍ଟ ହୋଇ ପାଗ ଲେଉଟିଲା ସ୍କନ୍ଧରେ ।
ବଜାଇଲେ ଆଣିକର ବିଜୟୀ କୁମାର
ପ୍ରିୟତମା-ଆସ୍ୱାଦିତ-ଅଧରୋଷ୍ଠେ ଥୋଇ
ଜୟଶଙ୍ଖ ଘନଘନ, ପାନକଲେ ଯେସେ
ନିଜବୀର୍ଯ୍ୟେ ଉପାର୍ଜିତ ମୂର୍ତ୍ତ ଯଶାମୃତ
ଯଶରଙ୍କ ଏକେଶ୍ୱର ଅଜ ମହାମତି ।
ଜୟଶଙ୍ଖ ଧ୍ୱନି ଶୁଣି ମହୋତ୍ସାହେ ମାତି
ରାଘବୀୟ ଚମୂରାଜି ଦଳେ ଦଳେ ଆସି
ଦେଖିଲେ, ବିନିଦ୍ର ବୈରୀ ମଧ୍ୟେ ରାଘବଙ୍କୁ
ବିମଳ ; ବିମଳ ଯଥା ସ୍ଫୁରନ୍ତ ପ୍ରତିମା
ଶଶାଙ୍କର, ନିମୀଳିତ ଶତଦଳ ଦଳେ ।
ତହୁଁ ସେ ଶୋଣିତଲିପ୍ତ ବାଣର ମୁନରେ
ଲେଖିଲେ ଏ ବର୍ଣ୍ଣାବଳୀ ଭୂପଙ୍କ କେତନେ
"ହେ ରାଜନ ! ବୀରଶ୍ରେଷ୍ଠ ରଘୁସୁତ ଅଜ
ହରିଲେ କେବଳ ଯଶ ଦୟାରେ ତୁମ୍ଭର

ରକ୍ଷିଲେ ଏଥର ପ୍ରାଣ, ପଛଅରେ ତେବେ
ପଚାରିବ ନାହିଁ ବୀରେ ଏରୂପ ଦୁର୍ନୀତ ।"
ପାପ ଦୂରକର ତଦ୍ଧ୍ୟ ମସ୍ତକରୁ କ୍ଷଣେ
କୁମାର ସ୍ଥାପନ କରି ଧନୁର ଅଗ୍ରରେ
ଏକବାହୁ, ରଣଶ୍ରମ ଘର୍ମାକ୍ତ ଲଲାଟେ
ସ୍ୱୀୟ ପ୍ରେୟସୀଙ୍କୁ ଚାହିଁ କହିଲେ ଏମନ୍ତ
"ହେ ବଦର୍ଭିରାଜପୁତ୍ରି ! ଦେଖ ଗୋ ଅନାଇଁ
ପୂର୍ବ ଦୃଷ୍ଟ ବୈରୀକୁଳ ଗର୍ବୁଛନ୍ତି ପଡ଼ି
କେମନ୍ତେ ଭୂତଳେ ଏବେ, ଅସ୍ତ୍ର ଶସ୍ତ୍ର ସବୁ
ଏମାନଙ୍କ ହରିପାରେ ଶିଶୁ ଏକ ଆସି
ଏ ରଣପାଣ୍ଡିତ୍ୟ ଲଭି ଆସିଥିଲେ ସର୍ବ
ସକଳେ ଗରବେ ଆଜ୍ଞେ ବଳେ ନେବା ପାଇଁ
ତୁମ୍ଭକୁ ଗୋ ଶଶୀମୁଖି ! ଛଡ଼ାଇ ମୋ କରୁଁ"
ନିଶ୍ୱାସ ପବନ ଲାଗି ପୋଛ ହୋଇଥିବା
ଉଜ୍ଜ୍ୱଳ ଦର୍ପଣ ପରି ଉଲ୍ଲସିତ ହେଲା
ଏ ବଜ୍ରସ୍ୱବାର୍ତ୍ତା ଶୁଣି ଭର୍ତ୍ତା ଆନନରୁ
ସୁମୁଖୀର ବିକଶିତ ସ୍ମୃରୁଚନ୍ଦ୍ରମୁଖ ।
ଆହ୍ଲାଦିତ ହୋଇଲେହେଁ ଏ ଶୁଭସନ୍ଦେଶେ
ଆହ୍ଲାଦିନୀ, ଅପେ କିଛି ନ ପାରିଲେ କହି
ଲଜ୍ଜାବଶେ ସ୍ୱାମୀ ଆଗେ, କରିଲେ ପ୍ରକାଶ
ନିଜମନୋମତ ତାଙ୍କ ପ୍ରଶଂସାର କଥା
ସହଚରୀଗଣ ମୁଖେ, ବନସ୍ଥଳୀ ଯଥା
ନବବାରିଧାରପାତେ ପୁଲକିତ ହୋଇ
ମେଘକୁ ବନ୍ଦନା କରେ କେକୀ କେକା ରବେ ।
ଏରୂପେ ପ୍ରଶଂସନୀୟ ରବିବଂଶମଣି
ରିପୁରାଜଗଣ ଶିରେ ବାମପଦ ଦେଇ,
ବିଜେକଲେ ସ୍ୱ ନଗରେ, ସଙ୍ଗତରେ ଘେନି
ରଥପଶ୍ଚ-ଖୁରେ କ୍ଷିପ୍ର ଧୂଳିରେ ଧୂସର
ଅଳକଶୋଭିନୀ ସ୍ମୃରୁଚମ୍ପକବରଣୀ
ମୂର୍ତ୍ତିମତୀ ଜୟଲକ୍ଷ୍ମୀରୂପିଣୀ ପ୍ରିୟାଙ୍କୁ ।

ଅଗ୍ରୁଁ ଶୁଣିଥିଲେ ରଘୁ ଏସବୁ ସନ୍ଦେଶ
ଦୂତମୁଖୁଁ, ଶାସସ୍ଥ, ଜାୟାସହ ଏବେ
ଓଜସ୍ୱୀ କୁମାର ଆସି ପୁରେ ପ୍ରବେଶନ୍ତେ
ସସୈନ୍ୟ, ପ୍ରଶଂସି ତାଙ୍କୁ ପୁନଃ ପୁନଃ ଭୂପ
ପୁତ୍ରପାଣେ ଜଗତୀଙ୍କୁ ସମର୍ପଣ କରି
ଶାନ୍ତିମାର୍ଗେ ଚଳାଇଲେ ମନ ମହାନନ୍ଦେ,
କୁଳଧୁରନ୍ଧର ପୁତ୍ର ହେଲେ ଉପଯୁକ୍ତ
ଗୃହରେ ଗୃହସ୍ଥାଶ୍ରମେ ନ ରହନ୍ତି ଆଉ
ପଦକ ଅସ୍ତୁରନସ୍ତୁ ସୂର୍ଯ୍ୟବଂଶୀ ନୃପେ ।

# ଅଷ୍ଟମ ସର୍ଗ

ଏ ଅନ୍ତେ ଦ୍ୱିତୀୟା ଧନ୍ୟା ଇନ୍ଦୁମତୀ ପର
ସମର୍ପିଲେ ମହାରାଜ ରଘୁ ବସୁଧାକୁ
ଲଳିତ କୌତୁକ ସୂତ୍ରଧାରୀ ଅଜ କରେ ।
ବିବିଧ ଦୁଷ୍କାର୍ଯ୍ୟ ଦ୍ୱାରା ଲୋଡନ୍ତି ଉପାୟ
ଆତ୍ମସାତ କରିବାକୁ ନୃପସୁତମାନେ
ଯେ ରାଜ୍ୟକୁ, ଉପସ୍ଥିତ ସେ ସାମ୍ରାଜ୍ୟ ଅଜ
ଜନକ ଆଦେଶେ ଏକା କରିଲେ ଗ୍ରହଣ,
ଭୋଗତୃଷ୍ଣାବଶବର୍ତ୍ତୀ ନୋହି ଖଣେ ମାତ୍ର ।
ମହର୍ଷି ବଶିଷ୍ଠଦତ୍ତ ଅଭିଷେକଜଳେ
ଶୁଦ୍ଧ ଯୋଗେ ଅଭିଷିକ୍ତା ହୋଇ ବସୁନ୍ଧରା
ଯୁବରାଜ ଅଜସହ, ପ୍ରକାଶ କଲେ କି ?
ନିର୍ମଳ ଉଚ୍ଛ୍ୱାସ ବ୍ୟାଜେ ନିଜ କୃତାର୍ଥତା
ସର୍ବବେଦ ବିଶାରଦ କୁଳଗୁରୁ ମନ୍ତ୍ରେ
ସଂସ୍କାର ଲଭିଣ ଯୁବା, ଅସହ୍ୟ ହୋଇଲେ
ବିପକ୍ଷର, କ୍ଷାତ୍ରତେଜେ ବ୍ରହ୍ମତେଜ ମିଶି
ହେଲା, ବାୟୁ ବାୟୁସଖା (୧) ସମାଗମ ପରି ।
ମଣିଲେ ପ୍ରଜାଏ ଏହି ନବୀନ ନୃପର
ସୁନ୍ଦର ଶାସନ ଦେଖି, ଗୁଣିଶ୍ରେଷ୍ଠ ରଘୁ
ଯୁବାବସ୍ଥା ଧରି ଅବା କରନ୍ତି କି ପୁଣି
ରାଜକାର୍ଯ୍ୟ ଆଲୋଚନା, ପିତାଙ୍କ ରାଜଶ୍ରୀ
ଲଭି ନ ଥିଲେ ସେ ଏକା, କରିଥିଲେ ପୁଣି
ଅଧିକାର ତାହାଙ୍କର ସର୍ବଗୁଣାବଳୀ ।
ସମୃଦ୍ଧିସମ୍ପନ୍ନ ଧନ୍ୟ ପୈତୃକ ପଦବୀ
ଶୋଭିଲା ଯୁବାଙ୍କ ଯୋଗେ, ନବୀନ ଯୌବନ
ପ୍ରକାଶିତ ହେଲା ତାଙ୍କ ବିନୟେ ଯେପର ।
ଭୋଗ କଲେ ମହାବାହୁ ଅଚିର ଆଗତା
ମହୀକୁ ସଦୟ ଭାବେ ନବପରିଣୀତା

---

୧—ଅଗ୍ନି ।

ବଧୂବର, ପ୍ରକାଶିଲେ ବଳ ଏକାବେଳେ
ଏମାନେ ଅଷ୍ଟେଗ ସିନା ଦୃଷ୍ଟାନ୍ତ ରୂପରେ ।
ତାଙ୍କ ପ୍ରୀତିପୂର୍ଣ୍ଣ ଦୃଷ୍ଟି ସ୍ନେହ ଲଭି ହୃଷ୍ଟେ
'କେବଳ ମୁଁ ରାଜପ୍ରିୟ' ଏରୂପ ସକଳେ
ମନେ କଲେ ପ୍ରଜାପୁଞ୍ଜ, କାହା ପ୍ରତି କେବେ
ନ କରି ସେ ଅନାଦର, ସମାନ ଦୃଷ୍ଟିରେ
ଦେଖୁଥିଲେ ସକଳଙ୍କୁ, ସମୁଦ୍ର ଯେସନ
ଶତ ଶତ ସରିତକୁ ନ କରି ବିମନା
ଆଦରେ ଶଙ୍ଖୋଳ ନଏ ବୀଚିବାହୁତୋଳି ।
ଅତିଶୟ ଉଗ୍ର ଅବା ଅତିଶୟ ମୃଦୁ
ନ ଥିଲେ ସେ ନରମଣି, ଅବଲମ୍ବି ଏଣୁ
ମଧ୍ୟମ ପ୍ରକାର ନୀତି ଆନତ କରିଲେ
ବିପକ୍ଷଙ୍କୁ, ଉତ୍ପାଟନ ନ କରି ସବଳେ,
ନୀତି ମୃଦୁବାୟୁ ଯଥା ନ ଉପାଡ଼ି ମୂଳୁଁ
ବଅଇ ନୁଆଁଇ ଧୀରେ ପାଦପମାନଙ୍କୁ ।
ଏଥୁଅନ୍ତେ ରଘୁରାଜ ନିଜ ଆତ୍ମଜକୁ
ପ୍ରକୃତିମଣ୍ଡଳେ ଦେଖି ପୂର୍ଣ୍ଣ ପ୍ରତିଷ୍ଠିତ
ତ୍ରିଦିବ ସୁଲଭ ନାନା ନଶ୍ୱର ଭୋଗରେ
ନିର୍ବିକାରମନେ, ହେଲେ ଅଭିଳାଷଶୂନ୍ୟ ।
ଦିଲୀପ ବଂଶରେ ଜାତ ନରନାଥମାନେ
କେ ନ ଜାଣେ ଗୁଣବାନ ସୁତହସ୍ତେ ଦେଇ
ପରିଣାମେ ରାଜଲକ୍ଷ୍ମୀ, ବନବାସେ ଯାଇ,
ପାଦପ ବଲ୍କଲଧାରୀ ଜିତେନ୍ଦ୍ରିୟଙ୍କର
ଅନୁସରଥାନ୍ତି ପଦ ଏକାଗ୍ର ମାନସେ
ଏଣୁ ବନେ ଯିବା ପାଇଁ ବୃଦ୍ଧ ଜନକଙ୍କୁ
ବ୍ୟଗ୍ର ଦେଖି, ତାଙ୍କ ପଦେ ମସ୍ତକ ଲୋଟାଇ
ଅଳି କଲେ ବହୁମତେ ବାଷ୍ପ ଗଦଗଦେ
ଯୁବରାଜ, "ମତେ ଛାଡ଼ି ଯାଅ ନାହିଁ" ବୋଲି ।
ପୂର୍ଣ୍ଣ କଲେ ଶୋକାକୁଳ ସୁତ ମନୋରଥ
ତନୁଜବତ୍ସଳ ରଘୁ, ମାତ୍ର ନ ଘେନିଲେ

ପରିତ୍ୟକ୍ତ ରାଜ୍ୟଭାର, ଭୁଜଙ୍ଗ ଯେସନ
ଛାଡ଼ିଥିବା କାନ୍ତି ତାର ନ କରେ ଗ୍ରହଣ ।
ଅନ୍ତିମ ଆଶ୍ରମ ଆଶ୍ରି ପୁର ବହିର୍ଭାଗେ
ରହିଲେ ନରେନ୍ଦ୍ର ଶେଷେ ଜିତେନ୍ଦ୍ରିୟ ହୋଇ ।
ପୁନଃସେବ୍ୟା ରାଜଲକ୍ଷ୍ମୀ ପୁନଃବଧୂପରି
ଶୁଶ୍ରୂଷା କରିଲେ ତାଙ୍କୁ ଫଳପୁଷ୍ପଯୋଗେ ।
ଶାନ୍ତିମାର୍ଗ ଅବଲମ୍ବୀ ପ୍ରାଚୀନ ନରେଶ,
ପୁଣି ଅଭ୍ୟୁଦୟଶାଳୀ ନବୀନ ରାଜନେ
ରବିକୁଳ ହେଲା ଅହା କେଡ଼େ ସୁଶୋଭନ,
ସମୁଦିତ ପ୍ରଭାକର ଅସ୍ତ ଶଶଧରେ
ମନୋମୁଗ୍ଧକର ରମ୍ୟ ନଭସ୍ଥଳ ପରି
ସନ୍ତବେଶେ, ରାଜାବେଶେ ରଘୁରାଘବଙ୍କୁ
ଦେଖି ମନେକଲେ ଲୋକେ, ଏ ଧରଣୀ ତଳେ
ଅପବର୍ଗ ଅଭ୍ୟୁଦୟ ଧର୍ମ୍ମବେନି କିବା
ନିଜ ମୂର୍ତ୍ତି ପରିଗ୍ରହି ଅବତରିଛନ୍ତି ।
ମିଳିତ ହୋଇଲେ ଅଜ ମାଣ୍ଡବଶାରଦ
ମନ୍ତ୍ରୀଯତ୍ନ ଲଭିବାକୁ ଅଜ୍ଞାତ ପ୍ରଦେଶ,
ମିଳିଲେ ପ୍ରାଚୀନ ଭୂପ ତତ୍ତ୍ୱଜ୍ଞ ତାପସ
ସଙ୍ଗତେ କୁଟୀରକକ୍ଷେ, ମୁକ୍ତିଲାଭ ଆଶେ ।
କରେଚଷ୍ଟି ବୃଦ୍ଧକୁ ଆସି ଯୁବକ ସ୍ୱଜନ
ପ୍ରଜା ଶାସନର ପାଇଁ କରିଲେ ଗ୍ରହଣ
ଲେଖନୀ, ପ୍ରାଚୀନ ଭୂପ ଏକାଗ୍ରଚିତ୍ତରେ
ଢେନଲେ ପଦ୍ମନକୁଶ-ପଦ୍ମର ଭଜନେ ।
ପ୍ରବର୍ତ୍ତିଲେ ରାଜଶକ୍ତି ପ୍ରଭାବରେ ଏକ
ବଶୀଭୂତେ ଆଣିବାକୁ ଅବାଧ୍ୟଭୂପଙ୍କୁ ।
ଉପର ଶରୀରସ୍ଥିତ ପଞ୍ଚମରୁତକୁ
ତୀବ୍ର ଯୋଗ ଅଭ୍ୟାସରେ ନିଜ ଆୟତ୍ତରେ
ରଖିବା ପାଇଁକି ସଦା ବଳାଇଲେ ମନ ।
ଭସ୍ମୀଭୂତ କଲେ ଏକ ଅରମାନଙ୍କର
ଭୂତଳସ୍ଥ କର୍ମ୍ମଫଳ, ଅପର ଆନନ୍ଦେ

ଜ୍ଞାନମୟ ହୁତାଶନେ ଦଗ୍ଧ କଲେ ପୁଣି
ନିଜ ଉପାର୍ଜିତ ଭବେ କର୍ମଫଳ ସବୁ ।
ସନ୍ଧିବିଗ୍ରହାଦି ଗୁଣ ପ୍ରୟୋଗ କରିଲେ
ଦେଶକାଳପାତ୍ର ଭେଦେ ନବ ନରେଶ୍ୱର ।
ସମଦୃଷ୍ଟି ରଖି, ଲୋଷ୍ଟ୍ର ମୃତ୍ତିକା କାଞ୍ଚନେ
ସତ୍ତ୍ୱ ରଜ ତମ ଏହି ତ୍ରିବିଧ ଗୁଣକୁ
ପ୍ରକୃତିସ୍ଥ କଲେ ଘୋର ସମାଧି ବଳରେ ।
ସ୍ଥିରକର୍ମା ନବ ଭୂପ ନିବର୍ତ୍ତିଲେ ନାହିଁ
ଫଳସିଦ୍ଧିଯାଏ, ନିଜ ଆରବ୍ଧ କାର୍ଯ୍ୟରୁ ।
ନବନୃପ ସ୍ଥିରବୁଦ୍ଧି, ପୁଣି ବୃଦ୍ଧଭୂପ
ବିରତ ନୋହିଲେ ସ୍ଥିର ଏକାନ୍ତ ଯୋଗରୁ
ଦେଖିଦେଖିଲେ, ପରମାତ୍ମା ପାଇବା ପର୍ଯ୍ୟନ୍ତ ।
ଏକାନ୍ତ ଆସକ୍ତ ହୋଇ ମୋକ୍ଷୋଲକ୍ଷ୍ୟ ଲଭେ
ଯଥାକ୍ରମେ ପରାଭବ ଇନ୍ଦ୍ରିୟ ଶତ୍ରୁଙ୍କୁ,
ଏରୂପେ ସେ ରଘୁ ଅଜ ମହାସତର୍କରେ
କର୍ମ କରି ସିଦ୍ଧିଲାଭ କଲେ ଅବଶେଷେ
ସର୍ବଭୂତେ ସମଦର୍ଶୀ ହୋଇ ନିର୍ବିକାରେ
ମହୋଦାର ରଘୁରାଜ, ପୁତ୍ର ଅନୁରୋଧେ
କଠୋର କେତେକ ବର୍ଷ ଯୋଗସମାଧିରେ,
ଲଭିଲେ ଶେଷରେ ପୁଣ୍ୟ ଅନାମୟଧାମ
ପିତୃଦେବଙ୍କର ଦେହ ବିସର୍ଜନ ଶୁଣି
ଶୋକରେ ସାଗ୍ନିକ ଅଜ ବହୁକ୍ଷଣଯାଏ
ବିସର୍ଜିଲେ ଅଶ୍ରୁଧାର ଅଧୀର ହୃଦୟେ ।
ଜନକ ଅନ୍ତ୍ୟେଷ୍ଟିକ୍ରିୟା ସମ୍ପାଦିଲେ ତହୁଁ
ସନ୍ନ୍ୟାସୀମାନଙ୍କ ସଙ୍ଗ; ନ ହୁଅଇ ଯେଣୁ
ଯୋଗତ୍ୟକ୍ତ ଶରୀରର ଅନଳ ସଂସ୍କାର ।
ଯୋଗୀଙ୍କ ମୃତାତ୍ମକର୍ମ ନୋହୁଥିଲେ ସୁଦ୍ଧା
ଶ୍ରାଦ୍ଧବିଧାନଙ୍କ ସେହି ଧର୍ମପ୍ରାଣ ଅଜ
ପିତୃଭକ୍ତ ବଶ ହୋଇ ସମ୍ପାଦିଲେ ଏବା
ସଗୌରବେ ଜନକର ମୃତାହ କ୍ରିୟାକୁ

ଯେଣୁ ପୁତ୍ରଦତ୍ତ ପିଣ୍ଡେ ନ କରନ୍ତି ଆଶା
କଦାପି ସେ, ଯୋଗେ ତନୁ ତେଜନ୍ତି ଯେମାନେ ।
"ମୋକ୍ଷପ୍ରାପ୍ତ ପିତୃ ପାଇଁ, ଶୋକ ଅନୁଚିତ"
ତତ୍ତ୍ୱଦର୍ଶୀଙ୍କର ଏହୁ ଉପଦେଶ ଲଭି,
ରଘୁବ୍ରଜ, ଉପଶମ କରି ମହାଦୁଃଖ
ମାନସୁଁ, କୋଦଣ୍ଡେ ଗୁଣ ଆରୋପଣ କରି,
ଆଣିଲେ ଆୟତ୍ତାଧୀନେ ସର୍ବ ଭୂମଣ୍ଡଳ ।
ଲଭି ନିଜ ସ୍ୱାମୀରୂପେ ବିକ୍ରମୀ ଅଜଙ୍କୁ
ସସାଗରାଧରା ପୁଣି ଇନ୍ଦୁମତୀ ରାଣୀ,
ବହୁ ରତ୍ନ ପ୍ରସବିନୀ ହୋଇଲେ ପ୍ରଥମ,
ଦ୍ୱିତୀୟା ବୀରେନ୍ଦ୍ର ପୁତ୍ର କରିଲେ ପ୍ରସବ ।
ବିସ୍ତାର କରିବେ ଯଶ ସେ ତନୟ କାଳେ,
ସୁବିଖ୍ୟାତ ଦଶରଥେ ହେବେ ବୀର୍ଯ୍ୟଶାଳୀ
ଦଶଶତ ରଶ୍ମିଧାରୀ ପ୍ରଭାକର ପରି,
ଦଶମୁଖ-ବୈରୀଙ୍କର ହୋଇବେ ଜନକ
ଜାଣି, ତାହାଙ୍କର ନାମ ରଖିଲେ ଆନନ୍ଦେ
ଜ୍ଞାନୀମାନେ ରଥପୂର୍ବେ ଦଶଶବ୍ଦ ଦେଇ ।
ଅଧ୍ୟୟନେ ଗୁରୁ ଋଣ, ଯଜ୍ଞେ ଦେବଋଣ,
ପୁତ୍ର ଉତ୍ପାଦନ କରି ପିତୃଗଣ ଋଣ,
ଯଥାବିଧି ମୁକ୍ତ ହୋଇ, ଶୋଭିଲେ ସେ ଅଜ
ରାହୁଦନ୍ତମୁକ୍ତ-ଦୀପ୍ତ ଦିନମଣି ପରି ।
ଥିଲା ତାହାଙ୍କର ବଳ ବିନାଶିବା ଲାଗି
ଆର୍ତ୍ତଭୟ, ପଣ୍ଡିତଙ୍କ ସତ୍କାର ନିମନ୍ତେ
ପାଣ୍ଡିତ୍ୟ, କେବଳ ଧନ ପରହିତ ବ୍ରତେ
ବ୍ୟୟ ହେଉଥିଲା, ନାହିଁ ଶ୍ରେଷ୍ଠ ଗୁଣାବଳୀ
ଯଥାକାଳେ ଆସୁଥିଲେ ପର ପ୍ରୟୋଜନେ ।
ନ୍ୟସ୍ତ କରି ରାଜ୍ୟଭାର ସଚିବ ହସ୍ତରେ
ସେ ପ୍ରଜାରଞ୍ଜକ ରାଜା, କିଛିକାଳ ପାଇଁ
ଇନ୍ଦୁମତୀ ରାଣୀସହ, ବାସନ୍ତ ବିହାରେ
ଉପକଣ୍ଠ ଉପବନେ ବଳାଇଲେ ମନ,

ବିବୁଧବନ୍ଦିତ ବଳୀ ଦେବରାଜ ଯଥା
ଶଚୀସହ ବିହରନ୍ତି ନନ୍ଦନ କାନନେ ।
ଯାଉଥିଲେ ସ୍ୱେଚ୍ଛାକାଳେ ଦେବର୍ଷି ନାରଦ
ଦକ୍ଷିଣ ସମୁଦ୍ରତୀରେ ଗୋକର୍ଣ୍ଣ ତୀର୍ଥକୁ,
ତୋଷିବାକୁ ସୁମଧୁର ବୀଣାଯନ୍ତ୍ର ଗୀତେ
ଶମ୍ଭୁଙ୍କୁ, ଅରୁଣଙ୍କର ଉଦୟ ମାର୍ଗରେ ।
ବିମଣ୍ଡିତ ହୋଇଥିଲା ସ୍ୱର୍ଗୀୟ କୁସୁମେ
ମହାମନା ଦେବର୍ଷିଙ୍କ ସୁମଧୁର ବୀଣା ।
ସେ ବୀଣା ମସ୍ତକଦେଶୁ ହରିନେଲା ବେଗେ
ବେଗବାନ ସମୀରଣ ମନୋହର ମାଳା,
ସୁବାସ ଲୋଭରେ କିବା ଆକାଶ ପ୍ରଦେଶେ
ମାଳ ପଛେ ଧାଉଁଥିବା ଭ୍ରମରଙ୍କୁ ଦେଖି
ମନେ ହେଉଥିଲା ପ୍ରତେ ନାରଦଙ୍କ ବୀଣା
ମୁଞ୍ଚୁଥିଲା କିବା ଘନ ଅଞ୍ଜନ ଅବିଳ—
ଅଶ୍ରୁବିନ୍ଦୁ, ପବନର ବେଗକୁ ନ ସହି ।
ମନୋହର ମକରନ୍ଦ ସୌରଭ ସମ୍ଭାରେ
ସ୍ୱର୍ଗର ସେ, ପୁଷ୍ପମାଳ, ଈରସ୍ୱାର ତର
ଲତାମାନଙ୍କର ଋତୁସମ୍ଭୂତ ଫୁଲକୁ,
ନିପତିତ ହେଲା ଯାଇ ଅତ୍ୟନ୍ତ ବେଗରେ
ଇନ୍ଦୁମତୀଙ୍କର ଉଚ୍ଚ ଉରଜ ଉପରେ ।
ସୁବଳିତ ଗୋଲ ବେନି ସ୍ଥୂଳ ଉରଜର
କ୍ଷଣକାଳ ସଖୀରୂପେ ଦେଖି ସେ ହାରକୁ,
ଅଧୀରେ ବିହ୍ୱଳ ହୋଇ ପାଟ ମହାଦେଈ
ନିମୀଳିତ ହୋଇଗଲେ ଚିରକାଳ ପାଇଁ
ରାହୁକବଳିତ ଚନ୍ଦ୍ର ଚନ୍ଦ୍ରିକା ପରାଏ ।
ବାଳାମଣି ପଡ଼ି ଗଲେ ହତଚେତନାରେ
ଭୂମିତଳେ, ଭୂପତିତ କଲେ ପ୍ରାଣେଶଙ୍କୁ,
ପତିତ ହୁଅଇ ଯିବା ପ୍ରଜ୍ୱଳିତ ଦୀପୁଁ
ଦୀପ ଶିଖା, ତୈଳବିନ୍ଦୁସହ ଭୂତଳରେ ।
ପାର୍ଶ୍ୱବର୍ତ୍ତୀ ପରିଜନେ ହାହାକାର ରବେ

କାନ୍ଦିଲେ କରୁଣସ୍ୱରେ ମୁଖରିତ କରି
ଉପବନ, ସମଦୁଃଖେ ଦୁଃଖୀ ପକ୍ଷୀମାନେ
ସ୍ୱରେବରେ ଯୋଗଦେଲେ ତହିଁ ଅଭିସ୍ୱରେ ।
ସିଞ୍ଚିଲେ ଶୀତଳ ଜଳେ ବିଞ୍ଚିଲେ ବ୍ୟଜନେ
ବ୍ୟସ୍ତେ ଅନୁଚର ଦଳ, ଉଠିଲେ ନରେଶ
ଚେତା ପାଇ ଉପଚାରେ, ମାତ୍ର ପାଟେଶ୍ୱରୀ
ଭାନୁମତୀ ସେହୁ ସ୍ଥଳେ ରହିଲେ ଅଚେତା,
ହେଲନାହିଁ ତାହାଙ୍କର ମହାନିଦ୍ରାଭଙ୍ଗ,
ଫଳପ୍ରଦ ହୁଏ କିନା ପ୍ରତିକାର ବିଧି
ପରମାୟୁ ଅବଶିଷ୍ଟ ଥିଲେ ମାନବର ?
ଛିନ୍ନତାର ବୀଣା ପରି ନୀରବେ ପଣ୍ଡିତା
ସଂଜ୍ଞାଶୂନ୍ୟା ପ୍ରେୟସୀଙ୍କୁ, ପ୍ରେୟସୀ-ବତ୍ସଳ
ନରମଣି, ପରିଚିତ ସ୍ନିଗ୍ଧ କ୍ରୋଡ଼ଦେଶେ
ସ୍ଥାପନ କରିଲେ ଶୋକେ ଭୂତଳୁ ଉଠାଇ ।
କମଳିନୀ, ପର୍ଯ୍ୟୁଷିତା ବିଗତ ଜୀବନା
ଜାୟାଙ୍କୁ କୋଳରେ ଥୋଇ ଦିଶିଲେ ସୁଜନ
ପ୍ରଭାତେ ଅଚଳ ମୃଗଲକ୍ଷ୍ମନେ ଲକ୍ଷିତ
କ୍ଷୀଣକାନ୍ତି ରୁଚିଶୂନ୍ୟ କଳାକର ପରି ।
ସ୍ୱଭାବସୁଲଭ ନିଜ ଧୀରତା ଉପେକ୍ଷି
ବାଷ୍ପ ଗଦଗଦକଣ୍ଠେ କାନ୍ଦିଲେ ବାତ୍ସନ
ଏରୂପେ ଅଯୋଧ୍ୟାଧିପ, ଉଦ୍‌ଭ୍ରାନ୍ତ ହୋଇଲେ
ତରଳ, ମୃଦୁତାଭଙ୍ଗି ବହୁଯାଏ ଲୌହ
ଅଚେତନ, କେ ଗଣିବ ପ୍ରାଣୀଗଣ କଥା ।
ଶରୀର ସଂଲଗ୍ନ ହୋଇ କୋମଳ କୁସୁମ
ହରିଲା ଯେବେଠି ପ୍ରାଣ, ତେବେ ଏ ସଂସାରେ
ମୃତ୍ୟୁ ଅଭିଳାଷୀ ହେଲେ ନିର୍ଦ୍ଦୟ ବିଧାତା,
ସ୍ୱକାର୍ଯ୍ୟ କାହିଁରେ ଅବା ନ ପାରିବେ ସାଧି ।
କୋମଳ ଦ୍ରବ୍ୟକୁ ଅବା କୋମଳ ପଦାର୍ଥେ
ନାଶିବାକୁ ସୁବ୍ୟବସ୍ଥା କରିଛନ୍ତି ବିଧି !
ନୋହିଲେ କପାଳିଁ ମୃତ୍ୟୁ ନୀହାର ପତନେ

ସୁକୁମାରୀ କମଳିନୀ ତୁଷାରା ବିନାଶେ ।
ପ୍ରାଣନାଶକାରୀ ଯେବେ ଅଟଇ ଏ ମାଳ
ସ୍ୱର୍ଗଚ୍ୟୁତ, ହୃଦୟରେ ରହିଅଛି ଏବେ
ମୋହର, କିପାଇଁ ପ୍ରାଣ ଯାଉ ନାହିଁ ଛାଡ଼ି ?
ଜାଣେ ଏ ସକଳ କଛି, ଈଶ୍ୱର ଇଚ୍ଛାରେ
ଅମୃତ କାହିଁବା ହୁଏ ପ୍ରାଣନାଶକାରୀ
ଗରଳ, କାହିଁବା ବିଷ ହୁଅଇ ଅମୃତ ।
ଏମାଳକୁ ବଜ୍ରରୂପେ ଜଗତନିୟନ୍ତା
ଗଢ଼ିଥିଲେ ଅବା ମୋର ଦୁରଦୃଷ୍ଟ ବଶେ,
ନପଡ଼ି ପାଦପବର, ଯାର ଶିମାଘାତେ
ପଡ଼ିଲା ସେ ପାଦପର ଆଶ୍ରିତା ବଲ୍ଲରୀ ।
ଅପରାଧୀ ହେଲେ ମୁଁହି ଯାହାକୁ ସଦୟେ
ପ୍ରିୟତମେ ! ଅନାଦର ନକର ମନରେ;
ଏବେ ସେ ନିରପରାଧ ତୁମ୍ଭ ଆଗେ ବସି
କାନ୍ଦୁଛି ତୁମ୍ଭର ଲାଗି, କର୍ପା ଅନାଥକୁ
ସମ୍ଭାଷଣ କରୁ ନାହିଁ ମଧୁର ଭାଷିଣି !
ନିଶ୍ଚୟ ଜାଣୁଛ ମୁହିଁ ଛଳିଲିଣି ମୋତେ
କପଟ ପ୍ରଣୟୀ ବୋଲି, ନୋହିଲେ କି କେବେ
ଯିବାକାଳେ କିଛି କଥା ନ ପଚ୍ଛର ମୋତେ
ସୁଧାହାସି ! ଯାଇଥାନ୍ତ ଯହିଁ ସେ ଦେଶକୁ,
ଯେ ଦେଶୁ ବାହୁଡ଼ି କେବେ ନ ଆସଇ କେହୁ ।
ରେ କୁତ୍ସିତ ଦଗ୍ଧପ୍ରାଣ ! ଯାଇଥିଲୁ ଯେବେ
ପ୍ରିୟାସହ, କାହିଁପାଇଁ ଲେଉଟିଲୁ କହ ।
ଫେରିଲୁ ଯେବେଠି, କର୍ପା ନଯେନ ଅସିଲୁ
ସଙ୍ଗେ ସଙ୍ଗେ ପ୍ରେୟସୀକୁ, ଭୋଗିବୁରେ ଏବେ
ଅଦ୍ଭୁତ ମହାଘୋର ବିରହ ବେଦନା ।
ରତିଶ୍ରମ ଜାତ ହାହା ସ୍ୱେଦବିନ୍ଦୁ ଜାଳ
ବିରାଜୁଛି ତୁମ୍ଭ ମୁଖେ, ଅଥଚ ସୁନ୍ଦରୀ !
ଅସ୍ତ ହୋଇଲିଣି ନିଜେ, ଦେହୀମାନଙ୍କର
ଏରୂପ ଅସାରତାକୁ ଧିକ ଶତବାର ।

ମନେ ମଧ୍ୟ ମୁହିଁ ଭେବେ ତୁମ୍ଭର ଅପ୍ରିୟ
ନଦେଶ୍ୱରେ ପ୍ରିୟତମେ, ତେବେ କାହିଁପାଇଁ
ଛାଡ଼ି ଯାଉଅଛ ମୋତେ, ଶବ୍ଦେ ସିନା ମୁହିଁ
ଥିଲି ବସୁଧାର ପତି, ରହିଥିଲ ମାତ୍ର
ସ୍ୱାସ୍ଥ୍ୟବନ୍ତ ଗାଢ଼ ପ୍ରୀତି ତୁମ୍ଭଠାରେ ସର୍ବ ।
ସୁରଭିତ କୁସୁମରେ ଖଚିତ ତୁମ୍ଭର
ଚଞ୍ଚଳ ଭ୍ରମର ପରି କୁଞ୍ଚିତ ଅଳକ,
ଧୀରେ ଧୀରେ ସମୀରଣ କମ୍ପାଇ ସଧୀରେ
କରନ୍ତେବୁ ! ମନେ ମୋର ଦେଉଛି ଜନ୍ମାଇ
ଚେତାପାଇ ତୁମ୍ଭେ ପୁଣି ଉଠଅଛ ବୋଲି ।
ଉଠ ଉଠ ପ୍ରିୟଧନ ! ନଶାକାଳେ ଯଥା
ଉଜ୍ଜ୍ୱଳ ଔଷଧିଗଣ ବଦୂରତ କରେ
ହିମାଦ୍ରିର ଗୁହାଗତ ଗାଢ଼ ଅନ୍ଧକାର,
ତେହ୍ନେ ମୋର ହୃଦୁଁ ତୁମ୍ଭେ କର ଅପନୀତ
ମଧୁର କଥାରେ ଯେତେ ବଷାଦ କାଳମା ।
ହଲୁଥିବା କୁନ୍ତଳରେ ଏକାନ୍ତ ସୁନ୍ଦର
ତୁମ୍ଭ ମୁଖ ଶଶିମୁଖି ! ଯାତନା ବଥର
ଆଳାପ କରବା ପାଇଁ ଅସମର୍ଥ ହୋଇ,
ଅଭ୍ୟନ୍ତରେ ସୁମଧୁର ଅଳି ଧ୍ୱନି ଶୂନ୍ୟ
ନଶାକାଳେ ପ୍ରସ୍ଫୁଟିତ ପଙ୍କଜନୀ ଯଥା ।
ଶର୍ବରୀ ଶଶିକୁ, ପୁଣି ଚକ୍ରବାକବଧୂ
ପ୍ରିୟତମ ଚକ୍ରବାକେ, ଲଭେ ବୋଲି ସିନା
ପୁନର୍ବାର, ସେମାନଙ୍କ ବରହ ଯାତନା
ସ୍ଥାୟୀ ନୁହେଁ ଅଳକାଳ, ମାତ୍ର ସୁଣବନ୍ତ !
ଚିରଦିନ ପାଇଁ ଯେଣୁ ହେଲ ଅନ୍ତର୍ହିତ
ନବହିବ କପାଁ ମୋତେ ତୁମ୍ଭର ବରହ ।
ହା ଦୈବ ! ଯେ ସୁକୋମଳ କଳେବରବଲ୍ଲୀ
ବସନ୍ତୀର, ଅନୁଭବ କରଇ ଯାତନା
ଶୋଭ ନବ କଣ୍ଟକଯୁ ରଚିତ ଶେଯରେ,
କପର କହ, ସେ ଘୋର ଚିତାନଳ କ୍ଳେଶ

ସହଚର ହା ହା ରେ ପଡ଼ ଭାସ୍ତୁ ଉପ୍ୟାସରେ !
ଅନୁମୃତା ହେଲ ପର ନସା ଏକ ଜଣା
ନାଚୁଥିଲ ଏମେଖଳା ହହୁହଳେ ଯାହା
ସୁରତ ଉତ୍ସବେ ନିତ୍ୟ ତୁମ୍ଭ ସହିତରେ
ପ୍ରଧାନ ରହସ୍ୟ ସଖୀ ରୂପେ ରୂପବତୀ,
ଚବନଦ୍ରା ଦେଖି ତୁମ୍ଭ ରହିଛି ଦୁଃଖରେ
ମଦଗନ୍ଧ ବନା ମୂକ ହୋଇ ସେ ଦୁଃଖିନୀ ।
ସୁରପୁରେ ପିବାପାଇଁ ତରତର ହୋଇ
ସୁନ୍ଦର ! ନିଶ୍ଚୟ ତୁମ୍ଭେ ଗତ ପାଉଅଛ
ମୋର କ୍ଲେଶ ଦୁର ପାଇଁ ମଧୁର ଆଳାପ
ପିକଠାରେ, ସୁମନ୍ଥର ଗତ ସ୍ୱଜହଂସେ,
ଚଞ୍ଚଳ ନୟନଭଙ୍ଗୀ ମୃଗୀ ନୟନରେ,
ହାବଭାବ ପବମାନ ଚଳିତ ଲତାରେ,
ମାତ୍ର ତୁମ୍ଭ ବରହରେ କାତର ଏ ହୃଦେ
ସେଇଁ ଗୁରୁତର ବ୍ୟଥା ଉପୁଜଇ ଏବେ,
ଧୈର୍ଯ୍ୟଧର ପାରୁ ନାହିଁ ଏମାନଙ୍କ ଯୋଗେ ।
ଅଗୋ କେଳକଲ୍ପବଲ୍ଲି ! ସେପିଥିଲ ସ୍ନେହେ
ଏ ରମ୍ୟ ରସାଳତରୁ, ପ୍ରିୟଙ୍ଗୁ ଲତିକା,
ଏକ ସ୍ଥାନେ ପତି ପତ୍ନୀ କରବ ବୋଲ୍ ଯା
ନକରାଇ ତାଙ୍କ ଶୁଭପରିଣୟ ବଧି
କାହାର ଯାଉଛ ହେଲେ ସ୍ୱଚ୍ଛ ଦେଖ ମନେ
କେତେ ଅନୁଚିତ କାର୍ଯ୍ୟ ହେଉଛି କହୁଣି !
ପ୍ରୟୋଗ କରବ ମୁହିଁ କପର କହତ !
ଅନ୍ତ୍ୟେଷ୍ଟି କାର୍ଯ୍ୟରେ ଏହି ଅଶୋକର ଫୁଲ,
ଅଳତାରଞ୍ଜିତ ତୁମ୍ଭ କୋମଳ ଚରଣ
ତାଡନେ ଦୋହଦ ଲଭ ଲେଟୁଥିଲ ଯାହା
ବାଲାରୁଣ କାନ୍ତି ରକ୍ତ ପୁଷ୍ପସ୍ତବକରେ
ମଧୁର ନୂପୁର ନାଦେ ମନୋହରତର
ତୁମ୍ଭର ଦୁର୍ଲ୍ଲଭ ପଦ-ପ୍ରହାର ସୁଖକୁ
ସ୍ମର ସ୍ମର ସଦା ମହା ଶୋକର ବ୍ୟାକୁଳେ

ଦେଖ ଦେଖ ବଦନନେ ଚାହୁଁଅଛ ଏହି
ଅଶୋକ ପାଦପ କେତେ, ଥୋପି ପଡ଼ୁଅଛ
ବିନ୍ଦୁ ବିନ୍ଦୁ ଲୁହମାନ୍ତୁ ଦୁଃଖିନୀ ନୟନ୍ତୁ ।
ବୃନ୍ତୁ ଥିଲ ବସି ଯାହା ମୋ ସହିତେ ଅଦ୍ଧ,
ହେ କଳରବିଣି ! ରମ୍ୟ କଳାସମେଖଳା,
ତୁମ୍ଭ ଶ୍ୱାସ ପବନର ଗନ୍ଧ ଅନୁସରି—
ବକୁଳ ଫୁଲରେ ଅହା କେତେ ଯତ୍ନ କର,
ଅଧା ହୋଇଅଛି ଦେଖ, ଗୁନ୍ଥି ନପାରଣ
କପିଁ ନିଦ୍ରା ଅଭିଭୂତା ହେଲ ଏତେ ବେଗେ ।
ତୁମ୍ଭ ସୁଖେ ସୁଖୀ ପୁଣି ତୁମ୍ଭ ଦୁଃଖେ ଦୁଃଖୀ
ଦେଖ ଏହି ସଖୀଗଣ କରନ୍ତି କନ୍ଦନ,
ପ୍ରତୀପ ଚନ୍ଦ୍ରମା ପ୍ରାୟ ମନୋମୁଗ୍ଧକର
ପ୍ରିୟତମ ସୁତ ଅହା ଶୋଉଛି କୋଳରେ
ସଦା ଅନୁରାଗୀ ମୁହିଁ ଅଛି ପୁଣି ପାଖେ,
ତଥାପି ସବୁଙ୍କ ମାୟା ଛଡ଼ି ଯାଉଛ ଯା,
ପ୍ରକାଶିତ ନୋହୁଛି କି ଘୋର ନିଷ୍ଠୁରତା
ଆଜଠାରୁ ଧୈର୍ଯ୍ୟଚ୍ୟୁତ, ସଙ୍ଗୀତେ ବିରତ
କେଶସ୍ପୃହା ବନବୃତ୍ତି, ଭୂଷଣେ ଅପ୍ରୀତ,
ବସନ୍ତାଦ ଉଦ୍ଧୁଳ ଉତ୍ସବସ୍ଥାନ,
ସୁଖଶଯ୍ୟା ମହାଶୂନ୍ୟ ହେବ ସିନା ମୋର ।
ଥିଲ ତୁମ୍ଭେ ଗୃହକାର୍ଯ୍ୟେ ସୁଦକ୍ଷା ଗୃହିଣୀ,
ବୁଦ୍ଧିଦାନେ ମନ୍ତ୍ରୀବର, ରହସ୍ୟେ ସଙ୍ଗିନୀ,
ପ୍ରିୟତମା ପ୍ରିୟଶିଷ୍ୟା ଲଳିତ ସଙ୍ଗୀତେ,
ନିର୍ଦ୍ଦୟ କୃତାନ୍ତ ଦୁଷ୍ଟ କେବଳ ତୁମ୍ଭଙ୍କୁ
ହରିନେଇ କି ରଖିବ ଆଉ କହ ମୋର
ପିଉଥିଲ ମଦିରାକ୍ଷି ! ଆନନ୍ଦମନରେ
ସ୍ୱହୁ ସୁବାସିତ ମଦ୍ୟ ଅଧା ପିଇକର
ଦେଉଥିଲେ ମୁହିଁ, ଏବେ କହନ କପର ?
ପିଇବ ନୟନମାରେ ଦୂଷିତ ଉଦକ
ପରଲୋକେ ଉପନୀତ ପ୍ରେତ ଜଳାଞ୍ଜଳି ।

ଅଖିଳ ସମ୍ପଦରାଶି ଥିଲେହେଁ ଭଣ୍ଡାରେ,
ସରିଲ ସକଳ ସୁଖ ଅଜଠାରୁ ମୋର,
ଅନ୍ୟ ପ୍ରଲୋଭନ ଆଉ ନ ପାରବେ ଟାଣି
ତୁମ୍ଭ ଛଡ଼ା, ତୁମ୍ଭଲାଗି ସବୁ ଭୋଗ ସିନା ।
ବିଳାପନ୍ତେ ଏହିରୂପେ କୋଶଳ ଈଶ୍ୱର
ସକରୁଣେ ସ୍ମରି ସ୍ମରି ପ୍ରିୟା ଗୁଣମାନ,
ସମଦୁଃଖେ ଦୁଃଖୀ ହୋଇ କାନ୍ଦିଲେ ବିଷାଦେ
ତରୁରାଜି, ତାହା ଦେଖି ସରସର ଛଳେ
ମକରନ୍ଦ ଅଶ୍ରୁବିନ୍ଦୁ କଲେ ବିସର୍ଜ୍ଜନ ।
ଅନନ୍ତର ବନ୍ଧୁବର୍ଗ ସବିଷାଦମନେ
ଅଳଂକାରେ ବିଭୂଷିତା ସର୍ବାଙ୍ଗ ସୁନ୍ଦରୀ
ସ୍ୱର୍ଗର କୁସୁମରୂପୀ ବିଶ୍ୱବନ୍ଦନୀୟା
ମହିଷୀଙ୍କୁ, ବହୁ କଷ୍ଟେ ଅଜଙ୍କ କୋଳରୁ
ଅପନୀତ କରି, ନବ ସଜ୍ଜିତ ଚିତାରେ
ଅଗୁରୁ ଚନ୍ଦନାନଳେ କଲେ ବିସର୍ଜ୍ଜନ ।
ଭସ୍ମୀଭୂତ ନୋହିଲେ ଯା ମହାରାଣୀ ସହ
ମହାରାଜ, ନୁହେ ତାହା ଜୀବିବା ଆଶାରେ,
"ବିଦ୍ୱାନ ହେଲେହେଁ ରାଜା ଶୋକାକୁଳ ହୋଇ
ରମଣୀର ସହ ଦେହ କଲେ ବିସର୍ଜ୍ଜନ
ଅନଳେ," ଏ ଅପବାଦ ଲଗି ନହିଲେ ଶାନ୍ତ ।
ଗୁଣମାନ ଅବଶିଷ୍ଟ ପ୍ରିୟାଙ୍କ ଉଦ୍ଦେଶ୍ୟ
ଶେଷ କରି ଦଶଦିନେ ମହାସମାରୋହେ
ଶ୍ରାଦ୍ଧକ୍ରିୟା ତପୋବନେ କ୍ରିୟାବାନଭୂପ,
ପ୍ରତ୍ୟୂଷେ ଧୂସରବର୍ଣ୍ଣ ଇନ୍ଦୁରେଖା ପରି
ଅତି କ୍ଷୀଣକାନ୍ତି ବହି ପତ୍ନୀଶୂନ୍ୟ ହୋଇ
ପୁରେ ପ୍ରବେଶିଲେ, ଯେତେ ପୁରାଙ୍ଗନାଙ୍କର
ଅଶ୍ରୁଜଳେ ହାହାରବେ ଦୁଃଖ ଗଦଗଦେ
ନିଜ ଶୋକ ଲହରୀକୁ ଦ୍ୱିଗୁଣିତ କରି ।
ଯୋଗବଳେ କୁଳଗୁରୁ ବଶିଷ୍ଠ ମହର୍ଷି
ଇନ୍ଦୁମତୀ ଶୋକେ ସଦା ମ୍ରିୟମାଣ ଜାଣି

ନରେଶଙ୍କୁ, ଏକ ଶିଷ୍ୟ କଲେ ପ୍ରେରଣ
ଦେବା ପାଇଁ ଉପଦେଶ ଏ ବିପଦକାଳେ ।
ମହର୍ଷି ବଶିଷ୍ଠ ଶିଷ୍ୟ ପ୍ରବେଶି ନଗରେ
ଯଥାକାଳେ ରାଜନଙ୍କୁ କଲେ ନିବେଦନ
ଦୀକ୍ଷିତ ଥିବାରୁ ଯଜ୍ଞେ କୁଳଗୁରୁ ତବ
ବଶିଷ୍ଠ, ପାରିଲେ ନାହିଁ ଉପସ୍ଥିତ ହୋଇ
ନିଜେ ସେହି ଏ ସ୍ଥାନରେ, ନାଶିବା ପାଇଁକି
କଳହ ବିନାଶ ଦୁଃଖ ତୁମ୍ଭ ହୃଦୟରୁ,
ଅବଗତ ହୋଇଲେହେଁ ସେ ଦୁଃଖର ହେତୁ ।
ତାହାଙ୍କ ସଂକ୍ଷିପ୍ତସାର ଉପଦେଶାବଳୀ
ହେ ସୁଶୀଳ ! ବହି ମୁହିଁ ଆସିଅଛି ଏଥି
ଧୀରମଣି ଧୈର୍ଯ୍ୟ ଧରି ଶୁଣ ସେ ବଚନ ।
ମହାମୁନି ଜ୍ଞାନନେତ୍ରେ ଦେଖନ୍ତି ସକଳ
ଭୂତ ଭବିଷ୍ୟତ ପୁଣି ବର୍ତ୍ତମାନ କଥା,
ଏଣୁ, ଏହି ଘନଙ୍କେକେ କିଛି ଅବିଦିତ
ରହେ ନାହିଁ ତାହାଙ୍କର ତପସ୍ୟା ପ୍ରଭାବେ ।
ସେହି ଯୋଗବଳେ ସେଇଁ ଅତୀତ ବିଷୟ—
ଇନ୍ଦୁମତୀ ରାଣୀଙ୍କର ବୁଝିଛନ୍ତି ମୁନି,
ଶୁଣ ନରମଣି ସେହି ଅପୂର୍ବ କାହାଣୀ,—
ତୃଣବିନ୍ଦୁ ନାମେ ଏକ କର୍ମିଷ୍ଠ ଋଷିଙ୍କ—
ଘୋରତପେ ଭୀତହୋଇ ସୁରେନ୍ଦ୍ର ବାସବ,
ପୂର୍ବେ ପଠାଇଥିଲେ ତପୋଭଙ୍ଗ ଆଶେ
ତପିଙ୍କ, ହରିଣୀ ନାମେ ଏକ ଅପ୍ସରକୁ
ଇନ୍ଦ୍ରଙ୍କ ଆଦେଶେ ସେହି ହରିଣୀ ଅପ୍ସରୀ,
ମୁନିବର ନିକଟରେ ଉପସ୍ଥିତ ହୋଇ,
ବିଳାସର ହାବଭାବ ପ୍ରକାଶିଲା ରଙ୍ଗେ
କେତେମତେ ମୁନି ଆଗେ ତପବିଘ୍ନ ପାଇଁ ।
ବିଚଳିତ ନୋହି ଗଲେ ତାର ଛଳନାରେ
ମାତ୍ର ତପି ତୃଣବିନ୍ଦୁ ଦେଲେ ଅଭିଶାପ,
ତପୋବିଘ୍ନଜାତ କ୍ରୋଧେ ଅଧୀର ମନରେ,

ସେ ଯୋଷାକୁ "ମର୍ତ୍ତ୍ୟେ ଲଭ ନାରୀ ଜନ୍ମ ବୋଲି"।
ଶାପ ଭୟେ ଭୀତା ସେହୁ ସୁର ସୀମନ୍ତିନୀ
ବିନୟେ କହିଲ ପଡ଼ି ମୁନି ପଦତଳେ,
ଗଦ୍‌ଗଦେ ଛନ୍ଦାଇ କର ଲୋତକ ଅପାରେ,
"ହେ ମହର୍ଷି ! ଏ ଦୁଃଖିନୀ ସଦା ପରାଧୀନା,
ଏଣୁ ଏହୁ ଗୁରୁତର ଦୋଷ ପାପିନୀର
କୃପାମୟ ! କୃପା କରି କ୍ଷମା କର ତାରେ,
ବାରବାର ଏହିରୂପେ ପ୍ରାର୍ଥନାରେ ତାର
କହିଲେ ସଦୟେ ଋଷି "ତାପ କର ସାର
ସ୍ୱର୍ଗୀୟ ସୁମନ ସ୍ପର୍ଶଯାଏ ମହୀତଳେ।"
କ୍ରଥକୈଶେ ଜନ୍ମି ସେହୁ ହରିଣୀ ଅପ୍ସରୀ
ହୋଇଥିଲେ ହେ ନରେଶ ! ମନୋହାରୀ ତବ,
ସ୍ୱର୍ଗଚ୍ୟୁତ ପୁଷ୍ପହାର ସ୍ପର୍ଶ କରିବାରୁ,
ଏବେ ଏ ମର୍ତ୍ତ୍ୟର ତନୁ କଲେ ପରିତ୍ୟାଗ
ଶାପ ବିମୋଚନ କାର୍ଯ୍ୟ କାରଣ ସ୍ୱରୂପ।
ଏଣୁ ତାଙ୍କ ପାଇଁ ଭୂପ ! ସର୍ବଦା କାନ୍ଦିବା
ନୁହଇ ଉଚିତ କେବେ, ଜନ୍ମିଲେ ସଂସାରେ
ମରିବାକୁ ହେବ ଦିନେ ନିଶ୍ଚୟ ଏକଥା।
ପତ୍ନୀହୀନ ବୋଲି ନୃପ ଭାବୁଛ କି ମନେ,
ପାଳନ କର ଏ ମହୀ, ହୋଇଥାନ୍ତି ଯିନା
ରାଜାଏ କଳତ୍ରବନ୍ତ ଏ ବସୁଧା ଯୋଗେ।
ଅଭ୍ୟୁଦୟକାଳେ ତୁମ୍ଭେ ହେ ଯଶସ୍ୱୀବର !
ମତ୍ତ ନୋହି ଗର୍ବେ କେବେ, ପ୍ରକାଶି ଲୋକରେ
ଅବିକୃତ ମନସ୍ୱିତା, ବିପୁଳ ଜ୍ଞାନର
ଦେଇଥିଲ ପରିଚୟ, ଏବେ ବୀରମଣି !
ପୁଣିଥରେ ଗାମ୍ଭୀର୍ଯ୍ୟତା କର ପ୍ରଦର୍ଶନ
ଗୁରୁତର ମନୋବ୍ୟଥାକାଳେ ଧୈର୍ଯ୍ୟଧର।
ମହାଯତ୍ନେ କାନ୍ଦିଲେହେଁ ନ ଫେରିବେ ଆଉ
ଇନ୍ଦୁମତୀ, ସଙ୍ଗେ ମୃତ ହେଲେହେଁ ସେ ଆଉ
ନ ମିଳିବେ, ଜୀବଗଣ ଯେଣୁ ଲୋକାନ୍ତରେ

ଲଭିଥାନ୍ତି ଜୀବଗଣ ସଦାବେଳେ ଯାଇ,
ନିଜ ନିଜ କୃତ କର୍ମଫଳ ଅନୁସାରେ ।
ଶୋକ ପରିହରି ଏଣୁ ପିଣ୍ଡୋଦକ ଦେଇ
ପ୍ରକାଶ ନିଜର ପୂର୍ଣ୍ଣ ଅନୁରାଗ ଚିହ୍ନ
ପତ୍ନୀ ପୁତ୍ର, ସନ୍ତାପିତ ଆତ୍ମୀୟଙ୍କ ଲୁହ
ଦଗ୍ଧୀଭୂତ କରେ ସିନା ପ୍ରେତାତ୍ମାକୁ ସଦା ।
କହିଥାନ୍ତି ବୁଧମାନେ, ଶାସ୍ତ୍ରୀମାନଙ୍କ
ମରଣ ସ୍ୱଭାବସିଦ୍ଧ; ଜୀଇଁବାର ଏକା
ଅଟଇ ବିକୃତ ଭାବେ, ଏଣୁ ନରମଣି ।
କ୍ଷଣେ ସୁଦ୍ଧା ଯେବେ ପ୍ରାଣୀ ଜୀବିତାବସ୍ଥାରେ
ରହେ ବଞ୍ଚି; ନୁହେ କି ତା ପରମସୌଭାଗ୍ୟ ?
ହୃଦୟରେ ଶଲ୍ୟବିଦ୍ଧ ଯାତନାରୁ ବଳି
ମଣିଥାନ୍ତି ମୂଢ଼ମାନେ ପ୍ରିୟ ବିନାଶକୁ
ମୋହବଶେ, ସ୍ଥିରବୁଦ୍ଧି ଜ୍ଞାନୀଗଣ ମାତ୍ର
ମୋକ୍ଷର ଉପାୟ ଭାବି ପ୍ରିୟର ମୃତ୍ୟୁକୁ,
ହୃଦୁଁ ଶଲ୍ୟ ଦୂର ହେଲା ବୋଲି ବିଚାରନ୍ତି ।
ଦେଖୁଥାଇଁ ଅହରହ ଘଟୁଅଛି ଯେବେ
ନିଜ ଦେହ ସହ ନିଜ ଆତ୍ମାର ବିଚ୍ଛେଦ,
ତେବେ କି ଆଶ୍ଚର୍ଯ୍ୟ କଥା, ପୁତ୍ର ପତ୍ନୀଆଦି
ବାହ୍ୟବିଷୟ ସହ ହେବାର ବିରହ ?
ଉଚିତ ନୁହଇ ତବ ହେ ସୁବୋଧବର !
ଇତର ମାନବ ପରି ମଜ୍ଜି ମହାଶୋକେ
କାନ୍ଦିବା, ପାଦପେ, ଶୈଳେ କି ବିଶେଷ ? ଯେବେ
ବାୟୁବେଗେ ବିଚଳିତ ହୋଇବେ ବେନିଏ
ଉଦାର ହୃଦୟ ଗୁରୁ ଉପଦେଶବାଣୀ
ଶିଷ୍ୟ ମୁଖୁ ଯଥାବିଧି ଶୁଣି ନରମଣି
ବିଦାୟ ପ୍ରଦାନ କଲେ ପ୍ରଣମି ବିନୟେ,
ଲେଉଟି ଅସିଲା ମାତ୍ର ଗୁରୁ ପାଖେ ପୁଣି
ଗୁରୁଙ୍କର ଉପଦେଶ ଶିଷ୍ୟ ସହିତରେ,
ନପାଇ ଟିକିଏ ସ୍ଥାନ ରହିବା ପାଇଁକି

ପ୍ରିୟା ଶୋକ—ସାନ୍ଦ୍ରୀଭୂତ ନରେନ୍ଦ୍ର ହୃଦୟେ ।
ମାତୃହୀନ ବାଳକର ବାଲ୍ୟାବସ୍ଥା ଦେଖି,
ଅତି କଷ୍ଟେ ଅଷ୍ଟବର୍ଷ କରିଲେ ଯାପନ
ସତ୍ୟପ୍ରିୟଭାଷୀ ଅଜ, ପୁନ ଅନ୍ତରରେ
ପ୍ରାଣପ୍ରିୟା ମହିଷୀଙ୍କ ପ୍ରତିକୃତି ସ୍ମରି,
ବେଳେ ବେଳେ ସ୍ୱପନରେ ଇନ୍ଦୁମତୀ ସହ
କ୍ଷଣମିଳନର ସୁଖ ଅସ୍ୱାଦନ କରି ;
ଦେଖୁଁ ଦେଖୁଁ ଶୋକଶଲ୍ୟ ପ୍ରବଳ ଆବେଗେ
ପ୍ରବେଶିଲା ନୃପ ହୃଦେ, ବଟଚେର ଯଥା
ଭେଦାଇ ସଉଧତଳ, ନହେଲା ଶମିତ
ଶ୍ରେଷ୍ଠ ବୈଦ୍ୟ ଚିକିତ୍ସାରେ, ମାତ୍ର ନୃପମଣି
ସେ ଶଲ୍ୟକୁ ଉପକାର୍ଯ୍ୟ ମଣିଲେ ମନରେ,
ପ୍ରିୟତମା ନିକଟକୁ ଶୀଘ୍ର ଯିବା ପାଇଁ
ଅବଲମ୍ବେ ତାହା ବାଟ ଫିଟାଇବ ବୋଲି ।
ବିନୟଭୂଷଣ ଅଜ, ତହୁଁ ସବିନୀତ—
କୁମାରଙ୍କୁ ଦେଖି ବର୍ମ ଧାରଣେ ସକ୍ଷମ,
ଯଥାବିଧି ରାଜ୍ୟଭାର ସମର୍ପଣ କରି,
ସ୍ୱର୍ଗ ଅନ୍ୱେଷଣ ପାଇଁ କଲେ ଉପବାସ ।
ଏରୂପେ ସରଯୂ ଗଙ୍ଗା ସଙ୍ଗମ ତୀର୍ଥରେ
ତ୍ୟାଗ କରି କଳେବର, ଅମରତ୍ୱ ଲଭି
ତତ୍‌କ୍ଷଣ ବିହାର କଲେ ନନ୍ଦନ କାନନ
ମଧ୍ୟବର୍ତ୍ତୀ ଲୀଳାଗାରେ ସାନନ୍ଦ ମନରେ,
ଶତଗୁଣେ ମନୋହର ଇନ୍ଦୁମତୀଠାରୁ
ଅଦ୍ଭୁତ ତରୁଣୀ କମନୀୟା କାନ୍ତା ସଙ୍ଗେ ।

---

# ନବମ ସର୍ଗ

ଅସ୍ତେଗଲେ ପିତାଙ୍କର ପରଲୋକ ପରେ
ଜ୍ଞାନୀଗଣ ଅଗ୍ରଗଣ୍ୟ ନୃପ ଦଶରଥ
ଅଯୋଧ୍ୟାର ସୁପବିତ୍ର ରାଜସିଂହାସନେ ।
ଉଲ୍ଲସିଲ ସେ ନରେନ୍ଦ୍ର, କୁଳ କ୍ରମାଗତ
ପୈତୃକ ନଗରୀ ଲଭି, ପାଳି ସୁଯତନେ
ପ୍ରଜାମଣ୍ଡଳୀକୁ ସୁଖେ, ଉଡାଇଲେ ଦେଶେ
ଉଜ୍ଜ୍ୱଳ ଗୌରବ ଧ୍ୱଜା ଗୁଣୀ ସମାଜରେ
ଶସ୍ୟପାଇଁ ଜଳବୃଷ୍ଟି କରୁଥିଲେ ଇନ୍ଦ୍ର,
ପୁଣି ପ୍ରଜାମାନଙ୍କର ପ୍ରୟୋଜନ ବେଳେ
ଏ ପ୍ରଜାରଞ୍ଜନ ଭୂପ ଦେଉଥିଲେ ଧନ,
କହୁଥିଲେ ଉଭୟଙ୍କୁ ଏଣୁ ବନ୍ଧୁଜନେ ।
ସାଧୁ ଉପାୟରେ ସଦା ସ୍ୱକାର୍ଯ୍ୟ ନିରତ
ବ୍ୟକ୍ତିମାନଙ୍କର ଶ୍ରମ ଦୂରକାରୀ ବୋଲି ।
ଦଶରଥ, ସୁଶାସନ କରନ୍ତେ ଧରଣୀ,
ଦୂରେ ଥାଉଁ ଶତ୍ରୁଙ୍କର ଆକ୍ରମଣଭୟ
ପଶି ନ ପାରିଲା ବ୍ୟାଧି ରାଜ୍ୟରେ କଦାପି
ସର୍ବଦା ପୃଥିବୀ ହେଲା ଫଳ-ପୁଷ୍ପବତୀ ।
ହୋଇଥିଲା ସୁଶୋଭିତା ଧରଣୀ ଯେପରି
ଦଶଦିଗ ଜେତା ରଘୁ, ପୁଣି ପରବର୍ତ୍ତୀ—
ମହାରାଜ ଅଜଙ୍କର ରାଜତ୍ୱ କାଳରେ,
ଏବେ ପୁଣି ସେହିପରି ହେଲା ସୁସଜ୍ଜିତା
ପ୍ରବଳପ୍ରତାପୀ, ଗୁଣୀ ଏ ବୀରେନ୍ଦ୍ରମଣି
ଦଶରଥ ନୃପଙ୍କରେ ସମାଗତା ହୋଇ ।
ସମସ୍ତେ ଧନ ଦାନ କରି ଧରାଧିପ
ଥିଲେ ଧନପତିସମ, ତପନଙ୍କ ପରି
ରାଜୁଥିଲା ତେଜ ତାଙ୍କ ଦଶଦିଗ ଉଜ୍ଜ୍ୱଳି,
ବହିଥିଲେ ଦଣ୍ଡ ଭୂପ ଦଣ୍ଡଧର ସମ
ମାତ୍ର ରାଜ୍ୟ କରୁଥିଲେ ଶାନ୍ତି ପ୍ରତିଷ୍ଠିତ ।

ଉଲଗ୍ନ ଅଜ୍ଞାତ୍ମା ହୋଇ ଉଠିଲେ ଯେତେଲେ
ଉଚ ସୋପାନରେ ସ୍ୱଏ, ହୃର ନ ପାରଲେ
ସେ କାଳେ ମାନସ ତାଙ୍କ ମୃଗୟା ବିନୋଦ,
ଧନଧ୍ୱଂସୀ ପଶାଖେଳ, ମର୍ଯ୍ୟାଦା-ନାଶକ—
ଶଶାଙ୍କ ସଦୃଶ ଶୁଭ୍ର ସୁନିର୍ମଳ ମଦ୍ୟ,
ପୁଣି ନବ ଯଉବନା ବନିତାମଣ୍ଡଳୀ ।
ତିଳୁ ନ ଥିଲେ ସେ କେବେ କହିବା ପାଇଁକି
ଉଚିତ ବଚନ ସଦା ଇନ୍ଦ୍ରଙ୍କୁ, ସ୍ୱର୍ଗରେ
ହେଲେହେଁ ସେ ପ୍ରଭୁବାଚ୍ୟ, ସ୍ୱପ୍ନ ନ ଥିଲେ ସେ
ପରିହାସ ଛଳେ ମିଥ୍ୟା, କଦ୍ଧୁ ନ ଥିଲେ ସେ
ନିଷ୍ଠୁର ବଚନ କେବେ ବିପକ୍ଷକୁ ସୁଦ୍ଧା ।
ଦଣ୍ଡୁଥିଲେ ଭୂପ ଦୁଷ୍ଟ ପ୍ରତିଦ୍ୱନ୍ଦ୍ୱୀଦଳେ
ଅତ୍ୟନ୍ତ କର୍କଶ ହୃଦେ, ମାତ୍ର ସଦାବେଳେ
ଆଦେଶପାଳନକାରୀ ବିନୀତମାନଙ୍କୁ
ମିତ୍ରରୂପେ ଦେଖୁଥିଲେ ସେ ମିତ୍ରବଂଶଜ—
ଦଶରଥ, ଏଣୁ ସର୍ବ ମହୀପାଳଙ୍କର
ହୋଇଲା ଉଦୟ ପୁଣି ଅସ୍ତ ତାଙ୍କ ଯୋଗେ,
ଧନୁରେ ଚଢାଇ ଗୁଣ ଦଶରଥ ରାଜା
ଏକରଥେ ଚାହାରଲେ ଜିଣିବା ପାଇଁକି
ସାଗର ପରିଖାଶୋଭି ଏହି ଧରଣୀକୁ
ମହାଦମ୍ଭେ, ପିଛାକାଳେ ଘୋଷିଲେ ବିଜୟ
ଗଜବାଜୀଯୁକ୍ତ ତାଙ୍କ ଚଣ୍ଡ ସେନାସଜ,
ଯୋଗଦେଇ ତହିଁ ପୁଣି ଗମ୍ଭୀର ନିର୍ଘୋଷେ
ଜୟ ଦୁନ୍ଦୁଭିର କାର୍ଯ୍ୟ କଲେ ସମ୍ପାଦନ
ସିନ୍ଧୁ ଚତୁଷ୍ଟୟ ପୁଣି ଜଳଦମଣ୍ଡଳ
ମହୋଲ୍ଲାସେ, ଧନୁର୍ଦ୍ଧର ଧନପତିସମ
ଧନଶାଳୀ, ଧୀସମ୍ପନ୍ନ ଧରାଧିପଙ୍କର ।
ଛିନ୍ନ କଲେ ଅବହେଳେ ଯଥା ପୁରନ୍ଦର
କୁଳିଶରେ ପକ୍ଷଦଳ ଶିଖରୀମାନଙ୍କ
ତେସନ ସେ କଲେ ଧରି ଖାମଶ୍ମସନ

ବିନାଶିଲେ ଅବହେଳେ ବଇରିଙ୍କ ବଳ ।
ଦେବଗଣ ଯଥା ନିତ୍ୟ ପ୍ରଣାମ କରନ୍ତି
ସୁରପତି ପାଦପଦ୍ମେ ତେସନ ତେଜସ୍ୱୀ
ଦୁର୍ନିବାର ପ୍ରସ୍ତବନ୍ତ ଦଶରଥ ପଦେ
ନମସ୍କାର କଲେ ଆହା ସହସ୍ର ସହସ୍ର
ନରନାଥ ଭକ୍ତିଭରେ, ପ୍ରଣାମ କାଳରେ
ସ୍ୱଶିର କିରୀଟମଣି ଜ୍ୟୋତି ଶତଗୁଣେ
ବଢ଼ାଇ ତାହାଙ୍କ ପଦ ନଖର ପ୍ରଭାରେ ।
କୁନ୍ତଳସଂସ୍କାର-ଶୂନ୍ୟା ମଳିନବଦନା
(ଯୁଦ୍ଧେ ସ୍ୱାମୀ ମରିବାରୁ) ଶତ୍ରୁ ମହିଳାଏ,
ଅନନ୍ୟ ଉପାୟେ, ନିଜ ଶିଶୁ ସନ୍ତାନଙ୍କୁ
ପଠାଇ ମନ୍ତ୍ରୀଙ୍କ ସହ ତାହାଙ୍କ ସମ୍ମୁଖ
ହୁଅନ୍ତେ ଶରଣାଗତ, ମନ୍ତ୍ରୀଙ୍କ ଇଙ୍ଗିତେ
କୃତାଞ୍ଜଳିପୁଟେ ଡିମ୍ଭେ ଆଗେ ଉଭା ହୋଇ
ମାଗନ୍ତେ କରୁଣାଭିକ୍ଷା, ଦୟାଳୁ ନରେଶ
ସମର୍ପଣ କରି ତାଙ୍କୁ ଗୃହୀତ ନଗର
ବାହୁଡ଼ିଲେ, ରଣବାଦ୍ୟ ପୂରି ଦିଗ୍‌ମଣ୍ଡଳ
ସୁଦୂର ସାଗରତୀରୁଁ ଅଯୋଧ୍ୟା ନଗରେ ।
ରବି ଶଶିସମ ଅଭ୍ୟୁଦୟଶାଳୀ ରାଜ୍ୟେ
ହେଲେ ରାଜଚକ୍ରବର୍ତ୍ତୀ, କରତଳେ ରଖି
ସସାଗରା ଧରଣୀକୁ, ହେଲେହେଁ ସେ ଏହି
ଅଖଣ୍ଡମଣ୍ଡଳେଶ୍ୱର, ମହାସତର୍କରେ
ଶାସନ କରିଲେ ରାଜ୍ୟ ତଥାପି କୌଶଳେ,
ଚଞ୍ଚଳା କମଳାଦେବୀ ଯେଣୁ ସଦାବେଳେ
ଆଳସ୍ୟାଦି ନାନାରୂପ ଛଳ ଅବଲମ୍ବି,
ଅସ୍ତୁ କରନ୍ତି ସଦା ଅନ୍ୟସ୍ଥାନେ ଯାଇ ।
ନ ପାରନ୍ତି ଛାଡ଼ି ଯଥା ବିଷ୍ଣୁଙ୍କୁ କମଳା,
ସେହିରୂପେ ନ ପାରିଲେ ପରିତ୍ୟାଗ କରି
ରାଜଲକ୍ଷ୍ମୀ, ଦଶରଥ ବଦାନ୍ୟବରଙ୍କୁ ।
ପତିରୂପେ ପ୍ରାପ୍ତ ହେଲେ ତହୁଁ ସେ ନୃପଙ୍କୁ

କୋଶଳ ରାଜାଙ୍କ ଝିଅ କୌଶଲ୍ୟାସୁନ୍ଦରୀ,
କାଶ୍ମୀର ନରେଶ କନ୍ୟା ରୂପସୀ କୈକେୟୀ,
ମଗଧ ନରେଶପୁତ୍ରୀ ସୁମିତ୍ରା ସୁନ୍ଦରୀ
ବର୍ଷାକାଳେ ସମୁଦ୍ରକୁ ଲଭନ୍ତି ଯେସନ
ଗିରିତରଙ୍ଗିଣୀଗଣ ଜନ୍ମସ୍ଥାନ ଛାଡ଼ି ।
ବଳଶ୍ରୀ-ଜୟଶ୍ରୀ ସେହୁ ହେଲେ ସୁଶୋଭିତ
ତିନ ରାଣୀଙ୍କର ଯୋଗେ ସୁରପତି ଯଥା
ଉତ୍ସାହ, ପ୍ରଭାବ, ମନ୍ତ୍ର, ଏହି ତ୍ରିସାଧନା—
ଶକ୍ତିସହ, ପ୍ରଜାପୁଞ୍ଜ ପାଳିବାପାଇଁକି
ଅବତୀର୍ଣ୍ଣ ହୋଇଥିଲେ ଏହି ଧରାତଳେ ।
ଦେବାସୁର ଯୁଦ୍ଧକାଳେ ଏକଦା ରାଜନ
ଯାଇଥିଲେ ଇନ୍ଦ୍ରଙ୍କର ସହାୟତା ପାଇଁ,
ତହିଁ ଶରେ ଦୈତ୍ୟ ନାଶି ସୁରାଙ୍ଗନାଙ୍କର
ମହାଭୟ ଦୂର କରି ଶୁଣୁଥିଲେ ସୁଖେ
ନିଜ ଭୁଜ ଯଶୋଗୀତ ସେମାନଙ୍କ ମୁଖେ ।
ବାହୁବଳେ ଅର୍ଥରାଶି ଦିଗବିଦିଗରୁ
ଢୁଳାଇ ସେ ଅନାୟାସେ ଅନୁଷ୍ଠାନ କରି
ଅଶ୍ୱମେଧ ମହାଯଜ୍ଞ, ପୋତି ସ୍ଥାନେ ସ୍ଥାନେ
ଯଜ୍ଞୀୟ କନକ-ଯୂପ ଉଜ୍ଜ୍ୱଳ କରିଲେ,
ତମସା ସରଯୂ ବେନି ନଦୀତୀର ଭୂମି ।
ଯଜ୍ଞ ଅନୁଷ୍ଠାନକାଳେ ମୌନବ୍ରତ ଧରି
ଅଗ୍ନିର ନିମନ୍ତେ ବସି ଅଜିନ ଆସନେ
ଧରୁଥିଲେ ପୂତଦଣ୍ଡ, କୁଶମୟୀ କାଞ୍ଚି,
ମୃଗଶୃଙ୍ଗ, ସେ କାଳରେ ପ୍ରଭୁ ଲୋକନାଥ
ଅନୁସ୍ଥିତ ହୋଇ ତହିଁ ଦୀକ୍ଷିତ ନୃପଙ୍କ
ବୃଦ୍ଧି କରି ଦେଉଥିଲେ ବହୁଗୁଣେ ଶୋଭା ।
ଯାଗ ସମାପନ ଅନ୍ତେ, ଶୁଦ୍ଧସ୍ନାନ ଶେଷେ
ଦେବସଭା ପ୍ରଫୁଲ୍ଲିତ, ଦଶରଥ ନୃପ,
ନୁଆଇଁ ନ ଥିଲେ କେବେ ସମୁନ୍ନତ ନିଜ—
ମସ୍ତକ କୌଣସି ଭୂପ ଆଗେ ଭକ୍ତିଭରେ,

ସସାଗରା ମେଦନୀରେ ଯେଣୁ ସେ ଅଟନ୍ତି
ଅଦ୍ୱିତୀୟ, ନମୁଥିଲେ କେବଳ ମାତର
ଦାନବ ବିଜେତା ଦେବ ଇନ୍ଦ୍ରଙ୍କ ଭୟରେ
ନିବାରଣ କରୁଥିଲେ ଇନ୍ଦ୍ରଙ୍କ ଅଗରେ
ସୂର୍ଯ୍ୟମଣ୍ଡଳକୁ ଢାଙ୍କି ଉଠୁଥିଲା ଯେତେ
ରଣରେଣୁ, ସ୍ୱମବର୍ମ୍ମା ରାକ୍ଷସଙ୍କ ରଙ୍ଗେ
ଏକରଥେ କରେ ଧରି ପ୍ରଚଣ୍ଡ କୋଦଣ୍ଡ ।
କୁବେର, ବରୁଣ, ଯମ, ଚନ୍ଦ୍ରଙ୍କ ସମାନ
ଏକେଶ୍ୱର ନରେନ୍ଦ୍ରଙ୍କୁ ସେବିବାକୁ କିସେ
ଆସିଲା ବସନ୍ତ କାଳ କୁସୁମ ସମ୍ଭାରେ ।
ସାରଥି ଅରୁଣ ଯୋଗେ ବାହୁଡ଼ାଇ ଅଶ୍ୱ
ପ୍ରଭାକର, ତ୍ୟାଗକଲେ ମଳୟ ଗିରିକୁ
ଶିଶିରକୁ ନାଶି ଶୀଘ୍ର, ସୁବିମଳ କରି
ତନ ମୁଖ, ଯିବା ପାଇଁ ଉତ୍ତର ଦିଗକୁ ।
ସଙ୍ଗ ଅଗ୍ରେ ନବ ପତ୍ର ତହୁଁ ଫୁଲକଳି,
ତାପରେ ଭ୍ରମର ପିକ କୁହୁଧ୍ୱନି ସହ
ଯଥାକ୍ରମେ ଋତୁରାଜ ଅବତୀର୍ଣ୍ଣ ହୋଇ
ଦ୍ରୁମରାଜି ସମାକୁଳ ନବ ବନସ୍ଥଳୀ,
ଆସିଲା ଧରାକୁ ଧୀରେ ମନୋହର ବେଶେ ।
ଯାଚକ ନିକର ସଦା ଲଭୁଥାନ୍ତି ଯଥା
ଦଶରଥ ଅଧିପଙ୍କ ସ୍ୱନାମ ବର୍ଦ୍ଧିତ
ପର ଉପକାରେ ଯୁକ୍ତ ସମ୍ପଦ ରାଜକୁ
ଶୋଭାମୟୀ ନଳିନୀକୁ ପାଇଲେ ତେସନ
ଭ୍ରମର ସହିତ ପ୍ରାର୍ଥୀ ଜଳପକ୍ଷୀମାନେ ।
ଜାଗରିତ କଲେ ନାହିଁ କନ୍ଦର୍ପକୁ ଏକା
ବସନ୍ତରେ ନବଜାତ ଅଶୋକ ଲତାଏ
ବିକଚ କୁସୁମମାନେ, କରୁଥିଲେ ପୁଣି
ଉନ୍ମାଦ ବିଶେଷରୂପେ ବିଳାସୀ ଯୁବାକୁ
ନାଗରୀଙ୍କ କର୍ଣ୍ଣଶୋଭି ନବୀନ ପତ୍ରରେ ।
ବିକଶିତ କୁରୁବକ ପାଦପକୁ ଦେଖି

ମନେହେଲା ବସନ୍ତ କି କରିଥିଲା ଚିତ୍ର
ପତ୍ରାବଳୀ, ମନୋହର ଉଦ୍ୟାନର ଲକ୍ଷ୍ମୀ
ମଧୁଗନ୍ଧେ ଅନ୍ଧ ହୋଇ ମଧୁକର ପନ୍ତି
ଉଡୁଥିଲେ ଦଳେ ଦଳେ ଗୁଞ୍ଜରି ମଧୁରେ
ମକରନ୍ଦଦାନଦକ୍ଷ ସେ ବୃକ୍ଷ ଚୌଦିଗେ ।
ସୁମୁଖୀ ମହିଳାଙ୍କର ମୁଖମଦ୍ୟ ଲଭି
ପ୍ରସ୍ଫୁଟିତ ହୋଇଥିଲା ଯେ ଅଶୋକତରୁ
ସେ ମଦ୍ୟର-ସମ ରମ୍ୟ ସୁବାସିତ ଫୁଲେ,
ମଧୁଲୋଭୀ ଶ୍ରେଣୀବଦ୍ଧ ଭ୍ରମର ନିକର
ଉଡ଼ି ଉଡ଼ି ବସିବାରୁ ଆକୁଳିତ ହୋଇ
କାନ୍ଦୁଥିଲା କି ସେ ମୃଦୁ ଗୁଣୁ ଗୁଣୁ ରବେ ?
ଶୋଭନା ବସନ୍ତ ଲକ୍ଷ୍ମୀଯୋଗେ ବିକଶିତ
ପଳାଶ ଗଛରେ ଅହା କେଡ଼େ ରମଣୀୟ
ଦିଶୁଥିଲା କଢ଼ିମାଳ, ପ୍ରିୟତମ ଦେହେ
ତୀବ୍ର ମଧୁ-ପାନୋନ୍ମତ୍ତ-ଲଜ୍ଜା-ବିବର୍ଜିତା
କାମିନୀର ନଖକ୍ଷତ ଶୋଭଇ ଯେସନ ।
ଅଙ୍ଗନାଙ୍କ ଅଧରରେ ଦନ୍ତକ୍ଷତ ବ୍ରଣେ
ସହି ହୁଏ ନାହିଁ ଯାହା, ଘୁଞ୍ଚାଇ ଦଏ ଯେ,
ନବୀନା ନିତମ୍ବ ବିମ୍ବୁ ରମ୍ୟ ମେଖଳାକୁ
ସେ ହେମକୁ ପ୍ରସ୍ତରର ସକଳ ସ୍ତବକେ
ନିଃଶେଷ କରିବା ପାଇଁ ନୋହିଲେହେଁ କ୍ଷମ
ଏକାନ୍ତରେ, କଲେ କିନ୍ତୁ ବିରଳ ବିଶେଷେ
ଅଭିନୟ କଳାପର ବିବିଧ ଭଙ୍ଗୀରେ
ମଳୟ ପବନେ ମୃଦୁ କମ୍ପିତ ପଲ୍ଲବ—
କରସ୍ଥଳ, କି ରଙ୍ଗରେ କଳିକା ଶୋଭିତା
ରସାଳ ବଲ୍ଲୀଏ ଧୀରେ କଲେ ଉନ୍ମାଦିତ
ରାଗ-ଦ୍ୱେଷଶୂନ୍ୟ ଯତି ମାନସକୁ ସୁଦ୍ଧା ।
ସୁପୁଷ୍ପିତ, ସୁରଭିତ କାନନମାନଙ୍କେ
ଠାବେ ଠାବେ, ଅଳେ ଅଳେ, ପ୍ରଥମ ଏକା
ଶୁଭିଲା କୋକିଳାଗୀତ, ନବ ପରଣୀତା

ମୁଗ୍ଧାବଧୂ ଦରସ୍ଫୁଟ ମୃଦୁସ୍ୱରପରି
ଫୁଟିଲେ ନର୍ତ୍ତକୀପରି, ଉପବନସ୍ଥିତା
ଲତାମାନେ ଗୁଞ୍ଜମୁଖ ଭ୍ରମର ଝଙ୍କାରେ
ଗୀତଗାଇ, ପ୍ରକାଶିଣ କୁସୁମ ଧବଳ
ଦଶନ-ସୁନ୍ଦରକାନ୍ତି, ପବନ କମ୍ପିତ
କିଶଳୟକରେ ଧୀରେ ଧୀରେ ଲସ୍ୟ କରି ।
ପିନ୍ଧିଲେ ମହିଳାମାନେ କାମସନ୍ଦୀପକ
ଲଳିତ କଳାସ୍ୱଭଙ୍ଗୀ ସମ୍ପାଦନକାରୀ—
ବକୁଳ ସୌରଭସମ ମଧୁର ମଦିରା,
ରସରଙ୍ଗ ଅନୁରାଗୀ କାନ୍ତ ସହିତରେ ।
ବିକଶିତ ପଦ୍ମଫୁଲେ, କେଳିକଳନାଦୀ
ଜଳକେଳି ବିହଙ୍ଗମେ ମୋହିଲ ମାନସ
ସଦନ ବିଳାସବାସୀ, ସ୍ମରୁଚନ୍ଦ୍ରାନନା
ହାସ୍ୟମୁଖୀ ବାଳା ଯଥା ହରଣଏ ମନ
ଶିଥିଳ ମଧୁରନାଦୀ କାଞ୍ଚୀଦାମପଙ୍କ୍ତି ।
ସୁଧାକର ଉଦୟରେ ପାଣ୍ଡୁର ବଦନା—
ବସନ୍ତ ଖଣ୍ଡିତାଦୀନା ଦସ୍ୱବସିବଧୂ
କ୍ଷୀଣ ହେଲ ଦନ୍ତକନ୍ତି, ପ୍ରିୟ ସମାଗମ
ଅନନ୍ତ ବଞ୍ଚିତା ସାଧ୍ୱୀ ଯୋଷାମଣି ପରି ।
ଉତ୍ତେଜନା କଲେ ସଦା ରଜନୀରଞ୍ଜନ
ରତିଶ୍ରମହାରୀ କରେ ମୀନକେତନକୁ ।
ଧାରଣ କରିଲେ କେଶେ ବରରୋହାଗଣ
ଉପବନ ଲକ୍ଷ୍ମୀଙ୍କର ସ୍ୱର୍ଣ୍ଣଭୂଷାରୂପୀ
ଅଗ୍ନିପରି ଦୀପ୍ତିମନ୍ତ କର୍ଣ୍ଣିକାର ଫୁଲ ।
ଶୋଭଇ ନାହିଁକି ଏହି ଉଲେଇ କାନନ
ଏକାଳେ, ଅଞ୍ଜନବନ୍ଧୁନଭ ମନୋହର
ଫୁଲପଂକ୍ତି ନପତିତ ଅଳଯୁକ୍ତ ହୋଇ
ଶଳକ ଅର୍ଚ୍ଚିତ ତନୀ ତରୁଣୀ ପରାଏ ।
ମକରନ୍ଦ ଗନ୍ଧବାହ ସ୍ମରୁ ବିଳାସିନୀ
ନବ ମଲ୍ଲିକାଏ ରଙ୍ଗେ ପଲ୍ଲବ ଅଧର

ପ୍ରଦାନ ପାଦପ ଦଳେ, ଦେଖହେ ହେମନ୍ତ
ପୁଲକିତ ସ୍ୱଚ୍ଛକାନ୍ତି କୁସୁମ ସମ୍ଭାରେ
ବିକାଶି ପ୍ରଫୁଲ୍ଲ ସ୍ନିଗ୍ଧ ସ୍ମିତ ହାସ୍ୟରୁଚି
ଦର୍ଶକ ନୟନ ମନ ନେଉଛନ୍ତି ହରି ।
ବାଲସନ୍ତ କାନ୍ତିଗଞ୍ଜୀ ରକ୍ତବର୍ଣ୍ଣ ବସ୍ତ୍ର,
ବାଳାଙ୍କ ଶ୍ରବଣ ଶୋଭି ମଞ୍ଜୁ ସବାଳୁର
ହୃଷ୍ଟ ପିକମାନଙ୍କର ମଧୁର ଆଳାପ
ଆଉ ସବ ଦୁର୍ନିବାର ଅନଙ୍ଗ ବାହିନୀ
ବାନ୍ଧୁଛନ୍ତି ଏକାବେଳେ ବନା ଆଶ୍ୱାସରେ
ବିଳାସୀକୁ ବିଳାସିନୀ ପ୍ରଣୟପାଶରେ ।
ଧବଳ ପଦ୍ମରେ ଦୋଲା ଭ୍ରମର ନିକରେ
ସମାକୀର୍ଣ୍ଣ ହୋଇ ଦେଖ ଲଭେଇ ମଦାଙ୍ଗ
ହୋଇଛି ଅତ୍ୟନ୍ତ ପ୍ରାଣ ମନମୁଗ୍ଧକାରୀ
କାମିନୀଙ୍କ ଅଳକାରେ ମୁକ୍ତାଜାଳ ପରି ।
ବସନ୍ତ ଲକ୍ଷ୍ମୀଙ୍କ ରମ୍ୟ ମୁଖଚୂର୍ଣ୍ଣରୂପୀ
ନବ ବିକଶିତ ଫୁଲ ପଦ୍ମସଞ୍ଚଳ
ଉଡ଼ିଲେଣି ବାୟୁଭରେ, ଧାନୁଷ୍କ କାମର
ବିଜୟକେତନ ପରି, ଦେଖ ହେ ହେମନ୍ତ
ଅଳିଏ ଅନୁସରନ୍ତି ସେ ପରାଗ ଅଙ୍ଗେ ।
ଦୋଳଖେଳେ ଅବଳାଏ ଶିକ୍ଷିତା ଥିଲେହେଁ,
ପ୍ରିୟତମ କଣ୍ଠ ଦେଶ ଆଲିଙ୍ଗନ ପାଇଁ
ପଡ଼ିବା ଛଳନା ଧରି, ବଢ଼ାଉ ଅଛନ୍ତି
ବାହୁଲତା, ପୁଷ୍ପ-ରଜୁ ଧରିବା ନିମନ୍ତେ
ହାସ୍ୟ ରହସ୍ୟରେ ମାତି ବସନ୍ତ ଉତ୍ସବେ ।
"ତେଜ ମାନ ମହିଳାଏ ! କ୍ଷଣ ଭ୍ରମେପଡ଼ି
ମାତର ବିରୋଧେ କିହ ; ଫେରବ ନାହିଁଟି
ଚାଲିଗଲେ ଏ ଯୌବନ, ନ ମିଳବ ଆଉ
ଏ ସୁଖମାଧୁରୀ କେବେ, ଅପବ୍ୟୟ କର
ବୃଥା ମାନେ ମାତି ଯାହା" ଏ ଅତି ସରଳ
ସ୍ୱର ଅଭିପ୍ରାୟ ଶୁଣି କୋକିଳ କଣ୍ଠରୁ

ମାନିନୀଏ ମାନସଙ୍ଗ ପ୍ରଣୟୀ ସହିତ
କ୍ରୀଡ଼ା କଲେ ଅବିରତ ପ୍ରଣୟ ରସରେ ।
ସୁହୃଦ, ମାଧବ, ମାରସମ ସାରବନ୍ତ
ଦଶରଥ ନରମଣି, ଅନୁଭବ ସୁଖେ
ବିଳାସିନୀଗଣ ସଙ୍ଗେ ଇଚ୍ଛା ଅନୁରୂପ
ବସନ୍ତ ଉତ୍ସବ, ତହୁଁ ବଳାଇଲେ ମତି
ମୃଗୟା ବିହାରେ ସେହୁ ପାରଧି ପ୍ରୟାସୀ ।
ସନ୍ଧାନ ଦୃଢ଼ଇ ଶର ଚଞ୍ଚଳ ଲକ୍ଷକୁ,
ଜଣାଯାଏ ବନପଶୁ ଚେଷ୍ଟା ଇଙ୍ଗିତରୁ
ସେମାନଙ୍କ ଭୟବୋଧ ସ୍ୱେଚ୍ଛାମାୟା ଆଦ,
ଶ୍ରମଯୋଗେ ପୁଣି ଲଘୁ ହୁଏ ନିଜ ଦେହ,
ଏଣୁ ସେ ମୃଗୟା ପାଇଁ ହେଲେ ଅଗ୍ରସର
ସଚିବ ସମାଜେ ଅନୁମୋଦିତ କରାଇ ।
ପଶୁକୁଳ ମନେ ଭ୍ରମ ଜନ୍ମାଇବା ପାଇଁ
ସୁସଜ୍ଜିତ ହୋଇ ବୀର ମୃଗୟା ବେଶରେ,
ବିଶାଳ କଣ୍ଠରେ ଥୋଇ ଶ୍ୟାମ ଶରାସନ;
ବାହାରିଲେ ବାହାଦୁର ନିବାସଭବନୁ
ମୃଗୟାର୍ଥେ, ଅଶ୍ୱଖୁର ଉଡ୍ଡୀନ ଧୂଳିରେ
ଆକାଶରେ ଚନ୍ଦ୍ରାତପ ଲମ୍ବାଇ ରୁଚିରେ ।
ମସ୍ତକ ମଣ୍ଡିତ କରି ବନପୁଷ୍ପ ମାଳେ,
ମୃଦୁ ପଲ୍ଲବରେ ତନୁ ଆବୋରି ଯତନେ,
ଭ୍ରମଣ କଲେ ସେ ପଶୁସମାକୀର୍ଣ୍ଣ ବନେ
ଇତସ୍ତତ, ତୁରଙ୍ଗମ ଦ୍ରୁତ ଗତିଯୋଗେ
କୋହଳିଲ ଗଣ୍ଡେ ତାଙ୍କ କନକ କୁଣ୍ଡଳ;
ସେ ବନରେ ଦେବତାଏ ଦେଖାଲେ ଆନନ୍ଦେ
ବ୍ରତଗୀ ମୂରତି ଧରି, ଭ୍ରମର ଲୋଚନେ
ଦେଖିଲେ ଅଯୋଧ୍ୟାବାସୀ ନେହାନନ୍ଦକର
ସୁନୟନ-ଶୋଭି-ଶୂର ଅଜ ତନୟଙ୍କୁ ।
ଭ୍ରମି ଭ୍ରମି ଏହିରୂପେ ମୃଗ ଖୋଜି ଖୋଜି,
ବଳି, ଜନ୍ତୁଭୟଶୂନ୍ୟ ନିବିଡ଼ ଅରଣ୍ୟ

ପ୍ରବେଶି ଦେଖିଲେ, ଅଶ୍ୱଗଣ ଉପଯୋଗୀ
ରହିଅଛି ସମତଳ ବିସ୍ତୀର୍ଣ୍ଣ ଭୂଭାଗ ।
ସ୍ଥାନେ ସ୍ଥାନେ ଶୋଭୁଥିଲା ସଜଳ ତଡ଼ାଗ
ଉଠି ଯାଉଥିଲା ତାହିଁ ବଳ୍କଳତରୁରୁ,
ବଳୋନ୍ମତ୍ତ ଗବୟର ଶିଙ୍ଗ ଘର୍ଷ ହୋଇ,
କୁରଙ୍ଗ ଶୟନେ ତାହିଁ ମୃଦୁ ତୃଣସବ
ଲଗି ଯାଉଥିଲା ସାନ୍ଦ୍ରେ ଭୂପୃଷ୍ଠ ଉପରେ
ତହାତାରେ, ଏ ସକଳ ଅବଗମି ଆଗେ
ପଶିଲେ ପୂର୍ବରୁ ତାଙ୍କ ଅନୁଚରବୃନ୍ଦ
ସଙ୍ଗତରେ ଘେନି ଜାଲ କୁକୁର ନିକର
ହୋଇଛନ୍ତି ଉପସ୍ଥିତ ପାରଧି ବେଶରେ ।
ବଜ୍ରଲ ଶିଞ୍ଜିନୀ ଯୁକ୍ତ ପିଙ୍ଗଳ ବରଣ
ସ୍ୱର୍ଣ୍ଣମୟ ଇନ୍ଦ୍ରଧନୁ ଧରଇ ଯେସନ
ହିମମାସ, ସେହିରୂପ ବୀରେନ୍ଦ୍ର କେଶରୀ
ଧନୁ ଧରି ଗୁଣଯୋଗି ଦିଅନ୍ତେ ଟଙ୍କାର
ଲୁଚିଲେ କେଶରୀକୁଳ ସେ ଘୋର ଘୋଷରେ ।
ଏକାଳେ କୁରଙ୍ଗୀଦଳ ଆଗେ ଦେଲେ ଦେଖା
ସତର୍କତେ ଖାଇ ଖାଇ କୁଶାଙ୍କୁର ସବ,
ଗର୍ବଭରେ ଶିରଟେକି ଚାଲୁଥିଲା ଆଗେ
କୃଷ୍ଣସାର, ସ୍ତନ୍ୟପାୟୀ କୁରଙ୍ଗ ଶାବକ
ମୁହୁର୍ମୁହୁଃ ସ୍ତନପାନେ ଥିବାରୁ ଆସକ୍ତ
ହରିଣୀର ଖରଗତି ହେଉଥିଲା ହତ ।
ବାହାର କରଣ ତୀକ୍ଷ୍ଣଶର ତୂଣୀରରୁ
ବେଗଗାମୀ ଅଶ୍ୱେ ଚଢ଼ି ଧନୁ ଧରି ଭୂପ
ଶୀଘ୍ରେ ଧାଇଁ ଆସୁଥିବା ନିଜ ଦଳେ ଦେଖି,
ଯୂଥଭ୍ରଷ୍ଟ ମୃଗଗଣ, କଲେ ଶ୍ୟାମାୟିତ
ବନସ୍ଥଳୀ, ବାତଧୂତ ନୀଳୋତ୍ପଳସମ
ଭୟରେ ଚଞ୍ଚଳ ତାଙ୍କ ଚକ୍ଷୁ ଚାହାଣିରେ ।
ଲକ୍ଷ୍ୟ କଲେ କ୍ଷିପ୍ରହସ୍ତେ ଏକ କୃଷ୍ଣସାରେ
ଦୀର୍ଘଶୃଙ୍ଗ, ମାତ୍ର ତାର ଶରୀର ଆଢୋଇ

ରହନ୍ତେ ସସ୍ନେହେ ଅସି ମୃଗୀ କୁରଙ୍ଗିଣୀ
ସହାରଲେ ସେହିକ୍ଷଣି ଦୟାର୍ଦ୍ର ଚକ୍ଷୁରେ
ଆକର୍ଣ୍ଣ ଆକୃଷ୍ଟ ବାଣ, ସେ ଭଦ୍ର ବଚମୀ
ପ୍ରେମାନୁରାଗିଣୀ ତାରେ ବସ୍ତର ମାନସେ ।
ତହିଁ ସନ୍ନିକଟସ୍ଥିତ ଅପର କୁରଙ୍ଗ
ବଧ ଆଶେ, ଶରାସନୁ ମୁଞ୍ଚୁଥିଲେ ଶର
ମାତ୍ର ତାର ଭୟ-ତ୍ରସ୍ତ ନୟନକୁ ଦେଖି
ପ୍ରୀତି ପ୍ରିୟା ନେତ୍ରଭଙ୍ଗୀ ପଡ଼ନ୍ତେ ମନରେ
ଦୃଢ଼ ଶରାସନ ମୁଷ୍ଟି ହୋଇଗଲା ଶ୍ଳଥ ।
ସହସା ଦେଖିଲେ ଆଗେ ଆବଳ ପଲ୍ଲବ
ସ୍ଥିରପାଖ ଦନ୍ତୁରିତ ବସ୍ତୁ ଖୁରରେ
ଦେହ ଝାଡ଼ିଥିବା ଯୋଗୁଁ ବିନ୍ଦୁ ବିନ୍ଦୁ ହୋଇ
କର୍ଦ୍ଦମାକ୍ତ ଜଳବିନ୍ଦୁ ପଡ଼ିଛି ଛିଡ଼ିକି
ନିକଟସ୍ଥ ତୃଣମୂଳେ, ସଦ୍ୟ ଚିହ୍ନ ଜାଣି
ପଙ୍କିଳ ଜଳରେ ସିକ୍ତ ସେ ପଦ ଚିହ୍ନକୁ—
ଅନୁସରି ନିରେଖିଲେ ଖଣ୍ଡ ଖଣ୍ଡ ହୋଇ
ଚର୍ବିତ ମୁସ୍ତାଙ୍କୁର ପଡ଼ିଅଛି ଖସି
ଫେନୋଦ୍ଗାରି ଶ୍ରମକ୍ଲାନ୍ତ ବଦନ ବିବରୁ
ଭୟେ ଅଳ୍ପ ଆଗୁଁ ଅତି ଦ୍ରୁତ ପଳାୟନେ ।
ଏହିରୂପେ ଅନୁସରି କିଛି ଦୂର ଯାଇ
ଦେଖିଲେ ଶୂକରଯୂଥେ, ଅଳ୍ପ ନତ ହୋଇ
ଆଗପାଖେ, ପ୍ରହାରଲେ ସୁତୀକ୍ଷ୍ଣ ଶାୟକେ,
ବଦ୍ଧ ହୋଇ ସେ ଶୂକର ଫୁଲାଇ ସରୋଷେ
କର୍କଶ କେଶରମାଳ, ଧାଇଁଲା ଉତ୍ପ୍ଲୁତେ
ସ୍ୱଦଂଷ୍ଟ୍ରା ବକ୍ର କରି ଭୁଷିବା ଆଶାରେ ।
ଅର୍ଦ୍ଧପଥେ ମାତ୍ରକ ସେ ହୋଇଗଲା ବଦ୍ଧ
ବଜ୍ରନାଦୀ ଅନ୍ୟବାଣେ, ଜଙ୍ଘପାଖେ ସ୍ଥିତ
ତରୁ ସହ, ନ ପାରିଲା ଜାଣି କିଛି ଟିକେ
ଲଙ୍ଘିଗଲା ବାଣ କୁପେ ଭେଦି ତାର ଦେହ ।
କିଛିଦୂର ନ ଯାଉଣୁ ମହାକାୟ ଏକ

ଅରଣା ମହିଷ ଶୀଘ୍ର ଝମ୍ପଟିଲ ଦମ୍ଭେ
ଭୂମିବାକୁ, ମାତ୍ର ତାଙ୍କ ସୁତୀକ୍ଷ୍ଣ ଶାୟକ
ତା ନେତ୍ର ବିବରେ ପଶି, ଗାତ୍ର ଭେଦକରି
ପଡ଼ିଲା ମହିଷେ ଅଗ୍ରେ ଧରଣୀ ତଳରେ,
ନଛେଇ ବାହାରିଲ ତହୁଁ, ତୀବ୍ର ଗତିବଶେ
ନ ପାରିଲ ଲଗି ତାର ପୁଙ୍ଖରେ ରୁଧିର ।
ସୁତୀକ୍ଷ୍ଣ କ୍ଷୁରାଗ୍ର ଅସ୍ତ୍ରେ ଉପାଡ଼ି ସବେଗେ
ଲମ୍ବଶୃଙ୍ଗ, ଲଘୁ କଲେ ଶୂରଚୂଡ଼ାମଣି
ଗଣ୍ଡାମାନଙ୍କର ଶିର, ନ ସହିଲେ ଯେଣୁ
ତାହାଙ୍କର ଗର୍ବୋଦ୍ଧତ ଶୃଙ୍ଗ ଉଣାଲତା ।
ବାୟୁ-ଭଗ୍ନ କୁସୁମିତ ବଡ଼ା ପାଦପର
* ଶାଖାଗ୍ରସମାନ ଠିକ ଗୁହା, ବନଗତ
ଶାର୍ଦ୍ଦୂଳର ପ୍ରକଟିତ ବଦନ ପାଟିକୁ
ଦେଖି ଦେଖି ଶୀଘ୍ର ହସ୍ତେ ବହୁ ଶର ବିନ୍ଧି
ସ୍ଥିର ଲକ୍ଷେ, କଲେ ସେ ତୂଣୀର ସମାନ ।
ବିକ୍ଷୋଭିତ କଲେ ତହୁଁ ଲତାକୁଞ୍ଜ ବାସୀ
ସିଂହକୁ ବଧିବା ଆଶେ, ବଜ୍ର ଧ୍ୱନିପରି
ଘନ ଘନ ସ୍ୱମନାପ ଶିଞ୍ଜିନୀର ଘୋଷେ,
ଈର୍ଷାନ୍ୱିତ ହୋଇ କିବା ପଶୁରାଜ ନାମେ
ଅହ୍ୱାନିଲେ, ସେମାନଙ୍କୁ ସଂଗ୍ରାମ ସକାଶେ ।
ବିନାଶି ବାରଣଙ୍କର ସ୍ୱାଭାବିକ ବୈରୀ,
ନଖ ଅଗ୍ରେ ମୁକ୍ତାଫଳ ଶୋଭି, କେଶରୀକୁ
ବୀରମଣି, ପରିଶୋଧ କଲେକି ଋଣ?
ଯୁଦ୍ଧେ ଉପକାରୀ ମିତ୍ର ବାରଣ ଗଣରେ ।
ଝମ୍ପାଇ ବହ୍ନ୍ୟନ୍ତ ବେଗେ ଅଶ୍ୱବର ତାହିଁ
ଚମରୀଙ୍କ ଅଭିମୁଖେ, ଛେଦି ପୁଚ୍ଛଗୁଚ୍ଛ
ଆକର୍ଣ୍ଣ ଆକୃଷ୍ଟ ଯୋଗି ଭଲ୍ଲାସ୍ତ୍ର ପ୍ରହାରି,

* ଠିକାବାସ ମୁଖର ଦାସ ସହିତ ପୁଷ୍ପଶାଳର ଶାଖାଗ୍ର ତୁଲ୍ୟ ସମାନ ବଟେ । ସେବେ ମଧ୍ୟ ଉପମାପୂର୍ବ ବୋଲି କହନ୍ତି ।

ଅତି ନବପତ୍ର ପରି ଜରି ସେମାନଙ୍କୁ
ଧବଳ ଚାମରହାନି, ଲଭିଲେ ସେ ଶାନ୍ତି ।
କାହିଁ ତାହାଙ୍କର ଆଗେ ଚଳ ପକ୍ଷ ଗୁଳ
ଉଡ଼ିଲେହେଁ କେକିକୁଳ, ନ କଲେ ସନ୍ଧାନ
ଯେଣୁ ମନୋମୃଗଙ୍କର ପୁଚ୍ଛ ସେମାନଙ୍କ
ସ୍ମରଣ କରାଇ ଦେଇ ନୃପଙ୍କ ମନରେ
ପ୍ରିୟତମାଙ୍କର ମୁକ୍ତ ଶ୍ଳଥ କେଶପାଶ ।
ସୁକୋମଳ ତୃଣମାନ ଦୋହଲାଇ ଧୀରେ,
ତୁଷାର ଶୀକରବାହୀ କାନନ ସମୀର,
କଠିନ ମୃଗୟା ଶ୍ରମଜାତ ଝାଲବିନ୍ଦୁ
ଦୂର କରି ଦେଉଥିଲା ତାହାଙ୍କ ଶ୍ରୀମୁଖୁଁ ।
ଏରୂପେ ଅଯୋଧ୍ୟାଧିପ ପାଶୋର୍ ସକଳ
ଅନ୍ୟାନ୍ୟ କର୍ତ୍ତବ୍ୟକାର୍ଯ୍ୟ, ସମର୍ପଣ କରି
ରାଜ୍ୟଭାର ମନ୍ତ୍ରୀହସ୍ତେ, ସତତ ଆନନ୍ଦେ
ମଗ୍ନହେଲେ ମୃଗୟାରେ, ନାନା କଉଶଳେ
ନବ ନବ ନୂଆ ନୂଆ ଆମୋଦେ ରସାଇ
ମୃଗୟା, ଭୁଲାଇ ନେଲା, ରଙ୍ଗରସ ଲୀଳା
ଚତୁରୀ ଚପଳା ପରି ତାହାଙ୍କ ମନକୁ ।
ପ୍ରବେଶ ହୋଇଲା ଯାମି ପଦ୍ମଦଳେ ଭୂପ
କୋମଳ କୁସୁମ ରମ୍ୟ ପଲ୍ଲବ ଶଯ୍ୟାରେ,
ପ୍ରଜ୍ୱଳିତ ମହୌଷଧି ପ୍ରଦୀପ ପରାଏ
ଉଜ୍ଜ୍ୱଳିଲେ ଏକାକୀ ସେ ଯାପିଲେ ରଜନୀ ।
ପ୍ରଭାତିଲା ବିଭାବରୀ ଉଠିଲେ ନରେଶ
ପ୍ରଭାତୁଁ, ପଟହନାଦ ଭରି କର୍ଣ୍ଣତାଳ
ବାଜିଲା, ବିହଙ୍ଗ ମୃଦୁ କୂଜନ ତହିଁରେ
ହେଲା ବୈତାଳିକ କୁଳ ମଙ୍ଗଳ ଗାୟନ ।
କୁରୁମୃଗେ ଅନୁସରି ଅଗୁରୁ ବିପିନେ
ଅଦୃଶ୍ୟ ହୋଇଲେ ବୀର ଅନୁଚର ପାଖୁଁ,
କୁଳି କୁଳି ତୁରଙ୍ଗମ ତୀବ୍ର ବେଗବଶେ
ସହସା ପ୍ରବେଶ ହେଲେ, ତପସ୍ୱୀ ସେବିତ

ଜଳନାଗ ପୁଣ୍ୟତୋୟା ତମସା ତଟରେ,
ସେକାଳେ ତମସାଜଳେ କୁମ୍ଭ ପୂରଣର
ମଧୁର ଗମ୍ଭୀର ଧ୍ୱନି ଶୁଣି ନରମଣି,
ଧାରଣ ବୃଂହିତ ମଣି, ନିକ୍ଷେପିଲେ ବଳେ
ଏକ ଶବ୍ଦଭେଦୀ ଶର କର୍ଣ୍ଣପାଏ ଠାଣି ।
ବଧ ନୃପେ ହସ୍ତୀବର ରାଜାମାନଙ୍କର
ଜାଣିମଧ୍ୟ କଲେ ନୃପ ଏ ଅବିଧି କର୍ମ,
ରଜସ ଗୁଣରେ ପ୍ରାଣୀ ହେଲେ ବଶୀଭୂତ
କୁପଥରେ ଯିବାତାର ବଳଇ ମାନସ ।
'ହା, ତାତ' ଏମନ୍ତ ଶବ୍ଦେ ଖଣ୍ଡନ୍ତେ ସହସା
ଶ୍ରବଣରେ ତାଙ୍କ ଶୁଣି କ୍ରନ୍ଦନର ଧ୍ୱନି,
ଅନ୍ତଃସ୍ଥରେ ବ୍ୟାକୁଳିତ ହୋଇ ଅତି କଷ୍ଟେ
ବିଲୋକିଲେ ଆଗେ ଯାଇ ରକ୍ତାକ୍ତ ଦେହରେ
ପଡ଼ିଛନ୍ତି ସୁଶୋଣିତ ଶରେ ବିଦ୍ଧ ହୋଇ
ତପସ୍ୱୀ ତନୟ ଏକ କୁମ୍ଭ ସହିତରେ ।
ଏ ଦାରୁଣ ମର୍ମ୍ମଭେଦୀ ଦୃଶ୍ୟ ଦେଖି ସ୍ୱୟେ
ରହିଲେ ତାଟକା ହୋଇ, ବିଦ୍ଧ ହେଲ କିବା ?
ସବେଗରେ ଶଲ୍ୟ ତାଙ୍କ ହୃଦୟେ ସହିଲେ ।
ବିନୟେ ପୃଚ୍ଛନ୍ତେ ଭୂପ କୁଳ ପରିଚୟ,
କୁମ୍ଭସହ ନିପତିତ ତପସ୍ୱୀ ତନୟ—
କହିଲେ ଅସ୍ପଷ୍ଟ ସ୍ୱରେ ନିଜ ବଂଶ କଥା
"ମହୀପାଳ ! ଅଟେ ମୁହିଁ ଶୂଦ୍ର ତପସ୍ୱୀର
ନନ୍ଦନ, ସତ୍ୱର ମୋତେ ନେଇଯାଅ ସଙ୍ଗେ
ଅଳ୍ପଦୂରେ ଛନ୍ତି ଯହିଁ ବୃଦ୍ଧ ପିତା ମାତା"
ଏରୂପେ ପ୍ରାର୍ଥିତ ହୋଇ ମୂନସୁତ ଯୋଗେ
ନ ଉଦ୍ଧାରି ପ୍ରାଣହାରୀ ଶର ତାଙ୍କ ଦେହୁଁ,
ଅତି ଶୀଘ୍ରେ ନେଇ ଯାଇ ଭୟ ବିକଳରେ
ଅନ୍ଧ ପିତାମାତା ଆଗେ କହିଲେ ସେ ଧୀରେ,
"ହେ ତପସ୍ୱି ! ଏକମାତ୍ର ତନୟ ତୁମ୍ଭର
ଯାଇଥିଲେ ପାଣି ପାଇଁ ବେତସ ବନକୁ,

ତହିଁ ନଦୀତଟେ ମୁହିଁ ମତ୍ତ ଅଜ୍ଞାନରେ
ନାଶିଲି ତାହାଙ୍କୁ ବାଣେ କରି ଭ୍ରମକର,
ଦୋଷୀଜନେ ଦଅ ଦଣ୍ଡ ଯଥା ଭୂମିଭୁଜ ।
ଏହି ହୃଦବିଦାରକ ବାରତା ଅଚିନ୍ତି,
ବିଳାପ କରିଲେ ଆହା ବାହୁନି ବାହୁନି
କେତେମତେ ସେ ଦମ୍ପତି, ଉଦାର ଚରିତ୍ର
ପୁତ୍ରହନ୍ତା ଭୂପଯୋଗେ ହୃଦଭେଦୀ ଶଲ୍ୟ
କୁମାରର, ତତ୍କ୍ଷଣେ ସେ ପାଇଲେ ପଞ୍ଚତ୍ୱ ।
ଶ୍ରେଷ୍ଠତପୀ କରପୁଟେ ନେତ୍ରବାରି ଧରି
ଶାପଦେଲେ ଏହାବୋଲି ପୁତ୍ରଘ୍ନ ସ୍ୱଜନେ—
"ମୋ ପରି ତନୟ ଦୁଃଖେ ଶେଷ ସମୟରେ
ହେବ ତୁମ୍ଭ ଦେହାନ୍ତର;" ଶୁଣି ସେହି ଶାପ
ନବ ଅପରାଧୀ ସେହି ଅଯୋଧ୍ୟାଧିପତି
ନିବେଦିଲେ, ପଦାଘାତ ଲଭି ବିଚଳିତ—
ଦଂଶନେ ବିମୁକ୍ତ-ବିଷ ସର୍ପବତ ସ୍ଥିତ
ଶୋକାତୁର, ତପୋଦୀପ୍ତ, ଶୂଦ୍ର ତପସ୍ୱୀଙ୍କୁ ।
'ମୁନିବର ! ଅଦ୍ୟଯାବେ ଦେଖି ନାହିଁ ମୁହିଁ
ପୁତ୍ରମୁଖ, ଅପୁତ୍ରିକ ମୋର ପ୍ରତି ତେଣୁ
ତୁମ୍ଭର ଏ ଅଭିଶାପ, ପ୍ରକାଶୁଛି ସିନା
ଅନୁଗ୍ରହ, ଡାହୁକାଠେ * ଜଳଇ ସେ ଯେଉଁ
ଦହିଲେହେଁ କୃଷିକ୍ଷେତ୍ରେ କରଇ ନାହିଁକି
ସେ କ୍ଷେତ୍ରକୁ ନାନାଶସ୍ୟ ଉତ୍ପାଦନକ୍ଷମ ।
ଏହିରୂପେ ଦୁର୍ବିସହ, ଶାପଗ୍ରସ୍ତ ହୋଇ
ଭାଷିଲେ ତପସ୍ୱୀବରେ ବିନୟରେ ଭୂପ
'ତପୋଧନ ! ତବ ବଧ ଏହି ନରାଧମ
କରିବ କି କାର୍ଯ୍ୟ ଆଉ ହେଉ ଅନୁମତି'
ଜଳିଲେ ସେ ଦମ୍ପତି ପିତୃ ପୁତ୍ର ସଙ୍ଗେ
ଦେହଗଢ଼, ଶୁଷ୍କକାଷ୍ଠ ଅହରଣ କରି

* ବନ୍ୟଜାତମାନେ ଭୂମି ଦଗ୍ଧକରି ତାହୁକ୍ଷ କରନ୍ତି । ତାହୁ—ଦାହଣକାଠ ।

ସଜାଡ଼ି ଚିତାଏ ତନୁ ତର ଅଗ୍ନିଦାନ୍ ।
ଶାପରେ ଅଧୀରଚିତ୍ତ ଦଶରଥ ନୃପ
ମୁନ ଇଚ୍ଛା ଅନୁଯାୟୀ ବିରଚନ୍ତେ ଚିତା
ଅନୁଚରଗଣ ସଙ୍ଗେ, ପସ୍ୱେଚ୍ଛା ବହ୍ନିରେ
ଋଷିପତ୍ନୀ ସ୍ୱର୍ଗଗଲେ ତନୟର ସହ
ଦେବଲୋକେ, ଧନ୍ଦେ ହେଲେ ଏଣେ ସ୍ୱନବରେ
ପୁତ୍ରନାଶ ହେତୁରୂପୀ ଶାପ ହୃଦେ ଧର
ବାଡ଼ବ ଅନଳବାହ୍ମି ସାଗର ପ୍ରାଏ ।

# ଦଶମ ସର୍ଗ

ପ୍ରସିଦ୍ଧ ପ୍ରଭାବବନ୍ତ ଦଶରଥ ନୃପ
ପାଳିଲେହେଁ ଧରଣୀକୁ ଇନ୍ଦ୍ର ପରାକ୍ରମେ
ଏରୂପେ କଥିତ ଗଣା ଅଯୁତ ବରଷ
ତଥାପି ସେ ପିତୃଋଣୁଁ ମୁକ୍ତ ହେବା ପାଇଁ
ନ ଦେଖିଲେ ତନୟର ବଦନ ଚନ୍ଦ୍ରମା ।
ରାବଣ ବିନାଶ ପାଇଁ ନରରୂପ ବହି
ମର୍ତ୍ତ୍ୟ ବସ୍ତୁ ଜନ୍ମିବାର କାରଣ ଥିବାରୁ
ସନ୍ତାନ ଉତ୍ପତ୍ତି ପକ୍ଷେ ନରମଣିଙ୍କର,
ଯାଉଥିଲେ କାଳ ସେହୁ ତନୟ ଅଭାବେ,
ମନ୍ଥନର ଅପେକ୍ଷାରେ ରହିଥିଲା ପୂର୍ବେ
ଅଲକ୍ଷିତ ରତନରେ ଜଳଧି ଯେସନ ।
ଯଥାକାଳେ ଜିତେନ୍ଦ୍ରିୟ ଋଷ୍ୟଶୃଙ୍ଗ ଆଦି
ନରେଶଙ୍କ ପୌରୋହିତ୍ୟ କାର୍ଯ୍ୟେ ବ୍ରତୀ ହୋଇ
ଆରମ୍ଭି ପୁତ୍ରେଷ୍ଟି ଯଜ୍ଞ ପୁଣ୍ୟଲଗ୍ନ କ୍ଷଣେ.
ସକଳ ସାମଗ୍ରୀମାନ କଲେ ଆୟୋଜନ ।
ଏଣେ ଦଶାନନ ଯୋଗେ ଉତ୍ପୀଡ଼ିତ ହୋଇ
ଇନ୍ଦ୍ର ଆଦି ସୁରଗଣ ପ୍ରବେଶିଲେ ଆସି
ସିନ୍ଧୁଶାୟୀ ଶ୍ରୀପତିଙ୍କ ଛାମୁରେ ବିଷାଦେ
ପଥଶ୍ରାନ୍ତ ରୌଦ୍ରକ୍ଳାନ୍ତ ପଥିକେ ଯେସନ
ଯାଆନ୍ତି ପଲ୍ଲବପୂର୍ଣ୍ଣ ତରୁଛାୟା ତଳେ
ପହଞ୍ଚିବାବେଳେ ଦେବେ କ୍ଷୀରସିନ୍ଧୁ ତୀରେ
ଯୋଗନିଦ୍ରା ପରିହରି ଉଠିଥିଲେ ହରି,
ନିର୍ବିଘ୍ନରେ ପ୍ରଭୁଙ୍କର ସାକ୍ଷାତ ହେବାରୁ
ଆନନ୍ଦିତ ହେଲେ ସର୍ବେ ବୁଝିଲେ ମନରେ
ଅଚିରେ ହୋଇବ ତାଙ୍କ କାମନା ପୂରଣ,
ମିଳଇ ଏରୂପେ ସିନା ଆଗୁଁ ତା ସୂଚନା
ଯେ କାର୍ଯ୍ୟର ଭବିଷ୍ୟତ ହୁଏ ଶୁଭମୟ ।
ଦେଖିଲେ ଦେବତାଗଣ ଫଣୀ ଫଣାସନେ

ସୁଖରେ ସୁପ୍ତଥିଲେ ଜଗତକାରଣ
ଫଣାଗ୍ରଜ ବିସ୍ତୃତ ମଣିର ଜ୍ୟୋତିରେ
ଉଦ୍ଭାସିତ ହେଉଥିଲା ଶ୍ୟାମଳ ଶରୀର ।
ପଦ୍ମାସନେ ପଦ୍ମାଳୟା ବସି ଆନନ୍ଦରେ
ଅଳଂକୃତ କରପଦ୍ମେ ଧରିଥିଲେ କୋଳେ
ଦୁକୂଳରେ ବିମଣ୍ଡିତ ମେଖଳା ଉପରେ
ଭକ୍ତବନ୍ଧୁ ଭବତ୍ରାଣ ପଦଯୁଗଳକୁ ।
ତରୁଣ ଅରୁଣକର ସମ ପୀତାମ୍ବର
ପରିଧାନ କରି ପଦ୍ମଲୋଚନ ଶ୍ରୀହରି
ବହୁଥିଲେ ଶାରଦୀୟ ଊଷାକାଳ ଶିରି
ଲକ୍ଷ୍ମୀଦେବୀଙ୍କର ଲୀଳା ଦରପଣରୂପୀ
ରତ୍ନାକର ସାରରତ୍ନ କଉସ୍ତୁଭମଣି
ଦିଶୁଥିଲା ଜଳଜଳ ପ୍ରଭୁଙ୍କ ଉରସେ,
ଶ୍ରୀବତ୍ସଲାଞ୍ଛନ କାନ୍ତି ବଢ଼ାଇ ଦ୍ୱିଗୁଣେ ।
ଦିବ୍ୟୋଜ୍ଜ୍ୱଳ ଆଭରଣ ମାନେ ବିଭୂଷିତ
ବୃକ୍ଷଶାଖାସମ ବାହୁ ଯୋଗେ ସେ ପୁରୁଷ
ହେଉଥିଲେ ଉଲକ୍ଷିତ, ରତ୍ନାକର ମଧ୍ୟୁଁ
ଜନମିଲା ପରି ନବ ପାରିଜାତ ତରୁ ।
ଅସୁର ସୁନ୍ଦରୀଙ୍କର ଗଣ୍ଡମଣ୍ଡଳରୁ
ମଞ୍ଜୁ ମଦରାଗ ଯେହ୍ନୁ ଦିଅନ୍ତି ଲିଭାଇ
ପ୍ରସିଦ୍ଧ ସେ ସୁଦର୍ଶନ ଆଦି ଅସ୍ତ୍ରମାନେ
ଖଟଣି କିଙ୍କର ପରି ରହି ସ୍ୱପାଶେ
ସବିନୟେ କରୁଥିଲେ ଜୟ ଜୟ ଧ୍ୱନି ।
ବଜ୍ର ବ୍ରଣାଙ୍କିତ ଗାତ୍ର ପକ୍ଷୀନ୍ଦ୍ର ଗରୁଡ଼
ଚିରବୈରି ପରିହରି ଶେଷଦେବ ସହ
ରହୁଥିଲା ପ୍ରଭୁ ଆଗେ କୃତାଞ୍ଜଳି ପୁଟେ
ଲମ୍ବଗ୍ରୀବା ନତ କରି ବିନୀତ ଭାବରେ ।
ପ୍ରକାଶନ୍ତେ ଅନୁଗ୍ରହ ପ୍ରଭୁ ଲୋକନାଥ
ଯୋଗନିଦ୍ରା ପରିହରି, ପ୍ରଶାନ୍ତ ପବିତ୍ର
ଦୃଷ୍ଟିପାତେ ସମାଗତ ଦେବତାମାନଙ୍କୁ

ଭକ୍ତି ପରିହିତ ଚିତ୍ତେ ପ୍ରଣମି ବିନୟେ
ଏହିରୂପେ ନାନାମତେ ଆରମ୍ଭିଲେ ସ୍ତୁତି
"ଭଗବାନ ! ବ୍ରହ୍ମାରୂପେ ସୃଷ୍ଟି କରି ଏହି
ସୁବିଶାଳ ବସୁଧାକୁ ଅଦ୍ଭୁତ କାଳରୁ
ବିଷ୍ଣୁରୂପେ ଅଜସ୍ରାଏ କରୁଛ ପାଳନ
ନିରାପଦେ, ପୁଣି କାଳେ କରିବ ସଂହାର
ମହାମହେଶ୍ୱର ବେଶେ, କରୁଁ ନମସ୍କାର,
ଏଣୁ ହେ ତ୍ରିଗୁଣାତ୍ମକ ! ତୁମ୍ଭର ପଦ୍ୟରେ ।
ସୁମଧୁର ରସଯୁକ୍ତ ବରଷାର ଜଳ
ଦେଶଭେଦେ ସଦା ଯଥା ଭିନ୍ନ ଆସ୍ୱାଦେ
ହୋଇଅଛି ପରିଣତ, ତେସନ୍ତେ ତୁମ୍ଭେ ନାଥ !
ହୋଇଲେହେଁ ନିର୍ବିକାର ସାଧନ ନିମନ୍ତେ,
ସୃଷ୍ଟି, ସ୍ଥିତି, ଲୟ କାର୍ଯ୍ୟ ବହୁଛ ସ୍ୱଚ୍ଛନ୍ଦେ,
ସତ୍ତ୍ୱ, ରଜ, ତମ ଏହି ତ୍ରିବିଧ ଅବସ୍ଥା ।
ହେ ଦେବ ! ତୁମ୍ଭର ସୃଷ୍ଟ ସର୍ବପଦାର୍ଥର
ସୀମା ଅଛି, ମାତ୍ର କିଏ କରିବ ନିର୍ଣ୍ଣୟ
ତୁମ୍ଭର ଅସୀମ ତତ୍ତ୍ୱ ଏ ଭବ ଭିତରେ ।
ଅସ୍ପୃହ ରହିତ ତୁମ୍ଭେ, ସ୍ପୃହା ନାହିଁ କାହିଁ
ମାତ୍ର ପୂର୍ଣ୍ଣ କରୁଅଛ ସଭିଙ୍କ ବାସନା
ଯଥାକାଳେ, ଯଥାରୁଚି ଆଶୀର୍ବାଦ ଦେଇ ।
ଜୟଶୀଳ ତୁମ୍ଭେ ନାଥ, ପରାଜିବା ପାଇଁ
ତୁମ୍ଭଙ୍କୁ, କାହିଁଟି ଶକ୍ତ କାହାର ଶରୀରେ ।
ଅତିସୂକ୍ଷ୍ମ ହୋଇଥିବା ସୃଷ୍ଟି କରୁଅଛ
ସ୍ଥୂଳତର ପଦାର୍ଥକୁ ଅବସ୍ଥିତ ହୋଇ
ଭକ୍ତଙ୍କର ହୃଦସ୍ଥଳେ, ରହୁଛ ସୁଦୂରେ
ଅଲକ୍ଷିତେ, କେ ବୁଝିବ ତୁମ୍ଭର ମହିମା ।
ଥିଲେହେଁ କାମନା ନାହିଁ ହୃଦୟ ମଧ୍ୟରେ,
ତେବେସୁଦ୍ଧା କରୁଅଛ ଅବିରତ ତପ ।
ତୁମ୍ଭେ ଦୟାଶୀଳ ପୁଣି ନିତ୍ୟାନନ୍ଦମୟ,
ଅତି ପୁରାତନ, ପୁଣି ଅଜର ଅମର,

ତୁମ୍ଭେ ନାଥ ସକଳଙ୍କ ପୁଣି ସର୍ବଦର୍ଶୀ
ମାତ୍ର କେହ ତୁମ୍ଭ କାର୍ଯ୍ୟ ନ ପାରନ୍ତି ଜାଣି ।
ନଜେ ସ୍ୱୟମ୍ଭୁବ, ମାତ୍ର ସର୍ବେ ଜନମ
ଲଭିଛନ୍ତି ତୁମ୍ଭଠାରୁ, ସକଳ ଘଟରେ
ଅବସ୍ଥାନ କରୁଅଛ ଏକ ସମୟରେ,
ତଥାପି ଏକାକୀ ତୁମ୍ଭେ ଅଟ ହେ କେଶବ,
ସପ୍ତ ସାଗରର ଜଳେ କରୁଛ ଶୟନ
ଅନନ୍ତ ଶଯ୍ୟାରେ ସୁଖେ, ସପ୍ତାଙ୍ଗମଣ୍ଡିତ
ସାମବେଦ ଗାଉଅଛି ତୁମ୍ଭର ମହିମା,
ସପ୍ତ ଭୁବନକୁ ନାଥ କରୁଛ ପାଳନ
ଦସ୍ୟାବହ୍ନି ଅଟ ତୁମ୍ଭେ ସପ୍ତାର୍ଚ୍ଚି ବଦନ (୧)
ଧର୍ମ, ଅର୍ଥ, କାମ, ମୋକ୍ଷ, ଏହି ଚତୁର୍ବର୍ଗ,
ଚତୁର୍ଯୁଗ—ସତ୍ୟ, ତ୍ରେତା, ଦ୍ୱାପର ଓ କଳି,
ପୁଣି (୨) ଚତୁଃ ବର୍ଣ୍ଣମୟ ଏ ଲୋକସମାଜ
ଜନ୍ମିଛନ୍ତି ତୁମ୍ଭଠାରୁ ଅହେ ଚତୁର୍ଭୁଜ !
ଟାଣି ନିଜ ମାନସକୁ ବିଷୟାନ୍ତରରୁ
ମୁକ୍ତି ଆଶେ ଯୋଗିଗଣ ଧ୍ୟାନ କରୁଛନ୍ତି
ଜ୍ୟୋତିରୂପେ ହୃଦେ ରଖି ତବ ଦିବ୍ୟ ମୂର୍ତ୍ତି ।
ଜନ୍ମହୀନ ହୋଇ ସୁଦ୍ଧା ଲଭୁଛ ଜନମ
ଯୁଗେ ଯୁଗେ ଭବତଳେ, ଧର୍ମ ରକ୍ଷା ପାଇଁ ।
ଚେଷ୍ଟାଶୂନ୍ୟ ତୁମ୍ଭେ ଦେବ, ତଥାପି ନାଶୁଛ
ଅବତରି ରଣସ୍ଥଳେ ବଇରୀମାନଙ୍କୁ,
ଯୋଗନିଦ୍ରା ଯାଉଅଛ ସଦା ଚେତା ହୋଇ
ଲୀଳାମୟ ! ତୁମ୍ଭ ଲୀଳା ଅଜ୍ଞେୟ ଅଦୃଶ୍ୟ ।
ଶବ୍ଦ, ସ୍ପର୍ଶ, ରୂପ, ରସ, ଗନ୍ଧ ଆଦି କରି
କରୁଅଛ ଉପଭୋଗ, ଆଚରୁଛ ତପ
ଅତି ଦୃଢ଼ ବ୍ରତ ଧରି, ପାଳି ପ୍ରଜାକୁଳ

(୧) ଅଗ୍ନି-ମୁଖ
(୨) ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ।

ସୃଷ୍ଟିର ଗୌରବ ଢେର ବଢ଼ାଉଛ ନାଥ,
ତଥାପି ହେ ପୀତାମ୍ବର ଉଦାସୀନ ଭାବେ
ଭଜୁଅଛ ଯୋଗନିଦ୍ରା ଅନନ୍ତ ଶଯ୍ୟାରେ ।
ସାଂଖ୍ୟଆଦି ମହା ମହା ଦର୍ଶନ-ଶାସ୍ତ୍ରରେ
ଥିଲେହେଁ ବିବିଧ ମୁକ୍ତି ସାଧନର ଦ୍ୱାର,
ତୁମ୍ଭଠାରେ ନ୍ୟସ୍ତମାତ୍ର ସେ ମୁକ୍ତିର ସତ୍ତା,
ଗଙ୍ଗାଜଳ ଗତି ଯଥା ଅନନ୍ତ ସାଗରେ ।
ବିଷୟବାସନାହୀନ ମହାତ୍ମାଏ ସେବେ
ଅର୍ପିଛନ୍ତି ମନ କର୍ମ, ତବ ପାଦପଦ୍ମେ
ଏକ ଲକ୍ଷ୍ୟେ ଦଦ୍ୱାବନ୍ଧୁ ତୁମ୍ଭେ ଦୟାମୟ !
ନାଶ କରୁଅଛ ତାଙ୍କ ସଂଶୟ ଶିକୁଳ ।
ପୃଥିବୀ ପ୍ରଭୃତି ଏହି ସ୍ଥୂଳ ପଦାର୍ଥର
ତତ୍ତ୍ୱ ମିଳୁ ନାହିଁ ନିତ୍ୟ ଗବେଷଣା ଯୋଗେ.
ତୁମ୍ଭର ଅଦୃଷ୍ଟ କାର୍ଯ୍ୟ ହୋଇବ ସମ୍ଭବ,
ଆପ୍ତବାକ୍ୟ ଅନୁମାନ ଯେ ଶେ ଜୀବକୁଳ
ତୁମ୍ଭଙ୍କୁ ଲଭିବା ପାଇଁ ଏଣୁ ସଦାବେଳେ
ଘୋରତର ତପସ୍ୟାରେ ହୋଇଥାନ୍ତି ରତ ।
ଧ୍ୟାନମାତ୍ରେ ଜୀବନ୍ତେଣେ ହେଉଛନ୍ତି ମୁକ୍ତ,
ପାଉ ନଥିବେଟି କେଉଁ ସୁଖ ବା ସେମାନେ,
ଯେମାନେ ତୁମ୍ଭର ମୂର୍ତ୍ତି ଦେଖୁଛନ୍ତି ନାଥ ।
ବାକ୍ୟମନ ଅଗୋଚର ତୁମ୍ଭ କାର୍ଯ୍ୟାବଳୀ
ପ୍ରକାଶ କରିବ କିଏ ସ୍ତୁତିବାଦ କରି ?
ଗଣି ପାରିବ କେ କହ ରତ୍ନାକର ରତ୍ନ, ?
ଅଥବା କିରଣମାଳ ଦିନମଣିଙ୍କର ?
କିମ୍ବା ସୂକ୍ଷ୍ମ ବାଲୁକଣା ସାଗର ସୈକତେ ?
ଅନ୍ତ ବା ଲଭି ନାହିଁ କାହିଁରେ ତୁମ୍ଭର
ସଦା ଅଛ ପରିପୂର୍ଣ୍ଣ, ଘଟୁଅଛି ଯାହା
ଅବତାର ଯୁଗେ ଯୁଗେ ପ୍ରାଣୀଙ୍କର ହିତେ,
ଅନୁଗ୍ରହ ଚିହ୍ନ ତାହା ଅଟଇ କେବଳ ।
ମହିମା କୀର୍ତ୍ତନ କରି କଥିତ ହୁଅଇ

ଭକ୍ତର ବଚନ ସାହା, କରୁଣାସାଗର !
ସ୍ୱ ଅପାରଗତା ତାର ଅଟଇ କାରଣ
ତବ ମହିମାର ସୀମା ପର୍ଯ୍ୟନ୍ତ ପହୁଞ୍ଚ—
ପାରବ ଶ୍ରମର କହି ନରର ରସନା ।
ଏରୂପେ ବର୍ଣ୍ଣନ କରି ପ୍ରଭୁଙ୍କର ଗୁଣ
ଭକ୍ତିଭରେ, ସୁପ୍ରସନ୍ନ କରିଲେ ତାହାଙ୍କୁ
ଦେବତାଏ, ମହାତ୍ମଙ୍କ ତୋଷର କାରଣ
ହୁଅଇ ଅଳୀକ ସ୍ତୁତି, ପ୍ରକୃତ ବଚନ
ସଦୟେ ମହାତ୍ମାମାନେ ଶୁଣନ୍ତି ଆଦରେ ।
କୁଶଳାର୍ଥ ପ୍ରଶ୍ନେ ପ୍ରୀତି କରାଇ ପ୍ରଭୁଙ୍କ
ନିବେଦିଲେ ସୁରଗଣ, "ଅହେ, ଦଇତାରି !
ଅତି ଉଦ୍ବେଳିତ ହୋଇ ଅସୁର ସାଗର
ଅକାଳରେ ବସିଅଛି ସୃଷ୍ଟି ଗ୍ରାସିବାକୁ
ମହାଶଙ୍କା ଉପୁଜାଇ ସଭିଙ୍କ ମାନସେ ।"
ପରାଭବ କରି ସିନ୍ଧୁ ଉତ୍କଟ ଧ୍ୱନିକୁ
ଉତ୍ତରିଲେ ସୁଗମ୍ଭୀରେ ଶୁଣି ନାରାୟଣ
ପ୍ରତିଧ୍ୱନି ଉପୁଜାଇ ଗିରସନ୍ନିହିତ
କ୍ଷୀରଜଳ ଲବେ ସ୍ଥିତ ଗିର ଗୁହାମାନେ ।
ପ୍ରାଚୀନ ମହର୍ଷିଙ୍କର କଣ୍ଠର ଭୂଷଣ
ଭଗବତୀ ବୀଣାପାଣି ସେହି ସମୟରେ
ଶ୍ରୀପତିଙ୍କ ଶ୍ରୀମୁଖରୁ ଅତି ଶୁଦ୍ଧସ୍ୱରେ
ଜନ୍ମଲଭି, ସବୁମତେ ହେଲେ ଚରିତାର୍ଥ ।
ଶୁକ୍ଲଦନ୍ତ ପ୍ରଭାଯୁକ୍ତ ସେହି ସରସ୍ୱତୀ
ବାହାରନ୍ତେ ପ୍ରଭୁଙ୍କର କମଳାନନରୁ,
ଦେଖି ହୁଦେ ହେଲା ପ୍ରତେ ପଦତଳୁ ଜନ୍ମି
ଭାଗୀରଥୀ ହେଲେ କିବା ଊର୍ଦ୍ଧ୍ୱେ ପ୍ରବାହିତା ।
କହିଲେ କରୁଣାସିନ୍ଧୁ ଅହେ ଦେବଗଣ !
ଯଥା ତୀବ୍ର ତମୋଗୁଣ ଦଅଇ ବୁଡାଇ
ପ୍ରାଣୀଙ୍କର ସତ୍ତ୍ୱ, ରଜୋଗୁଣ ଯୁଗଳକୁ,
ତେସନ ରାକ୍ଷସପତି ରାବଣ ଦୁର୍ମତି

ଉପଦ୍ରୁତ କରଅଛ ତୁମ୍ଭମାନଙ୍କର
ମହିମା ବଚନ, ଏହା ଅଛି ମୁଁ ବିଦିତ ।
କାରଣ ମୁହିଁ ଅତର୍କିତଭାବେ ସମାଗତ
ଦୁଷ୍କୃତ ଯେସନ ଦଗ୍ଧ କରେ ତିଳ ତିଳ
ସଜ୍ଜନ ମାନବ ହୃଦ, ତେସନ ରାବଣ
ସନ୍ତପ୍ତ କରୁଛି ଏହି ତିନ ଭୁବନକୁ ।
ଦେବରାଜ ଇନ୍ଦ୍ରଙ୍କର ଉପାଏ, ଅଚିରେ
ଏ କଷ୍ଟ ଉଦ୍ଧାର ବ୍ରତ ସାଧିବା ପାଇଁକି
ସତ୍ୱର ମୁଁ ଅବତୀର୍ଣ୍ଣ ହୋଇବି ମର୍ତ୍ତ୍ୟରେ ।
କେବଳ ସୁରେନ୍ଦ୍ରଙ୍କର ପ୍ରାର୍ଥନା ପୂରଣେ
ଅନୁକୂଳ ହେଉଛି ମୁଁ ନ ଭାବିବ ଏହା,
ଅଗ୍ନିଦେବଙ୍କର ସିନା ସାହାଯ୍ୟ ନିମନ୍ତେ
ଅଗ୍ରସର ହୋଇଥାନ୍ତି ନିଜେ ପ୍ରଭଞ୍ଜନ
ଅଗ୍ନିର ପ୍ରାର୍ଥନା କହିଁ ହୁଅଇ କି ସେହା ?
ପ୍ରସନ୍ନ କରିବା ପାଇଁ କମଳାସନଙ୍କୁ
ପୂର୍ବେ ଏହି ଦଶାନନ ଗ୍ରୀବାଦେଶୁ ତାର
ଛିନ୍ନ କରି ସ୍ୱହସ୍ତରେ ନଅଟି ମସ୍ତକ
ଅକାତରେ ଦେଇଥିଲା ଅନଳେ ଆହୁତି,
ଅବଶିଷ୍ଟ ମୁଣ୍ଡଗୋଟି ନ କାଟି ସେକାଳେ
ରଖିଦେଇ ଅଛି ସିନା ପାପାତ୍ମା ଅସୁର
ମୋର ଚକ୍ର ଅସ୍ତ୍ରଧର ଲକ୍ଷ୍ୟାଂଶ ସ୍ୱରୂପ ।
ବିଷଧର ବିଷଜ୍ୱାଳା ସହନ୍ତି ଯେସନ
ଚନ୍ଦନ ପାଦପକୁଳ, ତେସନ୍ତେ ସୁରଗଣ !
ଅବଗତ ହୋଇ ସୁଦ୍ଧା ଦୌରାତ୍ମ୍ୟ ସକଳ
ଦୁରାତ୍ମାର, ସହିଅଛ ଏତେକାଳଯାଏ
ମର୍ଯ୍ୟାଦା ରଖିବା ଲାଗି ବ୍ରହ୍ମାଙ୍କ ବରର ।
ଯେବେ ସୁକଠୋର ତପେ ତୋଷକରି ତାଙ୍କୁ
ମାଗିଲା ଅମର ବର, ଦୁଷ୍ଟ ନିଶାଚର
କହିଥିଲା ସେ କାଳରେ ଅମର କିନ୍ନର
ଗନ୍ଧର୍ବ, ପିଶାଚ, ଯକ୍ଷ, ରକ୍ଷ କାହାଯୋଗେ

ହେବ ନାହିଁ ମୃତ୍ୟୁ ତାର, ସ୍ୱାନପ୍ରାଣୀ ସ୍ୱତ
ଅବଶରେ ନର ନାମ ନେଇ ନାହିଁ ମୁଖେ,
ଏଣୁ ମୁହିଁ ମହୀତଳେ ଅଯୋଧ୍ୟା ନଗରେ
ମହାରାଜ ଦଶରଥ ଔରସେ ଜନମି,
ନରରୂପେ, ତୀକ୍ଷ୍ଣଶରେ ଗଡ଼ାଇ ଭୂମିରେ
ତା ଶିରକମଳମାନ, ଦେବ ଉପହାର
ବଳରୂପେ ରଣପାର୍ଶ୍ୱୀ ରଣ ଚଣ୍ଡିକାକୁ ।
ମନ୍ତ୍ରରୁ ଏ ପାପସ୍ୱର ଶୀଘ୍ର ଯିବ ଘୁଞ୍ଚି,
ଛଡ଼ିଦିଅ ଭୟ ମନୁ, ପୁଣ୍ୟାତ୍ମାନଙ୍କର
ନଜ ନଜ ହବିଃଅଂଶ ସଗୃହୀତ କର
ଏଣିକି ସେମାନେ ସୁଖେ, ମାୟାବୀ ଅସୁର
ନ ପାରିବେ ନାଶି ଅଉ ଯେ କ୍ରିୟା କଳାପ ।
ଅବେଶି ଆକାଶପାନେ ଦେବତାମଣ୍ଡଳୀ
ସଞ୍ଚରଣ କଲବେଳେ, ମାର୍ଗରେ ବଡେକି
ରାବଣ ପୁଷ୍ପକରଥ, ଲୁଚୁଥିଲେ ଯାହା
ସଭୟେ ନବଦ୍ଭବ ମେଘ ଅନ୍ତରାଳେ,
ପାଶୋର ଦିଅନ୍ତୁ ଏବେ ସେ ଭୟ ମନରୁ ।
ଶକ୍ର ଚନ୍ଦ୍ର ସୂରଗଣ ! ରାବଣ ଦୁର୍ମତି
ନଳ କୁବେରଙ୍କ ଶାପେ କ୍ଷୀଣଶକ୍ତି ହୋଇ
ବନ୍ଦୀସ୍ୱବେ ଅବସ୍ଥିତା ସୁରଙ୍ଗନାଙ୍କର
ବେଣୀ ବନ୍ଧନକୁ ଭୟେ ଧରି ପାରି ନାହିଁ
ରହିଛି କୁନ୍ତଳ ସେହି ବନ୍ଧନ ଦଶାରେ
ତୁମ୍ଭେମାନେ ଯାଇ ତାହା କରିବ ମୋଚନ ।
ଦଶାନନ ରୂପୀ ଘୋର ଅବଗ୍ରହ ଯୋଗେ (୧)
ମ୍ଳାନସ୍ୱାନ ସ୍ୱବାପନ୍ନ ଦେବତାମାନଙ୍କୁ
ଏହିରୂପ ବାକ୍ୟଜଳେ ଆଶ୍ୱାସନା ଦେଇ
ନବ ଜଳଧର ସମ କମଳଲୋଚନ,
ଦେଖୁଁ ଦେଖୁଁ ସେ ସ୍ଥାନରୁ ହେଲେ ଅନ୍ତର୍ହିତ

(୧) ଅବଗ୍ରହ—ଅନାବୃଷ୍ଟି

ପାଦପ ସ୍ୱସ୍ଥାନେ ଥାଇ ପୁଷ୍ପପତ୍ରରେ
ଅନ୍ତର୍ଯାମୀ ହୁଏ ଯଥା ଖର ପବନର,
ଏରୂପ ଆଦେଶ ଲଭି ଭଗବାନଙ୍କର
ଇନ୍ଦ୍ରଆଦି ଦେବେ ତେତେବେ ନିଜ ନିଜ ଅଂଶେ
ତାହାଙ୍କର ପଦଚିହ୍ନ ଅନୁସର ହେଲେ
ଋଷ ଶାଖାମୃଗ କୁଳେ ଜନ୍ମିଲେ ମର୍ତ୍ତ୍ୟରେ ।
ଏଣେ ଦଶରଥଙ୍କର ପୁତ୍ରଲାଭ ଯଜ୍ଞ—
ସମାପନ ଅନ୍ତେ, ଏକ ସ୍ୱର୍ଗୀୟପୁରୁଷ
ଧରି ପାୟସାନ୍ନଯୁକ୍ତ ହେମମୟ ପାତ୍ର
ସହସା ଉଠିଲେ ସେହି ଯଜ୍ଞକୁଣ୍ଡରୁଁ
ବିସ୍ମୟ ଜନମ କରି ସଭିଙ୍କ ମନରେ ।
ଭଗବାନ ବିଷ୍ଣୁଙ୍କର ଅଧିଷ୍ଠାନ ହେତୁ
ସ୍ୱର୍ଣ୍ଣପାତ୍ର ମଧ୍ୟସ୍ଥିତ ସେ ପାୟସ ଅନ୍ନ
ହସ୍ତଦ୍ୱୟେ ବହି ସେହି ସ୍ୱର୍ଗୀୟପୁରୁଷ
ଗୁରୁଭାର ଅନୁଭବ କଲେ ମହାକ୍ଳେଶେ ।
ବିଧାତାପୁରୁଷଙ୍କର ପ୍ରଦତ୍ତ ସେ ଅନ୍ନ
ନେଲେ ଦଶରଥ ନୃପ ଆନନ୍ଦମନରେ
ଇନ୍ଦ୍ର ଯଥା ରତ୍ନାକର ଦତ୍ତ ସୁଧାରାଶି ।
ତ୍ରୈଲୋକ୍ୟକାରଣ ବିଷ୍ଣୁ ପାଇଛନ୍ତି ଯେଣୁ
ଜନ୍ମିବାକୁ ଭୂମଣ୍ଡଳେ ନରେନ୍ଦ୍ର ଔରସେ
ତେଣୁ ତାଙ୍କ ଅଲୌକିକ ପୁଣ୍ୟର ପ୍ରଭାବ
ସବିଶେଷ ବର୍ଣ୍ଣିବାର କିବା ପ୍ରୟୋଜନ ?
ଭୂତଳେ ଗଗନେ ଯଥା ବେନି ଭାଗକରି
ନିଜ କାଳରଶ୍ମି ରବି କରନ୍ତି ବିଭକ୍ତ
ତେସନ ବୈଷ୍ଣବ ତେଜ ସ୍ୱରୂପ ସେ ଚରୁ
ଦଶରଥ ବେନିଜାୟା କୌଶଲ୍ୟା କୈକେୟୀ
ମହିଷୀଙ୍କୁ, ସମଭାଗେ କରିଲେ ପ୍ରଦାନ ।
ଥିଲେ ତାଙ୍କ ପାଟରାଣୀ ସର୍ବଗୁଣବତୀ
କୌଶଲ୍ୟା, ପ୍ରେୟସୀ ଥିଲେ କୈକେୟୀ ସୁନ୍ଦରୀ ।
ଏହି ବେନି ରାଣୀ ତାଙ୍କ ପ୍ରିୟତମା ସଖୀ

ସୁମିତ୍ରାଙ୍କୁ ନିଜ ନିଜ ଭାଗୁଁ ଚରୁ ଅଂଶ
ଦେବେ ବୋଲି ଅନୁମାନ ନରେନ୍ଦ୍ର ମଣ୍ଡଳ
ତିନ ଭାଗେ ଦେଲେ ନାହିଁ ନିଜେ ଭାଗ କରି ।
ସ୍ୱାମୀ ମନୋଗତ ଭାବ ଜାଣି ବେନିରାଣୀ
ଆପଣାର ଚରୁ ଅର୍ଦ୍ଧ ଅର୍ଦ୍ଧାଂଶ ଲେଖାଏ
ପ୍ରିୟସଖୀ ସୁମିତ୍ରାଙ୍କୁ କରିଲେ ପ୍ରଦାନ ।
ପ୍ରମତ୍ତମାତଙ୍ଗଗଣ୍ଡ-ମଣ୍ଡଳ ବାହିନୀ—
ମଦଧାରା ଯୁଗଳର ପ୍ରଣୟସଙ୍ଗିନୀ
ହୋଇଥାଏ ମଧୁଲୁବ୍ଧୀ ମଧୁକରୀ ଯଥା
ତେମନ ସେ ଯୋଷାମଣି ସୁମିତ୍ରା ରୂପସୀ
ଥିଲେ ପ୍ରିୟପାତ୍ରୀ ଦୁଇ ସପତ୍ନୀଙ୍କର ।
ସୂର୍ଯ୍ୟଙ୍କର ଅମୃତାଖ୍ୟ ନାଡ଼ୀକୁଳ ଯଥା
ଜଳୀୟାଂଶେ ଜଳମୟ ଗର୍ଭକୁ ଧରନ୍ତି
ତେମନ କୌଶଲ୍ୟା ପୁଣି କୈକେୟୀ ସୁମିତ୍ରା
ତିନ ରାଣୀ, ପ୍ରଜାକୁଳ ଉନ୍ନତି ନିମିତ୍ତ
ଦେବାଂଶ ସମ୍ଭୂତଗର୍ଭ ଧରିଲେ ସାନନ୍ଦେ ।
ସମକାଳେ ଗର୍ଭବତୀ ହୋଇ ମହିଷିଏ
ପାଣ୍ଡୁବର୍ଣ୍ଣ କାନ୍ତି ଧରି ଫଳଗର୍ଭ ଅବା
ଶସ୍ୟ ସମ୍ପତ୍ତିର ପରି ଶୋଭିଲେ ବିଶେଷେ ।
ବିଲୋକିଲେ ସ୍ୱପନରେ ତିନ ମହାରାଣୀ
ଶଙ୍ଖ, ଚକ୍ର, ଗଦା, ଖଡ଼୍ଗ, କୋଦଣ୍ଡଶୋଭିତ—
କଣ୍ଠପଦ୍ମ ଖର୍ବାକାର ସ୍ୱର୍ଗୀୟପୁରୁଷ
ରକ୍ଷା କରୁଛନ୍ତି ତାଙ୍କୁ ବଜ୍ରତଲରୂପେ ।
ହେମପକ୍ଷ ପ୍ରଭାଜାଲେ ଆକର୍ଷି ସବେଗେ
ମେଘମାଳା, ଆକାଶକୁ ଆଲୋକିତ କରି
ସେହୁ ଦିବ୍ୟ ପ୍ରଭୁପୃଷ୍ଠେ ପକ୍ଷୀନ୍ଦ୍ର ଗରୁଡ଼
ବହୁଛନ୍ତି ପୃଷ୍ଠଦେଶେ ସେମାନଙ୍କୁ ସୁଖେ ।
ବକ୍ଷୁରତ ଉରସ୍ଥଳେ ରୂପରେ ଲମ୍ବାଇ
କୌସ୍ତୁଭମଣିକୁ ସୁଖେ ଦେବୀ ପଦ୍ମାଳୟା
ପ୍ରଫୁଲ୍ଲ କମଳଦଳ ବ୍ୟଜନ ବାତରେ

ଧୀରେ ଧୀରେ କରୁଛନ୍ତି ତାହାଙ୍କୁ ଶୁଶ୍ରୂଷା ।
କଶ୍ୟପାଦି ବ୍ରହ୍ମନିଷ୍ଠ ମହାଋଷିଗଣ
ମଜ୍ଜି ଭାଗୀରଥୀ ଜଳେ, ଉଚ୍ଚାରି ଆନନ୍ଦେ
ସାମବେଦ ମହାଗୀତ, କରନ୍ତି ଆଗରେ
ସେମାନଙ୍କ ଉପାସନା ତଦ୍‌ଗତ ଚିତ୍ତରେ ।
ଏସନ ସ୍ୱପନ କଥା ଶୁଣି ନରରାଣ
ତିନ ରାଣୀଙ୍କର ମୁଖ ପୁଲକିତ ହୋଇ
ସବୁଭବେ ସର୍ବୋତ୍କୃଷ୍ଟ ମଣିଲେ ନିଜକୁ
ହେବେ ବୋଲି ଗୁରୁ, ନିଜେ ଜଗତଗୁରୁଙ୍କ ।(୧)
ସ୍ୱଚ୍ଛଜଳେ ପ୍ରତିମ୍ବିତ ବିଧୁଛବି ପରି
ଏକା ବିଷ୍ଣୁ ଚତୁରଅଂଶେ ଭାଗଭାଗ ହୋଇ
ବାସ କଲେ ସେମାନଙ୍କ ପବିତ୍ର ଉଦରେ ।
ତିମିରନାଶକ ଜ୍ୟୋତି ଜାତ କଲାପରି
ଓଷଧି ରଜନୀ ଯୋଗେ ନୃପପାଟରାଣୀ
କୌଶଲ୍ୟା ପ୍ରସବ କଲେ ଏକ ପୁତ୍ରରତ୍ନ
ଅଭିରାମମୂର୍ତ୍ତି ହେରି ସେ ପୁତ୍ରର ରାମ୍ୟେ
ଆନନ୍ଦରେ ଜଗତର ସର୍ବଶୁଭମୟ
'ରାମ' ଏହି ନାମେ ତାଙ୍କୁ କଲେ ଅଭିହିତ ।
ହୀନପ୍ରଭ ହୋଇଗଲା ସୂତିକାଗାରର
ଦୀପାବଳୀ ନବଜାତ ରଘୁକୁଳଦୀପ
ସେ ଶିଶୁର ଅଲୌକିକ ମଞ୍ଜୁତେଜପୁଞ୍ଜେ ।
ଶଯ୍ୟାଶାୟୀ ରାମଯୋଗେ, ରାମଙ୍କଜନନୀ
କୃଶୋଦରୀ, ଆଶ୍ୱସିଲେ ସୂତିକା ଗୃହରେ,
ଶୋଭନା ଶରତକୃଶା ଜାହ୍ନବୀପୁଳିନେ
ଥୁଆ ହୋଇଥିଲା ପରି ଫୁଲ୍ଲ ପଦ୍ମିଟିଏ ।
ଜନ୍ମକର ଯଥାକାଳେ ତହୁଁ ମହାଦେବୀ
କୈକେୟୀ ଭରତନାମେ ଗୋଟିଏ କୁମାର,
ଶୋଭିଲେ, ଦିନସ୍ୱଯୋଗେ ସମ୍ପଦ ଯେସନ ।

(୧) ଜଗଦ୍‌ଗୁରୁ—ବିଷ୍ଣୁ

ଶେଷେ ଅଗ୍ରଧୃତାବଦ୍ୟା ଉପୁଜାଏ ଯଥା
ବିନୟସୁସ୍ଥାନ, ତଥା ସୁମିତ୍ରାସୁନ୍ଦରୀ
ପ୍ରସବିଲେ ମନୋରମ ଯୁଗଳ ସନ୍ତାନ
ଲକ୍ଷ୍ମଣ, ଶତ୍ରୁଘ୍ନନାମେ, ଏକସମୟରେ ।
ଏହିରୂପେ ଚାରିପୁତ୍ର ଲଭନ୍ତେ ଜନମ
ଦୁର୍ଭିକ୍ଷାଦି ଦୋଷଶୂନ୍ୟ ହୋଇ ଧରାତଳ
ସର୍ବସୁଖେ ହେଲା ପୂର୍ଣ୍ଣ, ପ୍ରଭୁ ନାରାୟଣ
ଅବତୀର୍ଣ୍ଣ ହେଲେ ଏହି ଭୂମିରେ ବୋଲିକି ?
ଓଙ୍କାଇ ଅସିଲା ସ୍ୱର୍ଗ ତାଙ୍କୁ ଅନୁସରି ।
ବହିଲା ନିର୍ମଳ ବାୟୁ ମୃଦୁଳେ ମଧୁରେ
ଦଶାନନଭୟେ ଭୀତ ଦେବଗଣକିବା
ଚତୁର୍ମୂର୍ତ୍ତି ବିଷ୍ଣୁଙ୍କର ଆବିର୍ଭାବ ଦେଖି
ମୁଞ୍ଚିଲେ ନିଃଶଙ୍କ ମନେ ମହା ଆନନ୍ଦରେ
ପବନ ଛଳରେ ସ୍ୱୀୟ ଉତ୍ସାହଲହରୀ ?
ଧୂମଶୂନ୍ୟ ହେଲେ ଅଗ୍ନି, ପ୍ରସନ୍ନ କିରଣେ
ଉଦିଲେ ଜଗତନାଥ ଗଗନ ମଣ୍ଡଳେ,
ଦେଖି ହେଲା ମନେ ପ୍ରତେ ରାକ୍ଷସଙ୍କର
ଉତ୍ପୀଡ଼ିତନ୍ତୁ ଏବେ ମୁକ୍ତ ହୋଇବେ ଭବ କି ?
ଭବିଲେ ସେମାନେ ଆତ୍ମସୁଖ ଅନୁଭବ ।
ଭୂମିଷ୍ଠ ହୋଇଲେ ଯେବେ ଦଶରଥ ଘରେ
ରାମଚନ୍ଦ୍ର, ଆଚମ୍ବିତେ ସେକାଳେ ଲଙ୍କାରେ
ରାବଣ କିରୀଟ ଦେଶୁଁ ମଣିରାଜିଛଟିଲେ
ରକ୍ଷରାଜଲକ୍ଷ୍ମୀଙ୍କର ଅଶ୍ରୁବିନ୍ଦୁମାଳ
ନେତ୍ରୁ ସ୍ରବି ଧରାତଳେ ହେଲାଣି ପତିତ ।
ମାନ୍ୟବାନ ସେ ନୃପଙ୍କ ପୁତ୍ର ଜନ୍ମୋତ୍ସବେ
ଅମରେ ଦୁନ୍ଦୁଭିଧ୍ୱନି କରି ଦେବଲୋକେ
ବାଦ୍ୟନାଦସହ ଶଙ୍ଖ ବଜାଇଲେ ରଙ୍ଗେ ।
ପାରିଜାତ ପୁଷ୍ପବୃଷ୍ଟି କଲେସା ସ୍ୱର୍ଗରୁ
ଦେବଗଣ, ନରେଶଙ୍କ ପୁତ୍ରଜନ୍ମ କାଳେ
ନାଭିଚ୍ଛେଦନାଦି ସର୍ବ ମଙ୍ଗଳ କାର୍ଯ୍ୟରେ

ଫଳର ଅଙ୍କୁର ତାହା କଲ ପରିପୂର୍ଣ୍ଣ ।
ଧାତ୍ରୀସ୍ତନ୍ୟପାୟୀ ପୁତ୍ରେ ଜନମଦାତାର
ହର୍ଷସହ ଦିନୁଦିନୁ ବଢିଲେ ଆଦରେ
ବଢ଼ଇ ଦ୍ୱିଗୁଣେ ଯେସନ୍ତେ ନୈସର୍ଗିକ ତେଜ
ଅନଳର ଘୃତଯୋଗେ; ତେସନ୍ତେ ତନୟଙ୍କ
ସ୍ୱାଭାବିକ ମନୋହର କମନୀୟସ୍ୱଭାବ
ଅଧିକେ ଉନ୍ନତ ହେଲା ସୁଶିକ୍ଷା ପ୍ରଭାବେ
ସେମାନେ ପରସ୍ପର ସ୍ନେହବଦ୍ଧ ହୋଇ
ଉଜ୍ଜ୍ୱଳିଲେ ରଘୁକୁଳ, ନନ୍ଦନବନକୁ
ଉଜ୍ଜ୍ୱଳନ୍ତି ବସନ୍ତାନ୍ତେ ବକୁଳ ଯଥା ।
ହେଲେହେଁ ସମାନ ଭାବେ ଭ୍ରାତୃସ୍ନେହେ ବଦ୍ଧ
ପରସ୍ପର ସେମାନେ, ସମରୁଚି ବଶେ
ଶ୍ରୀରାମ ଲକ୍ଷ୍ମଣେ ପୁଣି ଭରତ ଶତ୍ରୁଘ୍ନେ
ପ୍ରୀତି ଥିଲା ସମଧିକ ଏକ ଆତ୍ମାସମ ।
ଅଗ୍ନି ପବନର ପୁଣି ଚନ୍ଦ୍ର ସମୁଦ୍ରର
ମିଳନ ପରାଏ କିଛି ନ ଥିଲା ଅନ୍ତର
ବେନମଧ୍ୟେ ହୋଇଥିଲେ ସମସୁଖୀ ଦୁଃଖୀ ।
ସ୍ୱୀୟତେଜ ପ୍ରଭାବରେ, ବିନୟ ଗୁଣରେ,
ମହାରାଜପୁତ୍ରଗଣ କରିଲେ ହରଣ
ପ୍ରଜାମାନଙ୍କର ଚିତ୍ତ, ଗ୍ରୀଷ୍ମ ଅବସାନେ
ନାତିଶୀତଉଷ୍ଣ ରମ୍ୟ ଦିବସପରାଏ ।
ଲଭିଲେ ଅପୂର୍ବ ଶୋଭା ଦଶରଥପୁଏ
ଚାରିଅଙ୍ଗେ ଧର୍ମ, ଅର୍ଥ, କାମ ମୋକ୍ଷ ପରି ।
ଯୋଗାଇ ରତନରାଶି ଗୁରୁମହାର୍ଣ୍ଣବ
ଆରାଧନା କରୁଥିଲେ ନରେଶଙ୍କୁ ଯଥା
ତେସନ୍ତେ ପିତୃବତ୍ସଳ ସେ ଚାରି ସହୋଦର
ତୃପ୍ତ କଲେ ଜନକଙ୍କୁ ଗୁଣରାଶିଯୋଗେ ।
ଅସୁରାସ୍ତ୍ର ଭଗ୍ନକାରୀ ଚାରିଦୀର୍ଘ ଦନ୍ତେ
ସୁରରାଜ ଐରାବତ ଶୋଭଇ ଯେମନ୍ତ
ସାମ, ଦାନ, ଭେଦ, ଦଣ୍ଡ, ଉପାୟ ଚାରିରେ

ଅଥବା ଯେସନ ମାଣ୍ଡ ଦ୍ୱିଏ ଷଳୈବତ
କିମ୍ବା ଭୁଜଚତୁଷ୍ଟୟେ ଯଥା ଦନୁଜାର
ଦ୍ୱୟଅନ୍ତ୍ର ଶୋଭିତ, ତେଣ୍ଟେ ରାଜରାଜେଶ୍ୱର
ଦଶରଥ, ଅଳ୍ପିଲେ ସ୍ଥିର ପୁତ୍ରରହେ ।

## ଏକାଦଶ ସର୍ଗ

ଏଥୁ ଅନନ୍ତରେ ଥରେ ବିଶ୍ୱାମିତ୍ର ମୁନି
ପ୍ରବେଶି, ପ୍ରାର୍ଥନା କଲେ ଦଶରଥ ଆଗେ
ସଙ୍ଗେ ଘେନଯିବା ପାଇଁ ଶ୍ରୀରାମଚନ୍ଦ୍ରଙ୍କୁ,
ଯଜ୍ଞର ଅଶାନ୍ତି ନାଶ କରିବେ ସେ ବୋଲି ।
ବାଲ୍ୟୋଚିତ ଶିଖାଧାରୀ ବୟସେ କିଶୋର,
ହେଲେହେଁ କୌଶଲ୍ୟାସୁତ, ତାହାଙ୍କ ବୀରତ୍ୱେ
କାର୍ଯ୍ୟ ସିଦ୍ଧିପାଇଁ ତାଙ୍କ ନଥିଲା ସନ୍ଦେହ,
ତେଜସ୍ୱୀମାନଙ୍କ ତେଜ ଭବେ ସବୁକାଳେ
ବୟସର ଅଳ୍ପତାକୁ ଦଅଇ ଘୋଡାଇ ।
ପଣ୍ଡିତ ମଣ୍ଡିତ, ପୂଜ୍ୟ ଅଯୋଧ୍ୟା ଈଶ୍ୱର
ବହୁକଷ୍ଟେ ଲଭିଲେହେଁ ତନୟମାନଙ୍କୁ
ମୁନିଙ୍କର ଅନୁରୋଧେ ଅନିଚ୍ଛାସତ୍ତ୍ୱରେ
ସମର୍ପିଲେ ଲକ୍ଷ୍ମଣର ସହ ରାମଭଦ୍ରେ,
ବହ୍ନିସମ ଦୀପ୍ତିମାନ ଋଷିବର ହସ୍ତେ,
କେ ନ ଜାଣେ ପାଶେ ଆସି ରଘୁବଂଶୀୟଙ୍କ,
ପ୍ରାଣପ୍ରାର୍ଥୀ ହୋଇସୁଦ୍ଧା କେହି କେଉଁକାଳେ
ଭଗ୍ନମନୋରଥ ହୋଇ ଯାଇ ନାହିଁ ଫେରି ।
ଯେ ମୁହୂର୍ତ୍ତେ ନୃପମଣି କୁମାର ଦେନିଙ୍କୁ
ତପୋବନେ ଯିବା ପାଇଁ ତପୋଧନ ସହ
ପଥସଂସ୍କାରର ଅର୍ଘ୍ୟ କରିଲେ ପ୍ରଦାନ,
ସେହିକ୍ଷଣି ଦେଖାଗଲା ନାନାଶୁଭ ଚିହ୍ନ ।
ପୁଷ୍ପିତ ପାଦପଠାରୁଁ ଫୁଲ ତୋଳଅଣି
ପବନ ଆଗ୍ରହଭରେ ପରିଷ୍କର ପର
ବୃଷ୍ଟି ଦେଲା ରାଜମାର୍ଗେ ଗୋଟି ଗୋଟି କରି,
ଜଳଦ ଅତ୍ୟଳ୍ପକାଳେ ଜଳ ବୃଷ୍ଟିଯୋଗେ
ସଫା କରି ଦେଲା ବାଟ ଧୂଳିରାଶି ନାଶି,
ଦୈବ ଅନୁକୂଳ ତାଙ୍କ ହୋଇଲା ଏସବେ ।
ଋଷିବର ସହ ହସ୍ତେ ଧନୁଶର ଘେନି,
ପିତୃ ଆଜ୍ଞା ପାଳି ସେହି ସମୁତ୍ସାହୀ ଦେନି

ପ୍ରଣମିଲେ ଭକ୍ତିଭରେ ଜନକ ଚରଣେ,
ସ୍ନେହେ ଦୀର୍ଘବାହୁ ଦେନି ପ୍ରସାରି ନରେଶ
ଆଲିଙ୍ଗିଲେ ତନୟଙ୍କୁ ଉଦ୍‌ବେଗ ହୃଦୟେ ।
ପଡ଼ିଲା ବିଦେଶଗାମୀ ସୁତଙ୍କ ଉପରେ
ଅଧୀରେ ତାହାଙ୍କ ଆର୍ଦ୍ର ଅସ୍ଥିର ଲୋତକ
ବିଦାଦେବାକାଳେ ବେଗେ ନ ମାନି ବାରଣ
ନିମ୍ନମୁଖେ ଗଣ୍ଡପ୍ରାନ୍ତେ ଥପ ଥପ ହୋଇ ।
ପିତାଙ୍କର ନେତ୍ରଜଳେ ଆର୍ଦ୍ରଶିର ହୋଇ
ବିଶ୍ୱାମିତ୍ର ପଛେ ପଛେ ବାହାରିଲେ ଦୁହେଁ,
ପୁରବାସୀଙ୍କର ହୁଳୁ ହୁଳାଣି ତୋରଣ—
ସୁଶୋଭିତ ମନୋହର ରାଜସରଣୀରେ ।
ଅନୁଜ ଲକ୍ଷ୍ମଣସହ ଶ୍ରୀରାମଚନ୍ଦ୍ରଙ୍କୁ
ନେବାକୁ ଚାହାନ୍ତେ ମୁନି ଯଜ୍ଞରକ୍ଷା ଆଶେ,
ପ୍ରୟୋଗିଲେ ଆଶୀର୍ବାଦ କେବଳ ନରେଶ,
ଅସୁରମାନଙ୍କୁ ନାଶି ଯଜ୍ଞ ରକ୍ଷିବାକୁ
ସୈନ୍ୟଶ୍ରେଣୀ ଦେବାପାଇଁ ହେଲା ନାହିଁ ଲୋଡ଼ା ।
ରାଜାଙ୍କ ନିକଟୁ ବିଦାନେଇ ମୁନିବର
ପ୍ରସ୍ଥାନ କରିଲେ ହର୍ଷେ ଉପବନମୁଖେ,
ସଙ୍ଗତରେ ଘେନି ବେନି ରାମ ଲକ୍ଷ୍ମଣଙ୍କୁ ।
ଅନୁଗାମୀ ହୋଇ ଧୀରେ ଦିବାକର ପଛେ
ଚଇତ୍ର ବୈଶାଖ ଯଥା ହୁଅନ୍ତି ଶୋଭିତ
ମେଷଆଦି ରାଶିଚକ୍ର ସଙ୍କ୍ରମଣ କରି,
ତେସନ ଯୁଗଳ ଶିଶୁ ଶ୍ରୀରାମ ଲକ୍ଷ୍ମଣ
ବନ୍ଦି ଚରଣାରବିନ୍ଦ ଜନନୀମାନଙ୍କ
ଅନୁସରି ମୁନି ପଛେ ଚଳିଲେ ତୁରିତ ।
ତରଙ୍ଗଚଞ୍ଚଳ ଭୁଜ ଆନ୍ଦୋଳନ କରି,
ଶୈଶବ ଚପଳ ରୁରୁ ଗତିରେ ବେନିଏ
ଗମନ୍ତେ, ଦେଖିଲେ ଆହା ବରଷାକାଳରେ
* ଉଦ୍ଧ୍ୟ ଭଦ୍ୟ ନଦୀ ପରି ଅତି ରମଣୀୟ ।

* ଉଦ୍ଧ୍ୟ, ଭଦ୍ୟ—ପ୍ରବାମଣ୍ୟାଚ ନଦୀଦ୍ୱୟ ।

ବିଚରଣ କରିବାର ଥିଲେହେଁ ଅଭ୍ୟାସ
ସେରେ ମଣିମୟ ସ୍ଥାନେ ଦୁଇ ସୁନ୍ଦର,
ତପୋବନେ ପିତାମାନେ ରକ୍ଷିବେ କଲ୍ୟାଣେ
କଳା ଅଷ୍ଟକଳା ବିଦ୍ୟା କରିଣ ଅଭ୍ୟାସ
ପଥ ପର୍ଯ୍ୟଟନ କେଣ ନ ପାରିଲେ ବାର,
ମାତାପାଶେ ଥିସପର ମଣିଲେ ନିଜକୁ ।
ଯାନେ ଚଢ଼ି ସଦାବେଳେ ଗମନାଗମନ
କରିଲେହେଁ ସ୍ୱନଗରେ ସେ ରାଜକୁମାରେ,
ପିତୃବନ୍ଧୁ ବିଶ୍ୱାମିତ୍ର ମୁଖୁଁ ଶୁଣି ଶୁଣି
ପ୍ରାଚୀନ କଥାଣିମାନ ବାତ୍ସଲ୍ୟ ପୁରିତ ।
ସେ ମଧୁର କଥାମୃତେ ହୋଇ ବିମୋହିତ
ନ ଲଭିଲେ ତିଳେ ବ୍ୟଥା ପାଦେ ଚାଲି ଚାଲି ।
ଯିବାକାଳେ ଉଭୟଙ୍କୁ ମାର୍ଗରେ ଆନନ୍ଦେ
ସ୍ତୁତି କରୁଥିଲେ ବନ ବିହଙ୍ଗମଗଣ
କର୍ଣ୍ଣ-ରସାୟନ ମୃଦୁ ମଧୁର ଧ୍ୱନିରେ,
ସରୋବରମାନେ ସ୍ୱାଦୁ ସଲିଳ ସମ୍ପଦେ ।
ସୁଗନ୍ଧ କୁସୁମରେଣୁ ଯୋଗେ ସମୀରଣ
ସୁଶୀତଳ ରମ୍ୟଭାବ ବିତରଣ କରି,
ଆକାଶରେ ମେଘମାଳ ସୂର୍ଯ୍ୟଙ୍କୁ ଘୋଡ଼ାଇ
ଛାୟା ଦେଉଥିଲେ ତାଙ୍କୁ ସଦା ଛତ୍ର ପରି ।
ଯିବାବେଳେ ପୃଦଙ୍କର ମଧୁର ମୂରତି
ଠାବେ ଠାବେ ଯତିମାନେ ନିରେଖି ମାର୍ଗରେ
ଲଭୁଥିଲେ ମନେ ମନେ ସେ ଭାବେ ଆନନ୍ଦ
ପଦ୍ମବିମଣ୍ଡିତ ଜଳ, ଶ୍ରମହାରୀ ତରୁ
ନିରେଖି ସେପରି କେବେ ନୋହୁଥିଲେ ପ୍ରୀତ
ହର କୋପାନଳେ ଦଗ୍ଧ ମଦନ ଆଶ୍ରମେ *
ପ୍ରବେଶିଲେ ଯାଜିମାନେ, ଅଙ୍ଗ ସୌନ୍ଦର୍ଯ୍ୟରେ
ଅନଙ୍ଗର ପ୍ରତିନିଧି ଥିଲେହେଁ ଶ୍ରୀରାମ

* ଏହି ସ୍ଥାନ ମଦନର ତପୋବନ ବୋଲି ପରିଚିତ ଥିବ ।

ଫଳତଃ ମନୁଷ୍ୟ ସତ୍ତ୍ୱ ନ ଥିଲା କିଛିଏ;
ଗଢ଼ା ହୋଇଥିଲା ପ୍ରାଣ ସାଧୁ ସ୍ୱଭାବରେ
ତାମସ କଦର୍ଯ୍ୟ ଭାବ ନ ଥିଲା ତିଳେହେଁ
ଏଣୁ ତାଙ୍କ ବରବପୁ ନେଉଥିଲା ହରି
ଦେଖିଲା ଜନର ମନ, ଚକୋର ନ ପକ୍ଷୀ
ଛଳେ ସୁଧା, ନବୋଦିତ ଚନ୍ଦ୍ରମା ଯଥା ।
ତତ୍‌କ୍ଷଣେ ବେନିଭାଇ ପ୍ରବେଶି ସେ ସ୍ଥାନେ
ଅବଗତ ହେଲେ ଋଷି ବିଶ୍ୱାମିତ୍ର ମୁଖୁଁ
ଅଗସ୍ତି ପ୍ରଦତ୍ତ ଦୁଷ୍ଟା ସୁକେତୁ ତନୟା—
ଭୀମମୂର୍ତ୍ତି ତାଡ଼କାର ଅଭିଶାପ କଥା ।
ଦେଖୁଁ ଦେଖୁଁ ମହାବେଗେ ଘୋରରବ କରି
ସେ ତାଡ଼କା ନିଶାଚରୀ ଓଗାଳିଲା ଆଗେ;
ରୁକ୍ଷପଥ ହୋଇ ତୁହେଁ ଅସୁରୁଣୀ ଯୋଗେ,
ଲକ୍ଷ୍ୟଇଁ ଧନୁକୁ ବେଗେ ଆରୋପିଲେ ଗୁଣ
ଶିଞ୍ଜିନୀ ଟଙ୍କାରେ ପାଶେ ଆସିଲା ଦଉଡ଼ି
ଦୁଷ୍ଟ ନିଶିଥିନୀ ଛଡ଼ ବିକଟ ଅସୁରୀ,
ଧବଳ ଚଞ୍ଚଳ ନର କପାଳ କୁଣ୍ଡଳ
ଧାଇଁବାରୁ ଦୋହଲୁଥିଲା, ଦେଖି ମନେହେଲା
ବକଶ୍ରେଣୀ ବିଭୂଷିତ ନବ ମେଘମାଳ
ବାୟୁବେଗେ ଗମନରେ ହୁଏ କି ଚଳିତ ?
ପ୍ରେତବଦନକୁ ଫିଟି, ଘୋରନାଦ କରି,
ବେଗରେ କମ୍ପାଇ ପଥପାର୍ଶ୍ୱ ବୃକ୍ଷରାଜି,
କ୍ଷଣାନ୍ତେ ଉତ୍ଥିତ ତପ୍ତ ଝଞ୍ଜାବାୟୁ ପରି
ଝାମ୍ପିଲା କମଳମୁଖୀ ଶ୍ରୀ ରାମଚନ୍ଦ୍ରଙ୍କୁ
ଅଣ୍ଟାରେ ଲମ୍ବାଇ ସଢ଼ା ଦୁର୍ଗନ୍ଧପୂରିତ
ପୁରୁଷର କଦାକାର ନାକୀ କାଟି ଶବ,
ସେ ରାକ୍ଷସୀ ଯଷ୍ଟିରୂପେ ତାର ଏକଭୁଜ
ଉର୍ଦ୍ଧ୍ୱେ ତୋଳି, ମହାବେଗେ ଦାଉଲା ଉଚ୍ଛଟେ
ତଳେକ ଶ୍ରୀରାମ ରୋଷେ ଅଗ୍ରସର ହୋଇ
ସ୍ତ୍ରୀବଧେ ଉପେକ୍ଷି ଘୃଣା ନିକ୍ଷେପିଲେ ଶର ।

ପଥର ସଦୃଶ ଦୃଢ଼େ ତାଡ଼କା କଣ୍ଠରେ
ଫିଟାଇଲ ମହାରକ୍ତ ବାଜି ସେହି ବାଣ ।
ଦେଖି ସେହି ରକ୍ତମୁଖ ଜନ୍ମିଲ ଏସ୍ୱବ
ରାକ୍ଷସ ଦେଶକୁ ଯିବାପାଇଁ ବୃତାନ୍ତର
ସତେକି ହେଲା ତା ଅଦ୍ୟ ପ୍ରବେଶର ଦ୍ୱାର ।
ସୁତୀକ୍ଷ୍ଣ ଶରରେ ତଳେ ନିପତିତ ହୋଇ
ତାଡ଼କା ଅସୁରୀ ଏକା କମ୍ପାଇଲ ନାହିଁ
ସେ ବିଜନ ବନସ୍ଥଳୀ ଦଶ ବଦନର
ତ୍ରିଭୁବନ ପରାଜୟେ ନଷ୍ଟଲା ଲକ୍ଷ୍ମୀଙ୍କୁ
ସେ ରାମ ଶବ୍ଦରେ ମଧ୍ୟ କଲ ଟଳମଳ ।
ତନ୍ତ୍ର ବୋଲି ଗନ୍ଧବତୀ ରୁଧିର ଚନ୍ଦନ
ରାମରୂପୀ ମନ୍ମଥର ବାଣ ହୃଦେ ବହି
ନିଶାଚରୀ, ଗଲଚଳି ଜୀବିତେଶପୁରେ *
ତାଡ଼କାକୁ ନାଶି ରାମ ନିଜ ପରାକ୍ରମେ
ତୋଷକରି ମୁନିବରେ, ତାହାଙ୍କ ପ୍ରସାଦେ
ଲଭିଲେ ଆନନ୍ଦେ ଦୁଷ୍ଟ ରକ୍ଷୋନାଶକାରୀ
ଦୁର୍ଲ୍ଲଭ ଦୁର୍ଭେଦ୍ୟ ଅସ୍ତ୍ରମାନ ମନ୍ତ୍ରସହ
ଲଭଇ ଯେସନ ସଦା ସୂର୍ଯ୍ୟକାନ୍ତମଣି
କାଠ ଦହିବାକୁ ତେଜ ସୂର୍ଯ୍ୟଙ୍କ ନିକଟୁଁ ।
ପ୍ରବେଶି ବାମନାଶ୍ରମେ ତହିଁ ରଘୁମଣି
ଶୁଣିଲେ ପବିତ୍ର ପୂର୍ବ ବାମନ ଚରିତ
ପୁଣ୍ୟଶ୍ଳୋକ ଋଷିବର ବିଶ୍ୱାମିତ୍ର ମୁଖୁଁ
ଉଦିତ ନ ହେବା ହେତୁ ପୂର୍ବ ଜନ୍ମକଥା
ସ୍ମୃତିପଥେ, ହେଲେ ଶୂର ଅତ୍ୟନ୍ତ ଉନ୍ମନା
ପ୍ରବେଶ କରନ୍ତେ ସ୍ୱୀୟ ମଠରେ ମହର୍ଷି
ଦଶରଥ ନୃପଙ୍କର ବେନିସୁତ ସହ,
ପ୍ରିୟତମ ଶିଷ୍ୟମାନେ ଏକତ୍ରିତ ହୋଇ,
ବନ୍ଦାଣ ସାମଗ୍ରୀ ଘେନି ପ୍ରସନ୍ନ ମନରେ

* ଯମ । ଗନ୍ଧବହ ; ସୁଗନ୍ଧ ; ଗନ୍ଧବତୀ—ଦୁର୍ଗନ୍ଧ ରୁଧିର
ରକ୍ତ—କୁଙ୍କୁମ ।

ମସ୍ତକଣା କଲେ ବେନ ନୃପ କୁମାରଙ୍କୁ
ଚଉଦିଗ ଅଞ୍ଚଳରେ ପାଦପ ନିକର,
ମନ୍ଦ ମନ୍ଦ ପବନରେ ସଞ୍ଚାଳିତ ହୋଇ
ଧୀରେ ଧୀରେ ସେମାନଙ୍କୁ କଲେ ଅଭ୍ୟର୍ଥନା,
ଅଶ୍ରମ କୁଞ୍ଜକୁଳ ଦର୍ଶନ ଲାଳସେ
ଉହ୍ଲେ ଚମ୍ପୁଣ୍ଣ ନେଣେ ସ୍ଥୁରୁଗ୍ରୀବା ତୋଳି,
ଦରଙ୍ଗ ସ୍ବହାଣୀ ଯୋଗେ ରଞ୍ଜି ବନସ୍ଥଳୀ
ବେଦମନ୍ତ୍ର ପାଠକରି ପୁରୋହିତମାନେ
ସନ୍ଧ୍ୟାକାଳେ ଆରମ୍ଭିଲେ ଯଜ୍ଞର କରମ,
କାଂସ୍ୟ କରତାଳ ଘଣ୍ଟା ଗମ୍ଭୀର ନିନାଦେ
ମନ୍ତ୍ରଧ୍ୱନି ସହ ମଠ ବନସ୍ଥଳୀ ପୂରି
ବନ୍ଧୁକ ଫୁଲର ପରି ଫୁଲ୍ଲ ରକ୍ତଚନ୍ଦ୍ର
ଏକାଳେ ସହସା ନଭୁଁ ଥପ ଥପ ହୋଇ
ପଡ଼ିଲ ଦୂଷିତ କରି ପୂତଯଜ୍ଞବେଦୀ
ସେବେ ପୁରୋହିତଙ୍କର ହାତୁ ଖସିଗଲ
ଫୁଲପତ୍ର ପୂଜାଦ୍ରବ୍ୟ, ମହାବ୍ୟସ୍ତମନେ
ପରିତ୍ୟାଗ କଲେ ସେହି ଅସମାପ୍ତ କାର୍ଯ୍ୟ ।
ଏ କଦର୍ଯ୍ୟ ବ୍ୟବହାରେ କ୍ରୋଧେ ରଘୁମଣି
ଧନୁରେ ଚଢ଼ାଇ ଗୁଣ, ମହାକ୍ଷିପ୍ର ହସ୍ତେ
କାଢ଼ୁଁ କାଢ଼ୁଁ ତୂଣୀରରୁ ଶାଣଧାର ଶର
ଊର୍ଦ୍ଧ୍ୱମୁଖେ ବ୍ୟଗ୍ରେ ଦୃଷ୍ଟି ଦେଖିଲେ ଆକାଶେ
ସଞ୍ଚରଣ କରୁଅଛି ନିଶାଚର ଦଳ ।
ସେମାନଙ୍କ ଦ୍ୱିଜପକ୍ଷ କମ୍ପିତ ହେଉଛି
ଉଡ୍ଡୀନ ଗରୁଡ଼କୁଳ ପକ୍ଷ ପବନରେ
ଛାଡ଼ି ଅନ୍ୟ ସପକ୍ଷଙ୍କୁ ଲକ୍ଷ୍ୟ କଲେ ବୀର
ଯଜ୍ଞବିଘ୍ନକାରୀ ଶ୍ରେଷ୍ଠ ସୁବାହୁ ମାରୀଚେ,
ନାଗେନ୍ଦ୍ରକୁ ଏଡ଼ିଦେଇ ଖଗେନ୍ଦ୍ର କି କେବେ
ସ୍ୱବିକ୍ରମ ପ୍ରକାଶଇ ଧଣ୍ଡସାପ ପ୍ରତି ?
ଅସ୍ତ୍ରବିଶାରଦ ରାମ ତହୁଁ ଶରବେଗେ
ଯୋଖି ତୀବ୍ର ଗତିଶୀଳ ଏକ ବାୟବ୍ୟାସ୍ତ୍ର

ଶରାସନେ, ଛଡ଼ାଇଲେ ତାଡ଼କା ତନୟ
ମାରୀଚେ, ଶୁଷ୍କ ପତ୍ରପର ଆକାଶରେ,
ଭ୍ରମଗିରିବର ସମ ହେଲେହେଁ ସେ ସବ
ଦୀର୍ଘବାହୁ ଦମ୍ଭିଶ୍ରେଷ୍ଠ ସୁବାହୁ ରାକ୍ଷସ
ମାୟାବଳେ ନଭେ ତହୁଁ କଲ ବିଚରଣ
ଏଣେ ତେଣେ, ମାତ୍ର ରାମ ରଘୁକୁଳାନ୍ତକ
କ୍ଷୁରାଗ୍ର ଅସ୍ତ୍ରରେ ତାକୁ ଖଣ୍ଡ ଖଣ୍ଡ କରି
ସୁପବିତ୍ର ଯଜ୍ଞପୀଠ ବାହାର ପ୍ରଦେଶେ
ଭାଗ କରି ବାଣ୍ଟିଦେଲେ ଶକୁନମାନଙ୍କୁ
ଚନ୍ଦ୍ରସୂର୍ଯ୍ୟ ଉଇଁ, କରେ ଅନ୍ଧକାରୁ ଯଥା
ତାରନ୍ତି ମାନବଗଣେ, ତେହ୍ନେ ବେନି ଭାଇ
ବାଛି ବାଛି ରାକ୍ଷସର ସନ୍ଧାନ କରିଣ
ରକ୍ଷାକଲେ ମହାଯଜ୍ଞେ ଦୀକ୍ଷିତ ଋଷିଙ୍କୁ ।
ଏରୂପ ସଙ୍ଗର ଯେତେ ବିଘ୍ନ ହେଲା ଶାନ୍ତ,
ଦୀକ୍ଷିତ ଆର୍ଯ୍ୟଗଣ ପ୍ରଶଂସି ବହୁତ
ସେ ବିଜୟୀ କୁମାରଙ୍କୁ, କରିଲେ ସମ୍ପନ୍ନ
ଯଥାବିଧି ମୌନବ୍ରତୀ ମୁନିଙ୍କର ବ୍ରତ ।
ଯଜ୍ଞ ସମାପନ ଅନ୍ତେ କୁଳପତି ପଦେ
ପ୍ରଣମିଲେ ଦୁଇ ଭାଇ, ଆଶିଷିଲେ ମୁନି
କୁଶଉତ୍ପାଟନ ଯତ କରେ ଆନନ୍ଦରେ
ଆଘ୍ରି ସୁହାଗଭରେ ତାହାଙ୍କ ମସ୍ତକ ।
ଧନୁର୍ଦ୍ଧର ଶ୍ରୀରାମଙ୍କ ସାହାଯ୍ୟେ ମହର୍ଷି
ଏରୂପେ ଆରବ୍ଧକର୍ମ ସମାପନ କରି
ନିମନ୍ତ୍ରଣ ରକ୍ଷା ଆଶେ ଜନକରାଜାଙ୍କ
ମିଥିଳାକୁ ଯିବା ପାଇଁ ବଳାଇଲେ ମନ ।
ସେ ଦେଶର ନୃପବର ରାଜର୍ଷି ଜନକ
ଅନୁଷ୍ଠାନ କରି ଏକ ଧନୁର୍ଭଙ୍ଗ ଯଜ୍ଞ
ନିମନ୍ତ୍ରଣ କରିଥିଲେ ଗାଧିତନୟଙ୍କୁ
ସେହି ମହୋତ୍ସବରେ ଯୋଗଦେବା ପାଇଁ ।
ନିମନ୍ତ୍ରଣ ରକ୍ଷା ପାଇଁ ତହୁଁ ଯିବାକାଳେ

ଧନୁର୍ଭଙ୍ଗ ପଣ ବାର୍ତ୍ତା ଶୁଣି କୁତୂହଳୀ
ରାମ ଲକ୍ଷ୍ମଣଙ୍କୁ ଘେନି ଚଳିଲେ ସଙ୍ଗରେ
ଅତିକ୍ରମି ବହୁପଥ ପ୍ରଦୋଷ ସମୟେ
ଯାଇ ପ୍ରବେଶି ଏକ ସୁରମ୍ୟ ଆଶ୍ରମେ
ତହିଁ ରମ୍ୟ ତରୁତଳେ କଲେ ଅବସ୍ଥାନ ।
ହୋଇଥିଲେ ପୂର୍ବେ ଯହିଁ ସୁଦୀର୍ଘ ତପସ୍ୱୀ
ମହର୍ଷି ଗୌତମପତ୍ନୀ ଅହଲ୍ୟା ସୁନ୍ଦରୀ
ନୈମିତ୍ତିକ ପ୍ରଣୟିନୀ ଦେବରାଜଙ୍କର ।
ଗୌତମଙ୍କ ଶାପାନଳେ ପ୍ରସ୍ତର ରୂପିଣୀ
ଅହଲ୍ୟା ସୁନ୍ଦରୀ ଶିରେ ମୁନିଙ୍କ ଆଦେଶେ
ଚରଣ ଦିଅନ୍ତେ ରାମ, ସହସା ସେକାଳେ
ଲଭିଲେ ପୂର୍ବର ରୂପ ବହୁଦିନ ପରେ
ଲଳନା ଲଲାମଭୂତା ଗୌତମ ପ୍ରେୟସୀ ।
ପାପହାରୀ ଶ୍ରୀରାମଙ୍କ ପଦ ପରଶନେ ।
ଅହଲ୍ୟାଙ୍କ ଅନୁରୋଧେ ସେ ପୁଣ୍ୟାଶ୍ରମରେ
କିଛିକାଳ ରହି ବୀର, ବିହିତ ବିଧାନେ
ଗୌତମପତ୍ନୀଙ୍କ ଯୋଗେ ଆରାଧିତ ହୋଇ,
ଯଥାକାଳେ ପ୍ରବେଶିଲେ ମିଥିଳା ନଗରେ
ପ୍ରିୟଭାଇ; ମହାତପା ମୁନିବର ସଙ୍ଗେ,
ମୂର୍ତ୍ତିମାନ ଧର୍ମ ସହ ଅର୍ଥ କାମ ପରି
ଶ୍ରୀ ରାମ ଲକ୍ଷ୍ମଣ ସଙ୍ଗେ ବିଶ୍ୱାମିତ୍ରଙ୍କର
ଉପସ୍ଥିତ ହେବା ଦେଖି ରାଜର୍ଷି ଜନକ
ପୂଜୋପକରଣେ ତାଙ୍କୁ କଲେ ଅଭ୍ୟର୍ଥନା
ସ୍ୱର୍ଗଭ୍ରଷ୍ଟା ପୁନର୍ବସୁ ତାରାବେନି ପରି
ଦୁଇ ରାଜ ସ୍ୱରୂପଙ୍କୁ ରହିଲେ ଅନାଇଁ
ବିଦେହ ନଗରବାସୀ ବାଳିକାଏ ସୁଖେ,
ସାନନ୍ଦ ଦୃଷ୍ଟିରେ ସେହି ପୁରବାସୀଙ୍କର
ନୟନ ଭ୍ରମରଗଣ ବିସ୍ମୟେ ପଲକ ।
ଯଥାବିଧି ଯଜ୍ଞ କାର୍ଯ୍ୟ ସମାପନ ଅନ୍ତେ
ନିବେଦିଲେ ବିଶ୍ୱାମିତ୍ର ମିଥିଳାପତିଙ୍କୁ,

ରାଜର୍ଷି ! ଶ୍ରୀରାମଚନ୍ଦ୍ର ଚାହୁଁଛନ୍ତି ପରେ
ଦେଖିବାକୁ ସୁବିଖ୍ୟାତ ତବ ଶିବଧନୁ ।
ବିଖ୍ୟାତ ବଂଶରେ ଜାତ ଶିଶୁ ରାମଙ୍କର
ଦେଖି ଅତି ସୁଲଳିତ କୋମଳ ମୂରତି
ପୁଣି ନିଜ ଦୁରନମ୍ୟ କାର୍ମୁକକୁ ସ୍ମରି
ମନେ ମନେ ବୁଝିତାର ଧନୁର୍ଭଙ୍ଗ ପଣେ
ନିତାନ୍ତ ଦୁଃଖିତ ହୋଇ, ନରେଶ ଅନ୍ତରେ
କହିଲେ ସେ ମହାମୁନି ! ଯେ କଠିନ କାର୍ଯ୍ୟ
ମହାକାୟ ମତ୍ତଗଜମାନଙ୍କୁ ଦୁଷ୍କର
ସେ କାର୍ଯ୍ୟେ କୋମଳ କାନ୍ତି କରିଶାବକର
ନିଷ୍ଫଳ ସାହସେ କହ କିବା ପ୍ରୟୋଜନ ?
ହେ ତାତ ! ପ୍ରସିଦ୍ଧ ବହୁ ଧନୁର୍ଦ୍ଧରଗଣ
ନୁଆଁଇ ନପାରି ଏହି ଭୀଷଣ ଚାପକୁ
ଲଜ୍ଜାଭରେ ଯାଇଛନ୍ତି ବାହୁଡ଼ି ସ୍ୱପୁରେ,
ଧିକ୍କାରି ଧିକ୍କାରି କେତେ ନିଜ ପୌରୁଷକୁ,
ପୁଣି ପୁଣି କ୍ରୋଧେ କରି ସ୍ୱଭୁଜ ଦଣ୍ଡକୁ ।
ଉତ୍ତରିଲେ ଗାଧିସୁତ (୧) ଶୁଣ ନରମଣି
ରଘୁବୀର ବଳବୀର୍ଯ୍ୟ, ଅଥବା ଏକ୍ଷଣେ
ବର୍ଣ୍ଣିବେ କି ପ୍ରୟୋଜନ ବଜ୍ର ଯେଉଁପରି
ପ୍ରକାଶ କରଇ ଶକ୍ତି ପର୍ବତ ଶିଖରେ
ତେସନ ତୁମ୍ଭର ଏହି ଭୀମ ଶିବଧନୁ
ଅବିଳମ୍ବେ ଖଣ୍ଡ ଖଣ୍ଡ ହୋଇ ମହୀତଳେ
ଘୋଷଣା କରିବ ନିଜେ ରାମଙ୍କ ବିକ୍ରମ ।
ଶିରେ ଶିଖାଧାରୀ ଶିଶୁ ରାମ ବିକ୍ରମର
ଏମନ୍ତ ପ୍ରଶଂସା ଶୁଣି ମିଥିଳାଈଶ୍ୱର,
ଇନ୍ଦ୍ରଗୋପଖଚିତାଙ୍ଗ ଅନଳ ଖଣ୍ଡର
ଦାହିକା ଶକତି ପରି କରିଲେ ବିଶ୍ୱାସ ।
କହିଲେ ଆଦେଶ ରାଜ୍ୟେ ପରିଷଦଗଣେ

(୧) ବିଶ୍ୱାମିତ୍ର ।

ଅଣିବାକୁ ହରଧନୁ, ଦେବରାଜ ଯଥା
ଅଦେଖନ୍ତ ଜଳଦକୁ ଗଗନ ମଣ୍ଡଳେ
ଅବିଷ୍କାର କରିବାକୁ ତେଜୋମୟ ରୂପ ।
ଶିବ ଯେଉଁ ଧନୁ ଧରି ମୃଗବେଶଧାରୀ
ପଳାୟନ ପରାୟଣ ଯଜ୍ଞେ ଲକ୍ଷକରି
ପେଷିଥିଲେ ଶରଜାଳ ପୁରୁବ କାଳରେ ।
ଶୋଭିଲା ଭୁଜଙ୍ଗରାଜ ସମାନ ଭୀଷଣ
ସେ ଧନୁକୁ ଧରି ବୀର ଇକ୍ଷ୍ୱାକୁନନ୍ଦନ
କମ୍ପିତ ଚକିତ କରି ସମସ୍ତ ସ୍ୱଜନେ,
(ହେଲେହେଁ ତା ଗିରିସମ ଅତିଶୟ ଗୁରୁ)
ଅବହେଳେ ଗୁଣ ତହିଁ ଯୋଖିଲେ ଲୁଆଁଇ,
ସତେକି ମଦନ ଧୀରେ ନୁଆଁଇ ତଳକୁ
କୁସୁମ ରୂପରେ ତାଙ୍କ ପ୍ରଦାନଲେ ଗୁଣ ?
ଭାଙ୍ଗିଲା ଦ୍ୱିଖଣ୍ଡ ହୋଇ ଠାଣେ ଝିଙ୍କିବାରୁ
କୋଦଣ୍ଡ ଏରଣ୍ଡ ଦଣ୍ଡ ପରି ଅନାୟାସେ
ବଜ୍ରନାଦେ ଚରାଚରେ ଉପୁଜାଇ ତ୍ରାସ,
"ଉଠିଲେଣି ଜାଗି ପୁଣ କ୍ଷତ୍ରିୟ ନିକର"
ଘୋଷି ଏ ବାରତା କିବା ଭୀଷଣ ନିର୍ଘୋଷେ
ମାତୃଘାତୀ ମହାକ୍ରୋଧୀ ପରଶୁରାମଙ୍କୁ ।
ଧନୁର୍ଭଙ୍ଗେ ରାମଶକ୍ତି ନିରେଖି ଜନକ
ପ୍ରଶଂସି ବହୁତ ଭାବେ ତାଙ୍କ ବିକ୍ରମକୁ
ନିବେଦିଲେ ସବିନୟେ ବିଶ୍ୱାମିତ୍ର ଆଗେ ।
"ମୁନିବର ! ଆଜଠାରୁ ସମର୍ପିଲି ମୁହିଁ
ଲୋକତ୍ରୟର ଯେ ପୌରୁଷ ତାହାର ମୂଲ୍ୟରେ
ଅଯୋନିସମ୍ଭୂତା ମୋର ଲକ୍ଷ୍ମୀସ୍ୱରୂପିଣୀ
ଦୁହିତା ସୀତାକୁ ବସ୍ତ ରାମଚନ୍ଦ୍ର କରେ" ।
ଧର୍ମାତ୍ମା ସତ୍ୟଦର୍ଶୀ ମିଥିଳା ରାଜନ
ତପଃତେଜ ପୁଞ୍ଜଦୀପ୍ତ ବିଶ୍ୱାମିତ୍ର ଆଗେ
ରଘୁକୁଳାନନ୍ଦ ହସ୍ତେ ନିଜ ତନୟାକୁ
କରନ୍ତେ ପ୍ରଦାନ, ଦେଖି ହେଲା ଉନ୍ନମିତ

ହୁତାଶନ ସାକ୍ଷୀ କରି ସମର୍ପିଲ ପରି ।
ପଠାଇଲେ ତର୍କ୍ୟ ମହାପ୍ରଜ୍ଞାବନ୍ତ ନୃପ—
ଜନକ, ଏରୂପେ ଲେଖି ପୂଜ୍ୟ ପୁରୋହିତ
ଶତାନନ୍ଦେ, ଦଶରଥ ଭୂପେନ୍ଦ୍ର ଛାମୁକୁ
"ହେ ଅଯୋଧ୍ୟା ଧରାଧିପ ! ଘେନ ନମସ୍କାର
ଉପସ୍ଥିତ ସବୁ କଥା ଶତାନନ୍ଦଠାରୁ
ଅବଗତ ହେବ ସୁଧୀ ! ଉଦାର ଗୁଣରେ
ବଶେ ହୋଇ ଏ ନଗରେ ପୁତ୍ରବଧୂରୂପେ
ପରଗ୍ରହ ମୋ ସୁତାକୁ, ସେବକ ପର୍ଯ୍ୟେ
ସ୍ୱୀକର ଯଶସ୍ୱୀ ସଦା ଏ ନେମିବଂଶକୁ"
ଭେଟୁଥିଲେ ମନେ ମନେ ଅନୁରୂପ ବଧୂ
କୁମାରଙ୍କ ବୟଃ ଦେଖି ନରକୁଳମଣି,
ସେକାଳେ ଏ ଅନୁକୂଳ ସୁସମ୍ବାଦ ଘେନ
ବ୍ରାହ୍ମଣ ତାହାଙ୍କ ଅଗ୍ରେ ହେଲେ ଉପସ୍ଥିତ
କଳ୍ପପାଦପର ଫଳ ହୁଏ ଯେସନ୍ତେ ସଦା
ସୁପକ୍ୱ, ତେସନ ସାଧୁଜନ ମନୋରଥ
ପରିପୁଷ୍ଟ ହୁଏ ସଦା ସ୍ୱତଃ ଅବଲମ୍ବେ ।
ସଚୋଟତ ଉପସ୍ଥିରେ ପୂଜି ଦ୍ୱିଜବରେ
ଇନ୍ଦ୍ରଙ୍କର ପ୍ରିୟସଖା କତେନ୍ଦ୍ରସ୍ତ ରାଜା
ଶୁଣି ତାଙ୍କ ମୁଖୁଁ ପୁତ୍ର ପରିଣୟକଥା
ବାହାରିଲେ ମହାହ୍ଲାଦେ ମିଥିଳାଭିମୁଖେ
ଧୂଳିରାଶି ବାଜିରାଜି ଖୁରରେ ଉଡ଼ାଇ
ଦେଲେ ପ୍ରଭାକର କର ଅବରୋଧ କରି
ସୈନ୍ୟଙ୍କ ଗମନରେ ଦଳି ହୋଇଗଲେ
ସୁଲଳିତ ଉପବନେ ତରୁଲତା ଶ୍ରେଣୀ
ସହିଲ ସେ ନୃପକୃତ ନିବିଡ଼ ପୀଡ଼ନ
ମିଥିଳା ନଗରୀ ରଙ୍ଗେ ରସିକା ନାଗରୀ
ସହେ ଯଥା କାନ୍ତକୃତ ଗାଢ଼ କେଳିକଳା
ମହି କୁହୁଇଲେ, ଅନ୍ତା ବାହ୍ୟରେ ଛଳିଲା
ନବରଙ୍ଗେ ଅଧୀରତା ପରକାଶ କରି ।

ବାସବ ବରୁଣ ସମ ମନ୍ତ୍ରିପାଳ ବେଜ
ଯଥାକାଳେ ସମ୍ପାଦିଲେ ଏକନିଷ୍ଠ ହୋଇ
କୁମାର କୁମାରୀଙ୍କର ପରିଣୟ ବିଧି
ସ୍ୱ ସ୍ୱ ଗୋତ୍ର ଅନୁସାରେ ମହା ଆଡ଼ମ୍ବରେ ।
ରାମଙ୍କୁ ବିବାହ କଲେ ଚନ୍ଦ୍ରମୁଖୀ ସୀତା,
ସୀତାଙ୍କ ଭଗିନୀ ଧନୀ ଉର୍ମିଳା ସଙ୍ଗରେ
ପରିଣୟ ସମ୍ପାଦିଲା ବୀର ଲକ୍ଷ୍ମଣର
ମିଥିଳାନାଥଙ୍କ ଭ୍ରାତ କୁଶଧ୍ୱଜ କନ୍ୟା
ଶ୍ରୁତକୀର୍ତ୍ତି ମାଣ୍ଡବୀଙ୍କ ପରଶିଲେ ପାଣି
ଶତ୍ରୁଘ୍ନ ଭରତ ଦେନି ଭ୍ରାତ ଯଥାକ୍ରମେ ।
ମଧୁର ରୁଚିରକାନ୍ତି ରାଜପୁତ୍ରମାନେ
ଧରି ନବ ବଧୂଙ୍କର କମନୀୟ ପାଣି
ବହିଲେ ସେ କାଳେ କେତେ ରମଣୀୟମୂର୍ତ୍ତି
କୀର୍ତ୍ତିକାନ୍ତ ନରେଶଙ୍କ ସର୍ବଫଳ ସିଦ୍ଧି
ସାମ ଦାନ ଭେଦ ଦଣ୍ଡ ଉପାୟ ପସ୍ୱେ ।
ରୂପେ ଗୁଣେ କୁଳେ ଶୀଳେ ବୟେ ସବୁମତେ
ଯେ ଯା ଯୋଗ୍ୟ ସହଚର ସହଚରୀ ଲଭି
କିଶୋର କିଶୋରୀମାନେ ହୋଇଲେ କୃତାର୍ଥ
ପରସ୍ପରେ, ବରବଧୂ ମଧୁରମିଳନ
ପ୍ରକୃତିପ୍ରତ୍ୟୟ ଯୋଗଠାରୁ ଗଲା ବଳି ।
ଏହିରୂପେ ଅନୁରାଗେ ମିଥିଳା ନଗରେ
କଟାଇ ବିବାହକାର୍ଯ୍ୟ ପୁତ୍ରମାନଙ୍କର
ପ୍ରିୟ ରାଜଧାନୀ ମୁଖେ ବିଜେ ହେଲେ ନୃପ ।
ଜନକ ହିପଥପାଏ ବାଟୋଇବା ପାଇଁ
ତାଙ୍କ ସଙ୍ଗେ ଆସି ହର୍ଷେ ଘେନିଲେ ମେଲାଣି ।
ବାହୁଡ଼ିବା ବେଳେ ମାର୍ଗେ ସହସା ପ୍ରଚଣ୍ଡେ
ପ୍ରଭଞ୍ଜନ ଝଞ୍ଜାବାତ ଭୀମବେଗେ ବହି,
ଦେଖି ଦେଖୁଁ ଧ୍ୱଜରାଜ ଛିନ୍ନଭିନ୍ନ କରି
ବିବାହ ଯାତ୍ରୀଙ୍କୁ କଲା ଅତ୍ୟନ୍ତ ଆକୁଳ,
ବର୍ଷାକାଳେ ଉଦ୍ବେଳିତ ତରଙ୍ଗ ବେଗରେ

ନଦୀ ଯଥା ତୀରଭୂମି ତରୁ କରେ ନାଶ ।
ତହୁଁ ଅନ୍ଧ ବସୁଙ୍କର ମଣ୍ଡଳ ମଧ୍ୟରେ
ଫିକା ହୋଇ ସମୁଦ୍ଧତ ମିହିରଙ୍କ ଛବି
ଅସ୍ତମିଲେ ମୃତସର୍ପ ଶରୀରେ ବେଷ୍ଟିତ
ଦୀପ୍ତିହୀନ ମଣି ପରି ଅତ୍ୟନ୍ତ ନିଷ୍ପ୍ରଭ ।
ଘନଧୂଳି ପଟଳରେ ବ୍ୟାପ୍ତ ହୋଇଗଲା
ଅଚମ୍ବିତେ ଦିଗ୍‌ମଣ୍ଡଳ ଚକ୍ରବାଳ ସହ,
ଶକୁନି ପକ୍ଷୀର ପକ୍ଷ ସମାନ ଧୂସର
ସନ୍ଧ୍ୟା ପାଟଳିମା ବୋଳା କାଦମ୍ବିନୀ ମାଳେ
ସମାଚ୍ଛନ୍ନ ହୋଇ ତାହା, ହେଲା ଅବଶେଷେ
ଅରକ୍ତ ଦୁକୂଳଧାରୀ ଧୂସର ଅଳକା
ରଜସ୍ୱଲା ବାଳା ପରି ଦର୍ଶନ ଅଯୋଗ୍ୟା ।
ସୂର୍ଯ୍ୟଙ୍କ ଅସ୍ତକୁ ଚାହିଁ ଶୃଗାଳେ ଉଚ୍ଚାଟେ
ବସୁଙ୍କର କର୍ଣ୍ଣକଟୁ ବିକୃତ ସ୍ୱରରେ
ଅଧୀରେ ଚିତ୍କାରଛଳେ ପକାଇଲେ ଭୟ,
ଉତ୍ସାହିତ କରିବାକୁ କିବା ସେ କାଳରେ
କ୍ଷତ୍ରିୟ ଶୋଣିତେ ପିତୃ ତର୍ପଣକାରକ
କ୍ରୋଧାନ୍ଧ କୁଠାରଧାରୀ ପରଶୁରାମଙ୍କୁ ।
ପ୍ରତିକୂଳବାତ ଆଦି ଦୁର୍ନିମିତ୍ତ ଦେଖି,
କାର୍ଯ୍ୟଜ୍ଞ ରାଜନବର ଶାନ୍ତିର ଉପାୟ
ପଚାରିଲେ କୁଳଗୁରୁ ବଶିଷ୍ଠମୁନିଙ୍କୁ ।
'ଭବିଷ୍ୟତେ ଶୁଭଫଳ ହେବ' ଏହା କହି
ମହର୍ଷି ହରିଲେ ତାଙ୍କ ମାନସବେଦନା ।
ଆବିର୍ଭୂତ ହେଲା ଆସି ଦେଖୁଁ ଦେଖୁଁ ଏକ
ପୁଞ୍ଜୀକୃତ ତେଜୋରାଶି ସେନାଗଣ ଆଗେ,
ନୟନ ଝଲସିଗଲା ସେ ପ୍ରଭା ଜାଲରେ
ମୁହୂର୍ତ୍ତିକେ, ଅଳ୍ପ ଅଳ୍ପ ଦଶିଲା ତହିଁରୁ
ବହ୍ନିପଣେ ଏକ ଦୀର୍ଘ ପୁରୁଷ ଆକୃତି ।
ଆତଙ୍କେ ସକଳେ ଚାହିଁ ଦେଖିଲେ ଚକିତେ
ଶ୍ୱେତକେଶାନ୍ୱିତ ତନୁ ଶିଖାକ ଆଦେଶେ

ନିର୍ଦ୍ଦୟେ ଯେ ସନ୍ତାପିତା ପ୍ରାଣଭିଖାରଣୀ
ସ୍ନେହମୟୀ ବନ୍ଦନୀୟା ଦୁଃଖିନୀ ମାତାର
ମହାଷ୍ଟମୀ ରାଗ ପର ମୁଣ୍ଡପାତ କରି
ହେଲେ ପରାଜୟୀ ଆଗେ ଦୟାଦାକ୍ଷିଣ୍ୟରୁ
ଶେଷେ ଜୟ କରିଥିଲେ ଅଖିଳ ଅବନୀ,
କ୍ଷତ୍ରିୟ ନିଧନ କାର୍ଯ୍ୟ ଏକବିଂଶବାର
ଗଣିବା ପାଇଁକି ଯେହୁ ରୁଦ୍ରାକ୍ଷବଳୟ
ଧରିଥିଲେ ସଦାବେଳେ ଦକ୍ଷିଣ କର୍ଣ୍ଣରେ
ଈଶ ଆରାଧନା ସୂତ୍ର, ଜପମାଳାଚ୍ଛଳେ ।
ଯଜ୍ଞ ଉପବୀତ ପୁଣି ତେଜୋମୟ ଧନୁ
ପିତୃମାତୃ ଅଂଶରୂପେ ବହି ଯେଉଁ ବୀର
ବିଷମ ବକ୍ଷରେ ପୁଣ୍ଡ୍ର ଭୁଜଙ୍ଗ ବେଷ୍ଟିତ
ଚନ୍ଦନପାଦପବତ ଯାଉଥିଲେ ଜଣା ।
ଜନକ ନିଧନ ହେତୁ ନିଦାରୁଣକ୍ରୋଧେ
କ୍ଷତ୍ରିୟ ବିନାଶେ ଯେହୁ ସର୍ବଦା ଦୀକ୍ଷିତ,
କ୍ରୋଧରେ ଆରକ୍ତନେତ୍ର ପ୍ରଚଣ୍ଡପଣ ଯେହୁ
ଜମଦଗ୍ନି ପୁତ୍ର ବୀର ପରଶୁରାମଙ୍କୁ
ହେରି ଦଶରଥ ଭୂପ, ଧୀର ମନେ ମନେ
ସୁକୁମାରମତି ପ୍ରିୟ ସୁତଙ୍କ ଶିଶୁତ୍ୱ
ପୁଣି ନିଜର ବାର୍ଦ୍ଧକ୍ୟ ଭାବିଲେ ଚିନ୍ତିତ ।
'ରାମ' ଏହୁ ନାମ ଗୋଟି ମହାରାଜ ପକ୍ଷେ
ପୂର୍ବେ ପୁଣି ପ୍ରଚଣ୍ଡପକ୍ଷେ ହେଲା ଅବଶେଷେ
କଣ୍ଠହାର ମଣି, ପୁଣି ଫଣୀ ମଣି ପରି
ମହାପ୍ରୀତିପ୍ରଦ, ପୁଣି ମହାତ୍ରାସପ୍ରଦ ।
'ଏହୁ ଅର୍ଘ୍ୟ, ଏହୁ ଅର୍ଘ୍ୟ' ବୋଲି ସମାଦରେ
କରୁଥିଲେହେଁ ଭକ୍ତିରେ ସମ୍ଭାଷଣ ସ୍ୱୟେ,
ସେ ଅଭ୍ୟର୍ଥନାରେ ଥିଲେ ନ କରି ଭ୍ରୂକ୍ଷେପ
ଅବଜ୍ଞାରେ, ଯେଉଁ ଦିଗେ ଥିଲେ ରାମଚନ୍ଦ୍ର,
ସେ ଦିଗେ କ୍ଷତ୍ରିୟକୁଳ ଉନ୍ମୂଳନକାରୀ—
କ୍ରୋଧାଗ୍ନି କଣାରେ ଦୀପ୍ତ—ତୀବ୍ର ଦୃଷ୍ଟିପାତ

ନିକ୍ଷେପିଲେ, ଭୃଗୁସୁତ ଜଗାନଜା ଠେଲି
ପ୍ରଶାନ୍ତ ପ୍ରକୃତ ବୀର ଶ୍ରୀରାମଚନ୍ଦ୍ରଙ୍କୁ
ଅଗ୍ରେ ଉତ୍ତେଜିବା ଦେଖି ନିଃଶଙ୍କ ହୃଦୟେ
ଭାର୍ଗବ, ସ୍ପର୍ଦ୍ଧେ ଧରି ନିଜଧନୁବର
ଅଙ୍ଗୁଳି ସନ୍ଧିରେ ରଖି ନିଶିତ ଶାୟକ
"କହିଲେ ଏସନ, ରୋଷ କର୍କଶ ସ୍ୱରରେ ।
ମୋ ପିତାଙ୍କୁ ନାଶ କରି କ୍ଷତ୍ରିୟ ସମାଜ
ହୋଇଛନ୍ତି ବୈରୀ ମୋର, ତେଣୁ ବହୁବାର
ଭୀଷଣ ପରଶୁଘେଟେ ହାଣି ସେମାନଙ୍କୁ
ପ୍ରଶମିତ କରିଥିଲି ସେହି କୋଧାନଳ
ରୁଧିର ବୃଷ୍ଟିରେ ତାଙ୍କ ରେ କ୍ଷତ୍ରିୟଶିଶୁ !
ଏବେ ପୁଣି ତୋର ଏହି ବଚନକୁ ଶୁଣି
ନିର୍ବାପିତ ସେ ଅନଳ ଉଠିଲାଣି ଜଳି
ଯଷ୍ଟି ଆଘାତରେ ଯଥା ସୁପ୍ତ ଭୁଜଙ୍ଗମ
ନୁଆଁଇଁ ପାରି ନ ଥିଲେ ଆଜଯାକେ କେହି
ଜନକଙ୍କ ଗୃହୁସ୍ଥିର ହର ଶରାସନ,
ମାତ୍ର ଶୁଣିଲି ମୁଁ ଏବେ ଭାଙ୍ଗିଅଛୁ ତୁହି
ସେ କୋଦଣ୍ଡ, ତହିଁ ପାଇଁ ବାଧୁଅଛି ସିନା
ମୋହର ବଚନ ଶୃଙ୍ଗ ଭାଙ୍ଗିଗଲା ପରି ।
ବୁଝିଥିଲେ ମୋତେ "ରାମ" ବୋଇଲେ କେବଳ
ଜଗତରେ ନରନାରୀ ସକଳ କାଳରେ,
ମାତ୍ର ତୋର ଉଦ୍ଧତରେ ସେ ଆଖ୍ୟା ମୋହର
ହେବ ଏବେ ଅନ୍ୟଗାମୀ ନ୍ତ୍ରିଦଇ କି ତାହା
ମୋପରି ବୀରେନ୍ଦ୍ର ପକ୍ଷେ ଲଜ୍ଜାର ବିଷୟ !
କ୍ରୌଞ୍ଚଗିରିବିଦାରଣକ୍ଷମ ଏ କୁଠାରେ
ପାଇଥିଲା ପ୍ରତିଫଳ କାର୍ତ୍ତବୀର୍ଯ୍ୟ ନୃପ,
ହରି ମୋର ପିତାଙ୍କର ହୋମଧେନୁ ବତ୍ସ !
ଜାଣୁ ଜାଣୁ ସେ ବଚନ ନିର୍ଭୟ ହୃଦୟେ
ତୁହିରେ କ୍ଷତ୍ରିୟ-ଶିଶୁ ଉଦ୍ୟତ ହେଉଛୁ
ଲିଭାଇ ଦେବାକୁ ମୋର ସେ ଉଜ୍ଜ୍ୱଳ ଯଶ,

ଏଣୁ କ୍ଷତ୍ରି ଅନ୍ତକାରୀ ମୋ ବୀର୍ଯ୍ୟ ବିକ୍ରମ
ଯେ ଯାଏ କରିବୁ ନାହିଁ ତୋ ଶକ୍ତିକୁ ଲକ୍ଷ୍ୟ,
ସେ ଯାଏ ନାହିଁ ମୋ ତୃପ୍ତି ରେ କ୍ଷତ୍ରିୟ-ଶିଶୁ !
କାଠରେ ଜଳଇ ଅଗ୍ନି ଧକ୍ ଧକ୍ ହୋଇ
ତହିଁକି ପୌରୁଷ କାର ? ସାଗରେ ଯେବେଟି
ଜଳର ପ୍ରଖର ବେଗେ ସେହିପରି ତେଜେ
ପ୍ରକାଶ ହୋଇବ ସିନା ତେବେ ତା ମହିମା
ହରିଥିଲେ କଷ୍ଟ ପୁତ୍ରଙ୍କ ଏ ହର ଧନୁର
ସାରଗୁଣ, ବୋଲ୍ ସିନା ପଳାଇଲୁ ଭଙ୍ଗି
ଅଣ୍ଡପଣେ !, ନଦୀସ୍ରୋତେ ଯେ ବୃକ୍ଷ ମୂଳର
ଧୋଇହୋଇ ଯାଇଥାଏ ମୃତ୍ତିକାସକଳ
ମୃଦୁଳ ପବନ ତାକୁ କରେ ଭୂମିସାତ,
ନାହିଁ କାର୍ଯ୍ୟ ରଣେ କଛି ହେବ ବାଦାବାଦ
ତୋପରି ଡମ୍ଭର ସହ ଯୁଦ୍ଧେ ପ୍ରବର୍ତ୍ତିଲେ
ଶୁରେନ୍ଦ୍ର ସମାଜ ମଧ୍ୟେ, ଯେବେ ମୋ କାର୍ମୁକେ
ଗୁଣ ଅରୋପଣ କରି ପାରିବୁ ଆକର୍ଷି
ଶାୟକ, ତେବେ ତୋ ବଳ ମୋସମାନ ମାନି
ଅକାତରେ ପରାଜୟ କରିବି ସ୍ୱୀକାର ।
ଉଜ୍ଜ୍ୱଳ କୁଠାର ମୋର ନିରୀକ୍ଷଣ କରି
ଅବା ଯେବେ ହୋଇଥାଉ ଭୟରେ କାତର,
ତେବେ ଗୁଣ ଠାଣି ଠାଣି ଦୃଢ଼ ବେନି ପାଣି—
ଯୋଡ଼ି ଅବନତ ଶିରେ ପାଦ ଛୁଇଁ ମୋର
କରରେ କ୍ଷତ୍ରିୟଶିଶୁ ଅଭୟ ପ୍ରାର୍ଥନା,
ସଦୟେ ତୋହର ଦୋଷ କରିବି ମୁଁ କ୍ଷମା ।"
ଏରୂପ ବ୍ୟଙ୍ଗୋକ୍ତିପୂର୍ଣ୍ଣ ଆତ୍ମପ୍ରଶଂସାର
କଥା ଶୁଣି, ଭୃଗୁସୁତ ମୁଖୁଁ ରଘୁମଣି,
କୋଦଣ୍ଡ ଧରିବା କାର ପ୍ରକୃତ ଉତ୍ତର
ମନେ ଚିନ୍ତି, ମନ୍ଦହାସ୍ୟେ ନଜ୍ୱଳ ଦେଇଣ
ଅଧରେସ୍ତୁ ବାମକରେ ଅବଲୀଳାକ୍ରମେ
ଧରି ଭାର୍ଗବଙ୍କ ଧନୁ ଉଠାଇଲେ ହେଳେ,

କରେ ଧରି ନିଜ ପୂର୍ବଜନ୍ମ ଗୃହବର
ହେଲେ ରମଣୀୟତର ତପନବଂଶଜ,
ନବୀନ ଜଳଦକାନ୍ତି ସ୍ୱଭାବରେ ଆହା
ଦିଶେ କେଡ଼େ ମନୋହର, ତହିଁପରେ ଯେବେ
ଚପଳା ଶିଞ୍ଜିନୀଯୁକ୍ତ ବାସବର ଧନୁ
ଲମ୍ବିତ ହୁଅଇ ଆସି, ନ ନିଅଇ ହରି
ଅପରୂପ ରୂପ ଧରି କହ କାହାମନ ।
ଧନୁ ଏକ ପାଖ ତହିଁ ମହୀତଳେ ଥୋଇ
ମହାବଳେ ଦାଶରଥି ଚଢ଼ାଇଲେ ଗୁଣ
ଅନାୟାସେ, ତାହା ଦେଖି ହୋଇ ମ୍ଳାନପ୍ରଭ
ଲଜ୍ଜାରେ ମଳିନ ମୁଖେ ଦୁଃଖେ ଦ୍ୱିଜବର
ନିଭୁଥିବା ଅନଳର ଜ୍ୱଳିଲା ପରାୟେ
ହେବା ହୋଇ ଜଳଜଳ ରହିଲେ ଅନାଇ ।
ଦେଖିଲେ ଦର୍ଶକମାନେ ଧନୁର୍ଦ୍ଧାରୀ ରାମ
ଦିନଶେଷେ ପୂର୍ଣ୍ଣିମାର ଚନ୍ଦ୍ରମା ପରାୟେ
ହୋଇଛନ୍ତି ପ୍ରଫୁଲ୍ଲିତ, ଭୃଗୁମୁନିସୁତ
ସେ କାଳରେ ଡୁବୁଡୁବୁ ରବି ଛବି ବହି
ସ୍ୱକାନ୍ତିରୁ ଭ୍ରଷ୍ଟ ହୋଇ ଦିଶୁଛନ୍ତି ଫିକା ।
ହତବୀର୍ଯ୍ୟ ଦେଖି ଗର୍ବୀ ପରଶୁରାମଙ୍କୁ
କୁମାରପ୍ରଧାନ ରାମ ଦୟାର୍ଦ୍ର ଚିତ୍ତରେ
ନିଜେ ଯୋଖିଥିବା ଶରସନ୍ଧାନ ନିମନ୍ତେ
କହିଲେ ହେ ଦ୍ୱିଜବର ! ସ୍ୱପ୍ରକୃତି ଦୋଷେ
ଅକାରଣେ ତୁମ୍ଭେ ହୋଇଥିଲେହେଁ ଉଦ୍ୟତ
ମାରିବା ପାଇଁକି ମୋତେ, ନ କରେ ମୁଁ ଇଚ୍ଛା
ଦେବାକୁ ତୁମ୍ଭଙ୍କୁ ଠାଣେ ତାର ପ୍ରତିଫଳ ।
ମାତ୍ର ଏ ଯୋଜିତ ଶର ଅଟଇ ଅବ୍ୟର୍ଥ,
କହ ମୋତେ, ହେ ବ୍ରାହ୍ମଣ ! ଏ ଶାୟକ ଯୋଗେ
ରୋଧିବି କି ଗତି ତବ, ଅବା ସ୍ୱର୍ଗଦ୍ୱାର ?
ଉତ୍ତରିଲେ ଭୃଗୁସୁତ ଠାପୁଆ ପଣରେ,
"ଜାଣେ ମୁଁ ତୁମ୍ଭଙ୍କୁ ହରି ପରମ ପୁରୁଷ

ଯଦି ତୁମ୍ଭେ ପରାତ୍ପର, ତଥାପି ହେ ନାଥ !
ମର୍ତ୍ତ୍ୟତଳଗତ ତବ ବୈଷ୍ଣବୀୟ ତେଜ
ଦେଖିବାକୁ କରିଥିଲି ଏରୂପ ବିରକ୍ତ ।
ନାଶି ମୋର ପିତୃ-ବୈରୀ କ୍ଷତ୍ରିୟମାନଙ୍କୁ
ହେ ପ୍ରଭୁ ! ସତ୍ପାତ୍ରେ ମହୀ କରିଛି ଅର୍ପଣ,
ନିଜେ ଭୋଗ କରିବାକୁ ନବଳାଇ ମତି ।
ପରମେଷ୍ଠୀ ତୁମ୍ଭେ ନାଥ, ତୁମ୍ଭଠି ହାରିଲେ
ଜିଣିବା ଅପେକ୍ଷା ମୋର ପ୍ରଶଂସାର କଥା,
ଏଣୁ ହେ ଧୀମାନବର ଅଟେର ଦୟାବନ୍ତ
ନ ରୋଧ ମୋ ଗତିପଥ, କରୁଛି ଜଣାଣ,
ଯଥ ଇଚ୍ଛା ଭ୍ରମିବାକୁ ପବିତ୍ର ତୀର୍ଥରେ ।
ନୁହେ ଭୋଗ ସୁଖେରତ ଏ ହୀନ ମାନସ,
ସ୍ୱର୍ଗଦ୍ୱାର ରୁଦ୍ଧ ହେଲେ ନ କରେ ଶୋଚନା
'ତଥାସ୍ତୁ' ଉଚ୍ଚାରି ଦେବ ତାତ୍କାଳ ରାମ
ନିକ୍ଷେପ କରିଲେ ଶର ପୂର୍ବଅଭିମୁଖେ,
ସେ ଶର ଭାର୍ଗବଙ୍କର ସ୍ୱର୍ଗଦ୍ୱାର ରୋଧି
ରହିଲା ଅର୍ଗଳରୂପେ ଚିରଦିନ ପାଇଁ ।
ଉଦାରହୃଦୟ ରାମ ଭାର୍ଗବଙ୍କ ପଦେ
ପ୍ରଣମିଲେ 'କ୍ଷମାକର' ବୋଲି ଭକ୍ତିଭରେ,
ପରାଭୂତ ଶତ୍ରୁପଦେ ପ୍ରଣାମ କେବଳ
ମହାତ୍ମାମାନଙ୍କ କୀର୍ତ୍ତି କରଇ ପ୍ରକାଶ ।
ଉଚ୍ଚରିଲେ ପର୍ଶୁରାମ, ହେ ଜ୍ଞାନସୁପଣ୍ଡ !
ଦୂରକର ମୋର ସେହି ଉଦ୍ଧତ ସ୍ୱଭାବ
ସୁପବିତ୍ର ଶାନ୍ତଭାବ ଦେଲ କୃପାବଶେ,
ତେଣୁ ଏ ନିଗ୍ରହ ତବ ଅନୁଗ୍ରହ ରୂପେ
ବଡ଼ ଉପକାର ପ୍ରଭୁ, କରିବ ମୋହର ।
ମାଗୁଛି ମେଲାଣି ଏବେ, ସାଧିବା ପାଇଁକ
ଦେବକାର୍ଯ୍ୟ ଜନ୍ମିଅଛ ତୁମ୍ଭେ ବୀରମଣି ;
ଆଶୀର୍ବାଦ କରେଁ ହେଉ ସର୍ବ ଶୁଭମୟ ।
ଗମନ୍ତେ ପରଶୁରାମ ରାଜା ଦଶରଥ

ରାମକୁ କୋଳରେ ଘେନ ସ୍ନେହ ସହକାରେ
ଆଲିଙ୍ଗିଲେ ବାରବାର, ଭାବିଲେ ମାନସେ
ପୁନର୍ଜନ୍ମ ହେଲା ବୋଲି ଶୋକାକୁଳ ଚିତ୍ତେ
ମାନସରେ ହେଲା ମହା ଆନନ୍ଦ ଉଦୟ
ଦାବାଗ୍ନି ଦଗଧବନେ ବୃଷ୍ଟିପାତ ପରି ।
ଶିବଭକ୍ତି ସାର୍ବଭୌମ ଦଶରଥ ନୃପ
ବଜାଇ ବିବିଧ ବାଦ୍ୟ ମହାସମାରୋହେ
ସୁସଜ୍ଜିତ ରମଣୀୟ ପଟ୍ଟମଣ୍ଡପରେ
ଶର୍ବରୀ ଯାପନ କରି, ପତାକା ମାଳିନୀ
ସଜ୍ଜନୀ ଅଯୋଧ୍ୟାରେ ପ୍ରବେଶିଲେ ଆସି ।
ସୀତାଙ୍କୁ ଦେଖିବା ପାଇଁ ପ୍ରାସାଦ ଉପରେ
ଅଯୋଧ୍ୟା ରମଣୀ କୁଳ ବିଦ୍ୟୁତବରଣା
ବାତାୟନେ ଥୋଇ ଫୁଲ୍ଲ ବିମଳ ଆନନ
ସତେକି ତା ମଣ୍ଡିଦେଲେ କୁବଳୟ ଦଳେ ।

---

# ଦ୍ୱାଦଶ ସର୍ଗ

ଏହିରୂପେ ଦଶରଥ ଇନ୍ଦ୍ରିୟ ସୁଖଦ—
ବିଷୟ ସକଳ ସୁଖେ ଉପଭୋଗ କରି
ପ୍ରବେଶନ୍ତେ ଜୀବନର ଅନ୍ତିମ ଦଶାରେ
ଆସିଲା ନିର୍ବାଣ କାଳ କ୍ରମେ କ୍ରମେ ମାଡ଼ି
ହୁଅଇ ଲିଭିଲପର ଉଷାକାଳେ ଯଥା
ଦୀପଶିଖା, ପ୍ରଦୀପର ସକଳ ତଇଲ
ନିଃଶେଷେ ଶୋଷଣ କରି ସୁଦୀର୍ଘ ରାତ୍ରରେ
ତୈଳଶୂନ୍ୟ ବଳତାର ଶେଷରେ ପ୍ରବେଶି
ଏହି ଅବସରେ ଜରା ଅନ୍ତ ଧୀରେ ଧୀରେ
(କୈକେୟୀ ହୃଦୟରେ କବା ଗୋଟେ ଗୋଟେପାତ)
କର୍ଣ୍ଣମୂଳେ ନୃପଙ୍କର ଗୋପନେ କହିଲା
ଶ୍ରୀରାମଙ୍କୁ ରାଜ୍ୟଲକ୍ଷ୍ମୀ ଦାନକର ବୋଲି ।
ତେଣୁ ବୃଦ୍ଧ ନରବର ସ୍ୱ ଅବସ୍ଥା ଚିନ୍ତି
ରାମ ଅଭିଷେକ ବିଧି କଲେ ଆୟୋଜନ ।
ଉଦ୍ୟାନସ୍ଥ ତରୁଲତା ହୁଅନ୍ତି ଯେସନ
ବିକସିତ କେନାଲର ଶୀତଳ ଜଳରେ,
ତେସନ ସାକେତପୁର ନରନାରୀଗଣ
ଶୁଣି ରାମଚନ୍ଦ୍ରଙ୍କର ଅଭିଷେକବାର୍ତ୍ତା
ଆନନ୍ଦସାଗରେ ସୁଖେ ହେଲେ ନିମଗନ ।
ଏହି ଅଭିଷେକ ଶୁଭସମାଚାର ଶୁଣି
ଅବିଲମ୍ବେ ଦୁଷ୍ଟମନ୍ତ କୈକେୟୀ ମହିଷୀ
କୌଶଳ ଭିଅଇ ତାହା କଲା କଳୁଷିତ
ନୃପଙ୍କର ଶୋକତପ୍ତ ନୟନଜଳରେ ।
ବର୍ଷାକାଳେ ସିକ୍ତ ଭୂମି ମେଘର ଯେସନ
ଉବର ବଦନ ତାର, ଉକାଳଇ ସଦା
ହିଂସ୍ରପଦ ଭୁଜଙ୍ଗମ, କୈକେୟୀ ତେସନ
ସ୍ୱାମୀଙ୍କୁ କରାଇ ସତ୍ୟ; ଭୁଲାଇ କୌଶଳେ;
ତାଙ୍କ ପୂର୍ବ ପ୍ରତିଶ୍ରୁତ ବର ନେଲା ମାଗି—

ଏକ ବରେ ଶ୍ରୀରାମଙ୍କୁ ବନକୁ ପଠାଇ
ଚତୁର୍ଦ୍ଦଶ ବର୍ଷ ପାଇଁ, ଅପର ବରରେ
ଭରତଙ୍କୁ ଅଯୋଧ୍ୟାର ସିଂହାସନ ଦେଇ
ନିଜର ବୈଧବ୍ୟ ଦଶା ଅଣିଲ ହକାର ।
"ଛାଡ଼ି ନିଜ ସ୍ୱତ୍ୱ ଏବେ ଦେଉଛନ୍ତି ମୋତେ
ରାଜ୍ୟଶ୍ୱର ପିତା" ବୋଲି କମଳବିଲୋଚନ
ଅଙ୍ଗୀକାର କରିଥିଲେ ଅଶ୍ରୁପୂର୍ଣ୍ଣ ମୁଖେ,
ଏବେ ପୁଣି ରାଜ୍ୟ ଛାଡ଼ି ବନେ ଯିବା ପାଇଁ
କହିବାରୁ ପିତୃଦେବ, ପାଳିଲେ ଆନନ୍ଦେ ।
ଅଭିଷେକ ସମାରୋହେ ଜରିଦାର ପାଟ
ପିନ୍ଧି ରାଜୁଥିଲେ ଯଥା ପ୍ରଫୁଲ୍ଲଆନନେ
କୌଶଲ୍ୟା ହୃଦୟାନନ୍ଦ ରଘୁକୁଳମଣି,
ଏବେ ସେହିପରି ପିନ୍ଧି ବଲ୍କଳବସନ
ପ୍ରସନ୍ନବଦନେ ବନେ ହୁଅନ୍ତେ ବାହାର
ବିଷାଦେ ଚିନ୍ତିତମନେ କଲେ ବିଲୋକନ
ସାକେତନଗରବାସୀ ଅଶ୍ରୁପୂର୍ଣ୍ଣ ମୁଖେ ।
ଲକ୍ଷ୍ମଣ ଜାନକୀ ସହ ସନ୍ଧବେଶ ଧରି
କନ୍ଦାଇ ଆତ୍ମୀୟଜନେ, କନ୍ଦାଇ ପ୍ରଜାଙ୍କୁ
ଏହିରୂପେ ଅଯୋଧ୍ୟାର ଆନନ୍ଦପ୍ରତିମା
ପ୍ରବେଶିଲେ ମହାଘୋର ଦଣ୍ଡକାରଣ୍ୟରେ
ପାଳିବାକୁ ପିତୃସତ୍ୟ, ଦେଖି ଅଲୌକିକ
ପିତୃଭକ୍ତି ଗୁଣିଗଣେ ମହାପ୍ରୀତ ହୋଇ
ଧନ୍ୟ ଧନ୍ୟ କଲେ ତାଙ୍କ ସାଧୁ ଉଦ୍ୟମକୁ ।
ନିତାନ୍ତ ଅସ୍ଥିର ହୋଇ ତନୟ ବିରହେ
ଏଣେ ବୃଦ୍ଧ ଦଶରଥ ପୂର୍ବ ଅଭିଶାପ
(ମୃତ ତନୟକୁ ମାରି ଲଭିଥିଲେ ଯାହା)
ଚିରମୁକ୍ତ ହେବା ପାଇଁ ମାନବରେ ପାଞ୍ଚ
ଅଚିରେ ଏ ମରତନୁ କଲେ ବିସର୍ଜ୍ଜନ ।
ଗମିଲେ ବନକୁ ଏବେ ଶ୍ରୀରାମ ଲକ୍ଷ୍ମଣ,
ତ୍ୟଜି ବୃଦ୍ଧ ମହାରାଜା ତେଜିଲେ ସ୍ୱଦେହ,

ସତ୍ୱେ ଅଗ୍ରଜକତା ଏଣୁ ସେ ରାଜ୍ୟରେ
ଆସି ଉପସ୍ଥିତ ହେଲ; ରହିଲେ ଅନାଇ
ଛିଦ୍ରାନ୍ୱେଷୀ ଶତ୍ରୁମାନେ ଆମିଷ ରଥର ।
ନ ଦେଖି ଅପର ବାଟ ତହୁଁ ମନ୍ତ୍ରୀମାନେ
ପଠାଇଲେ ସଚିବଙ୍କୁ ଅତି ଗୋପନରେ
ମାମୁଁ ଘରୁ ଭରତଙ୍କୁ ଡାକି ଆଣିବାକୁ ।
ମୃତ ପିତାଙ୍କର ମୃତ୍ୟୁ ଘୋଡ଼ାଇ ସେମାନେ
ଭରତ ଶତ୍ରୁଘ୍ନ ପାଶେ, ତରତର ହୋଇ
ଜଣାପଡ଼ିବାର ଭୟେ ନେଇବାର ରୋଧି
ବେନି ସ୍ୱଭଙ୍କର ସଙ୍ଗ ଫେରିଲେ ପୁରକୁ ।
ସଦନେ ପ୍ରବେଶି ବୀର କୈକେୟୀ ନନ୍ଦନ
ଶୁଣିଲେ ସ୍ୱମାତା ଦୋଷୁଁ ପିତାଙ୍କ ବିୟୋଗ,
ଭୀଷମ ବିରକ୍ତ ହୋଇ ଜନନୀ ଉପରେ
ଅଙ୍କାଗତ ସିଂହାସନ ରାଜଶ୍ରୀ ନ ଲୋଡ଼ି
ବାହୁଡ଼ାଇ ଆଣିବାକୁ ସୀତା ସୀତାନାଥେ
ବାହାରିଲେ ସସୈନ୍ୟରେ ବନ ଅଭିମୁଖେ ।
ପିବାବେଳେ ସ୍ଥାନେ ସ୍ଥାନେ ବିକଳହୃଦରେ
ବନବାସୀ ପ୍ରଦର୍ଶିତ ଜ୍ୟେଷ୍ଠଙ୍କ କୁଟୀର
ତରୁତଳେ ଦେଖି ବୀର କାନ୍ଦିଲେ ଦୁଃଖରେ,
ଚିତ୍ରକୂଟ ଅଟବୀରେ ପ୍ରବେଶି ଭରତ
ଅଗ୍ରଜ ଅଗ୍ରଜଜାୟା ପଦ୍ମରେ ପ୍ରଣମି
ଭକ୍ତିଭରେ, ସ୍ନେହାଦରେ ସଙ୍ଗୁଳି ସାଦରେ
ଲକ୍ଷ୍ମଣଙ୍କୁ, ନିବେଦିଲେ ବାଷ୍ପରୁଦ୍ଧ କଣ୍ଠେ
ପୂଜ୍ୟପାଦ ଜନକର ମହାପ୍ରୟାଣ ବାର୍ତ୍ତା ।
ତହୁଁ କରଯୋଡ଼ି ବୀର କହିଲେ ବିନୟେ
ଶ୍ରୀରାମଙ୍କ ଶ୍ରୀଚରଣରେ, ହେ ଆର୍ଯ୍ୟ ! ସଦୟେ
ନିଅ ନିଜ ରାଜଶ୍ରୀକୁ ନଗରେ ବାହୁଡ଼ି,
ମୋହ ପକ୍ଷେ ଅଟେ ତାହା ମହାବିଡ଼ମ୍ବନା ।
ମୁଁ ଅଟେ ତୁମ୍ଭର ଦାସ ସବୁ ସମୟରେ ।
ତୁମ୍ଭ ଆଜ୍ଞାବହ ମୁହିଁ ବାଟିବ ସମୟ,

ଏହିରୂପେ କେତେମତେ ଧାର୍ମିକ ଭରତ
କାତରେ ବିନତି କଲେ ଅଗ୍ରଜ ଛାମୁରେ
ଆସିବାକୁ ସ୍ୱନଗରେ ବନବାସ ଛାଡ଼ି ।
ମାତ୍ର ସତ୍ୟପ୍ରିୟ ରାମ ନୋହିରେ ସମ୍ମତ
ଫେରିବାକୁ ରାଜପୁରେ ପିତୃସତ୍ୟ ଏଡ଼ି ।
ଲୋକାନ୍ତରଗତ ପିତୃ ଆଦେଶ ପାଳନେ
ନ ପାରି ବିରତ କରି ରାମଙ୍କୁ ଭରତ,
ମାଗିଲେ ଭକ୍ତିରେ ତାଙ୍କ ପାଦୁକାଯୁଗଳ ।
ଅଗ୍ରଜ ପାଦୁକାସଙ୍ଗେ କୈକେୟୀନନ୍ଦନ
ସଶୋକେ ମେଲାଣି ଘେନି ତାହାଙ୍କ ଛାମୁରୁ
ନବାହୁଡ଼ି ଅଯୋଧ୍ୟାକୁ ନନ୍ଦଗ୍ରାମେ ରହି
ପୋତିଲା ଧନକୁ ଏକା ଜଗିଥିଲାପରି
ପାଳନ କରିଲେ ଯେହ୍ନେ ଅଯୋଧ୍ୟାରାଜ୍ୟକୁ
ଏହିରୂପେ ଭ୍ରାତୃଭକ୍ତ ଭରତ ସୁମତି
ରାଜ୍ୟଲୋଭ ଛାଡ଼ିଦେଇ, ଅନାସ୍ଥରେ ଘେନି
ଅଗ୍ରଜଙ୍କ ରାଜଶ୍ରୀକୁ ପ୍ରତିନିଧିରୂପେ
ମଣିଲେ ନିଜକୁ ସଦା (୧) ପରିବେତ୍ତା ବୋଲି
ମନ୍ଥରା ମନ୍ତ୍ରରେ ମୁଗ୍ଧା ଅଦୂରଦର୍ଶିନୀ—
ଜନନୀ ପାଶରୁ ଯାଇ ନନ୍ଦଗ୍ରାମେ ରହି
ମାତାଙ୍କ ପାପର କିବା କଲେ ପ୍ରାୟଶ୍ଚିତ୍ତ ।
ଏଣେ ପ୍ରଶାନ୍ତମତି ବୀରରାମଚନ୍ଦ୍ର
ଲକ୍ଷ୍ମଣ ଜାନକୀସଙ୍ଗେ ଭ୍ରମି ବନେ ବନେ,
ବନ୍ୟ ଫଳମୂଳ ଖାଇ ରହିଲେ ଆନନ୍ଦେ
ତୁଷି ରଘୁବଂଶୀୟଙ୍କ ବନବାସ ବ୍ରତ ।
ଏକଦା ଶ୍ରୀରାମଚନ୍ଦ୍ର ପରିଶ୍ରାନ୍ତ ହୋଇ
ଶୋଇଥିଲେ ତରୁତଳେ ସୀତାଙ୍କ ଅଙ୍କରେ,
ଏହି ଅବସରେ କାହୁଁ ଏକ କାକ ଆସି
ନଖରେ ମୈଥିଳୀସ୍ତନ କଲା ବିଦାରଣ

(୧) ପରିବେତ୍ତା—ଅବିବାହିତ ଜ୍ୟେଷ୍ଠଭ୍ରାତା ବିଦ୍ୟମାନେ ବିବାହିତ କନିଷ୍ଠ ।

ଦୋଷ ଦେଲେପରେ ତାଙ୍କ କରଜ ଚଞ୍ଚୁକୁ ।
ଜାନକୀଙ୍କ ଯତ୍ନେ ରାମ ଜାଗରତ ହୋଇ
ମାରିଲେ ଐଷୀକଅସ୍ତ୍ର ବାୟସର ପ୍ରତି,
ଏକ ଆଖି ନାଶି ତାର ବାହୁଡ଼ିଲା ଅସ୍ତ୍ର ।
କିଛିଦିନ ରହି ତହିଁ ଭାବିଲେ ଶ୍ରୀରାମ
ନିକଟେ ଅଯୋଧ୍ୟାପୁରୀ, ନ ପୁଣି ଭରତ
ବାହୁଡନ୍ତି ଆଉଥରେ, ଏହି ଆଶଙ୍କାରେ
ଧୀରେନ୍ଦ୍ର, ସତ୍ୱର ଛାଡ଼ି ଚିତ୍ରକୂଟଗିରି
ବିରହେ ବଧିର କରି କୃଷ୍ଣସାର ଯୂଥେ
କ୍ରମେ ପଞ୍ଚବଟୀମୁଖେ ହେଲେ ଅଗ୍ରସର ।
ବର୍ଷାକାଳ ନକ୍ଷତ୍ରରେ ସଞ୍ଚରି ସଞ୍ଚରି
ସୂର୍ଯ୍ୟ ଯଥା ଦକ୍ଷିଣକୁ କରନ୍ତି ଗମନ,
ଅତିଥିସତ୍କାରେ ଦକ୍ଷ ଋଷିମାନଙ୍କର
ଆଶ୍ରମେ ସେ ରହି ରହି ହେଲେ ଅଗ୍ରସର ।
ସଙ୍ଗେ ସଙ୍ଗେ ସେ କାଳରେ ଚାଲୁଥିଲେ ଧୀରେ
ଚନ୍ଦ୍ରମାବଦନୀ ସୀତା, ଦେଖି ମନେହେଲା
ଅଯୋଧ୍ୟାର ରାଜଲକ୍ଷ୍ମୀ ଆସୁଥିଲେ କିବା
ରାଘବଙ୍କ ଗୁଣାବଳୀ ନପାରି ପାଶୋରି ?
ହୋଇଲେହେଁ ନିବାରିତା କୈକେୟୀଙ୍କ ଯୋଗେ ।
ଅତ୍ରି ପତ୍ନୀ ଅନସୂୟା ଜାନକୀଙ୍କୁ ଦେଖି
ଆଦରେ ଶଙ୍ଖୋଳି ନେଇ, ତାହାଙ୍କ ଅଙ୍ଗରେ
ବୋଳି ଦେଲେ ଅଙ୍ଗରାଗ, ଯାହାର ସୁବାସେ
ବନଫୁଲ ଛାଡ଼ି ବେଗେ ଧାଇଁଲେ ଅଳିଏ ।
ଜାନକୀ ଲକ୍ଷ୍ମଣ ସହ ତହୁଁ ଦାଶରଥି
ପଶି ମହା ଘୋରବନେ ଦେଖିଲେ ସହସା
ସନ୍ଧ୍ୟା ମେଘସମ କାନ୍ତି ବିରାଧ ରକ୍ଷକୁ,
ଚନ୍ଦ୍ରମାର୍ଗ ରୋଧି ଯଥା ରହିଥାଏ ରାହୁ
ରହିଛି ଆବୋରି ତାଙ୍କ ଯିବା ସରଣୀକୁ ।
ମାନବ ଶୋଣିତଲିପ୍ସୁ ସେ ଦୁଷ୍ଟ ରାକ୍ଷସ
ସନ୍ଧୁ ସନ୍ଧୁଁ ହରି ନେଲା ଖର ବେଗେ ଆସି

ଦୁଇ ସ୍ତୁଭ ମଧ୍ୟଗତା ଜନକ ଜେମାକୁ,
ଶ୍ରାବଣ ଭାଦ୍ରବ ମଧ୍ୟେ ଉଇଁ ଅବହେଳେ
ବୃଷ୍ଟିକୁ ବଳାକେ ଯଥା ଦୂର ଅବସ୍ଥାହ (୧)
ଶ୍ରୀରାମ ଲକ୍ଷ୍ମଣ ବେନ ଦେଖି ରୋଷଭରେ
ବିନାଶେ ବିରାଧ ରକ୍ଷେ, ଶବ ପୂତିଗନ୍ଧେ
ଦୂଷିତ ହୋଇବ ବୋଲି ପବନ ଆଶ୍ରମ
ପୋତିଦେଲେ ଭୂଗର୍ଭରେ ତାହାର ପିଣ୍ଡକୁ ।
ଋଷିଙ୍କର ଆଦେଶକୁ ଶିରୋଧାର୍ଯ୍ୟ କରି
ଜାନକୀ ଲକ୍ଷ୍ମଣ ସହ ତହୁଁ ରଘୁମଣି,
ନ ଘଢ଼ ସେ ମନୋହର ପଞ୍ଚବଟୀ ସୀମା
କୁଟୀର କରଚ ତହିଁ ରହିଲେ ସୁଖରେ
ଅଗସ୍ତ୍ୟ ଆଦେଶେ ପୂର୍ବେ ବିନ୍ଧ୍ୟଗିରି ଯଥା ।
କାମରେ କାତର ହୋଇ ଦିନେ ସେ ବନରେ
ରାବଣର ସହୋଦରା ସୂର୍ପଣଖା ଆସି
ଉଭାହେଲା ରାମ ଆଗେ, ଗ୍ରୀଷ୍ମେ ତାପିତା
ଶ୍ୟାମ କାଳଭୁଜଙ୍ଗିନୀ ରମଇ ଯେସନ
ଚନ୍ଦନ ସୁଗନ୍ଧମୟ ପାଦପ ତଳକୁ ।
ରାଘବ ଆଗରେ ଆତ୍ମ ପରିଚୟ ଦେଇ
ମାୟାବିନୀ ନିଶାଚରୀ, ସୀତାଙ୍କ ସମକ୍ଷେ,
ନିଜ କାମଅଭିଳାଷ ପରିପୂର୍ଣ୍ଣ ପାଇଁ
ପତିତ୍ୱେ ବରିବା ଲାଗି ମନାସିଲା ତାଙ୍କୁ,
ଲୋକରେ ପ୍ରସିଦ୍ଧ ସଦା ଅଛଇ ଏ କଥା,
ଜନ୍ମିଲେ ପ୍ରବଳ କାମ କାମନା ମନରେ,
କାମିନୀଏ ସେ କାମନା ପୂରଣ ପାଇଁକି
କାଳାକାଳ ସ୍ଥାନାସ୍ଥାନ ନ ଭବନ୍ତି କିଛି ।
ମଦନ ବାଣରେ ମୁଗ୍ଧା ଦାନବୀକୁ ଚାହିଁ
ଉଚ୍ଚରିଲେ ସୀତା କି, ହେ ସୁନ୍ଦର ! ଦେଖ
ସସ୍ମିତ ଅଛଇ ମୁହିଁ ଏଣୁ ସୁବଦନା

(୧) ବହିଲୁପ୍ତବାସ୍ଥାହ ।

ବରଣ କରଗୋ ଯାଇ ମୋର କନିଷ୍ଠକୁ ।
ଏବାକ୍ୟେ ଅଶ୍ୱାସ ଲଭି ପ୍ରବେଶି ଅଧୀରେ
ଲକ୍ଷ୍ମଣ ପାଖରେ ଯୋଷା, ଦେଖାଇ ତାହାଙ୍କୁ
ନାନାରୂପ ଅଙ୍ଗଭଙ୍ଗୀ, କହିଲା ଉଲ୍ଲାସେ
ନିଜର ହୃଦୟବାଞ୍ଛା ଚରିତାର୍ଥ ପାଇଁ ।
କଉତୁକେ ସଉମିତ୍ରି ଭାଷିଲେ ବାଳାକୁ
ମୃଦୁହାସ୍ୟେ, ବରିଲଣି ଆଗେ ଅଗ୍ରଜଙ୍କୁ
ମାନନୀୟା ତୁମ୍ଭେ ମୋର, ଯାଅ ଏଥୁଁ ଫେରି
ପ୍ରଭୁ ଥାଉଁ ଥାଉଁ କିପାଁ ତାଙ୍କୁ ଛାଡ଼ି ଦେଇ
ଦାସଜନେ ବଳାଉଛ ମାନସ ସୁକେଶୀ ?
ଗମିଲା ରାକ୍ଷସୀ ପୁଣି ଶ୍ରୀରାମ ନିକଟେ ,
ଏହିରୂପେ ଯାଇ ଆସି ଦୁଇ ଭାଇ ପାଖେ,
କାମବଶେ ଅନାୟତ୍ତେ ହେଲା ନିଶାଚରୀ
ଉଭୟକୂଳଗାମିନୀ ନଦୀସ୍ରୋତ ପରି ।
କାମାତୁରା ଦାନବୀର ଏ ଅବସ୍ଥା ଦେଖି
ହସିଲେ ଜାନକୀ ମନେ ସମ୍ଭାଳି ନ ପାରି ।
ଏଣୁ କ୍ଷଣେ ସେ ରାକ୍ଷସୀ ଶାନ୍ତଭାବ ଛାଡ଼ି
ଅପମାନେ ମହାକୋପେ ହେଲା ଉତ୍ତେଜିତ
ପ୍ରଶାନ୍ତ ସଲିଳରାଶି ଜଳଧିର ଯଥା
ଅତର୍କିତେ ଚନ୍ଦ୍ରୋଦୟେ ହୁଏ ଉଦ୍‌ବେଳିତ ।
କହିଲା ସକୋପେ ଦୃପ୍ତା ସୀତାଙ୍କୁ ଅନାଇ
ଅରେ କ୍ଷୀଣଜୀବୀ ତୁହି ! ଉପହାସ କରୁ
ମୃଗୀ ହୋଇ ଶାର୍ଦ୍ଦୂଳୀକୁ, ଲଭିବୁ ଅଚିରେ
ଯୋଗ୍ୟଫଳ ତାର ଏବେ ଦେଖ ମୋ ପ୍ରଭାବ ।
ନିଜ ନାମ ଅନୁସାରେ ଭୟଙ୍କର ମୂର୍ତ୍ତି
ଏହା ଭାଷି ଦେଖୁଁ ଦେଖୁଁ ଧରିଲା ଦାନବୀ
ଅନ୍ତବେଗେ, ଶଙ୍କାବଶେ ଆତଙ୍କିତା ହୋଇ
ତା ଦେଖି ଲୁଚିଲେ ସ୍ୱାମୀ ଅଙ୍କେ ପଙ୍କଜାକ୍ଷୀ ।
କୋକିଳର କଣ୍ଠଧ୍ୱନି ସମ ସୁଲଳିତ
ଶୁଭୁଥିଲା ସୂର୍ପଣଖା କଥା ଲକ୍ଷ୍ମଣଙ୍କୁ,

ଏବେ ଶୃଗାଳୀର କଣ୍ଠୁ କଣ୍ଠଧ୍ୱନି ପରି
ଭୟଙ୍କର ଧା କର୍କଶ ଶବଦକୁ ଶୁଣି
ମାୟାବିନୀ ବୋଲି ଜାଣି, କରବାଳ ଧରି
ଅଗ୍ରଜ କୁଟୀରେ ପଶି, ସତ୍ୱରେ ସକ୍ରୋଧେ
ନାକ କାନ କାଟି, ସେହି ସ୍ୱଭାବ ବିକୃତା
ରାକ୍ଷସୀକୁ କରିଦେଲେ ଅତ୍ୟନ୍ତ ବିକୃତା ।
ଏହିରୂପେ ଗୁରୁତର ପରାଭବ ପାଇ
ଆକାଶ ମାର୍ଗରେ ଉଠି ପାପିଷ୍ଠା ଦାନବୀ
ବାଉଁଶ ଗଣ୍ଡିର ସମ ବଡ ନଖଯୁକ୍ତ—
ଅଙ୍ଗୁଳି ଦେଖାଇ ତାଙ୍କୁ ତର୍ଜି ବାରବାର,
ଅବିଳମ୍ବେ ଉପସ୍ଥିତ ହୋଇ ଜନସ୍ଥାନେ
ନିବେଦିଲା ସବିସ୍ତାରେ ଖର ଦୂଷଣଙ୍କୁ
ରାକ୍ଷସଙ୍କ ଏ ନୂତନ ପରାଜୟବାର୍ତ୍ତା ।
ଶୁଣି ଏହି ମହାଘୋର ଅପମାନ କଥା
ସଜ ହୋଇ ଯୁଝିବାକୁ ଧାଇଁଲେ ରାକ୍ଷସେ
ନାକ କାନ କଟା ଦୁଷ୍ଟା ସୂର୍ପଣଖା ଯାହା
ସଦ୍ୟ ମହା ଅମଙ୍ଗଳ ପରି ଆଗେ ଆଗେ
ଚାଲିଲା ତାହାଙ୍କ ମାର୍ଗ ଦେଖାଇ ଦେଖାଇ
ହେଲା ସିନା ତାହା ସର୍ବଅନିଷ୍ଟର ହେତୁ ।
ଉଗ୍ରାୟୁଧ ଗର୍ବୋଦ୍ଧତ ରକ୍ଷଃଗଣଙ୍କୁ
ଯୁଦ୍ଧେ ଆସିବାର ଦେଖି ଜାନକୀବଲ୍ଲଭ,
ସୀତାଙ୍କର ରକ୍ଷାଭାର ଲକ୍ଷ୍ମଣଙ୍କୁ ଦେଇ
ଧନୁରେ ବିଜୟୀ ଶର କରିଲେ ସ୍ଥାପନ ।
ସହସ୍ର ସହସ୍ର ରକ୍ଷ, ଏକାକୀ ଶ୍ରୀରାମ
ହେଲେ କି ହୋଇବ, ଯୁଦ୍ଧେ ଯେତେକ ସଂଖ୍ୟାରେ
ରାକ୍ଷସେ ବାହାର ହେଲେ, ତେତେକ ସଂଖ୍ୟାରେ
ଦେଖିଲେ ରାମଙ୍କୁ ଉଭା ଆଗରେ ତାଙ୍କର ।
ମୁକୁରରେ ଦୋଷ ଦେଖି ଦୁର୍ଜନ ଯଥା
ନ ପାରନ୍ତି ତାକୁ ସହି, ତେସନ ଶ୍ରୀରାମ
ଦୂଷଣ ରକ୍ଷକୁ ଚାହିଁ ବିଷମ କ୍ରୋଧରେ

ତାହାର ନିପାତ ପାଇଁ ହେଲେ ଅଗ୍ରସର।
ସହସା ନିଶିର ଖର ଖରବେଗେ ଅସି
ଆକ୍ରମିଲେ ମହା ଦମ୍ଭେ, ବୃଷ୍ଟି କରି କରି
ନାରାଚ, ଶକ୍ତି, ଶୂଳ ରାଘବ ଉପରେ ।
ଆକର୍ଷି ପ୍ରଚଣ୍ଡ ଧନୁ ମାନ ରଘୁବୀର
ଲକ୍ଷ୍ୟକଲେ ସେମାନଙ୍କୁ, ବୃଷ୍ଟିଧାରା ପର
ଅବିଚ୍ଛିନ୍ନ ଭାବେ ସଦା ରାକ୍ଷସଙ୍କ ପରେ
ପଡ଼ିଲା ଶାୟକଜାଲ ସନ ସନ ଶବ୍ଦେ,
ଦ୍ରୁତଗାମୀ ବାଣରାଜି ଦେଖି ମନେହେଲା
ଶରଯନ୍ତ୍ର ଅଦ୍ଭୁତରେ ବାହାରୁ ଥିଲା କି ?
ଏକାବେଳେ ତୀକ୍ଷ୍ଣତର ଶର ରାଶି ରାଶି ।
ଶ୍ରୀରାମଙ୍କ ଶରଜାଲ ଅସୁରମାନଙ୍କ
ଅଙ୍ଗେ ଗାତ୍ର ଭେଦ କରି, ପ୍ରବଳ ବେଗରେ
ପଡ଼ିଲେ ଧରାରେ ଯାଇ, ସତେକି ସେମାନେ
ସୁଖେପାନ କରି ଆଗେ ତାଙ୍କ ପରମାୟୁ
ପରେ ଶକୁନାଙ୍କୁ ଦେଲେ ରୁଧିର ପାରଣା ।
ରଘୁମଣିଙ୍କର ଶରେ ଅସ୍ତବ୍ୟସ୍ତ ହୋଇ
ମରିଲେ ବଳସ୍ୱୀମାନେ, ରକ୍ଷସୈନ୍ୟ ମଧ୍ୟେ
ଠିଆ ହେବାପାଇଁ ଆଉ ଗୋଟିଏ ପରାଣୀ
ଦେଖା ଗଲେ ନାହିଁ ଯେଉଁ ସମର ପ୍ରାଙ୍ଗଣେ ।
ଶତ୍ରୁ ମିତ୍ର ଭେଦାଭେଦ ପାଶୋରି ସକଳେ
ଅନନ୍ତ ନିଦ୍ରାରେ ସୁଖେ କଲେ ଶୟନ ।
କେବଳ ସେ ଅଲକ୍ଷଣୀ ଦୁଷ୍ଟ ସୂର୍ପଣଖା
ବିଜୟୀ ଶ୍ରୀରାମଙ୍କର ଏ ବିଜୟ ବାର୍ତ୍ତା
ସହ, ଦୈତ୍ୟମାନଙ୍କର ନିଧନ ସନ୍ଦେଶ
ଘେନିଗଲା ଲଙ୍କପତି ରାବଣ ନିକଟେ ।
ଅନୁଜା ଆଗରୁ ଶୁଣି ସବୁ ସମାଚାର,
ଗୁଣବତୀ ଭଗିନୀର ଅପମାନ ଦେଖି,
ସ୍ୱଜନ ବିନାଶେ ବୁଝି ରାକ୍ଷସ ଈଶ୍ୱର,
ମଣିଲା ମନରେ, ଯେବେ ଦଶରଥ ସୁତ

ଦଶମସ୍ତକରେ ତାର କଲେ ପଦାଘାତ ।
ବୈର ନିର୍ଯାତନ ପାଇଁ ଦନୁଜ ଈଶ୍ୱର
ମାୟାବୀ ମାରିଚ ସ୍ୱୀୟ ସାହାଯ୍ୟ କୌଶଳେ
ମାୟାମୃଗ ଯୋଗେ ଛଳ ରାମେ ରାମାନୁଜେ
ହରନେଲା ଜାନକୀଙ୍କୁ ମାର୍ଗେ କ୍ଷଣକାଳ
ଜଟାୟୁ ସଙ୍ଗତେ ଯୁଝି ସଂହାରି ତାହାକୁ
ଲଙ୍କା ଅଭିମୁଖେ ଶୂର କରିଲା ଗମନ ।
ଏଣେ ଶୋକେ ଖୋଜି ଖୋଜି ସୀତାଙ୍କୁ ବନରେ
ପ୍ରବେଶିଲେ ସେ ସ୍ଥାନରେ ଦୁଇଭାଇ ଅସି
ରାବଣ ସହିତେ ଯୁଝି ଯହିଁ ତାଙ୍କଲାଗି
ଜଟାୟୁ ସୁମନ୍ତ ପକ୍ଷ ଡେଣା ଭଙ୍ଗା ହୋଇ
ପିତାଙ୍କ ବନ୍ଧୁଙ୍କୁ (୧) ରଣେ ଲଭିଥିଲେ ମୃତ୍ୟୁ ।
ଜାନକୀ ହରଣବାର୍ତ୍ତା ସବୁ ସେ ପକ୍ଷୀନ୍ଦ୍ର
କ୍ଷତଚିହ୍ନ ଯୋଗେ ନିଜ ଯୁଦ୍ଧ ସମାଚାର
ପ୍ରକାଶି ଦୁହିଙ୍କଠାରେ ତେଜିଲେ ଜୀବନ ।
ଜଟାୟୁଙ୍କ ମୃତ୍ୟୁ ଦେଖି ବେନି ଭାଇଙ୍କର
ନୂଆ ହୋଇ ପିତୃଶୋକ ଉଠିଲା ଉଚ୍ଛୁଳି,
ପିତାଙ୍କ ଅନ୍ତ୍ୟେଷ୍ଟି କାର୍ଯ୍ୟ ପରି ତାହାଙ୍କର
ଅଗ୍ନି ସଂସ୍କାରାଦି କ୍ରିୟା କଲେ ବିଧିମତେ ।
ପଥେ ନାଶି କବନ୍ଧକୁ ଶାପୁ ମୁକ୍ତ ଦେଇ
ତାର ଉପଦେଶ ଘେନି କରିଲେ ବନ୍ଧୁତ୍ୱ
ସମଦୁଃଖୀ ବାନରେନ୍ଦ୍ର ସୁଗ୍ରୀବ ସହିତେ ।
ବାନର ଅଧିପ ବାଳି ଥିଲା କିଷ୍କିନ୍ଧାରେ,
ଧାତୁ ପଦେ ସେ ଧାତୁର ଆଦେଶରପର
ତାହାକୁ ବିନାଶି ହେଲେ ଜାନକୀ ଜୀବନ
ସୁଗ୍ରୀବକୁ ବସାଇଲେ ସେହି ସିଂହାସନେ ।
ସୁଗ୍ରୀବଙ୍କ ଆଦେଶରେ ହନୁମାନ ଆଦି
ସୀତାଙ୍କୁ ଖୋଜିବା ଲାଗି ଭ୍ରମିଲେ ଚୌଦିଗେ,

(୧) ପୁରଣ ଅନୁସନ୍ଧେୟ

ବିରହୀ ଶ୍ରୀରାମଙ୍କର ମନୋରଥ ପରି ।
ସମ୍ପାତି ନିକଟୁ ଶୁଣି ଜାନକୀ ସନ୍ଦେଶ,
ବାତସୁତ ହନୁମାନ ତେଇଁଲେ ସିନ୍ଧୁକୁ,
ବିଷୟକୁ ଲଙ୍ଘେ ଯଥା ମାୟାଶୂନ୍ୟଜନ ।
ପ୍ରବେଶି ରାକ୍ଷସପୁରେ ଦେଖିଲେ ମାରୁତି
ସଞ୍ଜୀବନୀ ଲତାବୃତା ବିଷବଲ୍ଲୀ ପରି
ରାକ୍ଷସୀଏ ରହିଛନ୍ତି ବୈଦେହୀଙ୍କୁ ଘେରି ।
ହନୁମାନ ଶ୍ରୀରାମଙ୍କ ସଙ୍କେତ ମୁଦ୍ରିକା
ପ୍ରଦାନିଲେ ସୁକୌଶଳେ ଚେଡ଼ୀଙ୍କ ଅଜ୍ଞାତେ
ରମଣୀ ଲଲାମଭୂତା ଜାନକୀଙ୍କ କରେ,
ଯାଦେଖି ସେ ନିଃସନ୍ଦେହେ ରାମଦୂତମଣି
ସୁଖେ ସାଧ୍ୱୀ ଆନନ୍ଦାଶ୍ରୁ କଲେ ବିସର୍ଜନ ।
ପ୍ରିୟତମ ରାଘବଙ୍କ କୁଶଳ ସମ୍ବାଦେ—
ବୈଦେହୀଙ୍କୁ ତୁଷ୍ଟ କରି, ରାବଣନନ୍ଦନ
ଅକ୍ଷୟକୁ ରଣେ ନାଶି, ପବନକୁମର
କ୍ଷଣେ ସହି ଇନ୍ଦ୍ରଜିତ ବ୍ରହ୍ମାସ୍ତ୍ର ବନ୍ଧନ,
କ୍ଷୟକର ଦୁର୍ନିବାର ରକ୍ଷଅଗ୍ନିକଣା,
ପୋଡି ଦେଲେ ରାବଣର ସ୍ୱର୍ଣ୍ଣଲଙ୍କା ପୁରୀ ।
ଏରୂପେ ସେ କାର୍ଯ୍ୟସାଧି ପ୍ରଭୁ ପାଶେ ଫେରି
(ଜାନକୀର ମୂର୍ତ୍ତିମାନ ହୃଦୟ୍ୟର ପରି)
ପ୍ରଦାନିଲେ ଅଭିଜ୍ଞାନ ପ୍ରୀତିଚିହ୍ନ ସମ
ସତୀଙ୍କ ପ୍ରେରିତ ରମ୍ୟ ଚୂଡ଼ାମଣି ।
ହୃଦୟେ ଧାରଣ କରି ସେହି ମଣିମଣି
ତାତ୍କ୍ଷଣେ ମୋହିତ ହୋଇ, ଭାବିଲେ ରାଘବ
ଉରଜ ସମ୍ପର୍କ ଶୂନ୍ୟ ଆଲିଙ୍ଗନ ପରି ।
ହନୁମାନ ମୁଖୁଁ ଶୁଣି ପ୍ରିୟାର ସମ୍ବାଦ
ଗୁଣାରାମ ରାମଚନ୍ଦ୍ର କପିଙ୍କ ସାହାଯ୍ୟେ
ସୀତାଙ୍କୁ ଲଭିବା ପାଇଁ ହୋଇଲେ ଉଦ୍ୟତ,
ଲଙ୍କାର ପରିଖାରୂପୀ ମହା ସାଗରକୁ
ଚାହିଁଲେ ସେ କ୍ଷଣା ପରି ତେଇଁଯିବା ପାଇଁ ।

ତାହାରଲେ କପି ସେନ୍ୟ ପଶବୃକ୍ଷ ହୋଇ
ଶତ୍ରୁବଳ ନାଶିବାକୁ, ବୀରବିକ୍ରମରେ,
କେବଳ ଧରିବୃକ୍ଷ୍ମହେ ଅକାଶକୁ ମଧ
ସିଂହନାଦେ ଘନଘନ କରି ବିକମ୍ପିତ,
ନବେଶିଲେ ସୈନ୍ୟ ଶୂର ସାଗର ତୀରରେ
ଏହି କାଳେ ରାବଣର ସ୍ୱକ ବିଭୀଷଣ
ଉପସ୍ଥିତ ହେଲ ଅସି, ଦେଖି ମନେ ହେଲ
ଦେହବନ୍ତେ ରଘୋଲକ୍ଷ୍ମୀ ତାହାଙ୍କ ବୃଦ୍ଧିରେ
ପ୍ରବେଶି ପ୍ରେରଲେ କିବା ରଘୁବୀରପାଶେ !
ଶରଣାର୍ଥୀ ବିଭୀଷଣେ ଅଶ୍ବାସି ଅଦରେ
ଶରଣରକ୍ଷକ ରାମ, ହେଲେ ପ୍ରତଶ୍ରୁତ
କରିବାକୁ ସମ୍ପ୍ରଦାନ ରକ୍ଷରାଜପଦ,
ପ୍ରଯୁକ୍ତ ହୋଇଲେ ନୀତ ଉତ୍ତମ ସାହରେ
ନଶ୍ଚୟ ସୁଫଳମାନ କରେ ଉତ୍ପାଦନ ।
କପିକୁଳ ସାହାଯ୍ୟରେ ଲବଣ ସାଗରେ
ନର୍ମିଣିଲେ ସେତୁ ରାମ, ରସାତଳ ଭେଦ
ଅନନ୍ତ ନାଗ କିଅବା ହୋଇଲେ ଉଥିତ
ପ୍ରଭୁ ଭଗବାନଙ୍କର ସୋପାନଦ୍ୱା ଲାଗି ?
ସେ ସେତୁ ଆଶ୍ରୟେ ଶୂର ସିନ୍ଧୁ ପାରହୋଇ
ପିଙ୍ଗଳବରଣ କପିସେନା ସାହାଯ୍ୟରେ
ଘେରଦେଲେ ଲଙ୍କାପୁର, ସତେ କି ସେ ଅବା
ଦ୍ୱିତୀୟ କନକ କାନ୍ତେ ଅବୋରଲେ ତାକୁ ।
ଲଗିଲ ତୁମୁଳ ଯୁଦ୍ଧ ବାନରେ ରାକ୍ଷସେ,
"ଜୟ ଦଶାନନ" ପୁଣି "ଜୟ ରାମ ନାଦେ"
ଘନ ଘନ ଦିଗମଣ୍ଡଳ କମ୍ପିଲ ଆରବେ,
ବୃକ୍ଷେ ପିଟି କପିକୁଳ ଭଙ୍ଗିଲେ ପରଘ,
ମୁଦ୍‌ଗର କରଲେ ଚୂର୍ଣ୍ଣ ଫିଙ୍ଗି ଶିଳାମାନ,
ଧ୍ୱଂସ କଲେ ଗଜକୁଳ କମ୍ପୁଢ଼ ପର୍ବତ,
ନଖ ଦନ୍ତାଘାତ ତାଙ୍କ ହେଲ ଭୟପ୍ରଦ
ଦୈତ୍ୟମାନଙ୍କର ତୀକ୍ଷ୍ଣ ଆୟୁଧରୁ ବଳ ।

ରାବଣ ମାୟାରେ ଦନେ ରାମ ଛିନ୍ନମୁଣ୍ଡ
ଦେଖି ସୀତାଦେବୀ ଦୁଃଖେ ତେଜୁଥିଲେ ପ୍ରାଣ,
ବିଭୀଷଣଙ୍କର ସୁତା ତ୍ରିଜଟା ରାକ୍ଷସୀ
ମାୟା ବୋଲି କହି ତାଙ୍କ ରଖିଲା ଜୀବନ ।
ଜୀଇଁଛନ୍ତି ପ୍ରିୟତମ ଏଶୁଭ ସନ୍ଦେଶେ
କଲେ ଶୋକ ପରିତ୍ୟାଗ ଜନକନନ୍ଦିନୀ,
ମାତ୍ର ସ୍ୱାମୀଙ୍କର ମୃତ୍ୟୁବାଣୀ ଆଗେ ଶୁଣି
ଜୀଇଁଥିଲେ ବୋଲି ହେଲେ ବିଷମ ଲଜ୍ଜିତା ।
ବୀରଶ୍ରେଷ୍ଠ ଇନ୍ଦ୍ରଜିତ ରାବଣ ନନ୍ଦନ
ନାଗ ପାଶେ ବଦ୍ଧକଲେ ଯୁଗଳ ଭ୍ରାତାଙ୍କୁ,
ଗରୁଡ କୃପାରେ ସେହି ପାଶୁଁ ମୁକ୍ତ ଲଭି
ଶ୍ରୀରାମ ଲକ୍ଷ୍ମଣ ବେନି ନିଦ୍ରୋତ୍ଥିତ ପ୍ରାୟ
ବନ୍ଧନର କ୍ଲେଶ କିଛି ନପାରିଲେ ଜାଣି ।
ପୁଣି ବଜ୍ରସମ ଶକ୍ତ୍ୟେ ବୀର ଦଶାନନ
ଲକ୍ଷ୍ମଣର ବକ୍ଷସ୍ଥଳ କରିଲା ବିଦୀର୍ଣ୍ଣ ।
ଆହତ ନୋହିଲେ ସୁଦ୍ଧା ସେ ଶରେ ରାଘବ
ହୃଦୟ ବିଦୀର୍ଣ୍ଣ ହେଲା ସାନୁଜ ଶୋକରେ ।
ଆଣିଲା ବାତଜ ଯାଇ ବିଶଲ୍ୟକରଣୀ
ହିମାଳୟ ପାଶ୍ୱୁଁ ଗନ୍ଧମାର୍ଦ୍ଦନ ପର୍ବତରୁ,
ତା’ ପ୍ରଭାବେ ସୁସ୍ଥ ହୋଇ, ଧନୁଶର ଧରି
ଶିଖାଇଲେ ବେନି ଭାଇ ରାକ୍ଷସୀମାନଙ୍କୁ
ଅବଧାନ ପରି ପୁଣି କ୍ରନ୍ଦନର ବିଦ୍ୟା ।
ପୂଜା କରୁଥିବା ବେଳେ ଯଜ୍ଞଗୃହେ ବସି
ବିଭୀଷଣ ସାହାଯ୍ୟରେ ସୁମିତ୍ରା ନନ୍ଦନ
ଗୁପତ ଦ୍ୱାରରେ ଆସି ଅସୀମ ସାହସେ
ମେଘନାଦ ନାଦ, ସହ ତା ଧନୁର ଟଙ୍କ
ଧ୍ୱଂସ କଲେ ଧାରକାରେ ଶରଜାଳ ଯଥା
ହରଏ ବାରିଦ ନାଦ ଇନ୍ଦ୍ରଧନୁ ରେଖା ।
ରାବଣର ପ୍ରିୟ ଭାଇ ବୀର କୁମ୍ଭକର୍ଣ୍ଣ
ଶୋଇଥିଲେ ସୁଖସ୍ୱପ୍ନେ, ତାକୁ ଅସମୟେ

ଅନାୟସେ ଦଶାନନ ଉଠାଇ ନିଦ୍ରାରୁ
ପଠାଇଲା ରଣସ୍ଥଳେ, ବିଷମ ତେଜରେ
ଯୁଝି ସେହି ରକ୍ଷବୀର, ଭକ୍ଷିଲା ଅସଂଖ୍ୟ
ହସ୍ତେ ଧରି କପିକୁଳ, ବିଶେଷ ଆତଙ୍କ
ପକାଇ ବାନର ସୈନ୍ୟେ, ଭୟେ କପିମାନେ
ପଳାଇଲେ ଏଣେ ତେଣେ ଯୁଦ୍ଧସ୍ଥଳ ଛାଡ଼ି ।
ସୈନ୍ୟଭଙ୍ଗ ଦେଖି ରୋଷେ ସୁଗ୍ରୀବ ରାଜନ
ସେ ଦୈତ୍ୟର ନାକ କାନ ଛିଣ୍ଡାଇ ସରୋଷେ
କରନ୍ତେ ତାହାକୁ ଭଗ୍ନୀ ସୂର୍ପଣଖା ପରି,
ଅସ୍ଥିରିଲା ମନସ୍ତିଲା ପାହାଡ଼ ସମ ସେ
ଘୋରନାଦେ ଶ୍ରୀରାମଙ୍କୁ କଲା ଆକ୍ରମଣ ।
'ଅହେ କୁମ୍ଭକର୍ଣ୍ଣ ! ତୁମ୍ଭେ ବଡ଼ ନିଦ୍ରାପ୍ରିୟ
ବୃଥାରେ ତୁମ୍ଭର ନିଦ୍ରା ଭାଙ୍ଗିଛି ରାବଣ'
ଏମନ୍ତ ଶ୍ରୀରାମ କହି ଶୀଘ୍ର ଶରମାରି
ତାକୁ ମହାନିଦ୍ରା ଯୋଗେ ଦେଲେ ପହୁଡ଼ାଇ ।
ହତହୋଇ କୁମ୍ଭକର୍ଣ୍ଣ, ପ୍ରବଳ ବେଗରେ
ଆକ୍ରମିଲେ କପିମାନେ ରାକ୍ଷସ ସୈନ୍ୟଙ୍କୁ ।
ଉଡ୍ଡୁଥିବା ଧୂଳିରାଶି ଦିଗ୍‌ମଣ୍ଡଳ ବ୍ୟାପି
ଅଚିରେ ଲଭିଲା ଦେହ ବାନରଙ୍କ ରକ୍ତେ
"ଅରାବଣ ଅରାମ ବା ହେବ ଭବ ଆଜ"
ଏରୂପେ ପ୍ରତିଜ୍ଞା କରି ରାକ୍ଷସ ରାଜନ
ପୁନର୍ବାର ଯୁଝିବାକୁ ହୁଅନ୍ତେ ବାହାର,
ରାମଙ୍କୁ ପଦାତି ପୁଣି ରାବଣକୁ ରଥୀ—
ଦେଖି, ଦେବରାଜ ଇନ୍ଦ୍ର ପ୍ରେରିଲେ ତ୍ୱରିତ
କପିଳ ବର୍ଣ୍ଣର ଅଶ୍ୱଯୋଚ ଏକ ରଥ ।
ଆକାଶଗଙ୍ଗାର ମୃଦୁ ତରଙ୍ଗ ବାତରେ
ପତାକା କମ୍ପିତ କରି ସେ ଦେବ ବିମାନ
ଶ୍ରୀରାମଙ୍କ ନିକଟରେ ହୋଇଁ ଉପଗତ,
ମାତଳିର କରଧରି ରଘୁକୁଳମଣି,
ଜୟଶୀଳ ସେ ବିମାନେ କଲେ ଆରୋହଣ ।

ବସାଇ ବିଜୟୀରଥେ ରଘୁନନ୍ଦନଙ୍କୁ
ମାତଳି ଇନ୍ଦ୍ରଙ୍କ ଦତ୍ତ ଅଭେଦ୍ୟ କବଚ
ତାହାଙ୍କୁ ପିନ୍ଧାଇଦେଲା, ଯହିଁ ପୂର୍ବକାଳେ
ଅସୁରମାନଙ୍କ ଅସ୍ତ୍ର ବାଜି, ଉତ୍ପଳରେ
ପଦ୍ମର ପାଖୁଡ଼ା ପରି ପଡ଼ିଥିଲା ଝଡ଼ି ।
ଶ୍ରୀରାମ ରାବଣ ମଧ୍ୟେ ହେଲା ଘୋରରଣ,
ବେନିଏ ବେନିଙ୍କୁ ଲଭି ଯଶ ଲାଳସାରେ
ମରାମରି ହୋଇ ମହା ବିଷମ ସାହସେ
ଅଚିରେ ଖଣ୍ଡିଲେ ତାଙ୍କ ଚିର ରଣକଣ୍ଡୂ ।
ଗଲେହେଁ ଆତ୍ମୀୟ ବନ୍ଧୁଗଣ ସର୍ବେ ଛାଡ଼ି
ଚନ୍ଦ୍ରହସ୍ତେ ଯୁଝିବାରୁ ଲଙ୍କା ଅଧିପତି
ଦିଶୁଥିଲା ରକ୍ଷୀଗଣ ସଙ୍ଗେ ଥିଲାପରି ।
ଜିଣିଥିଲା ଦେବତାଙ୍କୁ ଯେଉଁ ବାହୁବଳେ,
ନିଜ ଶିରଛେଦ ଯେଉଁ କଠୋର ତପରେ
ଲଭିଥିଲା ବ୍ରହ୍ମାଙ୍କର ଅର୍ଚ୍ଚନା ପୂର୍ବରେ,
ମହେଶ୍ୱର କୈଳାସକୁ ଧରି ଦୋହଲାଇ
ଟେକୁଥିଲା ଯେଉଁ ମହା ଅତୁଳ ବଳରେ,
ସେ ବିକ୍ରମୀ ରାବଣକୁ, ଦଶରଥ ସୁତ
ନିଜ ବୀର ବିକ୍ରମର ଅନୁରୂପ ମଣି
ସାଧୁଶସ୍ତୁ ସମାଦର କଲେ ମନେ ମନେ ।
ପ୍ରିୟାସହ ମିଳନର ସୂଚନା ପ୍ରକାଶି
ହେଉଥିଲା ଯେଉଁ ଭୁଜ ସ୍ପନ୍ଦିତ ଉଲ୍ଲାସେ,
କୌଶଲ୍ୟା ନନ୍ଦନଙ୍କର ସେ ବିଶାଳ ଭୁଜେ
ରାବଣ କ୍ରୋଧରେ ଏକ ପ୍ରହାରିଲା ଶର,
ପ୍ରତି ଶରେ ରାମଶର ତା' ହୃଦୟ ଭେଦି
ପଶିଲା ଭୂତଳେ ଯାଇ ପ୍ରଖର ବେଗରେ,
ଦେବାକୁ ସମ୍ବାଦ କିବା ଭୁଜଙ୍ଗଗଣଙ୍କୁ ।
ବାକ୍ୟେବାକ୍ୟ, ଶସ୍ତ୍ରେଶସ୍ତ୍ର, ନିବାରଣ କରି,
ପରସ୍ପର ପରସ୍ପରେ ଜୟ ଆଶା ଧରି,
ନିଜ ନିଜ ଶକ୍ତିସବୁ କଲେ ପ୍ରକାଶ ।

ତୁଲ୍ୟ ପ୍ରତିଦ୍ୱନ୍ଦ୍ୱୀ ମତ୍ତମାତଙ୍ଗଙ୍କ ଯେନ
ଦନ୍ତେ ଦେଁଶାଦେଁଶି ହୋଇ ଯୁଝନ୍ତି ଯେକାଳେ,
ସେ କାଳରେ ସେମାନଙ୍କ ମଧ୍ୟ ଭୂମିଖଣ୍ଡ
କାହା ଅଧିକାରେ କେବେ ଅଛେ ନାହିଁ ଯଥା
ତେସନ୍ତେ ରାମ ରାବଣର ମଧ୍ୟସ୍ଥଳେ ସ୍ଥିତା—
ଜୟଲକ୍ଷ୍ମୀ ନ ଆସିଲେ କୌଣସି ପକ୍ଷକୁ ।
ସୁରାସୁରଗଣ ଦେଖି ଦୋହଙ୍କ ବୀରତ୍ୱ
ଆକାଶରୁ କୁତୂହଳେ କଲେ ପୁଷ୍ପବୃଷ୍ଟି,
ଶରେ ହୋଇଥିଲେ ଯେଣୁ ଉଭୟେ ଆଚ୍ଛନ୍ନ
ନପାରିଲା ପୁଷ୍ପରାଜି ତାଙ୍କ ଶିର ଛୁଇଁ ।
ଫିଙ୍ଗିଲା ରାକ୍ଷସରାଜ ରାମେ ଲକ୍ଷ୍ୟକରି,
ଅନ୍ତକର ଗଦା ପରି ଭୀଷଣ ଆକୃତି—
ଲୌହକଣ୍ଟକିତ ଏକ ପ୍ରଚଣ୍ଡ ଶତଘ୍ନୀ,
ନପହୁଞ୍ଚୁ ସେ ଶତଘ୍ନୀ ରଥର ପାଖକୁ,
ରାକ୍ଷସଙ୍କ ଜୟ ଆଶା ସହ ରଘୁମଣି
କରିଲେ କଦଳୀ କାଣ୍ଡ ପରି ଖଣ୍ଡଖଣ୍ଡ
ସେ ଶକ୍ତିକୁ ଅବହେଳେ ପ୍ରତିଶର ମାରି ।
ଅଦ୍ୱିତୀୟ ଧନୁର୍ଦ୍ଧର କୌଶଲ୍ୟାନନ୍ଦନ
ପ୍ରିୟତମା ଶୋକଶେଲ ଉପାଡ଼ିବା ପାଇଁ
ଅବ୍ୟର୍ଥ ବ୍ରହ୍ମାସ୍ତ୍ର ଚାପେ ବସାଇଲେ ପଣି,
ପ୍ରଦୀପ୍ତ ସେ ଅସ୍ତ୍ରବର ଆକାଶକୁ ଉଠି
ଶତଧା ବିଭକ୍ତ ହୋଇ ଦିଶିଲା ଦୂରକୁ
ଭୟଙ୍କର ଫଣାଧାରୀ ବାସୁକୀ ସମାନ ।
ମନ୍ତ୍ରପୁତ ସେ ଅସ୍ତ୍ରରେ ଛେଦ ପକାଇଲେ
ରାବଣର ମୁଣ୍ଡରାଜି, ଶୀଘ୍ର ଛିନ୍ନ ହେବୁ
ନପାରିଲା ଅନୁଭବି କଠିନ କଷ୍ଟ ସେ,
କଟା ହୋଇଥିବା କଣ୍ଠଶ୍ରେଣୀ ରାବଣର
ଛଟପଟେ ଗଣ୍ଡି ସଙ୍ଗେ ତଳେ ପଡ଼ିବାରୁ
ଦିଶିଲା, ସଜଳ ବାତ ଯୋଗେ ଖଣ୍ଡଖଣ୍ଡ
ନବୋଦିତ ରକ୍ତକାନ୍ତି ରବି ଛବିପରି ।

ରାବଣର ଶିର ସବୁ ପଡ଼ିଲେହେଁ ଭୂମେ
ପୁନର୍ବାର ଲଗିପାରେ ଏହି ଆଶଙ୍କାରେ
ରହି କ୍ଷଣେ ଦେବମାନେ ସନ୍ଦିଗ୍ଧ ଚିତ୍ତରେ,
ଶ୍ରୀରାମଙ୍କ ଶିରଦେଶେ କଲେ ପୁଷ୍ପବୃଷ୍ଟି
ଆକାଶରୁ ଘନଘନ, ସେ ପୁଷ୍ପ ସୌରଭେ
ମୁଗ୍ଧ ହୋଇ ଅଳିକୁଳ ଚଉଦିଗୁ ଉଡ଼ି
ମଦସ୍ରାବୀ ହସ୍ତୀଙ୍କର ଗଣ୍ଡସ୍ଥଳ ଛାଡ଼ି
ଯୂଥଯୂଥ ହୋଇ ତହିଁ ହେଲେ ନିପତିତ,
ଏହିରୂପେ ଦେବକାର୍ଯ୍ୟ ସାଧି ରଘୁମଣି
ଆନନ୍ଦେ ଧନୁରୁ ଗୁଣ କଲେ ବିମୋଚନ ।
ଛିଡ଼ିଥିଲା ଧ୍ୱଜ ଯାର ରାବଣ ଶରରେ,
ଅଶ୍ୱମାନେ ହୋଇଥିଲେ ଯହିଁରେ କାତର
ମାତଳି ସେ ରଥ ନେଇଗଲା ସୁରଲୋକେ ।
ସୀତାଙ୍କୁ ଅଗ୍ନିରେ ଏଣେ ପରୀକ୍ଷା କରାଇ
ପ୍ରିୟବନ୍ଧୁ ବିଭୀଷଣେ ରାଜ୍ୟ ଦାନ କରି,
ନିଜ ଭୁଜବଳେ ପ୍ରାପ୍ତ ପୁଷ୍ପକ ଯାନରେ
ରକ୍ଷୋରାଜ, କପିରାଜ, ଲକ୍ଷ୍ମଣଙ୍କ ସହ
ବିଜୟୀ ଶ୍ରୀରାମଚନ୍ଦ୍ର ସୀତା ସତୀ ଘେନି
ଚତୁର୍ଦ୍ଦଶ ବର୍ଷ ଅନ୍ତେ ବାହୁଡ଼ିଲେ ପୁରେ ।

---

# ତ୍ରୟୋଦଶ ସର୍ଗ

ଏଥୁଅନ୍ତେ ଶବ୍ଦବହ ନୀଳ ଗଗନରେ
ପୁଷ୍ପକ ବିମାନବରେ ବସି ଆନନ୍ଦରେ
ବିଶ୍ୱରୂପୀ ରାମଚନ୍ଦ୍ର ପ୍ରିୟା ସହିତରେ
ନିଜ ରାଜଧାନୀ ମୁଖେ କଲେ ପ୍ରସ୍ଥାନ ।
ଦିଶିବାରୁ ରତ୍ନାକର ଦୂରରୁ ଆଗରେ
ସୀତାଙ୍କୁ ସମ୍ବୋଧି ଶୂର କହିଲେ ଏମନ—
"ଦେଖ ଦେଖ ପ୍ରିୟତମେ ! ଫେନିଲ ସାଗର
ବିଭକ୍ତ ହୋଇ ମୋର ଦୀର୍ଘ ସେତୁବନ୍ଧେ
ମଳୟ ପର୍ବତ ଯାଏ ଦିଶଇ କେମନ୍ତ
ଫେନମୟ; ସୁଖପ୍ରଦ ଶରତ କାଳରେ
ଯେମନ୍ତ ଉଜ୍ଜ୍ୱଳ ତାରାବଳୀରେ ଭୂଷିତ
ଛାୟାପଥେ ଦ୍ୱିଖଣ୍ଡିତ ଦିଶେ ନଭସ୍ଥଳ ।
ଅମ୍ଭକୁଳେ ଜନ୍ମିଥିଲେ ଆଗୋ ଶଶିମୁଖି !
ସଗର ନାମରେ ଏକ ପ୍ରତାପୀ ନରେଶ,
ଭୟରେ ବାସବ ପୂର୍ବେ ସେ ମହାରାଜାଙ୍କ
ଯଜ୍ଞର ପବିତ୍ର ଅଶ୍ୱ ଦିନେ ସ୍ୱୈରକର
ପାତାଳେ କପିଳ ପାଖେ ଲୁଚାଇଲେ ନେଇ;
ସେ ଅଶ୍ୱକୁ ଖୋଜି ଖୋଜି ସଗରଙ୍କ ସୁତେ
ଖୋଦାଇଲେ ମହୀତଳ, ତେଣୁ ଗୋ ସୁନ୍ଦରି !
ହୋଇଛି ସିନ୍ଧୁର ଏହି ବିସ୍ତୀର୍ଣ୍ଣ ଆକାର ।
ଖୋଳିଥିଲେ ଏହା ଯେଣୁ ସଗରଙ୍କ ପୋଏ,
ତେଣୁ ଏହା ମହୀତଳେ ସାଗର ବୋଲାଏ ।
ସୂର୍ଯ୍ୟକରେ ବାଷ୍ପାକାରେ ଆକାଶକୁ ଉଠି
ସୃଷ୍ଟି କରୁଅଛି ମେଘ ଏହାର ସଲିଳ,
ବଢ଼ନ୍ତି ଏହାର ଗର୍ଭେ ବିବିଧ ରତନ;
ରତ୍ନାକର ନାମେ ଏବେ ସଦା ଏ ବିଖ୍ୟାତ
ବାଡ଼ବାନଳକୁ ଏହି ଧରିଛି ବକ୍ଷତର,
ଜନମି ଅଛନ୍ତି ପୂର୍ବେ ଏହି ସାଗରରୁ

ଜଗତ ପାବନକାରୀ ବିମଳ ଚନ୍ଦ୍ରମା,
ବିବିଧ ଅବସ୍ଥା ସଦା ଧରୁଛି ଏ ସିନ୍ଧୁ,
ଦଶଦିଗ ବ୍ୟାପିଅଛି ବିଷ୍ଣୁଙ୍କର ପଦ,
କଳିହେବ ନାହିଁ କେବେ ଏହାର ସ୍ୱରୂପ
ସୃଷ୍ଟି ନାଶ କରି ହରି ପ୍ରଳୟ କାଳରେ
ଯାଆନ୍ତି ଏହାର ବକ୍ଷେ ସୁଖେ ଯୋଗନିଦ୍ରା,
ନାଭିପଦ୍ମାସନେ ବସି ସେ କାଳରେ ବ୍ରହ୍ମା
ତାହାଙ୍କୁ କରନ୍ତି ସ୍ତବ ସୁଗମ୍ଭୀର ସ୍ୱରେ ।
ପକ୍ଷଚ୍ଛେଦ ଗିରିଗଣଙ୍କ କରିବାରୁ ଇନ୍ଦ୍ର
ପଶିଲେ ଏହାଙ୍କୁ ଭୟେ ଶତ ଶତ ଶୈଳ,
ଯଥା ଶତ୍ରୁଭୟେ ଭୀତ ନରପତିଗଣ
ମଧ୍ୟସ୍ଥ ଭୂପାଳ ପାଶେ ପଶନ୍ତି ଶରଣ ।
ବରାହ ମୂରତିଧରି ଯେ କାଳେ ଅଚ୍ୟୁତ
ଧରଣୀକୁ ପାତାଳରୁ କରିଲେ ଉଦ୍ଧାର,
ସେ ପ୍ରଳୟ ସମୟରେ ଏ ମହାସିନ୍ଧୁର
ଉଦ୍‌ବେଳ ସଲିଳରାଶି ହୋଇଥିଲା ସିନା
ଧରଣୀ ଦେବୀଙ୍କ ମୁଖେ ଓଢ଼ଣୀର ପରି ।
ରସିକଶେଖର ସିନ୍ଧୁ ଅଟେ ଗୋ ସୁନ୍ଦର ।
ଦେଖ ଦେଖ କି ରଙ୍ଗରେ ପ୍ରକାଶ କରୁଛି
କେତେମତେ କେଳିକଳା ତରଙ୍ଗିଣୀଙ୍କର
ତରଙ୍ଗ ଅଧର ପିଏ ପାନକରି ସୁଖେ,
ସ୍ୱ'ତରଙ୍ଗ ଅଧରକୁ କେମନ୍ତ ରଙ୍ଗରେ
ପ୍ରେମରସେ ତାଙ୍କୁ ପୁଣି କରାଉଛି ପାନ ।
ମୁହାଣମାନଙ୍କେ ଦେଖ ଝମି ମତ୍ସ୍ୟମାନେ
ପାଟିକୁ ବିସ୍ତାରି ବଳେ ନେଉଛନ୍ତି ଟାଣି
ଜଳଜନ୍ତୁ ସହ ନଦୀ ମୁହାଣର ପାଣି,
ସେ ମୁଖ ମୁଦିଲା ବେଳେ କପାଳ ଚପିଲେ
ନାସାରନ୍ଧ୍ରୁ ଦେଇ ଦୃଷ୍ଟ ସଲିଳର ଧାର
ଫଏରା ପରାଏ ବେଗେ ଉଠୁଛି ଊର୍ଦ୍ଧ୍ୱକୁ ।
ଅନାଅ କେମନ୍ତ ପ୍ରିୟେ ! ଜଳହସ୍ତୀଗଣ

ସହସା ଜଳରୁ ଉଠି ଦ୍ୱିରଦ ନିକର
ଦେଉଛନ୍ତି ଫେନରାଶି, ସେହି ଫେନପୁଞ୍ଜ
ତାଙ୍କ ଶିରଦେଶେ ଲାଗି କ୍ଷଣକାଳ ପାଇଁ
ବିସ୍ତାର କରୁଛି କର୍ଣ୍ଣଚାମରର ଶୋଭା
ବାହାରିଅଛନ୍ତି ଦେଖ ଅଜଗର ରାଜି
ପିଇବାକୁ ତୀରଦେଶେ ବିମଳ ପବନ,
ସେମାନଙ୍କ ଦେହକାନ୍ତି ବାରି ନୋହୁଥାନ୍ତା
ସାଗର ତରଙ୍ଗସହ, ସୂର୍ଯ୍ୟକରେ ଝଳ
ଯେବେ ତାଙ୍କ ଫଣାସ୍ଥିତ ମହୋଜ୍ଜ୍ୱଳମଣି
ଭ୍ରମ ଦୂର କରିଦେଉ ନଥାନ୍ତା ଚହଲାଇ ।
ତୁମ୍ଭ ବିମ୍ବାଧର ସମ ପ୍ରବାଳ ମାଳରେ
ସହସ୍ର ତରଙ୍ଗ ବେଗେ ପଡ଼ି ଶଙ୍ଖଯୂଥ,
ପ୍ରବାଳର ଊର୍ଦ୍ଧ୍ୱମୁଖ ଅଙ୍କୁର ନିକରେ
ସେମାନଙ୍କ ମୁଖ ଖରେ ପିବାରୁ ଅଟକି
ଅତି କଷ୍ଟେ ବାହାରନ୍ତି, ଦେଖ ତନ୍ୱି ପ୍ରିୟେ ।
ସିନ୍ଧୁଜଳ ପିଇବାକୁ ଉଇଁ ନବମେଘ
ତାହାର ବିଶାଳ ଛାୟା ପକାଇ ସାଗରେ
ସେ ସାଗର ଭଙ୍ଗୀର ପ୍ରବଳ ବେଗରେ
ଭ୍ରମୁଛି କେମନ୍ତ, ଦେଖ ତଳକୁ ଅନାଇ,
ନିଜେ ନିଜେ ଆଉଥରେ ସତେକି ଏ ସିନ୍ଧୁ
ମନ୍ଥିତ ହେଉଛି ମହା ମନ୍ଦର ଗିରିରେ ?
ସୁବିସ୍ତୀର୍ଣ୍ଣ ଲୌହଚକ୍ର ସମାନ ଅଟଇ
ସ୍ୱଭାବେ ସିନ୍ଧୁର ବକ୍ଷ, ରମ୍ୟତୀର ତାର
ସୁନୀଳ ତମାଳ ତାଳବନେ ମଣ୍ଡି ହୋଇ
ଅନାଅ ସୁକେଶି ଦୂରୁ ଦିଶୁଛି କେମନ୍ତ
ସେ ଚକ୍ର ଦେହରେ କୃଷ୍ଣ ଲୌହ ଝାମ ପରି
କୁଙ୍କୁମ ରଜ ରଞ୍ଜରେ ଶ୍ରୀମୁଖ ମଣ୍ଡନ
ବିଳମ୍ବ ହେବ ବୋଲି କି ଧୀରେ ଧୀରେ ବହି
ଦେଖ ବିଶାଳାକ୍ଷି ! ତୀରବର୍ତ୍ତୀ ସମୀରଣ,
କୈରବର କେତକୀର ରେଣୁ ଉଠିବନ୍ତୁ,

ତୁମ୍ଭର ବଦନ ଘର୍ମ୍ମ କରେ ଅଲଂକୃତ ।
କଥା ହେଉଁ ହେଉଁ ଆହା ବିମାନ ବେଗରେ
ମୁହୂର୍ତ୍ତିକେ ଉପନୀତ ହୋଇଲୁଣି ଆସି
ମହୋଦଧି ରମ୍ୟତୀରେ, ଅନାଅ ପ୍ରେୟସି !
ଫଳଭରେ ନତ ରମ୍ୟ ଗୁଆ ଗଛମାଳ
କେମନ୍ତ ନୟନ ମନ କରୁଛି ହରଣ ।
ମହାସିନ୍ଧୁ ତରଙ୍ଗରେ ଇତସ୍ତତ କ୍ଷିପ୍ତ
ଶୁକ୍ତିରୁ ମୁକ୍ତାବ୍ରାତ ବିଗଳିତ ହୋଇ
ପଡ଼ିଛନ୍ତି ଗୋଟି ଗୋଟି, ବିମଳ କାନ୍ତିରେ
ରମ୍ୟ ବେଳା ପ୍ରଦେଶକୁ ସମୁଜ୍ଜ୍ୱଳ କରି ।
କୁରଙ୍ଗନୟନା ! ଥରେ ଅନାଅ ପଛକୁ
ଅଗକୁ ସେତେକ ବେଗେ ଯାଉଛି ଏ ରଥ,
ତେତିକ କାନନବର୍ତ୍ତୀ ଶ୍ୟାମ ତଟଭୂମି
କିପରି ଗୋଡାଇ ଆସେ, ଆମ୍ଭ ପଛେ ପଛେ
ଦୂରବର୍ତ୍ତୀ ସମୁଦ୍ରରୁ ବାହାରିଲା ପରି ।
ଦେଖ ଦେଖ ଶଶିମୁଖି ! କେମନ୍ତ ଏ ରଥ
କେତେବେଳେ ମେଘପଥେ କେବେ ଦେବମାର୍ଗେ
କେବେ ପକ୍ଷୀଙ୍କର ସହ, ବିବିଧ ଗତିରେ
ଇଚ୍ଛା ଅନୁକୂଳେ ମୋର କରୁଛି ଗମନ ।
ମଧ୍ୟାହ୍ନ କାଳୀନ ଗ୍ରୀଷ୍ମେ ତବ ବଦନରେ
ବିନ୍ଦୁବିନ୍ଦୁ ଝାଳ ଯାହା ଦେଉଥିଲା ଦେଖା
ସୁରଗଜ ଐରାବତ ମଦଗନ୍ଧେ ପୂର୍ଣ୍ଣ
ସ୍ୱର୍ଣ୍ଣଦୀ ତରଙ୍ଗେ ସ୍ନାତ ଆକାଶର ବାୟୁ
କିରଙ୍ଗେ ସଧୀରେ ତାହା ଦେଉଅଛି ପୋଛି ।
ବିମାନର ବାତାୟନେ ବଢ଼ାଇଣ କର
ଜଳଦକୁ କୁତୂହଳେ ଛୁଅନ୍ତେ ସୁନ୍ଦରି !
ପିନ୍ଧାଇ ଦେଉଛି ଘନ ପରିତୁଷ୍ଟପରି
ତୁମ୍ଭ କରକମଳରେ କେତେ ଯତନରେ
ବିଜୁଳି ରୂପ ବଳୟ ନବ ଆଭରଣ ।
ଦେଖଗୋ ! ବଲ୍କଳଧାରୀ ଋଷିଏ କେମନ୍ତ

ନିସ୍ତବ୍ଧ ହେଲଣି ଏ ଜନସ୍ଥାନ ଜାଣି
ରଘୁଭୂପ ଚରିତ୍ୟକ୍ତ ସ୍ୱଆଶ୍ରମେ ଆସି
ନୂତନ କୁଟୀର ରଚି ରହିଛନ୍ତି ସୁଖେ ।
ସେହି ସ୍ଥାନ ଏହି, ଯହିଁ ଖୋଜି ଖୋଜି ପ୍ରିୟେ
ତୁମ୍ଭଙ୍କୁ, ଦେଖିଲି ମୃଦୁ ଚରଣରୁ ଖସି
ବାଜେଣି ନୂପୁର ଏକ, ବିଚ୍ଛେଦ ଦୁଃଖେକି
ମୌନବ୍ରତେ ପଡ଼ିଥିଲା ମହୀରେ ରୂପସି !
ତୁମ୍ଭଙ୍କୁ ହେରାଇ ନେଲା ଯେ ପଥେ ରାବଣ
ସେ ପଥର ଏହି ସବୁ ବ୍ରତତୀ ନିକର,
କଥା କହିବାକୁ ସଦା ଅକ୍ଷମ ହେଲେହେଁ,
ଅବନତ ପତ୍ରମୟ ଶାଖାକୁ ହଲାଇ
ଦେଖାଉଥିଲେ ସେ ବାଟ ମୋତେ ଦୟା କରି ।
ଘାସ ଖାଇବାର ଛାଡ଼ି ମୃଗ ମୃଗୀମାନେ
ଦକ୍ଷିଣ ଅଡ଼କୁ ଏକ ଦୃଷ୍ଟିରେ ଅନାଇଁ,
ସେ କାଳରେ ମୋ ଦୁଃଖରେ ସମଦୁଃଖୀ ହୋଇ
ତୁମ୍ଭର ଗମନ ମାର୍ଗ ଦେଉଥିଲେ କହି ।
ଗଗନ ପରଶି ଶୃଙ୍ଗ ଶୋଭେ ଅଗରେ
ମାଲ୍ୟବାନ ପର୍ବତର ଦେଖ ବିଶାଳାକ୍ଷି ।
ତୁମ୍ଭର ବିରହେ ଏଥି ବର୍ଷାଜଳ ସହି
ଝରିଥିଲା ସିନା ମୋର ନେତ୍ରୁ ଅଶ୍ରୁବାରି
ସ୍ମରି ମାସମାଏ ଦୁଃଖେ ଅବିରଳଧାରେ !
ଏଠାରେ ଉପଳେ ଶୁଷ୍କ ଶୈବଳ ସକଳ
ବରଷା ପାଣିରେ ଭିଜି ମଧୁର ଗନ୍ଧରେ
ବୃଦ୍ଧି କରୁଥିଲେ ମୋର କଷ୍ଟ ବହୁଗୁଣେ ।
ତରୁବରେ ଦରଫୁଟ କଦମ୍ବ ଫୁଲର
ନବ ଅଙ୍କୁରିତ ମୃଦୁ କେଶରକୁ ଦେଖି
ପଡ଼ୁଥିଲା ମନେ ସଖି ! ବିବାହ ମିଳନେ
ତୁମ୍ଭ ଶରୀରର ମଞ୍ଜୁ କଣ୍ଟକିତ ଛବି ।
ନାଚି ନାଚି କେକାକୁଳ କେକା ଧ୍ୱନି କରି
ନବ ବିରହରେ ମୋତେ ଦେଉଥିଲେ ପୀଡ଼ା

ଅଧୀରେ ଚମକିପଡ଼ି ଯେବେ ଥର ଥର
ଘଡ଼ଘଡ଼ି ଭୟେ ମୋତେ ଧରିଥିଲ ଭିଡ଼ି,
ସେ ପୂର୍ବର କଥା ମନେପଡ଼ିବାରୁ ସଦା !
ଏ ଗିରି ଶୃଙ୍ଗରେ ରହି ବରଷା କାଳରେ
ଭଦର ଝଙ୍କାରି ମେଘ ଗରଜନ ଶୁଣି
ଭାରି ହେଉଥିଲା ମହା ଦୁଃଖରେ ମୋ ମନ
ବନ୍ଧନ କଥା ସଖି, ବିବାହ କାଳରେ
ଆଗେ ଜଳୁଥିବା ହୋମଅଗ୍ନି କୁଣ୍ଡଳାରେ
ରକ୍ତବର୍ଣ୍ଣ ଆଖି ତବ ହୋଇଲା ସ୍ମରଣ,
ଦେଖିଲି ଏ ସ୍ଥାନେ ଯେଣୁ କନ୍ଦଳ ଫୁଲରୁ
ଭୂମି ବାସ୍ପ ଲଭି ହେଲା ଅରୁଣ ବରଣ !
ଏ ଯେ ପମ୍ପାସରୋବର ବିଶାଳ ଦୂରରୁ
କେମନ୍ତ ନିର୍ମଳ ଜଳ, ଦେଖି ନେଦବେନ
ଲୋଭେ ଏତେଦୂରୁ ଧାଇଁ ପଥଶ୍ରମ କ୍ଳେଶେ
ପ୍ରବେଶି ତହିଁରେ ପାନ କରୁଛନ୍ତି କି ସେ ।
ସେ ସରସୀତୀର କାନ୍ତ ବେତସ ବନରେ
ବୁଲି ବୁଲି ଚରୁଛନ୍ତି ଜଳପକ୍ଷୀକୁଳ,
ଦୂରହେତୁ ସ୍ପଷ୍ଟରୂପେ ନ ଦିଶନ୍ତି ଟିକି !
ଯୋଡ଼ି ଯୋଡ଼ି ହୋଇ ଜଳେ ଚକ୍ରବାକମାନେ
କେତେ ପ୍ରେମାଳାପ କରି ପଦ୍ମନାଳସଙ୍ଗେ
ଦେଉଛନ୍ତି ସୁଖେ ଦୁହେଁ ଦୁହିଙ୍କୁ ଖୁଆଇ
ଏ ଛବି ପ୍ରେୟସି ! ତୁମ୍ଭ ବିରହ କାଳରେ
ସହିବ ଲୋଚନେ ମୁହିଁ ରହିଥିଲି ଚାହିଁ,
ମହାଶୋକେ ଅଶ୍ରୁସିକ୍ତ ମ୍ଳାନ ନୟନରେ ।
ତୁମ୍ଭ ବିରହରେ ଘୋର ! ଅଥୟେ ସେକାଳେ
ସ୍ତବକ ସ୍ତନରେ ନମ୍ରା କୃଶ କଳେବର
ଅଶୋକ ଲତାକୁ ଆଗେ ଦେଖି ମୁଁ ସବେଗେ
ଧାଇଲି ତୁମ୍ଭକୁ ବୋଲି ଆଲିଙ୍ଗନ ଆଶେ
ଗମନ୍ତେ ପାଶକୁ ତାର, ସୁମିତ୍ରା ନନ୍ଦନ
"ନୁହନ୍ତି ଏ ସୀତାଦେବୀ" ଏମନ୍ତ କହିଣ

ବହୁ ମନକଷ୍ଟେ ତହୁଁ ନିବାରିଲେ ମୋତେ
ପୁଷ୍ପକ ରଥର ରମ୍ୟ କିଙ୍କିଣି ନାଦରେ
ମୁଗ୍ଧ ହୋଇ ମୁଗ୍ଧାନନ ! ଏ ସାରସକୁଳ
ଧାଡ଼ି ଧାଡ଼ି ହୋଇ ଆଗେ ଆକାଶରେ ଉଡ଼ି
ଅଭ୍ୟର୍ଥନା କରୁଛନ୍ତି ଆମ୍ଭଙ୍କୁ ଆଦରେ ।
ବଦ୍ଧପଦେ ଅଛ ପୁଣି ପଞ୍ଚବଟୀ ବନ
ଦେଖି କୁତୂହଳ ବଡ଼ ଜନ୍ମୁଁ ଅଛି ମନେ
ସୁକୁମାରି ! କ୍ଷୀଣକଟି ହେଲେହେଁ ତୁମ୍ଭର
କଳଶରେ ଭରି ନିଜେ ବହି ବହି ଜଳ
ଏହି ବାଳ ଚୂତତରୁ ବଢ଼ାଇଣ ଥିଲ,
ଦେଖ ତାରି ନିକଟରେ କେମନ୍ତ ସୁନ୍ଦର
ତୁମ୍ଭର ପାଳିତ ଏହି କୃଷ୍ଣସାରଗଣ
ଊର୍ଦ୍ଧ୍ୱମୁଖେ ଲକ୍ଷିଛନ୍ତି ଆମ୍ଭଙ୍କୁ ଅନାଇଁ ।
ସ୍ମରଣ ହୁଏ କି ପ୍ରିୟେ ସେ ପୁରୁବ କଥା !
ଯେବେ ମୁହିଁ ମୃଗୟାରୁ ଫେରି କ୍ଳାନ୍ତବଶେ
ତଟିନୀ ତରଙ୍ଗେ ସିକ୍ତ ଶୀତ ସମୀରଣେ
ତୁମ୍ଭ ସୁଖମୟ କୋଳେ ସୁଖେ ଶିରଦେଇ
ଶୋଇଥିଲି ନିଶ୍ଚିନ୍ତରେ ଏବେତସ କୁଞ୍ଜେ ।
ଭ୍ରୂଭଙ୍ଗ ମାତ୍ରକେ ଯାର ଇନ୍ଦ୍ରପଦବୀରୁ
ଖସି ପଡ଼ିଥିଲେ କ୍ଷଣେ ନହୁଷ ରାଜନ,
ଏହି ସେହି ଅଗସ୍ତିଙ୍କ ପବିତ୍ର ଆଶ୍ରମ,
ଦେଖ ଦେଖ ପ୍ରିୟସହୁ, ଦିଶିଲଣି ଆଗେ
ପୁଣ୍ୟକୀର୍ତ୍ତି ମହାତପା ସେ ମହାମୁନିଙ୍କ
ଘୃତଗନ୍ଧେ ପରିପୁଷ୍ଟ ହୋମାଗ୍ନିର ଶିଖା,
ପରଶୁଛି ଆକାଶକୁ ଧୂମପନ୍ଥ ସାର ।
ସେ ଅଗ୍ନିଶିଖାର ଧୂମ ଘ୍ରାଣ କରି କରି
ରଜଗୁଣ ଛାଡ଼ି, ହୃଦ ଆମ୍ଭମାନଙ୍କର
ପ୍ରସନ୍ନ ପ୍ରଶାନ୍ତ ଭାବ କରୁଛି ଧାରଣ ।
ଏହି ଯେ ଦିଶୁଛି ଆଗେ ପଞ୍ଚାପ୍ସରସର
ଶାତକର୍ଣ୍ଣୀ ଋଷିଙ୍କର କେଳିସର ତାହା

ଏ ସରର ତଟଦେଶେ ଦେଖ ଦେଖ ଧନି !
ଶ୍ୟାମଳ କାନନରାଜି ବେଢି ରହିବାରୁ
ଦୂରକୁ ଦିଶୁଛି, ସେହେତୁ, ବାରିଦ ଚବରେ
ମନୋମୁଗ୍ଧକର ରମ୍ୟ ପୂର୍ଣ୍ଣଚନ୍ଦ୍ର ବିମ୍ବ ।
କୁଶାଙ୍କୁର ମାନ ଭକ୍ଷି ପୂର୍ବେ ଏ ମହର୍ଷି
କୁରଙ୍ଗମାନଙ୍କ ସହ ଚରି ବନେ ବନେ
ଆଚରିଲେ ଘୋରତପ ଦେଖି ଇନ୍ଦ୍ର ଭୟେ
ଯୌବନ କପଟ ଯନ୍ତ୍ରେ ପାଞ୍ଚ ଅପ୍ସରାର,
ଯୋଗୀ-ମନ-କୁରଙ୍ଗକୁ ବାନ୍ଧିଲେ କୌଶଳେ ।
ଜଳର ଭିତରେ ସଦା ପ୍ରାସାଦରେ ବସି
ମୃଦଙ୍ଗ ସଙ୍ଗୀତ ଧ୍ୱନି କରୁଛନ୍ତି ମୁନି
ବାୟୁ ତରଙ୍ଗରେ ତାହା ଆକାଶକୁ ଉଠି
ପୁଷ୍ପକ ରଥର ଚନ୍ଦ୍ରଶାଳାରେ ଅଟକି
ପ୍ରତିଧ୍ୱନି ଜନ୍ମାଉଛି ଶୁଣଗୋ କେମନ୍ତ ।
ସୁତୀକ୍ଷ୍ଣ ନାମରେ ଦେଖ ଆଉ ଜଣେ ଏହି
ପ୍ରଶାନ୍ତ ଚରିତ ଋଷି, ବସି ଏକଧ୍ୟାନେ
ଚଉପାଖେ ନିଆଁ ଜାଳି ଶୂନ୍ୟକୁ ଅନାଇଁ
କରୁଛନ୍ତି ଘୋରତପ ଊର୍ଦ୍ଧ୍ୱମୁଖ ହୋଇ,
ଏହାଙ୍କ କଠୋର ତପ ଦେଖି ମହାଭୟେ
ପ୍ରେରିଥିଲେ ଦେବରାଜ ଅପ୍ସରୀମାନଙ୍କୁ,
କେଳିପ୍ରିୟ ଅପ୍ସରୀଏ ନାନାଭଙ୍ଗୀ କରି
ମୂରକି ମୂରକି ହସି ଗେଲ ଗେଲ ହୋଇ
ଆଡ଼ନେତ୍ରେ କଲେ ଯେତେ କଟାକ୍ଷ ବର୍ଷଣ
ଛଳରେ ପୁଣି ସେ ଯେତେ ଦେଖାଇଲେ ରଙ୍ଗେ
ବସ୍ତ୍ରଠେକି ନିତମ୍ବରେ ମଞ୍ଜୁ ମେଖଳାକୁ,
ତାହାଙ୍କ ବିଳାସ ଚେଷ୍ଟା ସବୁ ହେଲା ବୃଥା,
ଜନ୍ମିଲା ନାହିଁତ ମୁନି ମାନସେ ବିକାର ।
ଦେଖ ଊର୍ଦ୍ଧ୍ୱବାହୁ ଏହି ସୁତୀକ୍ଷ୍ଣ ତାପସ,
ଯେ କରେ ମୃଗଙ୍କ କଣ୍ଡୁ କରୁଥିଲେ ନାଶ,
କୁଶାଗ୍ର ଛେଦନ କରି କରି ଯେ ହସ୍ତର

ନକ୍ଷମୂଳ ହୋଇଥିଲା ଅତ୍ୟନ୍ତ କଠିନ,
ଅଷ୍ଟଦଳଯୁବରେ ଯୁକ୍ତ ସେ କର କେମନ୍ତ
ଠେକଛନ୍ତି ଉର୍ଦ୍ଧ୍ୱେ ମୋର ସମ୍ବର୍ଦ୍ଧନା ଅଗ୍ରେ,
ସଦା ମୌନବ୍ରତୀ ବୋଲି ଏହି ତପୋଧନ
ଶିରକୁ ନମାଇ ମୋର ଘେନନ୍ତି ପ୍ରଣାମ
ଏହାଙ୍କ ଅକ୍ଷିରୁ ଯାହା ଛେକ ରଖିଥିଲା
ସୂର୍ଯ୍ୟଙ୍କୁ ପୁଷ୍ପକରଥ କ୍ଷଣକାଳ ପାଇଁ
ଖରଗନ୍ଧ ରଥ ତଳୁଁ ଅସିବାରୁ ବଳ
ପୁଣି ସେ ଦେଲେଣି ଦୃଷ୍ଟି ସୂର୍ଯ୍ୟମଣ୍ଡଳରେ ।
ଶରଣବତ୍ସଳ ଋଷି ଶରଭଙ୍ଗଙ୍କର
ସୁପବିତ୍ର ତପୋବନ ବଶଇ ଅଗରେ,
ଏ ତେଜସ୍ୱୀ ଋଷି ଦେବ ! ବହୁଦିନଯାଏ
ଯୋଗସମାଧିରେ ତୋଷି ଅନଳଦେବଙ୍କୁ
ପରେ ନିଜ ଶରୀରକୁ ମନ୍ତ୍ରପୂତ କରି
ଆହୁତି ପରି ଏ ତାଙ୍କୁ କରିଥିଲେ ଦାନ ।
ବହୁଦିନୁ ସ୍ୱର୍ଗବାସୀ ହୋଇଲେହେଁ ସେ ତପି
ଅଦ୍ୟାପି ଏ ଅଶ୍ରମେ ଚଳେ ସେହିପରି
ଧର୍ମପ୍ରାଣ ମହର୍ଷିଙ୍କ ଅତିଥିସତ୍କାର,
ସୁପୁଷ୍ଟ ପରି ଏ ତାଙ୍କ ମଠ ତରୁଗଣ
ଫଳ ଫୁଲ ଛାୟା ଦେଇ ଅତିଥିମାନଙ୍କ
କ୍ଷୁଧା ତୃଷା ହରି ଶାନ୍ତ କରୁଛନ୍ତି ଦାନ ।
ମଦମଞ୍ଜୁ କକୁଦ୍‌ବନ୍ତ ବୃଷଶିରୀ ଧରି
ଗିରିବର ଚିତ୍ରକୂଟ ହରଇ ନୟନ
ଅଗ୍ରେ ଦେଖ ପ୍ରିୟତମେ ! ମନମୁଗ୍ଧକର—
ବୃଷମୁଖ ତୁଲ୍ୟ ଏହି ଗିରିର କନ୍ଦର
ନିରନ୍ତର ନିର୍ଝରର ନିନାଦେ ମୁଖର,
ମାଟି ଲାଗିଥାଏ ଯଥା ବୃଷଭ ଶୃଙ୍ଗରେ
ତେସନ ଏହାର ଶୃଙ୍ଗେ ମେଘ ଶୋଭାପାଏ ।
ପ୍ରସନ୍ନ ସଲିଳା ଦେଖ ମୃଦୁ ପ୍ରବାହିନୀ

ଦୂରୁ ଦୃଷ୍ଟରେଖା ପ୍ରାୟେ ଦିଶେ ମନ୍ଦାକିନୀ, *
ଗିରିବର ପାର୍ଶ୍ୱବର୍ତ୍ତୀ ଭୂମିର କଣ୍ଠରେ
ଦିଶୁଅଛି ମନୋହର ମୁକ୍ତାହାର ସମ
ଗିରିପାଦ ସନ୍ନିକଟେ ଅନାଅ ଏ ସେହି
ଶ୍ୟାମଳ ତମାଳ ତରୁ, ଯହୁଁ ତରଳାକ୍ଷି !
ରୁଚିର କୋମଳ ପତ୍ର ତୋଳି ତୁମ୍ଭ କର୍ଣ୍ଣେ
କର୍ଣ୍ଣ ଅଳଙ୍କାର ରୂପେ ଦେଉଥିଲି ଖଞ୍ଜି,
ସେ ରମ୍ୟଭୂଷଣେ କେତେ ଶୋଭା ପାଉଥିଲା
ଯବାଙ୍କୁର ସମ ପାଣ୍ଡୁ ତୁମ୍ଭ ଗଣ୍ଡଦେଶ ।
ଏହି ଦିଶେ ଅତ୍ରି ଋଷିଙ୍କର ତପୋବନ,
ତପସ୍ୟା ପ୍ରଭାବେ ଏଥି ଘଟେ ଅଘଟନ,
ଦଣ୍ଡ ଭୟ ବିନା ସଦା ସକଳ ପ୍ରାଣୀଏ
ରହିଛନ୍ତି ଶାନ୍ତ ଭାବେ ପରସ୍ପରେ ମିଳି,
ପୁଷ୍ପ ବିନା ଏଥି ବୃକ୍ଷେ ପ୍ରସବନ୍ତି ଫଳ,
ଏଣୁ ଏ ବନର ମହା ପ୍ରଭାବ ପ୍ରକାଶ
ହୋଇଛି ଗୋ ସୁରୁଶୀଳେ ! ଜଗତ ମଧ୍ୟରେ ।
ଅତ୍ରିପତ୍ନୀ ଅନସୂୟା ପୂର୍ବେ ଏ ବନରେ
ତପୋଧନମାନଙ୍କର ଅଭିଷେକ ପାଇଁ
ଆଣିଥିଲେ ଜାହ୍ନବୀଙ୍କୁ, ଯହୁଁ ସପ୍ତର୍ଷି,
ତୋଳୁଥିଲେ ଅହର୍ନିଶ କନକ କମଳ
ପ୍ରସନ୍ନ ପବିତ୍ର ଯାର ପ୍ରବାହକୁ ଶିରେ
ମାଳାରୂପେ ଧରିଥିଲେ ନିଜେ ସଦାଶିବ
ସେ ଜାହ୍ନବୀ ଅତ୍ରିଙ୍କର ତପସ୍ୟା ବଳରେ
ଏ ବନରେ ବହୁଥିଲେ କଳ କଳ ରବେ
ପଦ୍ମାସନେ ଯୋଗେରତ ଯୋଗୀବର ପରି
ଏ ପବିତ୍ର ତପୋବନେ ଆଗୋ ବନଜାକ୍ଷି !
ସମାଧି ବେଦୀରେ ସ୍ଥିତ ପାଦପସକଳ,
ପବନ ଅଭାବେ ହୋଇ ଏକାନ୍ତ ନିଶ୍ଚଳ

* —ଏହି ନଦୀଟି ମନ୍ଦାକିନୀନାମରେ ଚିତ୍ରକୂଟ ପର୍ବତରେ ପ୍ରବାହିତ ।

ଧ୍ୟାନମଗ୍ନ ଯୋଗୀ ପ୍ରାୟ ରହିଛନ୍ତି ଦେଖ ।
ଏହି ସେହି ଶ୍ୟାମବଟ, ବନଯାତ୍ରା କାଳେ
ଯାର ମୂଳେ ପ୍ରିୟତମେ ଭକ୍ତିରେ ଜୁହାର
ଇଷ୍ଟସିଦ୍ଧି ଲଭ ପାଇଁ ମାଗିଥିଲ ବର,
ଏବେ ତାହା ଫଳଭରେ ନଇଁ ତଳଯାଏ
ମର୍କତ ରୁଚିର ପତ୍ରେ ପଦ୍ମରାଗଫଳେ
ସମଣ୍ଡିତ ହୋଇ ଅହା ଜନମନ ହରେ ।
ଅନାଅଁ ଅନାଅଁ ଅଗେ ସର୍ବାଙ୍ଗ ସୁନ୍ଦରି !
ଭାରତ ପ୍ରସିଦ୍ଧ ଗଙ୍ଗା ଯମୁନା ସଙ୍ଗମ,
ଭାନୁସୁତା ନୀଳଜଳ ସ୍ରୋତେ ଯହିଁ ମିଶି
ସୁବିମଳା ଭାଗୀରଥୀ ପବିତ୍ର ସଲିଳା
ଇନ୍ଦ୍ରନୀଳ ପରେ ମୋତି ପୁଣି ଇନ୍ଦ୍ରନୀଳ
ଗୁନ୍ଥାହୋଇ ମାଳ ପ୍ରାୟେ ଦିଶଇ ମଞ୍ଜୁଳ
ଉର୍ମି ବେଗରେ ଏହି କଳା ଧଳା ଜଳ
ଓଲଟ ପାଲଟ ହୋଇ କାହିଁ ଏକତ୍ରରେ
ନୀଳୋତ୍ପଳେ ଗୁନ୍ଥା ଶ୍ୱେତ ଶତଦଳ ହାର
ସୁଷମାକୁ ସବୁମତେ କରଇ ଧିକ୍କାର,
ତରଙ୍ଗେ ତରଙ୍ଗେ ଜଡ଼ି କେବଣ ସ୍ଥାନରେ
ମାନସ ନିବାସୀ ଶ୍ୱେତ ରାଜହଂସଙ୍କର
ସଙ୍ଗତରେ ଉଡ଼ୁଥିବା କୃଷ୍ଣହଂସ ପରି
ବଢ଼ାଉଛି ସୁଷମାକୁ ସକଳ ପ୍ରକାରେ,
କୃଷ୍ଣଅଗୁରୁକୁ ଶ୍ୱେତ ଚନ୍ଦନେ ମିଶାଇ
ଧରାଦେବୀ ଦେହେ ବୋଳିଦେଲା ପ୍ରାୟ କାହିଁ
ଦୁଇ ନଦୀଜଳ ମିଶି ସ୍ରୋତସ୍ୱାନ ସ୍ଥଳେ
ନେଉଅଛି କି ରଙ୍ଗରେ ମନକୁ ଓଟାରି,
ଅନ୍ୟସ୍ଥାନେ ଦେଖ ଦେଖ ଯମୁନା ସ୍ରୋତରେ
ଆନ୍ଦୋଳିତ ହୋଇ ଏହି ଭାଗୀରଥୀ ଜଳ
ପାଦପର ଛାଇ ତଳେ ପୂର୍ଣ୍ଣିମା ନିଶାରେ
ହରୁଅଛି ସୁଷମାକୁ ଧବଳ ଜ୍ୟୋତ୍ସ୍ନାର,
ଭାନୁସୁତା ଜଳବେଣୀ ଦେଖ କାହିଁ ପ୍ରିୟେ !

ମନ୍ଦାକିନୀ ସ୍ରୋତ ମଧ୍ୟେ ଖରବେଗେ ପଶି
ନିର୍ମଳ ଶରତକାଳେ ନୀରବ ଅମ୍ବରେ
ନୀଳ ନଭରେଖା ପର ଯାଉଅଛି ଦିଶି,
ଦେଖ ପୁଣି କେଉଁସ୍ଥାନେ ଏହି କାଳାଜଳ
ଗଙ୍ଗାର ତରଙ୍ଗମାନେ ଖଣ୍ଡିତ ହୋଇ
ଦିଶେ ଧଳାଭସ୍ମ ବୋଳା ଶଙ୍କର ଦେହରେ
ଖଣ୍ଡ ଖଣ୍ଡ କଳାନାଗ ପଡ଼ିଗଲେ ପରି
ଏହି ଗଙ୍ଗା ଯମୁନାର ସଙ୍ଗମ ସ୍ଥାନରେ
ସ୍ନାନକରି ଶୁଦ୍ଧଚିତ୍ତେ ତନୁ ତ୍ୟାଗକଲେ
ତତ୍ତ୍ୱଜ୍ଞାନ ବ୍ୟତିରେକେ ସୁଦ୍ଧା ଲୋକମାନେ
ଲଭନ୍ତି ନିର୍ବାଣ ମୁକ୍ତି, ପୁନର୍ବାର ଆଉ
ସୁଖଦୁଃଖପୂର୍ଣ୍ଣ ଭବେ ନ ପାନ୍ତି ଜନମ ।
ଏହି ସେ ନିଷାଦପତି ଗୁହଙ୍କ ନଗରୀ
ଯହିଁ ମୁହିଁ ଶିରୁ ଖୋଲି କନକ ମୁକୁଟ
ଭିଡିଲି ତାପସ ଯୋଗ୍ୟ ନବ ଜଟାଜୁଟ,
ଦେଖି ଯାହା ମନୋଦୁଃଖେ ସୁମନ୍ତ ସାରଥି
"କୈକେୟୀ ପୂରିଲା ଏବେ ତୁମ୍ଭ ମନୋରଥ"
ବୋଲି କାନ୍ଦି କାନ୍ଦି ଖେଦେ ଫେରାଇଲେ ରଥ ।
କନକ କମଳରେଣୁ ବୋଲି ଦେଉଅଛି
ଯକ୍ଷବାଳା ସ୍ତନେ ଯେଉଁ ଜଳକେଳି କାଳେ,
ବାରିଜାକ୍ଷି ! ଏହି ସେହି ସରଯୂ ତଟିନୀ,
ବେଦମତେ ଏ ତଟିନୀ ଲଭିଛନ୍ତି ଜନ୍ମ
କୈଳାସ ଦର୍ପଣରୂପୀ ମାନସ ହ୍ରଦରୁ,
ବହି ଯାଉଛନ୍ତି ଏହି ପବିତ୍ର ସରିତ୍
ଅଯୋଧ୍ୟାର ଉପକଣ୍ଠେ କଳ କଳ ସ୍ୱରେ ।
ଇକ୍ଷ୍ୱାକୁ ବଂଶୀୟ ନୃପେ ଅଶ୍ୱମେଧ ସାରି
ମାର୍ଜନା କରନ୍ତି ସଦା ଏହାଙ୍କ ଜଳରେ,
ତାହାଙ୍କର କୀର୍ତ୍ତିସ୍ତମ୍ଭ ଯଜ୍ଞ ଯୂପମାନେ
ପବିତ୍ରୁଁ ପବିତ୍ରତର ଏହାଙ୍କ ସଲିଳ,
ସ୍ନେହମୟୀ ମାତା ମୋର କୌଶଲ୍ୟା ସମାନ

ବନବାସୁଁ ସମାଗତ ଦେଖି ମୋତେ ପ୍ରାଣେ
ଧବଳ ତରଙ୍ଗ କର ଆଲିଙ୍ଗନ ଦାନେ
ତୋଷୁଛନ୍ତି ତରଙ୍ଗିଣୀ ଦେଖ ସ୍ନେହଭରେ,
ସଜଳ ଶୀକର ଧାରେ ମନସ୍ତାପ ହର ।
ସରଯୂ ସଲିଳା ଏହି ନଦୀ କୁଳେଶ୍ୱରୀ
ଏହାଙ୍କ ପୁଲିନଦେଶ ମାତା କୋଳ ପରି,
କ୍ଷୀର ସମ ସୁଧାମୟ ଏହାଙ୍କର ପୟ
ପିଇ ବଢିଛନ୍ତି ଏହି ଅଯୋଧ୍ୟାବାସିଏ ।
ପ୍ରିୟତମେ ଏ ତଟିନୀ ଅଟ ପୂଜନୀୟ
ରାମର, ସକଳ କାଳେ ଜନନୀ ପରାୟେ ।
ଗୋଧୂଳି ଗଗନ ସମ ଆରକ୍ତ ବରଣ
ଦେଖ ଧୂଳିରାଶି ଆଗେ ଉଡୁଛି କେମନ,
ହନୁମାନ ମୁଖୁଁ ସବୁ ଶୁଣି ମୋ ସନ୍ଦେଶ
ଧାର୍ମିକ ଭରତ ଭାଇ ସୈନ୍ୟ ସହିତରେ
ଆସୁଛନ୍ତି ଅଧବାଟୁଁ ସଖୋଳ ନେବାକୁ ।
ଖର ଦୂଷଣକୁ ନାଶି ଫେରିଲି ଯେ କାଳେ
ତୁମ୍ଭଙ୍କୁ ଲକ୍ଷ୍ମଣ ଯଥା ସମର୍ପିଲେ ମୋତେ
ପିତୃସତ୍ୟ ପାଳି ଏବେ ଫେରୁଅଛି ବନୁଁ
ରାଜଶ୍ରୀକୁ ତଥା ମୋତେ ସମର୍ପିବେ ସେହି ।
କୁଳପୁରୋହିତ ଆମ୍ଭ ଆସନ୍ତି ଆଗରେ;
ବଲ୍କଲ ବସନ ପିନ୍ଧି ପାଦେ ଚାଲି ଚାଲି
ଆସୁଛନ୍ତି ତାଙ୍କ ପଛେ ଦେଖ ଗୋ ! ଭରତ
ବୃଦ୍ଧ ପାତ୍ରମିତ୍ରମାନେ ଘେରଛନ୍ତି ପାଖେ,
ତହିଁ ପଛେ ରାଜସେନା ଚର ରଣଜୟୀ
ସାଗର ଲହରୀ ସମ ଆସନ୍ତି କି ରଙ୍ଗେ ।
ଦେଖ ପ୍ରିୟେ ! ଆସୁଛନ୍ତି ଅର୍ଘ୍ୟପାତ୍ର ଧରି
ଶୁଦ୍ଧାଚାରୀ ଜଟାଧାରୀ ଧାର୍ମିକ ଭରତ,
ଯୁବା ହୋଇଥିଲେ ସୁଦ୍ଧା ମୋ ମୁଖକୁ ଚାହିଁ
ପିତୃଦତ୍ତ, ଅଙ୍କଗତା ରାଜଶ୍ରୀକୁ ପାଇ
ଭୋଗ ନ କରିଣ ସେହି ଲକ୍ଷ୍ମୀକୁ ସତତ

ପାଳଛନ୍ତି ଅଦ୍ୟାପି ଅସିଧାର * ବ୍ରତ ।
ଏମନ୍ତ କହନ୍ତେ ରାମ ପୁଷ୍ପକ ବିମାନ ।
ତାଙ୍କ ମନୋଭାବ ବୁଝି ହୋଇ ଅବତୀର୍ଣ୍ଣ
ଆକାଶ ଦେଶରୁ ଶୀଘ୍ର ଅବନୀ ତଳକୁ,
ବିସ୍ମୟାଭିଭୂତ ହୋଇ ରହିଲେ ଅନାଇ
ଭରତର ଅନୁଗାମୀ ଅଯୋଧ୍ୟା ବାସିଏ ।
କପିରାଜ ସୁଗ୍ରୀବର କରେ କର ଦେଇ
ବିଭୀଷଣ ଦେଖାଇବା ମାର୍ଗରେ ସଧୀରେ
ସ୍ଫଟିକ ସୋପାନମାନ ଅତିକ୍ରମ କରି
ପୁଷ୍ପକ ରଥରୁ ତହୁଁ ଦଶାନନ ଅରି,
ଭ୍ରାତାସହ ଅବତୀର୍ଣ୍ଣ ହୋଇ ଭୂମି ତଳେ,
ସର୍ବାଗ୍ରେ ପ୍ରଣାମ କରି କୁଳପୁରୋହିତେ,
ଆନନ୍ଦାଶ୍ରୁପୂର୍ଣ୍ଣ ନେତ୍ରେ ତହୁଁ ସ୍ନେହଭରେ
ଭରତ ପ୍ରଦତ୍ତ ଅର୍ଘ୍ୟ ଘେନିଲେ ଆଦରେ ।
ଆଲିଙ୍ଗନ କରି ରାମ ସୋଦର ବେନିଙ୍କୁ
ମସ୍ତକ ଚୁମ୍ବନ କଲେ ବହୁକ୍ଷଣ ପରେ ।
ବରଗଛର ଓହଳ ପରାୟେ ଜଟିଳ
ପାଚିଲା ଦାଢିଆ ସେହି ବୃଦ୍ଧ ମନ୍ତ୍ରୀମାନେ,
ଭକ୍ତି ଗଦଗଦେ ନଇଁ ପ୍ରଣାମ କରନ୍ତେ
କରୁଣା ଦୃଷ୍ଟିରେ ତାଙ୍କ କୁଶଳ ପଚାରି
ରାମଚନ୍ଦ୍ର ସମ୍ଭାଷଣ କଲେ ସେମାନଙ୍କୁ ।
କହିଲେ ଶ୍ରୀରାମ ତହୁଁ ସୁମଧୁର ଗୀରେ
ଦେଖ ହେ ଭରତ ଏହୁ ବାନର ଈଶ୍ୱର,
ବିପଦ କାଳର ବନ୍ଧୁ ଅଟନ୍ତି ମୋହର,
ବିଶ୍ରବା ଋଷିଙ୍କ ସୁତ ଏହୁ ବିଭୀଷଣ,
ମହାମିତ୍ର ମୋର, ଯେନ ଶରାସନ କରେ
ବିନାଶିଲେ ଅରିକୁଳ, ଏମନ୍ତ କହନ୍ତେ
ରାବଣାରି, ସେ ଦୁହିଙ୍କୁ ସଙ୍କୋଚ ଆଗରେ

* ନିଜେ ଭୋଗ ନ କରି ପ୍ରତିନିଧିଭାବେ ରାଜ୍ୟପାଳନ ।

ପ୍ରେମଭରେ ବନ୍ଧୁ ତୋଳି ଭରତ ସୁମତି
ଲକ୍ଷ୍ମଣ ପାଖରେ ପରେ ହେଲେ ଉପନୀତ ।
ଭରତଙ୍କ ଚରଣରେ ଲୁଆଇଁ ମସ୍ତକ
ସାଷ୍ଟାଙ୍ଗେ ପ୍ରଣମିବାରୁ ସୁମିତ୍ରା ନନ୍ଦନ
ଉଠାଇ ଭରତ ତାଙ୍କୁ କଲେ ଆଲିଙ୍ଗନ,
ସେ ନବନ୍ଧ ଆଲିଙ୍ଗନେ ଭରତଙ୍କ ଉର
ଅନୁଭବ କଲା କ୍ଳେଶ, ସ୍ପର୍ଶିତ ହୋଇ
ମେଘନାଦ ଅସ୍ତ୍ରାଘାତେ କର୍କଶ ବନ୍ଧୁର
ଯଶସ୍ୱୀ ଲକ୍ଷ୍ମଣଙ୍କର ବିଶାଳ ବକ୍ଷରେ ।
ଶ୍ରୀରାମଙ୍କ ଆଦେଶରେ କପି ସେନାମାନେ
ଧରିଲେ ମନୁଷ୍ୟବେଶ ହର୍ଷ କୁତୂହଳେ,
ମଦସ୍ରାବୀ ଗଜବୃନ୍ଦେ ଆରୋହଣ କରି,
ଲଭିଲେ ବାନରମାନେ ପୂର୍ବ ପରିଚିତ
ଝରେଦ୍ୱାରି ମହାଗିରି ଆରୋହଣ ସୁଖ ।
ପ୍ରଭୁଙ୍କ ଆଦେଶ ପାଇ ବୀର ବିଭୀଷଣ
ପରିଜନ ସହ ରଥେ କଲେ ଆରୋହଣ,
ସେ ରଥରେ ବସି ସୁଖେ ନିଶାଚରମାନେ
ଲଙ୍କାର ସ୍ୟନ୍ଦନ ଶୋଭା ପକାଇଲେ ମନେ ।
ବସିଲେ ସୋଦରସହ ରଘୁକୁଳମଣି
ସୁଶୋଭନ ଧ୍ୱଜଶୋଭି କାମଗତି ରଥେ,
ବୁଧ ବୃହସ୍ପତି ସହ କିବା ନିଶାମଣି
ଆରୋହିଲେ ମନୋହର ସନ୍ଧ୍ୟାଘନପରେ,
କେତନ ପରସେ ଯହିଁ ସୌଦାମିନୀ ସ୍ଫୁରେ ।
ପ୍ରଳୟେ ବରାହରୂପୀ ମୁରାରି ଯେସନ
ଉଦ୍ଧାରିଲେ ରସାତଳୁଁ ଅବନୀ ଦେବୀଙ୍କୁ,
କିମ୍ବା ଯଥା ଆକାଶରୁ ମେଘମାଳ ତଡ଼ି
ପ୍ରକାଶେ ଶରତକାଳ ସ୍ୱଚ୍ଛ ଚନ୍ଦ୍ରମାକୁ
ତେମନ୍ତେ ଦଶବଦନଙ୍କୁ ସମରେ ସଂହାରି
ସତୀ ଶିରୋମଣି ଧନ୍ୟା ଯେଉଁ ଜାନକୀଙ୍କୁ
ଉଦ୍ଧାରିଲେ ରାମଚନ୍ଦ୍ର ରଘୁକୁଳସାଇଁ,

ସେ ସୀତାଙ୍କ ଚରଣରେ ମସ୍ତକ ଭରତ
ଲଗାଇଲେ ଭକ୍ତିଭରେ ଉଦ୍‌ଗତ ଚକ୍ଷୁରେ ।
ଯେ ପବିତ୍ର ପାଦଯୁଗ୍ମ ସୀତାଦେବୀଙ୍କର
ଦଶାନନ ପ୍ରଣୟକୁ ତୁଚ୍ଛ କରି ହେଲେ ।
ରଖିଥିଲା ପାତିବ୍ରତ୍ୟ ତେଜ ଏ ସଂସାରେ,
ଜନକନନ୍ଦିନୀଙ୍କର ସେ ପଦ କମଳେ
ଭ୍ରାତୃପ୍ରେମେ ଶୁଦ୍ଧତର ଭରତଙ୍କ ଶିର
ବ୍ରତ ସମାପନ ଅନ୍ତେ ହୋଇ ସମ୍ମିଳିତ
ଦୁହିଁଙ୍କର ପବିତ୍ରତା କଲା ସମ୍ପାଦନ
ଏ ସ୍ୱଭେ ଅଯୋଧ୍ୟାପତି ବୀର ରଘୁନାଥ
ଚତୁର୍ଦ୍ଦଶ ବର୍ଷ ଅନ୍ତେ ବାହୁଡ଼ିଲେ ପୁରେ ।
ଧାଉଁଥିଲେ ଆଗେ ଆଗେ ବ୍ୟଗ୍ର ପ୍ରଜାଗଣ
ଭୂତଳରେ, ନାନାରଙ୍ଗେ ଗଲ୍ପାଟମାଦେ ମାତି,
ତାଙ୍କ ପଛେ ପୁଷ୍ପଶୋଭି ପୁଷ୍ପକ ବିମାନ
ଯାଉଥିଲା ଆକାଶରେ ମନ୍ଥର ଗତିରେ
ସ୍ୱଜନଗଣଙ୍କ ସଙ୍ଗ କ୍ଷଣକାଳ ପରେ
ଅଯୋଧ୍ୟାର ଉପବନେ ପ୍ରବେଶି ଆନନ୍ଦେ
ଶତ୍ରୁଘ୍ନ ରଚିତ ରମ୍ୟ ପଟ୍ଟଭବନରେ
ଓହ୍ଲାଇଲେ ରାମଚନ୍ଦ୍ର ସ୍ୱଜନ ସଙ୍ଗରେ ।

---

# ଚତୁର୍ଦ୍ଦଶ ସର୍ଗ

ପହଞ୍ଚି ଦେଖିଲେ ତହିଁ ଦୁଇ ସହୋଦର
ଆଶ୍ରୟ ପାଦପଚ୍ୟୁତ ଲତାର ସମାନ
ସ୍ୱାମୀଙ୍କ ବିୟୋଗ ଦୁଃଖେ କାତର ହୋଇଣ
ବିଧବା ଜନନୀ ବେନି କୌଶଲ୍ୟା ସୁମିତ୍ରା
ବହିଛନ୍ତି ଅତିଶୟ ଶୋଚନୀୟ ଦଶା ।
ଜନନୀଙ୍କ ପାଶେ ଯାଇ ଭକ୍ତି ଗଦଗଦେ
ପଦ୍ମରେ ଲଗାଇ ଶିର ପ୍ରଣାମ କରନ୍ତେ
କୀର୍ତ୍ତିମନ୍ତ ଦୁଇଭାଇ ଜୟଶ୍ରୀ ମଣ୍ଡିତ
ଆଦରେ ତାଙ୍କର ଶିର ଅଁଇସି ମାତାଏ
ସ୍ପର୍ଶସୁଖେ ପୁତ୍ର ବୋଲି କଲେ ପରିଚୟ,
ଲୁପ୍ତ ହୋଇଥିଲା ଯେଣୁ ନେତ୍ରପଦ୍ମ ବେନି
ପ୍ରତ୍ୟାବୃତ୍ତ ପୁତ୍ରଲବ୍ଧ ଆନନ୍ଦାଶ୍ରୁ ଜଳେ ।
ହିମାଦ୍ରିରୁ ସୁଶୀତଳ ନୀର ଝର ଯଥା
ପ୍ରବାହର ବେଗବଶେ ଭସାଇ ନିଅଇ
ଗ୍ରୀଷ୍ମତପ୍ତ ସଲିଳକୁ ଗଙ୍ଗା ସରଯୂର,
ତେସନ କୌଶଲ୍ୟା ପୁଣି ସୁମିତ୍ରା ମାତାଙ୍କ
ଆନନ୍ଦ ଉତ୍ଫୁଲ୍ଲ ହୃଦୁଁ ଅଶ୍ରୁଧାର ବହି
ଦୂରକଲା ଶୋକଦଗ୍ଧ ନୟନ ବାଲିକୁ ।
ରାକ୍ଷସମାନଙ୍କ ଶରେ ଯାଇଥିଲା ଛିଡ଼ି
ପୁତ୍ରଙ୍କର ଦେହ, ତାହା ଅଁଇସି ଅଁଇସି
ସଦୟେ ଜନନୀ ଦୁହେଁ ବିଷାଦ ଅନ୍ତରେ
ନବ କ୍ଷତ ପରି ତାହୁ ମଣିଲେ ମନରେ,
ବୀର ପ୍ରସବିନୀ ହେବା ସହିଷ୍ଣୁ ନାରୀଙ୍କ
ବାଞ୍ଛନୀୟ ହେଲେ ସୁଦ୍ଧା, ଶତ୍ରୁକର ପାଇଁ
ସେ ପଣକୁ ଲଭିବାକୁ ନୋହିଲେ ଲାଳସୀ ।
'ସ୍ୱାମୀକ୍ଳେଶ ବିଧାୟିନୀ ମୁହିଁ ଅଲକ୍ଷଣୀ,
ବୋଲି ସୀତା ପ୍ରଣମିଲେ ଯାଇ ଭକ୍ତିଭରେ
ସ୍ନେହମୟୀ ଶାଶୁଙ୍କର ଚରଣ ଯୁଗଳେ,

ଉଠ ବତ୍ସେ ! ଉଠ ଉଠ ଭୂମିରୁ କଲ୍ୟାଣି ।
ଯବନ୍ଦ ଚରନ୍ଦ ଗୁଣେ ଶ୍ରୀରାମ ଲକ୍ଷ୍ମଣ
ପାରି ହୋଇଛନ୍ତି ଏହୁ ମହା ସଙ୍କଟରୁ ।
ଏହୁରୂପ ପ୍ରିୟ ସତ୍ୟ ବାକ୍ୟେ ଶାଶୁମାନେ
ତୋଷିଲେ ମଧୁରସ୍ୱରେ ବଧୂ ଜାନକୀଙ୍କୁ
ପରେ ମାତାଙ୍କର ସ୍ନେହ ଆନନ୍ଦାଶ୍ରୁ ନୀରେ,
ବଢ଼ିଲା ରାଘବଙ୍କର ଅଭିଷେକ ବିଧି
(କି ମଧୁର ଆହା ସେହି ଅଭିଷେକ କ୍ରିୟା)
ପରେ ବୃଦ୍ଧ ମନ୍ତ୍ରୀମାନେ ଶାସ୍ତ୍ର ବିଧିମତେ
ଅଭିଷେକ କରିବାକୁ ବଳାଇଲେ ମନ ।
ନଦୀ ସିନ୍ଧୁ ସରିତରୁ ଦୂଲାଇ ସଲିଳ
ବାନର ରାକ୍ଷସମାନେ ଜମା କଲେ ଆଣି ।
ମେଘରୁ ବରଷା ପାଣି ପଡ଼ଇ ଯେସନ
ଗିରିବର ବିନ୍ଧ୍ୟଗିରେ ଅବିଚ୍ଛିନ୍ନଧାରେ,
ତେସନ ସେ ସଂଗୃହୀତ ପବନ୍ଦ ସଲିଲ
ଜୟଶୀଳ ରାମଶିରେ ହେଲା ନିପତିତ ।
ସ୍ୱଭାବେ ତ ତପସ୍ୱୀର ବେଶେ ରଘୁମଣି
ବହିଥିଲେ ଅକଳ୍ପ ମୋହନ ମୂରତି,
ଏବେ ପୁଣି ରାଜୋଚିତ ବେଶେ ସଜ ହେଉଁ
ବଢ଼ିଲା ଦ୍ୱିଗୁଣେ ତାଙ୍କ କଳେବର କାନ୍ତି ।
ରାକ୍ଷସ ବାନର ସୈନ୍ୟ ସାମନ୍ତ ସହିତ
ବିଜେ ହେଲେ ପତାକିନୀ ରାଜଧାନୀ ମୁଖେ
ବୃଦ୍ଧ ମନ୍ତ୍ରୀଗଣ ଘେନ ରମ୍ୟରଥେ ବସି
ସିଞ୍ଚାଇଲେ ଚଣ୍ଡୁବେଣୀ ପୁର ମହିଳାଏ
ଅଞ୍ଜଳି ଅଞ୍ଜଳି ଖଇ ତାଙ୍କ ମସ୍ତକରେ
ପକାଇଲେ ମହାନନ୍ଦେ ପ୍ରାସାଦ ଉପରୁ ।
ବାଜିଲା ବିବିଧ ବାଦ୍ୟ ମେଦିନୀ କମ୍ପାଇ
ଶ୍ରବଣ ବଧିର ହେଲା ପୁରବାସୀଙ୍କର
ଶିରେ ହେମଶ୍ୱେତଛତ୍ର ଧରିଲେ ଭରତ,
ଧୀରେ ଧୀରେ ପଛେ ବସି ଲକ୍ଷ୍ମଣ ଶତ୍ରୁଘ୍ନ

ସ୍ୱମରେ ବ୍ୟଞ୍ଜନ କଲେ, ଦେଖି ମନେ ହେଲା
ସାମ, ଦାନ ଭେଦ, ଦଣ୍ଡ, ଏ ଚାରି ଉପାୟେ
ଆବର୍ତ୍ତିତ ହେଲେ କିବା ଭବେ ରଘୁନାଥ ।
ପଣ୍ୟାଗାରମାନଙ୍କରେ ଉଠୁଥିଲା ଯାହା
ସୁବାସିତ ଧୂମରାଜି କୃଷ୍ଣ ଅଗୁରୁର,
ମନ୍ଦବାୟୁ ବଶେ ତାହା ଇତସ୍ତତ ହୋଇ
ଦିଶିଲା, ରାମଙ୍କୁ ବନୁଁ ଫେରିବାର ଦେଖି
ବହୁଦିନୁ ବନ୍ଧାବେଣୀ ଏବେ ମୁକୁଳାଇ
ପୁରଲକ୍ଷ୍ମୀ ଝାଡ଼ନ୍ତି କି ବେଶ ହେବା ପାଇଁ ?
ଶାଶୁଙ୍କର ଯୋଗେ ଦିବ୍ୟ ବେଶ ଭୂଷା ରଚି
କ୍ଷୁଦ୍ର ବିମାନରେ ବସି ଯାଉଥିଲେ ସୀତା,
ପ୍ରାସାଦ ଉପରୁ ତାଙ୍କୁ ଦେଖି ଲଳନାଏ
ଭକ୍ତିରେ ଜୁହାର କଲେ ଯୁଗ୍ମହାତ ଯୋଡ଼ି ।
ଋଷିପତ୍ନୀ ଅନସୂୟା ଦତ୍ତ ମହୋଜ୍ଜ୍ୱଳ—
ଅକ୍ଷୟ ଭୂଷଣମାଳେ ବିମଣ୍ଡିତ ହୋଇ
ରଘୁକୁଳ କମଳିନୀ ଜନକ ନନ୍ଦିନୀ,
ଶୋଭୁଥିଲେ ସେ ଭୂଷାର ପ୍ରଭାମଣ୍ଡଳରେ,
ନିଜ ଶୁଦ୍ଧଚରିତର ପରୀକ୍ଷା ଦେବାକୁ
ପଶିଛନ୍ତି ଅଉଥରେ କିବା ଅନଳରେ ?
ସୁଗ୍ରୀବାଦି ବନ୍ଧୁଗଣେ ସୁସଜ୍ଜିତ ଗୃହେ
ବାସ ଦେଇ ଅନନ୍ତର ରଘୁକୁଳମଣି
ପ୍ରବେଶିଲେ ସବିଷାଦେ ପିତାଙ୍କ ପୁରରେ,
ପୂର୍ବ ଗୌରବର ମୂକସାକ୍ଷୀ ପ୍ରାୟେ ଯହିଁ
ଖଣ୍ଡକେତେ ଚିହ୍ନ ମାତ୍ର ଥିଲା ଅବଶିଷ୍ଟ
ପ୍ରବେଶି କହିଲେ ତହିଁ ମାତା କୈକେୟୀଙ୍କୁ
କରଯୋଡ଼ି ଭକ୍ତିଭରେ ଜୁହାରି ବିନୟେ,
ସ୍ୱର୍ଗର ସୁଫଳ ସମ ସତ୍ୟ ପ୍ରତିଜ୍ଞାରୁ
ଭ୍ରଷ୍ଟ ହୋଇ ନାହାନ୍ତି ଯା ସତ୍ୟବାଦୀ ପିତା
ସେ କେବଳ ଅଟେ ତୁମ୍ଭ ସୁକୃତର ଫଳ,
ଏହା କହି କଲେ ତାଙ୍କ ଲଜ୍ଜା ନିବାରଣ ।

କପିଧ୍ୱଜ, ଋକ୍ଷଧ୍ୱଜ ଆଦି ବୀରଗଣେ
ଏରୂପେ ଦୁର୍ଲ୍ଲଭ ଭୋଗ୍ୟ ପଦାର୍ଥ ଯୋଗାଇ
ପରିଚର୍ଯ୍ୟା କରାଇଲେ, ଇଚ୍ଛିବା ମାତ୍ରକେ
ଯାଉଥିଲ ତାଙ୍କ ପାଶେ ସକଳ ସମ୍ଭାର
ଅବଲମ୍ବେ, ତାହା ଦେଖି ବାନର ରାକ୍ଷସେ
ଅନ୍ତଃକରଣେ ବିସ୍ମୟରେ ହୋଇଲେ ଅଭିଭୂତ ।
ସନ୍ତୋଷିବା ପାଇଁ ଦୂରୁଁ ଆସିଥିଲେ ଯେତେ
ପୁଣ୍ୟାତ୍ମା ମହର୍ଷିମାନେ, ସତ୍କାର କରଣ
ଯଥାବିଧି, ତାଙ୍କ ମୁଖୁଁ ଶୁଣିଲେ ଆନନ୍ଦେ
ଗୌରବ ଗାଥମା ପର ନିଜ ବିକ୍ରମର
ଲଙ୍କାଧିପତିର ବାଲ୍ମୀକୀୟ ଚରିତ ।
କାର୍ଯ୍ୟଶେଷେ ଋଷିମାନେ ଗମିଲେ ସ୍ୱସ୍ଥାନେ,
ଆଉ ଯେତେକେତେ ରହି ରାକ୍ଷସ କପିଏ
ଖାଦ୍ୟ ପାନ ଆଦି ନାନା ପରିଚର୍ଯ୍ୟା ପାଇ
ଆନନ୍ଦ ମନରେ ତହିଁ ବଳସେଣ ସୁଖେ,
ବଦେଶରେ ଅଛୁଁ ବୋଲି ନ ପାରିଲେ ଜାଣି ।
ସମସ୍ତଙ୍କୁ ପରେ ଭାଳି ଜଣ ଜଣ କରି,
ବହୁମୂଲ୍ୟ ଉପହାର ସ୍ୱହସ୍ତେ ପ୍ରଦାନ
ଜାନକୀ ପ୍ରସନ୍ନ ମନେ କହିଲେ ମେଲାଣି ।
ଚଳିବା ମାତ୍ରକେ ଯେଉଁ ହୋଉଥିଲ ଊଦ୍ଧ୍ୱ,
ହରି ଆଣିଥିଲେ ଯାହା ବଳେ ରକ୍ଷଃମଣି
ଦେବଗଣଙ୍କୁ ରାବଣର ଅସ୍ତ୍ର ସହିତରେ,
ସ୍ୱର୍ଗର କୁସୁମ ସମ ସେହି ପୁଷ୍ପକକୁ
ଆଦେଶିଲେ ରାମ, ପୁଣି ବହିବା ନିମନ୍ତେ
ଧନେଶ୍ୱର କୁବେରଙ୍କୁ ପୂର୍ବପରି ଯାଇ,
ଏରୂପେ ଶ୍ରୀରଘୁରାଜ ପିତୃସତ୍ୟ ପାଳି
ଅନ୍ତେ ଶିରି ବନବାସ, ଘେନି ରାଜ୍ୟଭାର
ଧର୍ମ୍ମ, ଅର୍ଥ, କାମ ପ୍ରତି କଲେ ଯେରୂପ
ବ୍ୟବହାର, ସେହିରୂପ ଖାଇଙ୍କର ପ୍ରତି
ସରଳ ସୁନ୍ଦର ଯତ୍ନ କଲେ ପ୍ରଦର୍ଶନ ।

ଷଡ଼ଆନନରେ ଯଥା ଷଡ଼ାନନ ପୂର୍ବେ
କୃତ୍ତିକାଗଣର ସ୍ତନ ଯଥେଷ୍ଟରେ ପିଇ
ଆଦରେ ଦେଖାଉଥିଲେ ଅଭିନ୍ନ ଭାବକୁ,
ତେତେକେ ଭକ୍ତିଶ୍ରଦ୍ଧେ ଯେତୁ କରିଲେ ସଜ୍ଞା ?
ସର୍ବଦା ସମାନରୂପେ ଜନନୀମାନଙ୍କୁ ।
ଲୋଭ ଛାଡ଼ିଦେଇ ରାମ ପାଳନ୍ତେ ଧରଣୀ
ସକଳ ପରଜା ହେଲେ ମହା ଧନବନ୍ତ,
ଭୟ ବିଘ୍ନ ଦୂର ହୋଇ ହେଲେ ବିଦ୍ୟାବାନ,
ପୁତ୍ରକୁ ଶାସଇ ସ୍ନିଗ୍ଧ ଜନକ ଯେସନ
ତେସନ ପ୍ରଜାଙ୍କୁ ରାମ କରିଲେ ଶାସନ
ପିତା ଯଥା ତନୟର ଦୁଃଖ ବିନାଶଇ
ପ୍ରଜାଙ୍କର ସନ୍ତାପକୁ ହରିଲେ ସେ ତଥା ।
ଏହିରୂପେ ରାଜକାର୍ଯ୍ୟ ଆଲୋଚନା କରି
ଦିନ ନେଲେ ସୀତା ସହ ସୁଖେ ରଘୁମଣି
ଦେଖି ମନେ ହେଲା ନିଜେ ରାଜଲକ୍ଷ୍ମୀ କିବା।
ବିଦେହ ନନ୍ଦିନୀଙ୍କର ସ୍ୱରୂପ ଧରି
ମିଳନ୍ତି ରାମସହ ଉପଭୋଗ ଆଶେ,
ଚିତ୍ତରେ ସଞ୍ଚିତ ପୁରେ ହେନାଏ ବାହାର
ଇଚ୍ଛା ଅନୁରୂପ ନାନା ଭୋଗ୍ୟ ଦ୍ରବ୍ୟ ଲଭି
ପାଇଥିଲେ ଯେତେଦୁଃଖ ବନବାସ କାଳେ
ଚନ୍ଦ୍ରାନନା ତାହା ସୁଦ୍ଧା ହେଲେ ଆନନ୍ଦିତ ।
କିଛି ଦିନେ ବୈଦେହୀଙ୍କ ନୟନ ଯୁଗଳ
ଦିଶିଲା ଅଧିକତର ଚକ୍କଣ ଉଜ୍ଜ୍ୱଳ,
ଶରଦଭ୍ର ସମ ଧରି ପାଣ୍ଡୁର ବରଣ
ବଦନମଣ୍ଡଳ ତାଙ୍କ କଲା ପ୍ରକାଶିତ
ଗର୍ଭଚିହ୍ନ, ରାମ ମନେ ପ୍ରୀତି ଉପୁଜାଇ ।
ପ୍ରକାଶି ନିଜେ ସେ କିଛି ନ କହିଲେ ସୁଦ୍ଧା,
ଭଲ ଦର୍ଶେ ଲଜ୍ଜିତ ସୁନାସା ଶୋଭନା
ପ୍ରିୟତମ ପ୍ରେୟସୀଙ୍କୁ କୋଳରେ ବସାଇ
କହିଲେ ରହସ୍ୟେ ରାମ, କହ ପ୍ରିୟତମେ !

କି ଦ୍ରବ୍ୟ ପାଇଁକି ତୁମ୍ଭ ହୃଏ ଅଭିଳାଷ ?
ଶୁଣି ଲଜ୍ଜାବଶେ ଦେବୀ ଅନତବଦନେ
କହିଲେ, ହେ ନାଥ ଯହିଁ ଋଷିକମାନଙ୍କ
ତୃପ୍ତିଲାଗି ଫଳନ୍ତ୍ୟେ ନୀବାରର ଧାନ୍ୟ,
ଯେ ଧାନ୍ୟକୁ ଭକ୍ଷିଥାନ୍ତି ହିଂସ୍ର ଜନ୍ତୁମାନେ
ବୈଖାନସ ଋଷିବାଳା ପ୍ରୀତମଧେ ଯହିଁ,
କୁଶ ସମାକୀର୍ଣ୍ଣ ସେହି ଜାହ୍ନବୀ ତୀରର
ତପୋବନ ଦେଖିବାକୁ ବଳୁଛି ମୋ ମନ
ପ୍ରତିଶ୍ରୁତ ହୋଇ ପ୍ରିୟା ପ୍ରାର୍ଥନା ପୂରଣେ
ରଘୁନାଥ, ଅଭ୍ରଂଲିହ ପ୍ରସାଦ ଶିଖରେ
ଆରୋହିଲେ ପାର୍ଶ୍ୱଚରସଙ୍ଗ ଦେଖିବାକୁ
ହର୍ଷ କୋଳାହଳପୂର୍ଣ୍ଣ ଅଯୋଧ୍ୟା ନଗର ।
ଦେଖିଲେ ଆନନ୍ଦେ ବୀର ରାଜପଥ ଧାରେ
ରହିଛାନ୍ତି ସମୁଜ୍ଜ୍ୱଳ ଜପଣି ବୀଥିକା
ହୋଇଅଛି ସୁଶୋଭିତ, ସାଗରଗାମିନୀ
ମଞ୍ଜୁଳ ତରଣୀମାନେ ସରଯୂ ତଟିନୀ
ହରୁଅଛି ଜନ ମନ, ବେଶଭୂଷା ପ୍ରିୟ
ବିଳାସିନୀ ବିଳାସିଏ ସମବେତ ହୋଇ
ନଗରର ନିକଟସ୍ଥ ଉପବନେ ସୁଖେ
ବିହରନ୍ତି ନିର୍ବିବାଦେ ଅବାଧ ଆମୋଦେ !
ଅଗ୍ରଜ ବିଜୟୀ ବୀର ବିଶୁଦ୍ଧ ସ୍ୱଭାବ
ନାଗରାଜ, ବାସୁକିର ସମ ଦୀର୍ଘବାହୁ
ସର୍ବଲୋକ ପୂଜନୀୟ ଭରତ ସମ୍ରାଟ
ରାଘବେନ୍ଦ୍ର, ଅନୁଚରେ ସମ୍ବୋଧନ କରି
ପଚାରିଲେ କହ ଭଦ୍ର ! ପୁରବାସୀଗଣ
'କି କହି ଆଲାପନ୍ତି ମୋର ଚରିତ୍ର ସମ୍ବନ୍ଧେ ?'
ଆଗ୍ରହରେ, ଥର ଥର ଡାକୁ ପଚାରନ୍ତେ
କହିଲା ସେ, ମହାପ୍ରଭୁ ! ସକଳ ସମୟେ
ନଗରବାସୀଏ ସଦା ଗାନ କରୁଛନ୍ତି
ତୁମ୍ଭର ପ୍ରଶଂସାଗୀତ, କେବଳ ଏକାଙ୍ଗ

ଲଙ୍କାପୁରେ ଥିଲେ ସୀତା ରାକ୍ଷସ ଗୃହରେ
ରହିଅଛି ତାଙ୍କୁ ଯାହା ସେହି ବିଷୟରେ,
ଜଣାଯାଏ ତାଙ୍କ ମନେ ଖେଦ ଥିଲା ପରି,
ହାତୁଡ଼ି ଆଘାତ ପାଇ ଫାଟିଯାଏ ଯଥା
ଅନଳେ ସନ୍ତପ୍ତ ଲୌହ, ତେସନେ ପ୍ରିୟାର
ଗୁରୁତର ନିନ୍ଦାବାଦେ ଆହତ ହୋଇଣ
ବୈଦେହୀବଲ୍ଲଭଙ୍କ ହୃଦ ହେଲା ବିଦାରିତ
"ଗୁରୁତର ଏହି ମହା ଅକୀର୍ତ୍ତି ସହିବି
ନିରପରାଧିନୀ ବୋଲି ସୀତାକୁ ତେଜିବି"
ଏରୂପେ ବହୁତକାଳ ଚିନ୍ତା କରି କରି
କୌଣସି ସିଦ୍ଧାନ୍ତେ ବୀର ନ ପାରି ପହୁଞ୍ଚି,
ସଞ୍ଚାଳିତ ଦୋଳା ସମ ଏପାଖେ ସେପାଖେ
ଅନାୟତ୍ତେ ତାଙ୍କ ମନ ଭ୍ରମିଲା ଆରତେ ।
ନଯିବ ଏ ନିନ୍ଦା ଅନ୍ୟ ଉପାୟେ ବିଚାରି
ଦୃଢ଼ଚିତ୍ତେ, ପ୍ରାଣପ୍ରିୟା ଜନକ ସୁତାଙ୍କୁ
ଛାଡ଼ିବାକୁ ସ୍ଥିର କଲେ ଚିରଦିନ ପାଇଁ ।
ଭାର୍ଯ୍ୟାକୁ ଛାଡ଼ିବା ମହା କଠିନ ବିଷୟ
ସତ୍ୟ, ମାତ୍ର ବଳୀରୂପେ ଦେଇ ଶରୀରକୁ
ଇଚ୍ଛନ୍ତି ଗୌରବ ଯେଉଁ ଯଶରଙ୍କମାନେ,
ସେମାନଙ୍କ ପକ୍ଷେ ଭବେ କି ଅଛି ଆଶ୍ଚର୍ଯ୍ୟ ?
ଭୋଗ୍ୟ ପଦାର୍ଥର ଲୋଭ ଅତି ତୁଚ୍ଛ କଥା ।
ଦୁଃଖେ ସୋଦରଙ୍କୁ ଏଣୁ ଡାକି ରଘୁମଣି
ସ୍ୱୀୟ ଅପବାଦ କଥା କହିଲେ ଏସନ,
"ହେ ଭାଇ ! ମଳିନ ହୁଏ ଯେମନ୍ତ ଦର୍ପଣ
ଜଳସିକ୍ତ ସମୀରଣ ଲାଗିଲେ ତହିଁରେ,
ତେମନ୍ତ ମୁଁ ସଦାଚାରୀ ବିଶୁଦ୍ଧ ହେଲେହେଁ,
ମୋ ଯୋଗେ, ପବିତ୍ର ଅଜ ଏହି ରଘୁବଂଶେ
କେମନ୍ତ ଅସହନୀୟ କଳଙ୍କ କାଳିମା
ଅଲକ୍ଷିତେ ଧୀରେ ଧୀରେ ହୁଏ ଆରୋପିତ !
ଦେଖ ଜଳେ ତେଲବିନ୍ଦୁ ପରି ଏ କଳଙ୍କ

ଗଲାଣି ସକଳପୁର ଜନପଦେ ବ୍ୟାପି,
ପୂର୍ବେ କେବେ ଘଟି ନାହିଁ ଏରୂପ କଳଙ୍କ
ବିଶୁଦ୍ଧ ଏ ସୂର୍ଯ୍ୟବଂଶେ, ଏବେ ତା'ହା ଶୁଣି
କରତ ହେଉଛି ହୃଦ, ନ ପାରଇ ସହି ।
ହେଲେହେଁ ଜନକସୁତା ଆସନ୍ନପ୍ରସବା,
ଏହି ଘୋର ଅପବାଦୁଁ ମୁକୁଳିବା ଲାଗି
ଉପେକ୍ଷା ନ କରି କିଛି ଛାଡ଼ିବି ତାହାଙ୍କୁ
ଛାଡ଼ିଥିଲି ପୂର୍ବେ ଥରେ ଏମହୀକୁ ଯଥା,
(ମେଖଳା ସପ୍ତ ଏ ସିନ୍ଧୁ ଶୋଭେ ଯା କଟୀରେ) ।
ସୀତା ସେ ପବିତ୍ରମୟୀ ସତୀ ପତିବ୍ରତା
ଭଲରୂପେ ଜାଣେ ମୁହିଁ, ହେଲେ କି ହୋଇବ
ସତ୍ୟ ବା ଅସତ୍ୟ ହେଉ ହରଇ ମହିମା
ଅପବାଦ ଦେଖ ଲୋକେ ପୃଥିବୀ ଛାୟାକୁ
ଚନ୍ଦ୍ରର କଳଙ୍କ ବୋଲି କରନ୍ତି ଆରୋପ ।
ବିପକ୍ଷ ନାଶିଲି ଯାହା ସହି ଘୋର କଷ୍ଟ
ମୋହର ସେ ଶ୍ରମ ବୃଥା ହୋଇ ନାହିଁ ଭାଇ !
କହୁଥାନ୍ତେ ଭବେ ଲୋକେ ରାମ ରମଣୀକୁ
ହରିନେଲା ଦଶାନନ, ଉଦ୍ଧାରି ଶ୍ରୀରାମ
ନ ପାରିଲେ କିଛି କରି, ସେହି ଅପବାଦୁଁ
ମୁକ୍ତ ହୋଇଅଛି ଭାଇ ! ନାଶି ରାବଣକୁ ।
ରହିଅଛି ଠେକ ପୁଣି କୁଳର ଗୌରବ,
ଶତ୍ରୁତା ସାଧନ ପାଇଁ ଲାଗିଅଛି ତାହା,
ଚରଣ ପ୍ରହାର ଖାଇ ଓଲଟି କ୍ରୋଧରେ
ଭୀଷଣ ଭୁଜଙ୍ଗ ଯାହା କରଇ ଦଂଶନ
ରକ୍ତପାନ ପାଇଁ ତାହା ନୁହେଁ କଦାଚନ
ପ୍ରତିହିଂସା ବୃତ୍ତି ସିନା କରେ ଚରିତାର୍ଥ ।
ଏଣୁ ଏହି ଅପବାଦଶଲ୍ୟ ହୃଦୁଁ କାଢି
ରଖିବାକୁ ଇଚ୍ଛା କର ଯେବେ ଏ ଜୀବନ,
ତେବେ ତୁମ୍ଭେମାନେ ସର୍ବେ ଦୟାର୍ଦ୍ର ଚିତ୍ତରେ
ମୋର ସଂକଳ୍ପିତ କାର୍ଯ୍ୟେ ନ କର ବାରଣ ।"

ପୁଣ୍ୟମୟୀ ପତିବ୍ରତା ଜାନକୀର ପ୍ରତି
ଏ ଲୋକ ବିରୋଧ ଅତି କ୍ରୂର ବ୍ୟବହାର
କରୁଛନ୍ତି ରାମଚନ୍ଦ୍ର ଜାଣି ବୁଝି ଏହା
ଭ୍ରାତମାନେ, ନ ପାରିଲେ ନିବାରି ସେକାଳେ,
କ୍ଷମା ସମର୍ଥନ ପାଇଁ ନୋହିଲେ ଇଚ୍ଛୁକ ।
ପ୍ରସିଦ୍ଧ ଶରଣବନ୍ତ ସତ୍ୟବାଦୀ ରାମ
ଆଜ୍ଞାବହ ଲକ୍ଷ୍ମଣଙ୍କୁ ତହିଁରୁ ଏନାଇଁ
ସସ୍ନେହେ ନିର୍ଜନେ ବୀର କହିଲେ ଆଦେଶ—
"ତୁମ୍ଭ ଭ୍ରାତୃଜାୟା ସତୀ ଏବେ ଗର୍ଭବତୀ,
ତପୋବନ ଦେଖିବାକୁ ଚାହାନ୍ତି ସେ ଏଣୁ ,
ଆଶ୍ରମ ଦେଖିବା ଛଳେ ତାଙ୍କୁ ଡାକିନେଇ
ବାଲ୍ମୀକିଙ୍କ ମଠ ପାଶେ ଛାଡ଼ିଆସ ଯାଇ"
ଜନନୀର ମୁଣ୍ଡଟାକୁ ପିତାର ହୁକୁମେ
ପର୍ଶୁରାମ ହାଣିଥିଲେ ବାହାଦୂର ପରି,
ସେ ଦୃଷ୍ଟାନ୍ତ ଲକ୍ଷ୍ୟକରି ସଦା ଆଜ୍ଞାବହ
ଲକ୍ଷ୍ମଣ, ସ୍ୱୀକାର କଲେ ଆଜ୍ଞା ପାଳିବାକୁ
ଯେଣୁ କହି ନବସ୍ଥର ଗୁରୁଙ୍କ ହୁକୁମ
ଅବସ୍ତବେ ପାଳିବାକୁ କହୁଛି ପୁରାଣ ।
ପ୍ରବେଶି ଉଷାବେ ତହୁଁ ସୀତାଙ୍କ ପାଖରେ
କହିଲେ ଲକ୍ଷ୍ମଣ, 'ଆର୍ଯ୍ୟେ ! ଚାଲ ଦେଖିଯିବା
ଋଷିଙ୍କର ତପୋବନ ଶାନ୍ତିନିକେତନ'
ଅନୁକୂଳ କଥା ଶୁଣି ତୁଷ୍ଟ ହେଲେ ସତୀ ।
ଏକାଳେ ସୁମନ୍ତ ମନ୍ତ୍ରୀ ବେନି ଅଶ୍ୱ ଯୋଚି
ଉପସ୍ଥିତ କଲେ ଆଣି ଏକ ଦିବ୍ୟରଥ
ଆନ୍ଦୋଳନ ବିରହିତ, ଆରାମଦାୟକ,
(ଗର୍ଭିଣୀଏ ବସି ଯହିଁ କରନ୍ତି ଭ୍ରମଣ)
ଲକ୍ଷ୍ମଣ ଜାନକୀ ତହିଁ ଆରୋହି ଅଚିରେ
ଧୀରେ ତପୋବନ ମୁଖେ କରିଲେ ପ୍ରସ୍ଥାନ ।
ବାଟ ମଧ୍ୟେ ରମଣୀୟ ସ୍ଥାନ ଦେଖି ଦେଖି
କୃତଜ୍ଞ ଚିତ୍ତରେ ଦେବୀ ଏକାନ୍ତ ହୃଦୟେ

ଭାଷିଲେ 'ପ୍ରାଣେଶ ମୋର ମନତୁଷ୍ଟି ପାଇଁ
କେତେ ପ୍ରିୟ ଅନୁଷ୍ଠାନ କରୁଛନ୍ତି ଅହା,"
କିନ୍ତୁ ତାଙ୍କ ପକ୍ଷେ ସ୍ୱାମୀ କଳ୍ପଦ୍ରୁମ ନୋହୁ
ହୋଇଛନ୍ତି ବିଷବୃକ୍ଷ, ଏହା ସେ କାଳରେ
ଭ୍ରମେ ମୁଗ୍ଧା ହେଲେ ଧରି ନ ପାରିଲେ ଜାଣି ।
ଯିବାବେଳେ ପଥ ମଧ୍ୟେ ଗୋପନରେ ଯାହା
ରଖିଥିଲେ ମହାଦୁଃଖେ ସୁମିତ୍ରାନନ୍ଦନ,
ସୀତାଙ୍କ ଦକ୍ଷିଣ ନେତ୍ର ଘନଘନ ନାଚି
ସୂଚନା କରଇ, ଭାବୀ ସେ ଦୁଃସହ ଦୁଃଖ ।
ମ୍ଳାନ ହୋଇଗଲା କ୍ଷଣେ ବଦନମଣ୍ଡଳ
ଏହି ଦୁର୍ନିମିତ୍ତ ଦୁଃଖେ ଜନକସୁତାର ।
ତତ୍କ୍ଷଣେ ଦେବର ସହ ପ୍ରାଣେଶ୍ୱରଙ୍କର
ମଙ୍ଗଳକାମନା ସତୀ କଲେ ବାରମ୍ବାର ।
ଜାନକୀ ସହିତ ବୀର ଅଗ୍ରଜ ଆଜ୍ଞାରେ
ହେଲେ ଯହୁଁ ଭାଗୀରଥୀ ତୀରେ ଉପସ୍ଥିତ
ବନେ ବିସର୍ଜିବେ ତାଙ୍କୁ ବୋଲି କି ଜାହ୍ନବୀ
ବୀଚିଛଳେ କର ତୋଳି ଆଗେ ଉଚ୍ଚ ହୋଇ
ସୌମିତ୍ରୀଙ୍କୁ ନିବାରଣ କଲେ ବାରବାର ।
ଅଶ୍ୱ ଅଟକାଇ ରଥ ରଖନ୍ତେ ସାରଥି
ସୀତାସହ ସେ ରଥରୁ ଅବତରି ବୀର
ତାହାଙ୍କୁ ସଙ୍ଗରେ ଧରି କ୍ଷୁଦ୍ର ତରଣୀରେ
ନିମିଷକେ ଭାଗୀରଥୀ ହୋଇଗଲେ ପାର,
ନିଜ ସତ୍ୟ ପ୍ରତିଜ୍ଞାରୁ ହେଲପରି ପାରି ।
ନିଯୁନ ସେତକ ସହ ହୋଇଥିଲା ରୋଧ
ଲକ୍ଷ୍ମଣର କଣ୍ଠସ୍ୱର, କୌଣସି ପ୍ରକାରେ
ସରଳ କରିଣ ଗଳା ବାଷ୍ପ ଗଦଗଦେ
କହିଲେ ରାମଙ୍କ ସେହି ଦାରୁଣ ଆଦେଶ,
ଭୀଷ୍ଣ ଉତ୍ପାଦକ ଘୋର ଅକାଳ ଜଳଦ
ଶସ୍ୟନାଶୀ ଶିଳାମାଳ ବରଷିଲା ପରି,
ସେ କଠୋର ବାକ୍ୟବାଣେ ଅଧୀରେ ସୁନ୍ଦରୀ

ବାତାହତ ଲତା ପରି ପଡ଼ିଲେ ଭୂମିରେ,
ତାହାଙ୍କ ଦେହରୁ ଖସି ଅଳଙ୍କାରମାନ
ସେ ଲତାର ଫୁଲ ପରି ହୋଇଗଲା ବିସ୍ତ
ମୂର୍ଚ୍ଛା ଭଙ୍ଗ ପଡଥିଲେ ବହୁକ୍ଷଣପାଏ,
ପର ପରିତ୍ୟାଗ ଦୁଃଖ ଏଣୁ ସେ କାଳରେ
ବୁଝି ପାରିଥିଲେ ନାହିଁ ଜନକ ସୁତା ସତୀ,
ମାତ୍ର ଲକ୍ଷ୍ମଣଙ୍କ ଯତ୍ନେ ସଂଜ୍ଞା ଲଭି କ୍ରମେ
ମହାଦୁଃଖେ ଦଗ୍ଧ ହେଲେ ଅନ୍ତରେ ଅନ୍ତରେ ।
ଜ୍ଞାନଶୂନ୍ୟ ହୋଇ ଭୂମେ ପଡ଼ିଥିବାଠାରୁ
ଚେତନା ତାହାଙ୍କ ପକ୍ଷେ ହେଲା ବଡ଼ମନା ।
ହେଲେହେଁ ସେ ପୁଣ୍ୟରୂପେ ବୃଜନ ବର୍ଜିତ
ବିସର୍ଜନ କଲେ ତାଙ୍କୁ ବିନା ଦୋଷେ ରାମ,
ଲଭିଲେହେଁ ଏହିରୂପ ମନ୍ଦ ଆଚରଣ
ସ୍ୱାମୀ ପାଖୁ, ଛଳେ ଦୋଷ ନ ଦେଇ ତାହାଙ୍କୁ,
ଆପଣାକୁ କର୍ମହୀନା ଦୁଷ୍କୃତକାରିଣୀ
ବୋଲି ପୁନଃ ପୁନଃ ନିନ୍ଦା କଲେ କପାଳକୁ ।
ବାଲ୍ମୀକି ଆଶ୍ରମ ପଥ ଦେଖାଇ ଅଧୀରେ
ଆଶ୍ୱାସ ପ୍ରଦାନ ଅନ୍ତ ଚକିଲେ ସଶୋକେ
ସୌମିତ୍ରୀ କହିଲେ ତାଙ୍କୁ ବାଷ୍ପରୁଦ୍ଧ ସ୍ୱରେ,
ଦେବି ! ପରାଧୀନ ମୁହିଁ, ଦୁର୍ଲଙ୍ଘ୍ୟ ରାଜାଜ୍ଞା
ଏବେ ପାଳିବାକୁ ଯାଇ କି ଘୋର ନିଷ୍ଠୁର
ଅମାନୁଷୀ ବ୍ୟବହାର ପାଷଣ୍ଡ ପରାଏ
ତୁମ୍ଭପ୍ରତି ଆଚରିଛି କ୍ଷମା କର ସତୀ !
ଏତେବୋଲି ପଦତଳେ ପଡ଼ିଲେ କାତରେ ।
ଦେବରଙ୍କୁ ସସ୍ନେହରେ ସଧୀରେ ଉଠାଇ
କହିଲେ ଆଦରେ, ବତ୍ସ ! ବସ୍ତୁ ସେଉଁପରି
ଇନ୍ଦ୍ରଙ୍କର ଆଜ୍ଞାବହ ତେମନ୍ତେ ତୁମ୍ଭେ ବୀର,
ଜ୍ୟେଷ୍ଠଙ୍କ ଆଦେଶ କେବେ ନ କର ଲଙ୍ଘନ,
ଆଶୀର୍ବାଦ କରୁଅଛି ହୁଅ ଚିରଜୀବୀ,
ଶାଶୁମାନଙ୍କର ପଦେ ପ୍ରଣାମ ଜଣାଇ,

କହିବ ସୁଶୀଳ ! ତାଙ୍କୁ, ଏ ଅଭାଗିନୀର
ଗର୍ଭସ୍ଥ ବାଳକେ ଯେମନ୍ତେ କରିବେ କଲ୍ୟାଣ ।
କହିବ ରାଜାଙ୍କୁ ବାବୁ ମୋ ନାମରେ ଯାଇ
ଅଗ୍ନିରେ ପରୀକ୍ଷା କରି ନେଇଥିଲେ ସୁଦ୍ଧା
ସର୍ବଜନ ସମକ୍ଷରେ, କଲେ ପରତ୍ୟାଗ
ଲୋକ ଅପବାଦ ଶୁଣି, ହୋଇଛି କି ଏହା
ସୁପ୍ରସିଦ୍ଧ ରଘୁକୁଳ ଉପଯୁକ୍ତ କାର୍ଯ୍ୟ ?
କିମ୍ବା ତାଙ୍କ ସୁଚରିତ୍ର ଜ୍ଞାନ ଗାମ୍ଭୀର୍ଯ୍ୟର ?
ସ୍ୱଭାବେ ସର୍ବତୋଭାବେ ସକଳ ସମୟେ
ହିତାହିତ ବୁଝିବାରେ ଅଟଳ କ୍ଷମତା
ଅଛି ବାବୁ ତାହାଙ୍କର, ସ୍ୱଇଚ୍ଛାରେ ସେହି
କରିଛନ୍ତି ଏହିପରି, କଦାପି ଏ କଥା
ନୁହଇ ସମ୍ଭବପର, ଚିର ଅଭାଗିନୀ
ଦୁଃଖିନୀ ମୁଁ, ମୋର ପୂର୍ବଜନ୍ମ ପାତକରୁ
ଘଟିଛି ଏ ଘୋରତମ ବିଷମ ବିପାକ,
ବଜ୍ରନାଦ ସମ ଯାହା ହେଉ ନାହିଁ ସହ ।
ବନବାସକାଳେ ଛାଡ଼ି ଏ ରାଜଲକ୍ଷ୍ମୀଙ୍କି
ମୋର ସଙ୍ଗେ ଥିଲେ ବନେ, ସେଥିଲାଗି ଏବା
ମୁଁ ତାଙ୍କର ଗୃହେ ରହି ତାଙ୍କ ସହ ସୁଖେ
ମଧୁର ମିଳନେ କାଳ କାଟୁଥିଲି ଦେଖି
ଲକ୍ଷ୍ମୀଙ୍କର ତାହା ସହ୍ୟ ହେଲା ନାହିଁ ଆଉ ।
ନିଶାଚରକୁଳ ଯୋଗେ ବାଧିତ ହୋଇଲେ
ତପସ୍ୱିନୀମାନଙ୍କର ସ୍ୱାମୀ ସକଳଙ୍କୁ,
ଯାହାଙ୍କ ପ୍ରସାଦେ ମୁହିଁ ରକ୍ଷା କରୁଥିଲି
ସଦାକାଳେ ଯତନେ, ଏବେ ସେହି ନିଜେ
ବିରହିତ ଥାଇଁ ଥାଇଁ କିରୂପେ ଶରଣ
ଲୋଡ଼ିବ ମୁଁ ବନବାସୀ ସେ ସନ୍ତମାନଙ୍କ ।
ଏହି ଯେ ବିରହ ବ୍ୟାଧି କାଳାନଳ ସମ
ଦହୁଅଛି ଅହରହ, ନ ଲଭିବ କେବେ
ଜୀବ ଥିବାଯାଏ ଏହା' ଯେଣୁ ଏକାବେଳେ ।

ହୋଇଅଛି ଏ ଜୀବନ ପ୍ରୟୋଜନଶୂନ୍ୟ ।
ମାତ୍ର ମୋ ଉଦରେ ତାଙ୍କ ଯେଉଁ ଦିବ୍ୟ ତେଜ
ରହିଅଛି ବିଦ୍ୟମାନ, ତାହାର ରକ୍ଷଣେ
ଅବଶ୍ୟ କର୍ତ୍ତବ୍ୟ ମୋର, ନୋହିଲେ ଏକ୍ଷଣି
ପିଣ୍ଡ ଛାଡ଼ି ଏ ପରାଣ ଯାଇଥାନ୍ତା ଚଳି ।
ସନ୍ତାନ ଜନ୍ମିବା ପରେ ଏଣୁ ସ୍ଥିରମତେ
ସୂର୍ଯ୍ୟଙ୍କୁ ଅନାଇଁ ନେତ୍ରେ ଏକଧ୍ୟାନେ ରହି
କରିବି ଏରୂପେ ତପ, ଜନ୍ମଜନ୍ମାନ୍ତରେ
ଯେପରି ସେ ହେବେ ଏହି ଦୁଃଖିନୀର ପତି,
ପରସ୍ପରେ କେବେ ପୁଣି ନୋହିବ ବିଚ୍ଛେଦ ।
ବର୍ଣ୍ଣାଶ୍ରମ ସକଳଙ୍କ ପାଳନ କରତା
ଅଟନ୍ତି ରାଜନ ଭବେ ମନୁଙ୍କ ମତରେ,
ଏଣୁ ସେ ଯଦ୍ୟପି ମୋତେ ଏରୂପ କଷ୍ଟରେ
ନିର୍ବାସନ କଲେ ବନେ, ତଥାପି ସଦୟେ
ସାଧାରଣ ତାପସୀଙ୍କ ମଧ୍ୟେ ଗଣ୍ୟ କରି
ବାବୁ ହେ, ତତ୍ତ୍ୱାବଧାନ କରିବେ ନାହିଁ କି ?"
ହୃଦବିଦାରକ ଏହି କରୁଣବଚନ
ଆକର୍ଣ୍ଣି ଶ୍ରୀରାମ ଭାଇ, ସଲଜ୍ଜେ, ସଖେଦେ,
'ଯେ ଆଜ୍ଞା' ଭଣିଣ ତହୁଁ ହେଲେ ଧୀରେ ଧୀରେ
ଦୃଷ୍ଟିପଥୁଁ ଅନ୍ତର୍ଦ୍ଧାନ, ଜନକ ନନ୍ଦନୀ
ଭୟାକୁଳ କୁରରୀର ପର ଶୋକାକୁଳେ
କାନ୍ଦିଲେ ଭୂତଳେ ପଡ଼ି ବାହୁନି ବାହୁନି,
ମୟୂରମୟୂରୀମାନେ ନୃତ୍ୟାମୋଦ ଛାଡ଼ି
ସତୀଙ୍କ ରୋଦନ ଶୁଣି ରହିଲେ ଦୁଃଖରେ ।
ପୁଷ୍ପ ପତନର ଛଳେ ଅଶ୍ରୁ ପରିତ୍ୟାଗି
ନିକଟରେ ଅବସ୍ଥିତ ତରୁଲତାଗଣ
କାନ୍ଦିଲେ କାନନେ ଅହା ଦୁଃଖିନୀ ଦୁଃଖରେ ।
ଗ୍ରୀବା ଟେକି ମୃଗମାନେ ବିସର୍ଜି ଅଧୀରେ
କବଳିତ କୁଶାଙ୍କୁର ହେଲେ ମ୍ରିୟମାଣ ।
ଏରୂପେ ଅରଣ୍ୟ ସୀମା ଗମ୍ଭୀର ବିଷାଦେ

ସୀତାଙ୍କର ବେଦନାରେ ପରିପୂର୍ଣ୍ଣ ହୋଇ
ଶ୍ରୀରାମଙ୍କ ଗୃହସମ ହେଲା ଶୋକାକୁଳ ।
ଶବର ବାଣରେ ବନେ କ୍ରୌଞ୍ଚ ମିଥୁନକୁ
ତା' ପରେ ସେମାନେ ମହା ଯନ୍ତ୍ରଣା ବ୍ୟାକୁଳେ
ଛଟପଟ ହୋଇ ତଳେ ପଡ଼ିବାର ଦେଖି
ଯାହାଙ୍କର ଅସମ୍ଭାଳ ଶୋକ ଉଚ୍ଛଳଣ
ଶ୍ଳୋକରୂପେ ମୋହିଲା ଏ ଅବନୀ ଖଣ୍ଡକୁ,
ସେହି ବାଲ୍ମୀକି ଋଷି ଆସିଥିଲେ ବନେ
ସଂଗ୍ରହ କରିବା ପାଇଁ କୁଶ, ହୋମକାଠ ।
ଶୁଣି ସମୀପରେ ଏହି କ୍ରନ୍ଦନର ଧ୍ୱନି
ସୀତାଙ୍କ ନିକଟେ ଆସି ହେଲେ ଉପସ୍ଥିତ ।
ବୁଝିହୋଇ ଯାଉଥିବା ନୟନ ଜଳରେ
ଜାନକୀଙ୍କ ନେତ୍ରବେନି, ଜାନି ପଣନ୍ତରେ
ପୋଛି ଦେଇ ତାହା ସଙ୍ଗେ ଶୋକପରିହରି
ଭକ୍ତିଭରେ ମହର୍ଷିଙ୍କ ବନ୍ଦିଲେ ଚରଣ ।
ଆକୃତିରୁ ଗର୍ଭଚିହ୍ନ ଦେଖି ମହାତପି
ସୁପୁତ୍ରର ମାତାହୁଅ ବୋଲି ସ୍ନେହଭରେ
ଆଶୀର୍ବାଦ କରି, ଧୀରେ କହିଲେ ଏମନ୍ତ ।—
"ଜାନକି ! ସମାଧିବଳେ ଜାଣୁଅଛି ମୁହିଁ
ମିଥ୍ୟା ଅପବାଦ ଭୟେ କୌଶଲ୍ୟା ନନ୍ଦନ
ବିସର୍ଜ୍ଜନ କରିଛନ୍ତି ତୁମ୍ଭଙ୍କୁ ଏ ବନେ;
ନ କାନ୍ଦଗୋ ସେଥିପାଇ, ପୁଣ୍ୟ ପତିବ୍ରତେ !
ପାଇଲଣି ପିତୃଗୃହସମ ଏ ଆଶ୍ରମ ।
ତୁମ୍ଭ ପ୍ରିୟତମ ସ୍ୱାମୀ କଲେହେଁ ଉତ୍ଖାତ
ତ୍ରିଭୁବନ କଣ୍ଟକକୁ, ଧ୍ୱଂସି ଦୈତ୍ୟକୁଳ,
ଅନୁପମ ରଣ୍ଜନ୍ୟ ସତ୍ୟସନ୍ଧଙ୍କ ହେଲେହେଁ,
ତବ ପ୍ରତି ଅକାରଣେ ଆଚରିଲେ ଯାହା,
ଏ ମହା ଦୂଷିତ ଗୀତ, ଦୂର ବ୍ୟବହାର
ସେଥିପାଇଁ ପ୍ରକୃତରେ ବିଦେହ ନନ୍ଦିନୀ
ହୋଇଛି ମୁଁ ଅସନ୍ତୁଷ୍ଟ ତାହାଙ୍କ ଉପରେ ।

ସମୁଜ୍ଜ୍ୱଳ ସାର୍ବଭୌମ ମୋର ପ୍ରିୟସଖା
ମହାରାଜ ଦଶରଥ ତୁମ୍ଭର ଶ୍ୱଶୁର ।
ତବ ପିତୃଦେବ ଦେବ ! ରାଜର୍ଷି ଜନକ
ବଞ୍ଚନ୍ତି ବିରତ ସଦା ସାଧୁଜନଙ୍କର
ହରୁଛନ୍ତି ଭବଦୁଃଖ, ତୁମ୍ଭେ ପୁଣି ଧନ୍ୟ !
ପତିବ୍ରତା ବନିତାଙ୍କ ମୁକୁଟରୂପିଣୀ
ଏଣୁ ସବୁରୂପେ ଅଟ କରୁଣାଭାଜନ !
ଏ ମଠ-ଚହାଣି ପଶୁପକ୍ଷୀମାନେ ସୁଦ୍ଧା
ଶାନ୍ତିସୁଖେ ରହିଛନ୍ତି ଅଗୋ ଗୁଣଶୀଳେ !
ମୁନିକୁମାରୀଙ୍କ ସଙ୍ଗସୁଖ ସଦା ଲଭି
ନିର୍ଭୟେ ଏଥିରେ ରହ, ହେବ ଯଥାକାଳେ
ସମ୍ପାଦିତ ସବିଧିରେ ତୁମ୍ଭ ସନ୍ତାନଙ୍କ
ଯେତେକ ସଂସ୍କାର ବିଧି ଜାତକର୍ମ ଆଦି ।
ଏ ତମସା ତଟିନୀର ଶୁଭ୍ର ନୀରଦେଶ
ପରିପୂର୍ଣ୍ଣ ତପସ୍ୱୀଙ୍କ କୁଟୀରମାଳରେ,
କଳୁଷନାଶିନୀ ପୁଣି ଏହାଙ୍କର ନୀର,
ତହିଁ ସୁଖେ ସ୍ନାନ କରି ରମ୍ୟ ପୁଳିନରେ
ପୂଜାକର କରଯୋଡ଼ି ଦୈବତ୍ୟ ଉଦ୍ଦେଶେ,
ଅଚିରେ ମାନସ ବୃତ୍ତି ହେବ ସୁପ୍ରସନ୍ନ ।
ଋତୁଜାତ ଫଳମୂଳ, ନୀବାରର ଧାନ
ପୂଜାଯୋଗ୍ୟ ଉପହାର ଯୋଗାଇ ଆନନ୍ଦେ
ସର୍ବଦା ସରଳମନା ମୁନି କୁମାରୀଏ
ସୁମଧୁର ସମ୍ଭାଷଣେ, ଉଦାର କଥାରେ,
ତୁମ୍ଭର ଏ ନବ ଦୁଃଖ ହରିନେବେ ସତ୍ୟ !
ପାଣିବନ୍ଧୁ ମାଠିଆରେ ଶକ୍ତି ଅନୁସାରୀ
ବଢ଼ାଇ ଆଶ୍ରମ ଜାତ ଶିଶୁ ବୃକ୍ଷମାନ,
ସନ୍ତାନ ଜନ୍ମିବା ଆଗୁଁ ନିଃସନ୍ଦେହରୂପେ
ସନ୍ତାନ ପାଳନ ସୁଖ ଲଭିବ ଦେବିଲ ।"
କୃପାଦ୍ରୁତ ହୋଇ ସତୀ ଦୟାର୍ଦ୍ର ହୃଦୟ
ତପୋଧନ ବାଲ୍ମୀକିଙ୍କ ଏହି ଅନୁଗ୍ରହେ,

ସ୍ଖଳିଲେ ମନ୍ତ୍ରରେ ଦୁଃଖେ ମହର୍ଷି ପଶ୍ଚାତେ
ତପୋବନେ, ଯହିଁ ଶାନ୍ତ ସ୍ୱଭାବ କୁରଙ୍ଗେ
ସନ୍ଧ୍ୟା ସମାଗମ ଦେଖି ବେଢ଼ି ରହିଥିଲେ
ହୋମବେଦୀ ଚାରିପାଖେ ନିର୍ଭୟ ହୃଦୟେ ।
ତୁଷ୍ଟ ହେଲେ ଜାନକୀଙ୍କୁ ଦେଖି ତାପସୀଏ ।
ସ୍ପନ୍ଦନ କଲେ କଲେ ଚତୁର୍ଦ୍ଦଶୀ ଯାଏ (୧)
ଚନ୍ଦ୍ରମାରୁ ପିତୃଲୋକେ ପିଇ ସାରିଲାରୁ
ଅବଶିଷ୍ଟ କଳା ଯଥା ସେହି ଚନ୍ଦ୍ରମାର
ଔଷଧେ ଅର୍ପିତ ହୁଏ ଅମାବାସ୍ୟା ରାତ୍ରେ,
ତେମନ୍ତେ ଶୋକେ ଅବସନ୍ନ, ଭରତ ବଧୂର
କଳା ମାତ୍ର ଅବଶିଷ୍ଟା ଅନାଥା ସୀତାଙ୍କୁ
ତପସ୍ୱିନୀଙ୍କର ହସ୍ତେ ସମର୍ପିଲେ ମୁନି ।
ସମୁଚିତରୂପେ ପୂଜା ନୀରାଜନା ସାରି
ସନ୍ଧ୍ୟାକାଳେ ସେ ବାଳାଏ ଦେଲେ ମହାଦରେ
ରମଣୀ ଲଙ୍କମଭୂତା ଭରତେଶ୍ୱରୀଙ୍କି
ଅବସ୍ଥାନ ପାଇଁ କ୍ଷୁଦ୍ର ପତ୍ରର କୁଟୀର,
ଇଙ୍ଗୁଦ ତୈଳରେ ଯହିଁ ଜଳି ଦୀପଶିଖା
ଭିତରେ ଦେଖାଉଥିଲା ମୃଗଚର୍ମ ଶଯ୍ୟା ।
ଯଥାବିଧି ସ୍ନାନ ଶେଷେ ପାଠ ବଦଳରେ
ବଲ୍କଳ ବସନ ପିନ୍ଧି ରହିଲେ କୁଟୀରେ,
ଅତିଥିମାନଙ୍କ ପୂଜା ସମାପି ସଯତ୍ନେ
ସ୍ୱାମୀଙ୍କ ସନ୍ତାନ ରକ୍ଷା ଲାଗି ଅନିଚ୍ଛାରେ
ଭକ୍ଷି କନ୍ଦମୂଳ ଅଙ୍ଗ ରକ୍ଷା କଲେ ତନ୍ୱୀ ।
ଇନ୍ଦ୍ରଜିତ ଜେତା ବୀର ଲକ୍ଷ୍ମଣ ଏ ଦିଗେ
ଅଯୋଧ୍ୟାନଗରେ ଫେରି ଯଥା ସମୟରେ
ପତ୍ନୀ ତ୍ୟାଗେ ଅନୁତପ୍ତ ଶ୍ରୀରାମଚନ୍ଦ୍ରଙ୍କୁ
ରାଜାଜ୍ଞା ପାଳନ ପୁଣି ଜାନକୀ ବିଳାପ—
ଆଦି ସର୍ବସମାଚାର କଲେ ନିବେଦନ ।

(୧) ଅମାୟାନ୍ତୁ ସଦା ସୋମ ଔଷଧିଃ ପ୍ରତିପଦ୍ୟତେ (ପରାଶର)

ପୌଷମାସେ ଚନ୍ଦ୍ର ଯଥା ବର୍ଷଇ ନରବେ
ଶିଶିରରାଶିକୁ ରାତେ, ତେହ୍ନେ ରଘୁମଣି
ଲକ୍ଷ୍ମଣ ନିକଟୁଁ ଶୁଣି ସକଳ ବୃତ୍ତାନ୍ତ
ଅନ୍ତରର ନେତ୍ରୁଁ ନୀର କଲେ ପରିହାର ।
ଅପବାଦ ଭୟେ ସିନା ପ୍ରାଣ ପ୍ରେୟସୀଙ୍କୁ
ଦୂର କରି ଦେଇଥିଲେ ରାଜୀବଲୋଚନ,
ମନରୁ ସେ ଭଲେ କାହିଁ କରନ୍ତେ ଅନ୍ତର?
ସ୍ୱଭାବରେ ଶାନ୍ତ, ଶିଷ୍ଟ, ଗମ୍ଭୀର ମୂରତି
ପୁଣି କ୍ରୋଧ ପରିଶୂନ୍ୟ ଅଟନ୍ତି ଶ୍ରୀରାମ,
ଏଣୁ ସେ ହୃଦରେ ଦମି ନୂତନ ଶୋକକୁ
ସକଳ କଲ୍ୟାଣ ଇଚ୍ଛି ପ୍ରଜାମାନଙ୍କର
ସହୋଦରଗଣ ସହ ସମାନ ଭାବରେ
ଶ୍ରୀବୃଦ୍ଧି ସମ୍ପନ୍ନ ରାଜ୍ୟ ପାଳିଲେ ଯତନେ ।
ପତିବ୍ରତା, ସ୍ୱରୁଶୀଳା, ପୁଣି ଏକମାତ୍ର
ପ୍ରେୟସୀ ଗୃହିଣୀ ତାଙ୍କ ଥିଲେହେଁ ମୈଥିଳୀ
ଲୋକ ଅପବାଦ ଭୟେ ତ୍ୟାଗ କଲେ ତାଙ୍କୁ
ରାମଚନ୍ଦ୍ର, ଏଣୁ ସଦା ରାଜଲକ୍ଷ୍ମୀ ଦେବୀ
ସପତ୍ନୀଶୂନ୍ୟାର ପରି ରହି ହୃଦୟରେ
ବିସ୍ତାରିଲେ ଦିବ୍ୟ ଶୋଭା, ଗୃହଧନ୍ଦା ଛାଡ଼ି
ଯେଣୁ ରାଜକାର୍ଯ୍ୟେ ବୀର ହୋଇଲେ ନିଯୁକ୍ତ ।
ସୁଗୁଣା ଗୃହିଣୀ ଛାଡ଼ି ଅଯୋଧ୍ୟାଈଶ୍ୱର
ଅନ୍ୟ ଭାର୍ଯ୍ୟା ପରିଗ୍ରହ କଲେ ନାହିଁ ଆଉ,
ପ୍ରିୟତମା ପ୍ରତିମୂର୍ତ୍ତି ସ୍ୱର୍ଣ୍ଣରେ ବିରଚି
ତାହାଯୋଗେ ଅଶ୍ୱମେଧ ଆଦି ଯଜ୍ଞ କଲେ
ଜନରବୁଁ ଏହା ଶୁଣି ଜନକନନ୍ଦିନୀ
ସମ୍ବରିଲେ ମାନସରୁ ସ୍ୱାମୀ ତ୍ୟାଗ ଦୁଃଖ,
ପ୍ରଗାଢ଼ ପ୍ରେମର ନିଷ୍ଠା ସ୍ନେହର ମହିମା
କହିଦେଲା ସ୍ୱାମୀଙ୍କର ତ୍ୟାଗ ସ୍ୱୀକାରତା ।

# ପଞ୍ଚଦଶ ସର୍ଗ

ସୀତାଙ୍କୁ ବିସର୍ଜି ବନେ ଦୁଃଖିତ ମନରେ
ସମ୍ରାଟ ଶ୍ରୀରାମଚନ୍ଦ୍ର, ସାଗର ମେଖଳା
ଏକମାତ୍ର ପୃଥିବୀକୁ କଲେ ଉପଭୋଗ,
ଆତ୍ମୀୟମାନଙ୍କ ଶତ ଅନୁରୋଧେ ସୁଦ୍ଧା
ପୁନର୍ବିବାହରେ ଆଉ ନବଳାଇ ମନ ।
ଲବଣ ରାକ୍ଷସ ଯୋଗେ ଯାଗ କ୍ରିୟାମାନ
ସେହିକାଳେ ପୁନଃ ପୁନଃ ହେବାରୁ ବିଲୁପ୍ତ,
ଯମୁନା ତଟିନୀ ତୀରବାସୀ ମୁନିଗଣ
ଶରଣ ପଶିଲେ ଆସି ଆତଙ୍କେ ବିକଳେ
ରକ୍ଷାଲାଗି, ଅଯୋଧ୍ୟାର ନରେଶଙ୍କ ପାଖେ ।
ଠାଇ ରହିଥିଲେ ସେହି ତପୋଧନମାନେ
ଶ୍ରୀରାମଙ୍କ ଅପେକ୍ଷାରେ ବହୁକାଳ ଯାଏ,
ନିଜତେଜେ ଲବଣକୁ ନକରି ଆଘାତ ;
ଦୈତ୍ୟ ଉପଦ୍ରବୁଁ ତାଙ୍କୁ କରିବାକୁ ରକ୍ଷା
କ୍ଷତ୍ରିୟ ରାଜନ କେହି ନୋହିଲେ ସମର୍ଥ,
ଶାପରୂପ ନିଦାରୁଣ ମହାସ୍ତ୍ର ପ୍ରୟୋଗେ
କରନ୍ତି ସେମାନେ ସିନା ତପସ୍ୟାର କ୍ଷୟ ।
ଋଷିଙ୍କ ଆଗରେ ରାମ କଲେ ଅଙ୍ଗୀକାର
ଉପସ୍ଥିତ ସେ ବିଘ୍ନର ଆଶୁ ପ୍ରତିକାରେ,
ଧର୍ମରକ୍ଷା ଲାଗି ଯେଣୁ ଦାଶରଥିରୂପେ
ଅବତୀର୍ଣ୍ଣ ହୋଇଥିଲେ ଅବନୀ ତଳେ ସେ ।
କହିଲେ ମୁନିଏ ତାଙ୍କୁ ଲବଣ ଦୈତ୍ୟର
ନିଧନ ଉପାୟ ଯେତେ, ଶୂଳଥିଲେ କରେ
ତିନିପୁରେ ଦୁରାଶୟ ଅଟଇ ଦୁର୍ଜ୍ଜୟ,
ଆକ୍ରମଣ କରିବାକୁ ହେବ ସେହିକାଳେ
ଯେବେ ଶୂଳ ଶୂନ୍ୟହସ୍ତେ ଥିବ ସେ ଦୁର୍ମତି ।
ତପସ୍ୱୀଙ୍କ ରକ୍ଷାଅର୍ଥେ କହିଲେ ଆଦେଶ
ଶତ୍ରୁଘ୍ନଙ୍କୁ ରାବଣାରି, ନିଜର ନାମକୁ

ଶତ୍ରୁ ହନନ ତବ ସାର୍ଥକର ବୋଲି,
ହୁଏ ସାଧାରଣ ପ୍ରଥା ଖଣ୍ଡିତ ଯେସନ
ଏକ ଶତ୍ରୁ ଯୁକ୍ତିବଳେ ତେସନ ସର୍ବଦା
ରଘୁକୁଳ ବୀରମାନେ ହୁଅନ୍ତି ସମର୍ଥ,
ଏହାଙ୍କ ନାଶିବା ଲାଗି ଅରକୁ ସମରେ
ଜ୍ୟେଷ୍ଠ ରାମଚନ୍ଦ୍ରଙ୍କର ଆଶୀର୍ବାଦ ଘେନି
ବିକଶିତ ମନୋହର କୁସୁମ ନିକରେ
ଅତ୍ୟନ୍ତ ସୁବାସପୂର୍ଣ୍ଣ ମଞ୍ଜୁ ବନସ୍ଥଳୀ
ଦେଖି ଦେଖି ଶତ୍ରୁଘ୍ନ ନିର୍ଭୀକ ହୃଦୟେ
ଲବଣ ବିନାଶ ଲାଗି ଗମିଲେ ଉତ୍ସାହେ ।
ସଂଯୋଜିତ ହୁଏ ଯଥା 'ଅଧି' ଉପସର୍ଗ
ଅଧ୍ୟାପନାର୍ଥକ 'ଇ' ଧାତୁର ପଶ୍ଚାତରେ,
କାର୍ଯ୍ୟସିଦ୍ଧି ଲାଗି ତଥା ରାମଙ୍କ ଆଦେଶେ
ସଜ୍ଜିତ ସେନାଏ ଗଲେ ତାଙ୍କ ପଛେ ପଛେ ।
ଆଗେ ଆଗେ ଚାଲି ଚାଲି ଦେଖାଉଣ ଥିଲେ
ଅସ୍ପଷ୍ଟ ବାଟର ଚିହ୍ନ ମୁନିଏ ଚଞ୍ଚଲେ
ପଛେ ସମୁଜ୍ଜ୍ୱଳ ବେଶେ ଶତ୍ରୁଘ୍ନ ସୁମନ୍ତ
ବସି ରମ୍ୟ ରଥପରେ ଶୋଭା ପାଉଥିଲେ,
ବାଲଖିଲ୍ୟ ଋଷିଙ୍କର ପଛେ ସୂର୍ଯ୍ୟପରି ।
ବାସ କଲେ ଏକରାତ୍ରି ଗମନ ସମୟେ
ପଥ ମଧ୍ୟେ ବାଲ୍ମୀକିଙ୍କ ପୁଣ୍ୟ ତପୋବନେ,
ତାହାଙ୍କର ରଥଚକ୍ର ଘର୍ଘର ଶବ୍ଦରେ
ସେ ମଠର ଶାନ୍ତଶୀଳ କୁରଙ୍ଗ କୁରଙ୍ଗୀ
ଅନିମିଷେ ଏକ ଧ୍ୟାନେ ରହିଲେ ଅନାଇଁ ।
ହାତୀ ଘୋଡ଼ା, ରଥ ସୈନ୍ୟ ସାମନ୍ତ ସହିତ
ଚାଲି ଚାଲି ଅତିଦୂର ପଥକ୍ଳାନ୍ତ ବଶେ
ଶତ୍ରୁଘ୍ନ ମୁନିଙ୍କ ମଠେ ପ୍ରବେଶ ହୁଅନ୍ତେ,
ତପୋବଳେ ଉପୁଜାଇ ନାନା ଉପଚାର
ପୂଜା ପରିଚର୍ଯ୍ୟା ଋଷି କଲେ ତାହାଙ୍କର ।
ପ୍ରସବିଲେ ସେହି ଦିନ ମୁନିଙ୍କ ମଠରେ

ସମତ ତନୟ ବେନ ସର୍ବାଙ୍ଗ ସୁନ୍ଦର,
ରଘୁକୁଳ ପାଠଗଣୀ, ଜନ୍ମ କଲେ କବା
ପ୍ରଶଂଶିତ କୋପ, ଦଣ୍ଡ ଦୁଇ ବସୁନ୍ଧରେ ?
ସୁଖେ ଜାତ ହେବା ଶୁଣି ଯୁଗଳ ତନୟ
ଭ୍ରାତୃଜାୟା ଜାନକୀଙ୍କ· ପୁଣି ସେମାନଙ୍କ
କୁଶଳ ସମ୍ବାଦ ଲଭି, ପ୍ରଫୁଲ୍ଲ ଚିତ୍ତରେ
ପ୍ରାତଃକାଳେ ସବନୟେ କୃତାଞ୍ଜଳିପୁଟେ
ପ୍ରଣମି ମହର୍ଷି ପଦେ, ରଥରେ ଆରୋହି
ଗମିଲେ ଶତ୍ରୁଘ୍ନ ଶୂର ପୂର୍ବଦନ ପରେ ।
କ୍ରମେ ଉପନୀତ ହୋଇ ଲବଣ ଦୈତ୍ୟର
ମଧୁପଘ୍ନ ନାମ ପୁରେ, ରହିଲେ ସତର୍କେ
ମୁନିଙ୍କ ନିର୍ଦ୍ଦେଶ ସ୍ଥାନେ ଶତ୍ରୁଘ୍ନ ସୁମତି ।
ଅଲକ୍ଷଣ ନ ଯାଉଣୁ କାନନ ପ୍ରାନ୍ତରୁ
ପ୍ରବେଶିଲା ମହାକାୟ *କୁମ୍ଭୀନସୀସୁତ,
ବନସର୍ଜ୍ୟ ନଜ ପ୍ରାପ୍ୟ ଗଜମ୍ବର ପର
ବହୁବିଧ ମୃତପ୍ରାଣୀ ସଙ୍ଗତରେ ଘେନ ।
ଘନ ଧୂମରାଶି ସମ ଧୂସର ବରଣ
ସର୍ବ ଦେହୁଁ ଚର୍ମପର ଉଠୁଥିଲା ଗନ୍ଧ,
ପିଙ୍ଗଳ ବରଣ କେଶ ଅଗ୍ନି ଶିଖା ପରି
ରହିଥିଲା ଠିଆ ହୋଇ, ପରବାରରୁପେ
ଘେନ ସଙ୍ଗେ ରକ୍ତବର୍ଣ୍ଣ, ସାକ୍ଷାତ ଚିତାଗ୍ନି
ପସୟେ ଦୁରସ୍ତା ଦର୍ପେ ଆସିଲା ଭ୍ରୂଭଙ୍ଗେ ।
ଶୂଳହୀନ ଦେଖି ତାକୁ ଛେଦିଲେ ଶତ୍ରୁଘ୍ନ,
ଦପଟର ଅଣୁମାନ ଛିଦ୍ର ପାଇଁ ପାଇଁ
ପ୍ରହାର କରଇ ଯେହ୍ନେ ଜୟଲକ୍ଷ୍ମୀ ସିନା
ହୋଇଥାନ୍ତି ସଦାକାଳେ ତାର ଅନୁକୂଳ ।
ଶତ୍ରୁଘ୍ନକୁ ଦେଖି ଦୁଷ୍ଟ ଗର୍ଜ୍ଜି ବାରମ୍ବାର
ଅତି ଦମ୍ଭେ ଅଣ୍ଟକର କହିଲା ଏମନ୍ତ,

* ଲବଣ ଜନନୀ କୁମ୍ଭୀନସୀ ରାବଣର ଭଗିନୀ ।

'ଅନ୍ତରେ ବଧାତା ମୋର ପରେ ଦୟାବନ୍ତ
ଆହାର ସାମଗ୍ରୀରୂପେ ତୋତେ ଷୀଣକାୟ ।
ପ୍ରେରଛନ୍ତି ଏହିସ୍ଥାନେ, କ୍ଷୁଧାର୍ତ୍ତ ଅଛି ମୁଁ,
ଭୋଜନ କରଣ ତୋତେ ହେବ ପରତୃପ୍ତ ।'
ଏହିରୂପେ ତର୍ଜ୍ଜି ରୋଷେ ରାମାନୁଜ ନାଶେ
ଅଭଗସ୍ଥ ଉଚ୍ଚ ଏକ ମହାଶାଳ ତରୁ
ଉପାଡ଼ିଲ ବଳେ ଦୁଷ୍ଟ ଘାସପଛ ପର ।
ସୁଶାଣିତ ବାଣମାର ଲକ୍ଷ୍ମଣ ସୋଦର
ପକାଇଲେ ଖଣ୍ଡ ଖଣ୍ଡ କର ଭୁମିତଳେ
ରାକ୍ଷସ ପ୍ରେରିତ ସେହି ଭୀମ ତରୁବରେ
ଅଧବାଟେ, ନପାରିଲ ଡାଳ ଖଣ୍ଡେ ସୁଦ୍ଧା
ଆସିବାକୁ ତାଙ୍କ ପାଶେ, କେବଳ ତାହାର
ପୁଷ୍ପ ରେଣୁମାନ ଉଡ଼ ବୋଲହେଲ ଦେହେ ।
ବନସ୍ଥ ହୁଅନ୍ତେ ବୃଥା, କ୍ରୋଧରେ ଅସୁର
ଯମର ସାକ୍ଷାତ ଭୀମ ବଜ୍ରମୁଷ୍ଟି ସମ—
ସୁବିଶାଳ ଶିଳା ଏକ ଘେନି ଘୋର ନାଦେ
କରିଲ ନିକ୍ଷେପ ବଳେ ତାହାଙ୍କ ଉପରେ,
କର୍ଣ୍ଣପାଏ ଟାଣି ଗୁଣ ସୁମିତ୍ରାନନ୍ଦନ,
ଐନ୍ଦ୍ର ଅସ୍ତ୍ର ପ୍ରହାରିଲେ ଅବ୍ୟର୍ଥ ସନ୍ଧାନେ,
ଚୂର୍ଣ୍ଣ ହୋଇ ସେ ବାଣରେ ତୀବ୍ର ଅଘାତରେ
ତେତେବଡ଼ ଶିଳାଗୋଟା ନିମିଷେ ମାତ୍ରରେ
ତଳେ ପଡ଼ି ସ୍ତୂପଅଢ଼େ ହୋଇଗଲା ବନ୍ଧ ।
ଦକ୍ଷିଣ ବାହୁକୁ ତୋଳି ତର୍ଜ୍ଜି ଗୀର ବେଗେ
ଧାବମାନ ହେଲ ଦୈତ୍ୟ ଶତ୍ରୁଘ୍ନକୁ ଲକ୍ଷି୍ୟ,
ସେ ଭୀଷଣ ଦୃଶ୍ୟ ଦେଖି ମନେ ହେଲ ଦୁରୁଁ
ଏକମାତ୍ର ତୁଙ୍ଗ ତାଳତରୁ ଶିରେ ରହି
ଝଞ୍ଜାବାତେ ଗୈରବର ଆସଇ କି ଉଡ଼ି ?
ପଲକେ ବୈଷ୍ଣବ ଅସ୍ତ୍ର ମନ୍ତ୍ରପୁତ କରି
ପ୍ରୟୋଗିଲେ ବୀରମଣି, ତାହାର ଅଘାତେ
ବିଦୀର୍ଣ୍ଣ ହୃଦୟେ ତଳେ ହୋଇ ନିପତିତ

ଦୁର୍ବୃତ୍ତ ଲବଣ ଦୈତ୍ୟ, ଏକପକ୍ଷେ ଯଥା
ଚର୍ମାବଳ ଧରଣୀକୁ, ଅନ୍ୟପକ୍ଷେ ତଥା
ସେ ଆଶ୍ରମ ବାସୀଙ୍କର ଦୁରନ୍ତ ଯମ ।
ପଡ଼ିଲେ ଶକୁନି ଗୃଧ୍ର ଅକାଣ୍ଡ ଯେତେକ
ଦୈତ୍ୟପରେ ପୁଞ୍ଜ ପୁଞ୍ଜ, ସହସା ତେତେକ
ତାର ଯୋଗ୍ୟ ପ୍ରତିଦ୍ୱନ୍ଦ୍ୱୀ ଶତ୍ରୁଘ୍ନ ମସ୍ତକେ,
ସୁରଭି କୁସୁମ ବୃଷ୍ଟି ହେଲା ଦେବଲୋକୁଁ ।
ବାସବାର ଶୂରସିଂହ ଇନ୍ଦ୍ରଜିତ ଜେତା
ଯଶସ୍ୱୀ ଲକ୍ଷ୍ମଣଙ୍କର ସହୋଦର ବୋଲି
ମଣିଲେ ନିଜକୁ ଜଣେ ବୀର ଶତ୍ରୁଘନ,
ମହାକାୟ ଲବଣକୁ ବଧି ଘୋର ରଣେ।
ସ୍ୱଷ୍ଟ ନାଶରେ ଅତି ଚରିତାର୍ଥ ହୋଇ
ତପସ୍ୱୀ ନିକର ମିଳି ବିବିଧ ପ୍ରକାରେ
ସ୍ତୁତି କଲେ ଶତ୍ରୁଘ୍ନଙ୍କୁ, ବିକ୍ରମ ପ୍ରଭାବେ
ହୋଇଥିଲା ସମୁନ୍ନତ ଯେଉଁ ଶିରଦେଶ
ଋଷିଙ୍କ ସ୍ତବରେ ଏବେ ଲଜ୍ଜାଭରେ ତାହା
ହୋଇଗଲା ଅବନତ ସୁମିତ୍ରା ସୁତଙ୍କ,
ମହାତ୍ମାମାନଙ୍କ ଏହା ଅଟଇ ଲକ୍ଷଣ ।
ସୁନ୍ଦର ଆକୃତି ସଙ୍ଗ ଥିଲା ଶତ୍ରୁଘ୍ନଙ୍କ
ସୁମଧୁର ବ୍ୟବହାର, ନ ଥିଲା ଧନରେ
ଭଲେମାତ୍ର ସ୍ପୃହା ତାଙ୍କ, ଯେଣୁ ଥିଲେ ଅଙ୍ଗେ
ମହାର୍ଘ୍ୟ ଭୂଷଣରୂପେ ଯଶକୁ କେବଳ।
ଏହିରୂପେ ଲବଣକୁ ନାଶି ବୀରବର
ଋଷିମାନଙ୍କର ତପବିଘ୍ନ ଘୁଞ୍ଚାଇଣ
କାଳିନ୍ଦୀ ତଟିନୀ ତଟେ ରଚିଲେ କୌଶଳେ
ମଥୁରା ନାମରେ ପୁରୀ ଜନମନୋହରା ।
ସେ ନଗରେ ରାଜା ହୋଇ ପାଳିଲେ ଯତନେ
ପୁତ୍ର ନିର୍ବିଶେଷେ ସ୍ୱୀୟ ପ୍ରଜା ନିକରକୁ,
ନିର୍ମାଣିଲେ ରାଜପଥ, ଖୋଳି କୁଲ୍ୟାମାନ
ରକ୍ଷାକଲେ ଅନାବୃଷ୍ଟି କ୍ଲିଷ୍ଟ ଶସ୍ୟକୁଳ।

ଥିଲେ ସେହି ବହୁବିଧ ଗୁଣରେ ଗରିଷ୍ଠ,
ତାଙ୍କ କମନୀୟ ନବ ମଧୁର ଚରିତ୍ର
ପ୍ରତ୍ୟକ୍ଷ ହୋଇ ସେହି ନଗରବାସୀଙ୍କ
ପ୍ରକୃତିରେ, ବହୁମୂଲ୍ୟ ଐଶ୍ୱର୍ଯ୍ୟ ସମ୍ଭାରେ
ପରିପୂର୍ଣ୍ଣ କଲା ପୁର, ଦେଖି ହେଲା ପ୍ରତେ
ପୁରପୁରୁଁ ଅନ୍ତରକୁ ବାସିନ୍ଦାମାନଙ୍କୁ
ଅପହରଣ କରି ଅବା ଉପନବେଶିତ
ହୋଇଲା ଏ ପୁରଗୋଟି ଅମରବାଞ୍ଛିତ ।
ସ୍ୱଚ୍ଛ ଚକ୍ରବାକ ଶୋଭା ସମ୍ପନ୍ନା ତଟିନୀ,
ଏଣେ ଯାହା ଅବନୀର ହେମବେଣୀ ପରି,
ବହୁଥିଲା ଧୀରେ ଧୀରେ ଏପୁର ପାର୍ଶ୍ୱରେ,
ପ୍ରାସାଦ ଉପରୁ ଏହି ନୈସର୍ଗିକ ଛବି
ଦେଖି ବାରବାର ବୀର ବଢ଼ ପ୍ରୀତମନେ
ନିସର୍ଗ ସୁନ୍ଦର ସେହି ମଥୁରା ନଗରେ
ପ୍ରଜାବୃନ୍ଦ ସେନ ସୁଖେ କାଟିଲେ ସମୟ ।
ଏଣେ ଦଶରଥଙ୍କର ପ୍ରିୟତମ ସଖା
ଜନକଙ୍କ ମନ୍ତ୍ରଦାତା ମହର୍ଷି ବାଲ୍ମୀକି
ଅତିଶୟ ପ୍ରୀତିବଶେ ଆଦରେ ଉତ୍ସାହେ
ସୀତାଙ୍କର ବେନି ସୁତ କୁଶ ଲବଙ୍କର
ଯଥାବିଧି ସମାଧିଲେ ସଂସ୍କାର ବିଧାନ ।
କୁଶ ଲବ (୧) ଯୋଗେ ଋଷି ପୋଛିଣ କୌଶଳେ
ଗର୍ଭଲଗ୍ନ କ୍ଲେଦମାନ, ରଖିଲେ ବେନିଙ୍କ
'କୁଶ, ଲବ' ନାମ ମତେ କୁଶ, ଲବ ବୋଲି ।
ଶୈଶବ ସମୟୁ କ୍ରମେ ଅଷ୍ଟକମ କରୁଁ
ପଢ଼ାଇଲେ ବେଦ ବିଦ୍ୟା ବାଲ୍ମୀକି ସୁତଙ୍କୁ,
ଶିକ୍ଷାଦେଲେ କବିତାର ଆଦ ବୀଜରୂପୀ
ଗାଇବାକୁ ନିଜ କୃତ ରାମାୟଣ ଗୀତ,
ଦୁଇଭାଇ ଜନନୀର ଆଗେ ମୃଦୁସ୍ୱରେ

(୧) ଲବ ଗୋପୁଚ୍ଛ ରୋମ ।

ଶ୍ରୀରାମଙ୍କ ଲୋକୋତ୍ତର ମଧୁର ଚରିତ,
ଗାଇ ଗାଇ କରୁଥିଲେ କିଞ୍ଚିତ ଲାଘବ
ସ୍ନେହମୟୀ ମାତାଙ୍କର ବିରହ ବେଦନା ।
ଏକାଳେ ତ୍ରେତାଗ୍ନି ପରି ଅତି ତେଜୋବନ୍ତ
ଭରତ ପ୍ରଭୃତି ଅନ୍ୟ ତିନ ଭାଇଙ୍କର
ପତ୍ନୀମାନେ ଜନ୍ମ କଲେ ଦୁଇ ଦୁଇ ସୁତ ।
ଶତ୍ରୁଘ୍ନ ତାହାଙ୍କ ପ୍ରିୟ ଯୁଗଳ ତନୟ—
ଶତ୍ରୁଘାତୀ ସୁବାହୁଙ୍କୁ ନିଜ ଉପାର୍ଜିତ
ବିଦିଶା, ମଥୁରା ନାମ୍ନି ଦୁଇ ନଗରୀରେ
ପ୍ରତିଷ୍ଠିତ କରି ସେହି ନଗରକୁ ଛାଡ଼ି
ବାହୁଡ଼ିଲେ ଅଯୋଧ୍ୟାକୁ ଅଶ୍ୱସ୍କାରୂଢ
ବାଲ୍ମୀକି ଆଶ୍ରମ ବାଟେ, ମୈଥିଳୀ ତନୟ
କୁଶ ଲବଙ୍କର ସହୁଁ ରାମାୟଣ ଗାନେ
ଉତ୍କଣ୍ଠେ କୁରଙ୍ଗଗଣ ଥିଲେ ସ୍ଥିର ଭାବେ ।
ତପୋଭଙ୍ଗ ଭୟେ ବୀର ନ ପଶି ଆଶ୍ରମେ
ଅତିକ୍ରମି ସେ ମଠକୁ ଅନ୍ୟ ବାଟ ଦେଇ
ଯଥାକାଳେ ପ୍ରବେଶିଲେ ପୌରଜନ ସହ
ପରିଷ୍କୃତ ରାଜପଥେ, ତୋରଣ ମାଳିକା
ରଘୁକୁଳ ରାଜଧାନୀ ଅଯୋଧ୍ୟା ନଗରେ
ସୁଖେ ପୁରବାସୀବୃନ୍ଦ ମହା ଆଡ଼ମ୍ବରେ
ବିଲୋକିଲେ ବୀରେନ୍ଦ୍ରକୁ ପରମ ଗୌରବେ,
ବନ୍ଦାଣ ରତନଥାଳୀ ଘେନି କରପଦ୍ମେ
ସମ୍ପାଦିଲେ ସୁନ୍ଦରୀଏ ନୀରାଜନା ବିଧି
ପ୍ରବେଶି ସଭାରେ ବୀର ହୋଇଲେ ମିଳିତ
ଅଯୋଧ୍ୟାନାଥଙ୍କ ସହ, ସଭାସଦଗଣେ
ବେଢ଼ି ରହିଥିଲେ ତାଙ୍କୁ, ସୀତା ଛଡ଼ା ଏବେ
ହୋଇଥିଲେ ପୃଥିବୀର କେବଳ ସେ ପତି !
ପ୍ରଣମିଲେ ପଦଯୁଗେ ମହାରାଜାଙ୍କର
ଭକ୍ତିଭରେ ବୀରମଣି, ହର୍ଷେ ରଘୁନାଥ
ପ୍ରଶଂସିଲେ ଶିରଚୁମ୍ବି ଆଶୀର୍ବାଦ କରି ।

ଏରୂପେ ବସ୍ତୁଙ୍କୁ ସିନା ଅଭିନନ୍ଦି ଥିଲେ
ମହୋଲ୍ଲାସେ ଦେବଗଣ ଫେରିଲେ ଯେବେ ସେ
କାଳନେମୀ ଦୈତ୍ୟ ନାଶି ଅଶେଷ ସମରେ ।
ସୁସ୍ୱରନ୍ତେ ଗ୍ରମ ତାଙ୍କୁ, ଯଥାଯଥ ରୂପେ
ନବେଦିଲେ ସମସ୍ତଙ୍କ କୁଶଳ ସମ୍ବାଦ,
କେବଳ କହିଲେ ନାହିଁ ଲବକୁଶଙ୍କର
ଜନ୍ମକଥା, ଯେଣୁ ମୁନି ମନା କରିଥିଲେ,
ସକଳ ବୃତ୍ତାନ୍ତ ନଜେ ପ୍ରକାଶି ଅଚିରେ
ସୀତା ସହ ଲବକୁଶେ ସମର୍ପିବେ ବୋଲି ।
ଘଟିଲା ସେକାଳେ ଏକ ଅପୂର୍ବ ଘଟଣା
ଜନପଦବାସୀ ଏକ ଶ୍ରୋତ୍ରିୟ ବ୍ରାହ୍ମଣ
ଉପସ୍ଥିତ ହୋଇ ବେଗେ ଗ୍ରମ ସିଂହଦ୍ୱାରେ
ଅପ୍ରାପ୍ତ ଯୌବନ ସ୍ୱୀୟ ମୃତ ଶିଶୁ ଗୋଟି
କାଢ଼ିନେଇ ନଜକୋଡୁ ଦ୍ୱାରଦେଶେ ଥୋଇ
କହିଲା ଏମନ୍ତ ଗୀର ଅତି ଉଚ୍ଚସ୍ୱରେ
"ହେ ବସୁଧେ ! ଲୋକମାତା, ହାହା ! ତୁମ୍ଭେ ଏବେ
ନୃପ ଦଶରଥଙ୍କର କରଭ୍ରଷ୍ଟ ହୋଇ
ପଡ଼ି ଶ୍ରୀଗ୍ରମଙ୍କ ହସ୍ତେ, ନଜଭାଗ୍ୟ ଦୋଷେ
କଷ୍ଟୁଁ କଷ୍ଟତର କଷ୍ଟ ଲଭି ଅନୁକ୍ଷଣ
କେତେ ଶୋଚମାୟ ମୂର୍ତ୍ତି କଲଣି ଧାରଣ ।"
ସତ୍ସନପାଳକ ଗ୍ରମ ଶୁଣି ସେ ଧିକ୍କାର
ଅତଶୟ ଲଜ୍ଜାବଶେ ହେଲେ ମ୍ରିୟମାଣ,
କଦାପି ଅକାଳ ମୃତ୍ୟୁ ନଥାଇଲା ଯେଣୁ
ଇକ୍ଷ୍ୱାକୁ କୁଳର ଗ୍ରଜ୍ୟ ସୀମା ମଧ୍ୟ କରି ।
ପୁତ୍ର ଶୋକାତୁର ସେହି ଦ୍ୱିଜ ପୁଙ୍ଗବଙ୍କୁ
"କ୍ଷଣକାଳ କ୍ଷମାକର" ବୋଲି ରଘୁଗ୍ରଣ
ସବିନୟେ ଆଶ୍ୱାସ ଦେଇ, ପୁଷ୍ପକ ରଥକୁ
ସୁରିଲେ ଏକାନ୍ତମନେ, ଯମର କବଳୁ
ବିପ୍ର ତନୟକୁ ବଳେ ଫେରାଇବା ପଣେ ।
ସରଣ ମାତ୍ରକେ ଆସି କୁବେର ପୁରରୁ

ଉପସ୍ଥିତ ହେଲେ ରଥ, ଅରୋହି ତହିଁରେ
କରକଞ୍ଜେ ଧରି ଧନୁ, ଶର ତୂଣପରେ
ବାହାରିଲେ ସଜ୍ଜ ହୋଇ ଏକାଳେ ଅଭୂତେ
ଅକସ୍ମାତ ଶୂନ୍ୟବାଣୀ ଶୁଣିଲେ ଏରୂପେ;—
"ହେ ନୃପ ! ସ୍ୱଧର୍ମ ଛାଡ଼ି ଅନ୍ୟ ବ୍ୟବହାର
କରୁଛନ୍ତି ତୁମ୍ଭ ପ୍ରଜା, ପ୍ରତୀକାର କର,
ତାର ସବିଶେଷ ହେତୁ ଖୋଜ ପୂର୍ଣ୍ଣରୂପେ
ଅଚିରେ ବାସନା ତୁମ୍ଭ ହୋଇବ ପୂରଣ" ।
ଏହିରୂପେ ଶୂନ୍ୟବାଣୀ ଶୁଣି ରାମଚନ୍ଦ୍ର
ବାଳକ ଜୀବନ ରକ୍ଷା କରିବାକୁ ଆଶୁ
ସବେଗେ ଧାଇଁତ ହେଲେ ପୁଷ୍ପକେ ଆରୋହି
ଦକ୍ଷିଣଦେଶେ, ବେଗବଶେ ନସ୍ତଳେ ରହିଲ
ପୁଷ୍ପକ ରଥର ଧ୍ୱଜ ଚଳେ ନ ଓହଳ ।
ଦେଖିଲେ ଦୂରରୁ ବୀର ସ୍ୱହୁଁ ଅଚମ୍ବିତେ
ଉଚ୍ଚବୃକ୍ଷ ଶାଖାପରେ ଦୁଇପାଦ ଛନ୍ଦି,
ନିମ୍ନମୁଖେ ଏକ ନର କରୁଛି ତପସ୍ୟା,
ତଳେ ଜଳୁଥିବା ଅଗ୍ନି ତାପେ କୁଣ୍ଡଳାରେ
ରକ୍ତବର୍ଣ୍ଣ ହୋଇଅଛି ବେନ ନେତ୍ର ତାର ।
ପଚାରନ୍ତେ ନାମଗୋତ୍ର କହିଲା ସେ ତପୀ
"ଶମ୍ବୁକ ମୋହର ନାମ ଜାତିରେ ମୁଁ ଶୂଦ୍ର
ସ୍ୱର୍ଗ କାମନାରେ କରେ ଏ ଘୋର ତପସ୍ୟା ।"
ଲଭି ତାର ପରିଚୟ ଭାବିଲେ ଶ୍ରୀରାମ
ଅଟଇ ଏ ବ୍ୟକ୍ତି ଶୂଦ୍ର, ନାହିଁଟି ଏହାର
ତପସ୍ୟାରେ ଅଧିକାର, ଏଣୁ ବୁଝିଲ
ଏ ଅବିଧି ଆଚରଣେ ମରୁଛନ୍ତି ଦେଶେ
ଅକାଳରେ ପ୍ରଜାଗଣ, ଧର୍ମଶାସ୍ତ୍ରମତେ
ମସ୍ତକ ଛେଦନ ଦଣ୍ଡ ଅଟଇ ଏହାର ।
ଅଗ୍ନିଶିଖା ଝାସେ ତାର ଦାଢି ଦଗ୍ଧ ହୋଇ
ଧୂମକ୍ଲିଷ୍ଟ ପଦ୍ମ ସମ ଦିଶୁଥିଲା ମୁଖ,
କଣ୍ଟକୁପ ମୃଣାଳରୁ ଛିନ୍ନପଦ୍ମ ତାର

ଶରରେ ଛିଣ୍ଡାଇ ରାମ ପକାଇଲେ ତଳେ,
ରାମହସ୍ତେ ଦଣ୍ଡପାଇ ଲଭିଲା ସେ ଗତି ।
ଅନ୍ଧକାର ଗର୍ତ୍ତାରେ ମାଡ଼ି ଯାହା ସେହି
ସାଧୁଥିଲା ମହା ଘୋର କଠିନ ତପସ୍ୟା,
ସେଥିପାଇଁ ଲଭିଲା ଏ ଭୀଷଣ ଦୁର୍ଗତି,
ବ୍ରାହ୍ମଣ୍ୟ ଧର୍ମର ଏହା ଅଟେ ମୂଳନୀତି ।
ଲେଉଟିବା କାଳେ ରାମ ହୋଇଲେ ମିଳିତ
ମହର୍ଷି ଅଗସ୍ତି ସହ ପବିତ୍ର ଆଶ୍ରମେ,
ଶରତ୍‌କାଳ, ପୂର୍ଣ୍ଣଚନ୍ଦ୍ରେ, ମିଶିଗଲା ଅବା !
ପ୍ରଦାନିଲେ ମହାମୁନି ଶ୍ରୀରାମଚନ୍ଦ୍ରଙ୍କୁ
ଦେବତା ଦୁର୍ଲ୍ଲଭ ନାନା ଅଳଙ୍କାରମାନ,
ଅମ୍ବୁମୋଚନର ମୂଲ୍ୟ ଅଞ୍ଜଳିରେ ଯାହା
ଦେଇଥିଲେ ରତ୍ନାକର, ଚିତ୍ର ସ୍ୱରୂପରେ
ଶୋଭୁଥିଲେ ତାଙ୍କୁ ଯେବେ ଏ ତେଜସ୍ୱୀ ଋଷି ।
ଜାନକୀଙ୍କ କମ୍ବୁକଣ୍ଠ ଆଲିଙ୍ଗନ ସୁଖୁଁ
ବଞ୍ଚିତ ହୋଇ ଯେ ବାହୁ ଥିଲା ନିରାନନ୍ଦେ
ଘେନି ସେ ବାହୁରେ ଏହି ମହାର୍ଘ ଭୂଷଣ
ବାହୁଡ଼ିଲେ ରଘୁନାଥ ଅଯୋଧ୍ୟାଭିମୁଖେ
ତାଙ୍କ ପ୍ରତ୍ୟାବୃତ୍ତ ଆଗୁଁ ଫେରିଆସିଥିଲା
ଯମାଳୟୁଁ ମୃତ ସେହି ବ୍ରାହ୍ମଣ କୁମର,
ତନୟକୁ ପାଇପୁଣି ବୃଦ୍ଧ ମହାଶୟ
ସ୍ତୁତିକଲେ ନାନାରୂପେ ବିଶେଷ ଭାବରେ
ସେହି ମୁଖେ ଶ୍ରୀରାମଙ୍କୁ ଯେଉଁ ମୁଖେ ପୂର୍ବେ
ପୁତ୍ର ମୃତ୍ୟୁ ଦେଖି କ୍ରୋଧେ ନିନ୍ଦୁଥିଲେ ଠାଣେ ।
କିଛିଦିନେ ଅଶ୍ୱମେଧ ଯଜ୍ଞ ପୂର୍ଣ୍ଣ ପାଇଁ
ଅଶ୍ୱକୁ ମୋଚନ କଲେ ଅଯୋଧ୍ୟାର ସାଇଁ,
ରାକ୍ଷସ, ବାନର, ନର ଅଧିପତିମାନେ
ନାନା ଦେଶୁଁ ଆସି ତାଙ୍କୁ ପୂଜାର ନିମନ୍ତେ
ଦେଲେ ଉପାୟନ ନାନା ସାମଗ୍ରୀରେ ଭରି,
ମେଘ ଯଥା ଶସ୍ୟଲଗି ଦିଅଇ ସଲିଳ ।

ଏହି ମହାଯାଗ କାର୍ଯ୍ୟେ ଯୋଗଦେବା ପାଇଁ
ଜ୍ୟୋତିର୍ମ୍ମୟ ଲୋକୁଁ ପୂଜ୍ୟ ମହାଋଷିମାନେ
ଯଥାକାଳେ ନିମନ୍ତ୍ରିତ ହୋଇ ଦଳେ ଦଳେ,
ଆସିଥିଲେ, କେ ଗଣିବ ମର୍ତ୍ତ୍ୟପୁର କଥା ?
ଚତୁର୍ମ୍ମୁଖ ବିଧାତାର ସ୍ୱରମୁଖ ମଧ୍ୟୁଁ
ସଦ୍ୟ ଲୋକ ସୃଷ୍ଟି ହୋଇ ବାହାରିଲା ପରି
ଚତୁଦ୍ୱାରମୁଖୀ ସେହି ଅଯୋଧ୍ୟା ପୁରୀର—
ସ୍ୱରଦ୍ୱାରୁ ଅହରହ ଜଳସ୍ରୋତ ବତ
ଶିବିରେ ଗମନ କଲେ ନିମନ୍ତ୍ରିତଜନ ।
ତ୍ୟାଗ କରିଥିଲେ ଯାହା ସୀତାଙ୍କୁ ରାଘବ,
ସର୍ବରୂପେ ତାହା ଏବେ ହେଲା ଶ୍ଳାଘନୀୟ,
ଯେଣୁ ଅନ୍ୟ ପତ୍ନୀ ଆଉ ନ କର ଗ୍ରହଣ.
ଯଜ୍ଞକାଳେ ରହିଲେ ସେ ପତ୍ନୀରୂପେ ସେନ
ଜାନକୀଙ୍କ ସ୍ୱର୍ଣ୍ଣମୟୀ ପ୍ରତିମା ଗୋଟିଏ ।
ଶାସ୍ତ୍ରୋକ୍ତ ବିଧିରୁ ବଳି ଅଧିକ ସମ୍ଭାର
ଆହର ସହଜେ ବୀର ଅନୁଷ୍ଠିଲେ ଯଜ୍ଞ,
ମୂର୍ତ୍ତିମନ୍ତ ବିଘ୍ନରୂପୀ ଦୈତ୍ୟ କଳାପର
ରାକ୍ଷସ ନିକର ତହୁଁ ହୋଇଲେ ରକ୍ଷକ ।
ମହର୍ଷି ବାଲ୍ମୀକି କୃତ ରାମାୟଣ ଗୀତ
ଶିଖିଥିଲେ ବହୁଯତ୍ନେ ଲବକୁଶ ବେନି
ସେ ଋଷିଙ୍କ ପ୍ରସାଦରୁ; ଯଜ୍ଞ ମଣ୍ଡପରେ
ଗାଇଲେ ମଧୁର ସ୍ୱରେ ସ୍ୱରଆଡ଼େ ଭୁଲି ।
ଏକେ ମନମୁଗ୍ଧକର ଭୁବନ ବିଖ୍ୟାତ
ଶ୍ରୀରାମଙ୍କ ଉପାଖ୍ୟାନ, ଦୁଜେ କବିଗୁରୁ
ବାଲ୍ମୀକିଙ୍କ ବିରଚିତ, ତହିଁପରେ ପୁଣି
ସୁକଣ୍ଠ କିନ୍ନର ତୁଲ୍ୟ ସୁମଧୁର କଣ୍ଠ
ଲବକୁଶ ବେନି ଭାଇ ଅଟନ୍ତି ଗାୟକ,
ଅଛି କେ ଏରୂପ ଶ୍ରୋତା ନୋହିବ ମୋହିତ ?
ଆକର୍ଣ୍ଣି ସେ କର୍ଣ୍ଣମନ ରସାୟନ ଗୀତ ।
ଦେଖି ଲବକୁଶଙ୍କର ମଧୁର ମୂରତି

ପୁଣି ସୁଲଳିତ ଗୀତ ଶୁଣି ସେମାନଙ୍କ
ଜଣାଇଲେ ଯାଇ ଲୋକେ ରାଜାଙ୍କ ଛାମୁରେ ।
ଭୂଚୃହଲେ ତହୁଁ ନଜେ ଉପସ୍ଥିତ ହୋଇ
ଦେଖିଲେ ବେନଙ୍କ ରୂପ, ଶୁଣିଲେ ଆନନ୍ଦେ
ବୀଣାବିନିନ୍ଦିତ ତାଙ୍କ ସ୍ୱର ମଧୁମୟ ।
ସକଳ ସେ ସଭାସ୍ଥଳୀ ଏକାଗ୍ର ମନରେ
ବେନି ଭ୍ରମରଙ୍କ ଗୀତ ଆକର୍ଣ୍ଣି ବିଷାଦେ
ହୋଇଗଲା ଅଚମ୍ବିତେ ଅଶ୍ରୁପୂର୍ଣ୍ଣ ମୁଖୀ,
ଭାବଶୂନ୍ୟ ବନସ୍ଥଳୀ ପ୍ରଭାତ କାଳରେ
ହିମବିନ୍ଦୁ ବର୍ଷି କିବା ହେଲ ବିଷଣ୍ଣତା ?
ବୟସ, ବେଶଭୂଷା ଆଉ ସବୁ ଅଂଶେ
ରାମ ସଙ୍ଗେ ବେନିଙ୍କର ନ ଥିଲା ପ୍ରଭେଦ,
ସମବେତ ଲୋକମାନେ ଅବଲୋକି ତାହା
ଅନିମେଷ ନୟନରେ ରହିଲେ ଅନାଇଁ ।
ପ୍ରୀତହୋଇ ରଘୁମଣି ଲୋକନାୟ ତେବେ
ବହୁମୂଲ୍ୟ ଉପହାର ଦେଲେ ସେମାନଙ୍କୁ ,
ମାତ୍ର ଲବକୁଶ ଦୁହେଁ ଗ୍ରହନ୍ତେ ସମ୍ମତ
ଗ୍ରହିବାକୁ ରାଜଦତ୍ତ ମହାର୍ଘ ସମ୍ପଦ,
ସେରୂପ ଅସ୍ୱୀକୃତ ହେଲେ ଦର୍ଶକ ମଣ୍ଡଳ
ସେ ବେନିଙ୍କ ଲୋକୋତ୍ତର ପ୍ରବୀଣତା ଦେଖି,
ସେମନ୍ତ ଆଶ୍ଚର୍ଯ୍ୟ ଆଉ ନୋହିଥିଲେ କେବେ ।
ପଚାରିଲେ ରଘୁନାଥ କେଉଁ କୃତୀବନ୍ତ
ଶିକ୍ଷକ ତୁମ୍ଭଙ୍କୁ ବାରୁ, ଶିଖାଇଲେ ଏହି
ମଧୁର ସଙ୍ଗୀତ ରସ, କହ କେଉଁ କବି
ପ୍ରଣେତା ଏ ସୁଛନ୍ଦର, କହିଲେ ଶିଶୁଏ
ବାଲ୍ମୀକି ଆମ୍ଭର ଗୁରୁ, ଏ ଗ୍ରନ୍ଥ ରଚକ ।
ଅନୁଜମାନଙ୍କ ସହ ତହୁଁ ଧୀରମଣି
ବାଲ୍ମୀକି ସମୀପେ ଯାଇ, ଦେହମାତ୍ର ରଖି
ସମୁଦାୟ ରାଜ୍ୟ ତାଙ୍କୁ ଦେଲେ ଭକ୍ତିଭରେ
କହିଲେ ସଦୟ ସ୍ୱରେ ମହର୍ଷି ବାଲ୍ମୀକି ।

"ହେ ଇକ୍ଷ୍ୱାକୁ କୁଳଚନ୍ଦ୍ର ! ଯମଜ ବାଳକ
ଏହି କୁଶଲବ ଦେନ, ସୀତା ଗର୍ଭ ଜାତ ।
ସ୍ୱସ୍ୱବେ ତୁମ୍ଭର ସୁତ ଘେନ ତାଙ୍କୁ ଏବେ
ମାତାସହ ସଯତନେ ଏ ମୋ ନିବେଦନ ।"
ସ୍ୱପିଲେ ରାଘବ ତାତ ତବ ପୁତ୍ରବଧୂ
ଜାନକୀ, ଲଙ୍କାରେ ପଶି ଅନଳେ ନିର୍ଭୟେ
ନିଜ ଶୁଦ୍ଧ ଚରିତର ସାକ୍ଷ୍ୟ ଦେଇଛନ୍ତି
ସମସ୍ତଙ୍କ ସମକ୍ଷରେ, ସେ ବିଷୟେ ତେଲେ
ନାହିଁ ମୋର ଅବିଶ୍ୱାସ, ମାତ୍ର ଲଙ୍କାପୁର
ଥିଲ ଅତି ଦୁଷ୍ଟମତି ପ୍ରଜାଏ ସେ ପାଇଁ
ନ କରନ୍ତି ତା'ଉପରେ ବିଶ୍ୱାସ ସ୍ଥାପନ,
ଏଣୁ ନିଜ ଚରିତର ବିଶୁଦ୍ଧି ବିଷୟେ
କରିଲେ ବିଶ୍ୱାସ ଜାତ ସେମାନଙ୍କ ମନେ
ତୁମ୍ଭ ଆଜ୍ଞା ଶିରେ ଧରି ହେ ବଦାନ୍ୟବର !
ପୁତ୍ରବତୀ ସୀତାଙ୍କୁ ମୁଁ ଗ୍ରହିବ ଆନନ୍ଦେ ।
ଏହିରୂପ ଅଙ୍ଗୀକାର କରନ୍ତେ ଶ୍ରୀରାମ
ଡକାଇ ଆଣିଲେ ମୁନି ସୀତାଙ୍କୁ ଆଶ୍ରମୁଁ,
ଦେଖି ତାଙ୍କୁ ମନେ ହେଲ ଆସନ୍ତି କି ଗୁଳ
ଋଷିଙ୍କର ତପଃ ସିଦ୍ଧି ମୂର୍ତ୍ତି ପରିଗ୍ରହି ।
ପରଦିନ ରଘୁମଣି ଏକତ୍ର ଠୁଳାଇ
ପୁରବାସୀ ସକଳଙ୍କୁ, ନିବେଦିଲେ ଧୀରେ ।
କାର୍ଯ୍ୟ ସମ୍ପାଦନ ଅର୍ଥେ ବାଲ୍ମୀକି ଋଷିଙ୍କି ।
ସଭାକାଳେ ମହାମୁନି ସୀତାଦେବୀ ସହ
ପୁତ୍ରଦ୍ୱୟ ଘେନି ସଙ୍ଗେ ହେଲେ ଉପସ୍ଥିତ
ରଘୁପତି ସମ୍ମୁଖରେ, ଦେଖି ହେଲ ପ୍ରତେ
(୧) ସ୍ୱରଶୁଦ୍ଧି ସମନ୍ୱିତା ସାବିତ୍ରୀଙ୍କ ସହ
ଉପସ୍ଥିତ ହେଲେ କିବା ପ୍ରଜାପତି ବ୍ରହ୍ମା ?
ସମୁଦିତ ପ୍ରସ୍ରବନ୍ତ ପ୍ରସ୍ତରର ଅଗ୍ରେ ।

(୧) ସ୍ୱର ଓ ଶୁଦ୍ଧି ସହିତ ଲବ ଓ କୁଶର ଉପମା ଉପମେୟ ଭାବ ।

କଷାୟ ବସନ ପିନ୍ଧି ଜନକ ନନ୍ଦିନୀ
ନିବେଶି ନୟନ ସ୍ୱାମୀଙ୍କ ଚରଣ ଯୁଗଳେ
ବଜେ ହେଲେ ଧୀରେ ଧୀରେ ସେ ସଭାସ୍ଥଳକୁ
ଶାନ୍ତରସେ ପୂର୍ଣ୍ଣ ସେହୁ ପବିତ୍ରତାମୟୀ,
ଦୃଷ୍ଟେ ତାହାଙ୍କୁ କାହିଁ ପାରିବ ବା କହି ?
ଲୋକମାତା ସୀତାଙ୍କର ଗମନ ମାର୍ଗରୁ
ଲୋକମାନେ ନିଜ ଦୃଷ୍ଟି ଘୁଞ୍ଚାଇ ସଧୀରେ
ଠିଆହୋଇ ନତମୁଖେ ରହିଲେ ଦୁଃଖରେ
ଏକାବେଳେ ଫଳେ ନମ୍ର ଶାଳିଧାନ୍ୟ ପରି ।
କୁଶାସନେ ବସି ତହୁଁ ମହର୍ଷି ବାଲ୍ମୀକି
ଅଜ୍ଞାଦେଲେ ମୈଥିଳୀଙ୍କି 'ବତ୍ସେ ! ସ୍ୱାମୀ ଅଗ୍ରେ,
ପବିତ୍ରତା ବିଷୟରେ ନିଜ ଚରିତ୍ରର,
ସନ୍ଦେହ ମୋଚନ କର ଜନମାନଙ୍କର ।'
ବାଲ୍ମୀକି-ଶିଷ୍ୟଙ୍କ ପାଖୁ ପବିତ୍ର ସଲିଳ
ଘେନି ଦୁଇ ସୀତା ସତୀ ଆଚମନ ଅନ୍ତେ,
ସତ୍ୟ ବାକ୍ୟ ସହକାରେ କହିଲେ ଏମନ୍ତ—
ବାକ୍ୟ ମନ କର୍ମ ଦ୍ୱାରା ଯେବେ ଭ୍ରମେ ମୁହିଁ
ସ୍ୱାମୀ ପ୍ରତି ଅବିଶ୍ୱାସ କରି ନାହିଁ କେବେ,
ତା ହେଲେ "ହେ ଲୋକଧାତ୍ରି ଦେବି ବସୁମତେ !
ଅଜ୍ଞା ହେଉ ସ୍ୱ-ଜଠରେ ସ୍ଥାନ ଦେବା ପାଇଁ ।"
ଏମନ୍ତ କହନ୍ତେ ସାଧ୍ୱୀ ତତକ୍ଷଣେ ତହିଁରେ
ବାହାର ପଡ଼ିଲା ଏକ ରନ୍ଧ୍ର ଅଦଭୂତେ,
ସେ ଛିଦ୍ରରୁ ବୈଦ୍ୟୁତିକ ଜ୍ୟୋତିରାଶି ପରି
ଉଦୟ ହୋଇଲା ଦିବ୍ୟ ଉଜ୍ଜ୍ୱଳ ମଣ୍ଡଳ,
ସେ ପ୍ରଭାପରିଧି ମଧ୍ୟେ ମହାମହିମାୟା
ଫଣୀଫଣା ମଣ୍ଡଳସ୍ଥ ସିଂହାସନେ ବସି
ସମୁଦ୍ର ମେଖଳା ପିନ୍ଧି ଦେବୀ ବସୁନ୍ଧରା
ଦିବ୍ୟମୂର୍ତ୍ତି ଧରି ଅଗ୍ରେ ହେଲେ ଉପଗତା ।
ସ୍ୱାମୀଙ୍କ ଅଡ଼କୁ ଏକ ଦୃଷ୍ଟିରେ ଅନାଇଁ
ରହିଥିଲେ ସୀତାସତୀ, ଦେବୀ ବସୁମତୀ

ପଶିଲେ ପାତାଳେ ସତ୍ୱେ ତାଙ୍କ ବୋଲେ ଧରି
ଶ୍ରୀରାମଙ୍କ ବାରବାର ନିଷେଧ ନମାନି ।
ଲେଉଟାଇ ନଦେବାରୁ ସୀତାଙ୍କୁ ଧରଣୀ
ମହାକ୍ରୋଧେ ବୀରମଣି ଧରିଲେ କୋଦଣ୍ଡ,
ଅବଶେଷେ ଲୋକଗୁରୁ ବ୍ରହ୍ମା ତହିଁ ଆସି
ନାନାବିଧ ଉପଦେଶେ ରାମଙ୍କୁ ବୁଝାଇ,
ଭବିତବ୍ୟ ଲଙ୍ଘିବାକୁ କେହି ନାହିଁ ବୋଲି
ତାହାଙ୍କର ଗୁରୁତର ରୋଷ କଲେ ନାଶ ।
ବନ୍ଧୁବାନ୍ଧବଙ୍କୁ ତୋଷି ଯଜ୍ଞର ଶେଷରେ
ସଭିଙ୍କି ବିଦାୟ ଦେଇ ଦୁଃଖେ ରଘୁମଣି
ସୀତାଠାରେ ତାହାଙ୍କର ଥିଲା ଯେଉଁ ସ୍ନେହ
ପୁତ୍ରଙ୍କର ପ୍ରତି ତାହା ଅର୍ପିଲେ ସତତ ।
ଭରତର ମାତୁଳଙ୍କ ଅନୁରୋଧ କ୍ରମେ
ବହୁମୂଲ୍ୟ ଧନ ରତ୍ନ ଐଶ୍ୱର୍ଯ୍ୟ ସହିତ
ସିନ୍ଧୁଦେଶ ଭରତଙ୍କୁ କରିଲେ ପ୍ରଦାନ ।
ତହିଁ କିଛିକାଳ ଭ୍ରାତ ରାଜପଣ କରି
ଯୁଦ୍ଧେ ଜିଣି ସେ ଦେଶର ଗନ୍ଧର୍ବମାନଙ୍କୁ
ଧନୁ ଗଦା ଅସି ଆଦି ବୀର ଆଭରଣ
ସକଳ ଛଡ଼ାଇ ଶେଷେ ଧରାଇଲେ ବୀଣା ।
ଅବଶେଷେ ନିଜ ପୁତ୍ର ତକ୍ଷ, ପୁଷ୍କଳଙ୍କୁ
ରୁଚିର ପୁଷ୍କଳାବତୀ, ତକ୍ଷଶିଳା ପୁରେ
ଯଥାବିଧି ସିଂହାସନେ ବସାଇ ଭରତ
ଫେରିଲେ ଅଯୋଧ୍ୟାପୁରେ ରାମଙ୍କ ପାଖକୁ ।
ଏସ୍ୱବେ ଲକ୍ଷ୍ମଣ ନିଜ ଉଭୟ ସୁତଙ୍କୁ *
ରାମ ଆଜ୍ଞା ଅନୁଯାୟୀ କଲେ ଅଧୀଶ୍ୱର
ମନୋହର କାରୁପଥ ନଗରରେ ନେଇ;
ଏହିରୂପ ରଘୁବଂଶୀ ଦଶରଥ ସୁତେ
ଭିନ୍ନ ଭିନ୍ନ ରାଜପଦେ ବସାଇ ସୁତଙ୍କୁ

* ଲକ୍ଷ୍ମଣଙ୍କର ଦୁଇ ପୁଅ ଅଙ୍ଗଦ ଓ ଚନ୍ଦ୍ରକେତୁ ।

ସମାପିଲେ କ୍ରମେ କ୍ରମେ ଶ୍ରାଦ୍ଧ ଆଦି କ୍ରିୟା
ସ୍ୱାମୀଲୋକ ପ୍ରାପ୍ତ ବୃଦ୍ଧା ମାତାମାନଙ୍କର ।
ଏକାଳେ ଅନ୍ତକ ନିଜେ ମୁନିବେଶ ଧରି
ପ୍ରବେଶି ଶ୍ରୀରାମ ପାଶେ, କଲେ ନିବେଦନ
'ହେ ରାଜନ ! ତବସହ ନିର୍ଜ୍ଜନ ସ୍ଥାନରେ
ଅଛି କିଛି କଥାବାର୍ତ୍ତା ବ୍ରହ୍ମାଙ୍କ ଆଦେଶେ,
ମାତ୍ର ସେ କାଳରେ ତହିଁ ପ୍ରବେଶିବ ଯେହୁ
ବିସର୍ଜ୍ଜିବ ତାକୁ କର ଏ ପ୍ରତିଜ୍ଞା ଆଗେ ।
ସୁଦୃଢ଼ ପ୍ରତିଜ୍ଞାବଦ୍ଧ ହୁଅନ୍ତେ ଶ୍ରୀରାମ
ଆତ୍ମ ପରିଚୟ ଦେଇ ନିବେଦିଲେ କାଳ,
ବହୁଦିନ ସ୍ୱର୍ଗ ଛାଡ଼ି ରହିଲଣି ମର୍ତ୍ତ୍ୟେ ।
ବ୍ରହ୍ମାଙ୍କ ଆଦେଶ, ସ୍ୱର୍ଗେ କର ଆରୋହଣ ।
ସେତେବେଳେ ସଉମିତ୍ରୀ ପ୍ରହରୀ କାର୍ଯ୍ୟରେ
ରହିଥିଲେ ଦ୍ୱାରଦେଶେ, ଦେଖିଲେ ଅଦ୍ଭୁତେ
ମହାକ୍ରୋଧୀ ବ୍ରହ୍ମକର୍ମୀ ଦୁର୍ବାସା ତପସ୍ୱୀ
ଆଗେ ଉପସ୍ଥିତ ହୋଇ ଭାଷିଲେ ଗମ୍ଭୀରେ,
"ରାମ ସହ ମୋତେ ଭେଟ କରାଅ ସତ୍ୱର
ନୋହିଲେ ଦାରୁଣ ଶାପେ ହେବ ଛାରଖାର
ଏ ନଗର" ଋଷିଙ୍କର ବାକ୍ୟେ ଭୀତ ହୋଇ
ବୀରମଣି ଅବଗତ ହୋଇଥିଲେ ସୁଦ୍ଧା
ଦୃଢ଼ପଣେ ଶ୍ରୀରାମଙ୍କ ବଧହେବା କଥା
ହେଜି ଆଗେ ଆତ୍ମହିତେ ଆସି ଅଲକ୍ଷିତେ
ଭଙ୍ଗି ଦେଲେ ସେମାନଙ୍କ କଥୋପକଥନ ।
ସେ କାର୍ଯ୍ୟର ପ୍ରାୟଶ୍ଚିତ୍ତ ରୂପେ ବୀର ତହୁଁ
ସୁଜଳା ସରଯୂଗର୍ଭରେ ତ୍ୟାଗ କଲେ ତନୁ
ପ୍ରତିଜ୍ଞା ପୂରଣ ଲାଗି ଜ୍ୟେଷ୍ଠ ଭାଇଙ୍କର ।
ଚତୁର୍ଥାଂଶ ବିଷ୍ଣୁଙ୍କ ସେ ଥିଲେ ଏକ ଅଂଶ
ସ୍ୱର୍ଗକୁ ଗମନ ଏଣୁ କରନ୍ତେ ସେ ଏବେ
ତ୍ରିପାଦ ଧର୍ମର ପରି ରହିଲେ ଦୁଃଖରେ
ପୃଥିବୀରେ ସୀତାନାଥ ଶିଥିଳ ଭାବରେ ।

କୁଶାବତୀ ନଗରୀରେ ବପ୍ର ରାଜାକୁଶ—
କୁଶକୁ ନୃପତି କରି, ସତ୍ୟ ପ୍ରିୟସ୍ୱାମୀ
ଲବକୁ ପ୍ରଦାନ କଲେ ଶରାବତୀ ରାଜ୍ୟ ।
ଏରୂପେ ମର୍ତ୍ତ୍ୟର ଲୀଳା ସମାପି ରାଘବ
ଯଥାବିଧି ଅନଳକୁ ଅଗ୍ରବର୍ତ୍ତୀ କରି
ଚାଲିଲେ ଭାଇଙ୍କ ସହ ଉତ୍ତର ଦିଗକୁ,
ଈଶ୍ୱରୀର ମାୟା ରୂପ ପ୍ରଭୁଭକ୍ତି ବଶେ
ତାଙ୍କ ପଛେ ଗୋଡ଼ାଇଲା ସମଗ୍ର ଅଯୋଧ୍ୟା ।
ସମ୍ପଦେ ବିପଦେ ଯାହା ସେତେ ପ୍ରିୟଭୃତ୍ୟ,
ରାକ୍ଷସ ମର୍କଟ ଆଦି ଗମିଲେ ସଙ୍ଗତେ,
ତାହା ଦେଖି ପ୍ରଜାକୁଳ କାନ୍ଦିଲେ ବିକଳେ
କଦମ୍ବ ମୁକୁଳସ୍ଥୂଳ ଅଶ୍ରୁବିନ୍ଦୁ ତେଜି ।
ତାଙ୍କ ପଛେ ଯାଉଥିଲେ ଯେ ସକଳ ଜନ
ସେମାନଙ୍କ ଦୁରାରୋହ ସ୍ୱର୍ଗ ଆରୋହଣେ
ସୋପାନ ସମାନ କରି ସରଯୂ ନଦୀକୁ,
ଭକତ ବତ୍ସଳ ରାମ ମହାଯାତ୍ରା ଲାଗି
ବୈକୁଣ୍ଠୁଁ ଆଗତ ରଥେ କଲେ ଆରୋହଣ ।
ପଶିଲେ ସରତେ ଲୋକେ ପୁଞ୍ଜପୁଞ୍ଜ ହୋଇ
ଗାଭୀମାନେ ଜଳେ ପଶି ପହଁରିଲା ପରି,
ସେ ଦିନୁଁ ଏ ସୁପବିତ୍ର ତୀର୍ଥ ସର୍ବମତେ
'ଗୋ ତରଣ' ନାମେ ଭବେ ହୋଇଛି ବିଖ୍ୟାତ
ଦେବଅଂଶେ ଜାତ ଯେତେ ସୁଗ୍ରୀବାଦି ବୀରେ
ନିଜ ନିଜ ମୂର୍ତ୍ତି ଧରି ପ୍ରବେଶନ୍ତେ ଆସି
ରଚିଲେ ଦ୍ୱିତୀୟ ସ୍ୱର୍ଗ ରଘୁକୁଳ ଈଶ
ଦେବତ୍ୱ ପ୍ରାପ୍ତ ସର୍ବ ପୌରଗଣ ପାଇଁ ।
ରାବଣକୁ ବଧି ରଣେ ଦେବକାର୍ଯ୍ୟ ସାଧି,
ହନୁମାନ, ବିଭୀଷଣ, ଉଭୟ ବୀରଙ୍କୁ
ନିଜର ଅକ୍ଷୟ ମହାକୀର୍ତ୍ତିସ୍ତମ୍ଭ ପରି,
ଦକ୍ଷିଣ ଉତ୍ତର ଦୁଇ ଗିରି ଶିରେ ଥୋଇ,
ସ୍ୱମୂର୍ତ୍ତି ରହିଲେ ପୁଣି ଦେବ ଭାବଗ୍ରାହୀ ।

# ଷୋଡ଼ଶ ସର୍ଗ

କରନ୍ତେ ସ୍ୱର୍ଗକୁ ଜେଷ୍ଠ କୌଶଲ୍ୟାତନୟ
ଲବ ଆଦି ଅନ୍ୟ ସପ୍ତ ସୂର୍ଯ୍ୟବଂଶୀ ବୀରେ
ରଘୁକୁଳ ପ୍ରଚଳିତ ରୀତି ଅନୁଯାୟୀ
ବୟସରେ ବଡ଼ ପୁଣି ଗୁଣରେ ଗରିଷ୍ଠ
କୁଶଙ୍କୁ ସେ ସିଂହାସନେ ବସାଇଲେ ନେଇ ।
ପାଳିଲେ ସେ ଯାହା ରାଜ୍ୟ ଅତି ଯତନରେ,
ସେତୁ ବାନ୍ଧି କଲେ ବୀର କୁଶର ଉନ୍ନତି,
ଧରିଲେ ଅରଣ୍ୟୁଁ ହସ୍ତୀ, ପାଳିଲେ ଗୋକୁଳ,
ବିବିଧ ସତ୍‌କାର୍ଯ୍ୟ କରି ଏରୂପେ ସୁଦ୍ୟମେ
ପ୍ରଜାଙ୍କୁ ରଖିଲେ ସୁଖେ, ଦେଇଣ ସୁଶିକ୍ଷା ।
ସିନ୍ଧୁ ଯଥା ତଟଭୂମି ନକରେ ଲଙ୍ଘନ
ନିଜ ଦେଶ ସୀମା କେବେ ନ ଡେଇଁଲେ କେହି ।
ଜନ୍ମିଥିଲେ ବିଷ୍ଣୁଙ୍କର ଚାରିଅଂଶ ନେଇ
ଦଶରଥ ସୁତମାନେ, ସେମାନଙ୍କଠାରୁ
କୁଶଆଦି ରଘୁବୀରେ ଲଭିଲେ ଜନମ,
ଏଣୁ ଗୁଣବନ୍ତ ନିଜ ପିତାଙ୍କ ପରାଏ
ଦାନ ଧର୍ମ ପରାୟଣ ହୋଇଲେ ସକଳେ ।
ସୁବିଖ୍ୟାତ ସନାତନ ସାମବେଦୁଁ ଜାତ
ଦିଗ୍‌ଦନ୍ତୀଙ୍କ ବଂଶ ପରି ସେମାନଙ୍କ କୁଳ
ଅଷ୍ଟଭାଗ ହୋଇ କ୍ରମେ ହୋଇଲା ବିସ୍ତୃତ ।
ଏଥୁ ଅନନ୍ତର ଦିନେ ଅର୍ଦ୍ଧରାତ୍ର ବେଳେ
ଶୟନ ମନ୍ଦିରେ ସର୍ବେ ଥିଲେ ଅଚେତନ
ନିଦ୍ରାଦେବୀଙ୍କର ସ୍ନିଗ୍ଧ ସୁକୋମଳ ଅଙ୍କେ,
ହୀନ ତେଜେ ଜଳୁଥିଲା ସେ ଘରେ ପ୍ରଦୀପ,
କେବଳ ଜାଗ୍ରତ ଥିଲେ କୁଶ ନରମଣି,
ସେକାଳେ ଅଚିହ୍ନା ଏକ ନାରୀ ଅଚମ୍ବିତେ
ଆସି, ତାହାଙ୍କର ହେଲା ନୟନ ଅତିଥି ।
ସାଧୁମାନଙ୍କର ବନ୍ଧୁ, ଇନ୍ଦ୍ର ପରାକ୍ରମୀ,

ତେଜସ୍ୱୀ, ବାନ୍ଧବ ପ୍ରିୟ କୁଶଙ୍କ ଛାମୁରେ
ତହୁଁ ସେହି ବାଳାମଣି କରପଦ୍ମ ଯୋଡ଼ି
ଉଚ୍ଚାରିଲା 'ଆପଣଙ୍କ ଜୟ ହେଉ ବୋଲି'।
ଛାୟା ଯଥା ଦର୍ପଣରେ କରଇ ପ୍ରବେଶ
ତେସନ ରମଣୀ ଗୃହେ, କବାଟ ନ ଫେଡ଼ି
ଉପନୀତ ହେବା ଦେଖି ଶ୍ରୀରାମଙ୍କ ସୁତ,
ବିସ୍ମୟେ ଚକିତେ ବୀର ଶଯ୍ୟା ପରିତ୍ୟାଗି
ମୃଦୁସ୍ୱରେ ସେ ବାଳାକୁ କହିଲେ ଏସନ—
କବାଟ ପୂର୍ବର ପରି ଅଛି ଅର୍ଗଳିତ,
ନ ଫିଟାଇ ସେ କବାଟ ଅଗୋ ବରାନନେ !
କେମନ୍ତେ ପଶିଲ ଏହି ମନ୍ଦିର ମଧ୍ୟରେ ?
ହେଉ ନାହିଁ ଅନୁମାନ ତୁମ୍ଭରୂପ ଦେଖି
ତପସ୍ୟା ପ୍ରଭାବେ ଏଥି ପଶିଅଛ ବୋଲି,
ଯେଣୁ ଶୋକ ଦୁଃଖ ଚିହ୍ନ ପରିଷ୍କାର ରୂପେ
ସ୍ପଷ୍ଟ ବାରି ହେଉଅଛି ତୁମ୍ଭର ଆକାରୁଁ ।
ବିଷଣ୍ଣ ବଦନ ଦେଖି ମନେ ହୁଏ ପ୍ରତେ
ଯତେକ ଶିଶିର ସିକ୍ତ ନବ କମଳିନୀ
ଲଭିଛି ବିବର୍ଣ୍ଣଭାବ ହିମ ବନ୍ଧୁକାଳେ ?
କହିବକି କିଏ ତୁମ୍ଭେ ? କାହାର ବନିତା ?
କିପାଇଁ ବା ମୋ ପାଶକୁ ଆସିଛ ସଦନରେ ?
ନୁହନ୍ତି ଇନ୍ଦ୍ରିୟ ଦାସ କେବେ ରଘୁସୁତେ,
ନ ଛୁଅନ୍ତି ପରନାରୀ, ଏ କଥାକୁ ଭାବି
ମୋ ସହ ଲଳନେ ! ସୁଖେ କର ସମ୍ଭାଷଣ ।"
ଉତ୍ତରିଲେ ବିଷାଦିନୀ ବୀଣାକ୍ୱଣା ସ୍ୱରେ ।
ଶୁଣ ହେ ନରେନ୍ଦ୍ରମଣି ! ମୋ ଦୁଃଖର କଥା,
"ପ୍ରସିଦ୍ଧ ଅଯୋଧ୍ୟାପୁରୀ ଭରତ ମଧ୍ୟରେ,
ଭୂଷଣ ଗୌରବ ଯେହ୍ନେ ଦେବଲୋକେ ସୁଭା
ଉଜ୍ଜ୍ୱଳ ମସ୍ତକ ତାର ଟେକିଥିଲା ଦମ୍ଭେ,
ବିଶ୍ୱବନ୍ଦନୀୟା ସେହି ମହାନଗରୀର
ଅଧିଷ୍ଠାତ୍ରୀ ଦେବୀ ମୁହିଁ ସକଳ କାଳରେ

ବନ୍ଦିତା ମୁଁ ସର୍ବଲୋକେ ମୋ ସୁତଙ୍କ ତେଜେ।
ବାତ୍ସଲ୍ୟ ସ୍ନେହରେ ମଜ୍ଜି ତୁମ୍ଭ ପିତାଙ୍କର
ମୋର ଅଧିବାସୀମାନେ ଗଲେ ସଙ୍ଗେ ସଙ୍ଗେ,
ଏବେ ମୁହିଁ ସ୍ୱାମୀହୀନା ଅନାଥିନୀ ହୋଇ
ରହିଅଛି ଶୂନ୍ୟପୁରେ ଏକାକୀ ଦୁଃଖରେ।
ଅତି ଶକ୍ତିଶାଳୀ ତୁମ୍ଭେ ନ୍ୟାୟପରାୟଣ
ସୁବିଖ୍ୟାତ ସୂର୍ଯ୍ୟବଂଶେ ଜନ୍ମିଛ ନୃମଣି !
ତୁମ୍ଭପରି ଥାଉଁ ଥାଉଁ ଧରଣୀଈଶ୍ୱର
ଲଭୁଛି ମୁଁ ଦେଖ ଏହି ଶୋଚନୀୟ ଦଶା !
କି ବିଭବ ଥିଲ ମୁହିଁ ପୂର୍ବେ ରାଜେନ୍ଦ୍ରାଣୀ,
ମହାମନା ସର୍ବ ମୋର ନରପତିଙ୍କର
ବୀରତ୍ୱ ପ୍ରଭାବେ ପୁଣି ଅତୁଳ ଐଶ୍ୱର୍ଯ୍ୟେ
ଜଗତ ପ୍ରସିଦ୍ଧ ମୋର ଯେ ସାକେତପୁର
ଅଳକାକୁ ଅବହେଳେ କରିଥିଲା ତୁଚ୍ଛ
ପଣ୍ଡିତମଣ୍ଡିତ ଏବେ ସେ ମହା ନଗରୀ
ପରିଣତ ହୋଇଅଛି ଶ୍ମଶାନେ !
ଶତ ଶତ ଅଟ୍ଟାଳିକା ସୁନ୍ଦର ଦେଉଳ
ଭାଙ୍ଗି, ଭୂତଳରେ ପଡ଼ି, ସର୍ଜ୍ଜନା କରିଛି
ଗିରିବର ପରି ଉଚ୍ଚ ମୃତ୍ତିକାର ସ୍ତୂପ,
ବରଷା ପାଣିରେ ଭିଜି ଫାଳ ଫାଳ ଫାଟି
କାହିଁ ଦୀର୍ଘ କାନ୍ଥଶ୍ରେଣୀ ଉଦ୍ଧତ ହୋଇ
ପଡ଼ି ଦିଶୁଅଛି ଦୂରୁଁ ଜମି ହାଡ଼ ପରି।
ଅସ୍ତାଚଳେ ପ୍ରଭାକର ଲୀନ ହେବାବେଳେ
ଗଗନରେ ଛିନ୍ନଭିନ୍ନ ମେଘମଣ୍ଡଳରେ
ଯେ ଦୁର୍ଦ୍ଦଶା ଉପସ୍ଥିତ ହୁଏ ପ୍ରଦୋଷର
ଲଭିଅଛି ଆଜ ମୁହିଁ ସେ ହୀନ ଦଶାକୁ।
ମଞ୍ଜୁଳ ମଧୁରନାଦୀ କଳା ପିକ୍ଷ ଯହିଁ
ଅଭିସାରିକାଏ ରଙ୍ଗେ ରଜନୀ ସମୟେ
ନିର୍ଭୟେ ବିଚରୁଥିଲେ ପ୍ରଫୁଲ୍ଲ ମାନସେ,
ଏବେ ସେହି ସୁପ୍ରଶସ୍ତ ରମ୍ୟ ରାଜମାର୍ଗେ

ଅମଙ୍ଗଳ କର୍ଣ୍ଣକଟୁ ବିକଟ ଚିତ୍କାରେ
ନିଜ ମୁଖବହ୍ନି ତେଜେ ଶବ ଖୋଜି ଖୋଜି
ଏଣେତେଣେ ବୁଲୁଛନ୍ତି ଦୁରନ୍ତ ଶୃଗାଳେ ।
ଅହା କି ଦୁଃଖର କଥା ! ମହିଳାମାନଙ୍କ
ହାତେ ଆସ୍ଫାଳିତ ହୋଇ ଯେ ସରସୀ ଜଳ
ବାଜୁଥିଲା ମୃଦଙ୍ଗର ସମ ମଞ୍ଜୁ ଘୋଷେ,
ଏବେ ସେ ସଲିଳରାଶି ସରମାନଙ୍କର
ଅରଣ୍ୟମହିଷଙ୍କର ଶୃଙ୍ଗାହତ ହୋଇ
ଅବିରତ କରୁଅଛି କର୍କଶ ଶବଦ ।
ହେ ରାଜେନ୍ଦ୍ର ! ମନୋହର ଗୃହ କେକୀକୁଳ
ଯେତେ ତହିଁ ଥିଲେ ପୂର୍ବେ ବନଅନଳରେ
ସେମାନଙ୍କ ପୁଚ୍ଛଗୁଚ୍ଛ ଦଗ୍ଧ ହେଉଁ, ଏବେ
ବିକଟ ଖଞ୍ଜନପର ଦିଶନ୍ତି ବିବର୍ଣ୍ଣ ।
ବାସସ୍ତମ୍ଭ ଭାଙ୍ଗିବାରୁ ତାହାର ଅଭାବେ
ନିରାନନ୍ଦେ ରହି ରହି ବୃକ୍ଷ ଶାଖାପରେ
ବନ୍ୟପକ୍ଷୀସହ ମିଶି ହେଲେଣି ବଣୁଆଁ,
ଲଲନାମାନଙ୍କ ମୃଦୁ କରତାଳି ଶୁଣି
ନାଚୁଥିଲେ ଚଳ ଚଳ ଯେଉଁ ବର୍ହିତୋଳି,
ସେ କିପାଁ ନାଚିବେ ଆଉ ? ମୃଦଙ୍ଗର ଧ୍ୱନି
ନବଘନ ଗର୍ଜ୍ଜନକୁ ପରାଭବ ହେଲେ
ଉଠୁ ନାହିଁ ଏବେ ଯେଣୁ ନବ ନବ ତାନେ
ସଦ୍ୟ ଅଲକ୍ତକରସ-ରଞ୍ଜିତ ଚରଣେ
ଧୀରେ ଧୀରେ ପାଦରଖି ଅନନ୍ଦେ ବାଳାଏ
ଉଠୁଥିଲେ ଯେ ସୋପାନେ ରକ୍ତଲିପ୍ତପଦେ,
ଏବେ ତହିଁ ମୃଗ ମାରି ଶାର୍ଦ୍ଦୂଳ ନିକର
ବୁଲୁଛନ୍ତି ନରମଣି ! ନିର୍ଭୟ ହୃଦୟେ ।
ଦନ୍ତ ଶିଳ୍ପୀକାର ଯୋଗେ କୌଶଳେ ନିର୍ମିତା—
ହସ୍ତିନୀର ପ୍ରେମଦତ୍ତ ମୃଣାଳ ଖଣ୍ଡକୁ
ନିଜ ଶୋଭିହସ୍ତେ ଧରି କମଳକାନନେ
ଖାଉଥିଲା ପ୍ରେମେ ଯାହା ପ୍ରମତ୍ତମାତଙ୍ଗ,

ପ୍ରକୃତ ଗଜେନ୍ଦ୍ର ଭଳି ଏବେ ସେ ଚଉକୁ,
ବନସ୍ଥଳୀ ରକ୍ତଲକ୍ଷ୍ମ ଭୂଷିତ କେଶରୀ
ହାବୋଡ଼ ତାହାର ଅଗେ, କାମୋଡ଼ ଦନ୍ତରେ
କମନୀୟ ବୃନ୍ଦମାନ କଦାଚ ନଖରେ,
କରୁଛନ୍ତି ସଦାବେଳେ ନୃପ ! ଛିନ୍ନଭିନ୍ନ ।
ବରନ୍ଦାମାନଙ୍କ ରମ୍ୟ ଧାଡ଼ି ଧାଡ଼ି ସ୍ତମ୍ଭେ
ଅପରୂପ ନାରୀରୂପ ଶୋଭୁଥିଲା ଯାହା,
ଧୂଳିରେ ଧୂସର ହୋଇ ଏବେ ସେ ସକଳ
ରହିଅଛି ନିଜ ସ୍ଥାନେ ଶ୍ରୀହୀନ ହୋଇଣ,
ଭୟାନକ ବିଷଧର ସର୍ପର ଖୋଳପା
ହୋଇଛି ତାହାଙ୍କ ସ୍ତନ ଅବରଣ ବସ୍ତ୍ର !
ଆଗେ ଯେଉଁ ହର୍ମ୍ୟମାନ ବିମଳ କାନ୍ତିରେ
ତୁଷାରଖଣ୍ଡର ପରି ଦିଶୁଥିଲା ଦୂରୁଁ,
ଏବେ ପ୍ରାଚୀନତ୍ୱ ଭଳି ତୃଣାଙ୍କୁରମାନେ
ଦିଶନ୍ତି ସବୁଜବର୍ଣ୍ଣ, ପୂର୍ଣ୍ଣିମାରେ ସୁଧା
ସମୁଜ୍ଜ୍ୱଳ ଚନ୍ଦ୍ରମାର ମନୋହର କର
ପୁର୍ବପରି ତହିଁ ଆଉ ନ ହୁଏ ବିମ୍ବିତ ।
ହାସ୍ୟରେ ବାଳାଏ ଯହିଁ ସଦୟ ଭାବରେ
ଶ୍ୟାମଳ ପଲ୍ଲବଯୁକ୍ତ ପୁଷ୍ପିତା ଲତାର
ନୁଆଁଇ କୋମଳ ଶାଖା, ତୋଳୁଥିଲେ ଫୁଲ
ମୋର ସେ ଉଦ୍ୟାନଲତା ଏବେ ହେ ବୀରେନ୍ଦ୍ର,
ବାନର, କାନନଚର ପୁଳିନ୍ଦଙ୍କ ଯୋଗେ
ବିଦଳିତ ହେଉଅଛି ନିର୍ଦ୍ଦୟ ଭାବରେ ।
ଯେ ରମ୍ୟ ଗବାକ୍ଷସ୍ଥିତ ପ୍ରଦୀପ ମାଳାରେ
ଅଳଙ୍କୃତ ହେଉଥିଲା ନିତ୍ୟ ରଜନୀରେ,
ବନଜ ବଦନ ଥୋଇ ଲଳନାଏ ଯହିଁ
ଦ୍ୱିଗୁଣେ ବଢ଼ାଉଥିଲେ ଯାହାର ଶ୍ରୀକୁ,
ସେ ଜାଳକମାନଙ୍କର ଆସ୍ତରଣରୂପେ
(ଦେଖି ହେଉଅଛି ହୃଦ କହିବା ପାଇଁକି !)
ମୃଦୁବାତେ ଦୋହଲୁଛି ମାକଡ଼ସା ଜାଲ ।

ସୁରଭିତ ଧୂମରାଶି ମନ ମୁଗ୍ଧକର
ଉଠୁଥିଲା ପୂର୍ବେ ଯହିଁ ଦିଗ ମହକାଇ
କୁନ୍ତଳ କାନ୍ତିକ ନନ୍ଦ ପୁର ଯୋଷାଙ୍କର,
ଏବେ ଯାଉ ଛଳେ ତାହା ନୃହଭ ବାହାର ।
ପୂଜା ଉପହାର ହସ୍ତେ ଦଳ ଦଳ ହୋଇ
ହରିନାମ ଜପି ଜପି ଗୁଣୁଗୁଣୁ ସ୍ୱରେ
ଧାର୍ମିକ ନଗର ଆଜ ପଥେ ସକଳ
ସରଯୂକୁ ସ୍ନାନ ପାଇଁ ନ ଯାନ୍ତି ପ୍ରତ୍ୟୁଷୁଁ,
ସ୍ନାନକାଳେ ସୁରଭିତ ତୈଳ ଚୂର୍ଣ୍ଣାଦିରେ
ବାସି ଯାଉଥିଲା ଯାହା ତଟ ଜଳରାଶି,
ଗହଗନ୍ଧ ହେଉଥିଲା ସଦାବେଳେ ଯାହା
ମୋର ପ୍ରିୟ ସ୍ନାନଶୀଳ ନାଗରଙ୍କ ଦଳେ
ସେ ସରଯୂ ଜଳରାଶି ଦିଶୁଅଛି ଶୂନ୍ୟ,
ନାହିଁ ମାନବର ଚିହ୍ନ ନାହିଁ ସେ ସୌନ୍ଦର୍ଯ୍ୟ,
ଶୂନ୍ୟ ବେତ ଗୃହରାଜି କେବଳ ତଟରେ
ଦେଖି ହେ ରାଜେନ୍ଦ୍ର ! ଏବେ ଫାଟିଯାଏ ହିଆ ।
ଏଣୁ ନିବେଦୁଛି ଖେଦେ ହେ ବୀରେନ୍ଦ୍ରମଣି !
ମୋ ପ୍ରତି ସଦୟ ହୁଅ, ତୁମ୍ଭ ପିତା ଯଥା
ମନୁଷ୍ୟ ଦେହକୁ ଛାଡ଼ି ଦିବ୍ୟରୂପ ବହି
ବିଜେ କଲେ ବସ୍ତୁଲୋକେ, ସେହିପରି ତୁମ୍ଭେ
ଅସ କୁଶାବତୀ ଛାଡ଼ି ମୋର ରମ୍ୟପୁରେ,
ମୁଁ ଅଟେ ତୁମ୍ଭର ଭୂପ ! କୁଳରାଜଧାନୀ ।”
‘ତଥାସ୍ତୁ’ ଉଚ୍ଚାରି ତହୁଁ ରଘୁଶ୍ରେଷ୍ଠ କୁଶ
ଘେନନ୍ତେ ପ୍ରଫୁଲ୍ଲମନେ ତାହାଙ୍କ ପ୍ରାର୍ଥନା
ପ୍ରସନ୍ନ ବଦନେ ଲକ୍ଷ୍ମୀ ହେଲେ ଅନ୍ତର୍ହିତା ।
ଶୟନରୁ ଉଠି ଏଣେ ନରପତି ପ୍ରାତୁଁ
କହିଲେ ମନ୍ତ୍ରୀଙ୍କ ଆଗେ ଏ ଅଦ୍ଭୁତ କଥା ।
କୁଳରାଜଧାନୀ ନିଜେ ବରଛନ୍ତି ବୋଲି
ସଚିବ ସହିତେ ସର୍ବ ପୌରଜନ ମିଳି
ମହାନନ୍ଦେ କଲେ ତାଙ୍କ ଚରଣ ବନ୍ଦନା ।

କୁଶାବତୀ ନଗରୀକୁ କୁଶ ନରବର
ତଦନ୍ତରେ ସତ୍‌ପାତ୍ରରେ ସମର୍ପି ସାନନ୍ଦେ,
ଶୁଭ ଅନୁକୂଳ ଯୋଗେ ଗମିଲେ ଉଲ୍ଲାସେ
ସ୍ୱରାଜ୍ୟ ଅଯୋଧ୍ୟା ମୁଖେ, ସଙ୍ଗତରେ ଘେନି
ଅନ୍ତଃପୁର ବିହାରଣୀ ମହିଳାମାନଙ୍କୁ
ରାଜଭକ୍ତ ପ୍ରଜାବୃନ୍ଦେ, ପାତ୍ରମିତ୍ର ଆଦି
ବାହାରିଲେ ଚତୁରଙ୍ଗ ସଜ୍ଜିତ ବାହିନୀ
ତାହାଙ୍କର ସଙ୍ଗତରେ ବନଗିରି ପୂରି
ମେଘମାଳ ବାୟୁ ସଙ୍ଗେ ଗୋଡ଼ାଏ ଯେସନ ।
ଏରୂପେ ବିପୁଳଠାଟ ବହୁସ୍ଥାନ ବ୍ୟାପି
ଗମନ୍ତେ ଅଯୋଧ୍ୟା ମୁଖେ, ଦେଖି ହେଲା ପ୍ରତେ
ସତେ କି ସେ ରାଜଧାନୀ ମନ୍ଥର ଗତିରେ
ସ୍ୱବିଭବ ସହିତରେ ଯାଉଅଛି ଚାଲି ।
ରାଜିଲେ ସ୍ୟନ୍ଦନରାଜି ଗୃହରୂପେ ତହିଁ,
ମହାକାୟ ଗଜଗଣ ଅମାତ୍ୟ ସହିତ
ବିହାର ଶୈଳର ସମ ହେଲେ ଉପମିତ,
ପୁଷ୍ପିତ ମଞ୍ଜୁଳ କେଳି ଉପବନ ପରି
ଶୋଭିଲେ ପତାକାଶ୍ରେଣୀ ବିବିଧ ବର୍ଣ୍ଣରେ,
ସମୀର ତରଙ୍ଗେ ରଙ୍ଗେ ଦୋହଲି ଦୋହଲି ।
ବିଜେ ହୋଇଥିଲେ ଆଗେ ନରମଣି କୁଶ,
ଅମଳ ଧବଳ କାନ୍ତ ଶ୍ୱେତ ଛତ୍ରବର
ଶୋଭା ପାଉଥିଲା ଶିରେ, ଚାଲୁଥିଲେ ପଛେ
ବିପୁଳ ବାହିନୀ ରଙ୍ଗେ, ଦେଖି ହେଲା ପ୍ରତେ
ନବୋଦିତ ପୂର୍ଣ୍ଣିମାର ଚନ୍ଦ୍ରବିମ୍ବଲକ୍ଷି
ଧାଉଁଥିଲା ସତେ କିବା ସାଗର ତରଙ୍ଗ ।
ଧରଣୀ ତଳକୁ ଢାଙ୍କି ସୈନ୍ୟ ଧୂଳିରାଶି
ଘୋଟି ନଭେ ଜନ୍ମାଇଲା ଅନ୍ତରେ ଏ ଭାବ
କୁଶଙ୍କର ବୀରଦର୍ପ ନ ସହି କି ମହୀ
ଧରି ଛଦ୍ମ ଆକାଶରେ କଲେ ଅଧିଷ୍ଠାନ ।
କେତେ ସେନା ସଙ୍ଗେ ସଙ୍ଗେ ଚାଲିଲେ ତାଙ୍କର,

କେତେ ବା ରହିଲେ ପାର୍ଶ୍ୱେ, କେତେ ପଛେ ପଛେ
ଯାଉଥିଲେ ପରସ୍ପରେ ଗଳ୍ପ ମୋଦେ ମାତି,
ଅରଣ୍ୟ ସରଣି ପୂରି ବହୁଦୂର ଯାଏ
ବ୍ୟାପିଥିଲେ ସେନାମାନେ, ଯହିଁ ଦେଖି ଦେଲେ
ଜଣୁଥିଲା ସୈନ୍ୟ ତାହା ଭରିଥିଲା ପର ।
ହସ୍ତିଙ୍କର ମଦଜଳେ କର୍ଦ୍ଦମାକ୍ତ ହୋଇ
ନୃପଙ୍କ ଗନ୍ତବ୍ୟମାର୍ଗ ଅଶ୍ୱଖୁରଘାତେ
ଧୂଳିହୋଇ, ବାୟୁଯୋଗେ ଉଡ଼ିଲା ଗଗନେ ।
ଏରୂପେ ସେ ଜନପଦ ମାର୍ଗ ଅତିକ୍ରମି
ବିନ୍ଧ୍ୟଗିରି ତଟଭୂମେ ହେଲେ ଉପସ୍ଥିତ,
ସେ ଗିରିର ନିତମ୍ବରେ ପଥ ଖୋଜି ଖୋଜି
ଦଣା ହୋଇଗଲେ ସର୍ବେ ନ ପାଇ ସରଣି,
ବିପୁଳ ବାହିନୀ ଖେଦେ ବ୍ୟସ୍ତବ୍ୟସ୍ତ ହୋଇ
ଏକଦରେ ଚୂର୍ଣ୍ଣହେଲା ଲତାଗୁଳ୍ମ ଦଳ
ଭୀଷଣ ଗହନେ ଶରେ କମ୍ପାଇଲେ ଯଣେ
ମହାଭୟେ ଗିରିବାସୀ ପ୍ରାଣୀନିବହଙ୍କୁ,
ଅଶ୍ୱମାନଙ୍କର ହ୍ରେଷା, ହସ୍ତିର ଗର୍ଜ୍ଜନ,
ସୈନ୍ୟନାଦ ତୋଳିସ୍ୱରେ ତୂର୍ଯ୍ୟଧ୍ୱନି ମିଶି
ଘୋର ପ୍ରତିଧ୍ୱନି ଯୋଗେ ସେ ମହାଶବଦ
ଅତି ପୃଥୁଳତା ଭଜି ଘନଘୋଷସମ
ଶୁଭିଲା ଶ୍ରବଣକୁଳ, ମନେ ହେଲା ପ୍ରତେ
ସୈନ୍ୟମାନଙ୍କର ଭାର ନ ପାରିବ ସହି
ବିକଳରେ ଗିରିବର ଦେଉଅଛି ଡାକ
ଅସମ୍ଭାଳେ ? ଅସମ୍ଭାଳେ ନର୍ମଦା ପ୍ରବାହେ
(୧) ଧୂଆଁଧାରେ ଯେସନ ସେ କରଇ ଗର୍ଜ୍ଜନ ।
ମାର୍ଗ ନିରୂପଣ କରି ଅଲକ୍ଷଣ ପରେ
ଚଳିଲେ ଗନ୍ତବ୍ୟ ପଥେ ପୃଥ୍ୱୀ ନରମଣି ।
ଦଶିଲା ଲୋହିତବର୍ଣ୍ଣ ରଥଚକ୍ରଘାତ

(୧) ନର୍ମଦାର ବଣ୍ୟାତ ପ୍ରପାତ ଧୂଆଁଧାର ଜବଲପୁର ନିକଟରେ ଅବସ୍ଥିତ ।

ସେ ଶୈଳର ଅବଲିପ୍ତ ଗୈରିକ ରଙ୍ଗରେ ।
ଗିରିବର ତଟବାସୀ, ଭୀଷଣ ଦର୍ଶନ
ଶବରମାନଙ୍କ ଦତ୍ତ ଉପହାରରାଜି
ସମାଦରେ ଗ୍ରହି ତହୁଁ ବୀରେନ୍ଦ୍ର କେଶରୀ
କିଛିକାଳେ କଲେ ବିନ୍ଧ୍ୟ ଶୈଳ ଅତିକ୍ରମ ।
ତହୁଁ ଗଙ୍ଗା ଲଙ୍ଘିବାକୁ ନିର୍ବିଘ୍ନେ ସମସ୍ତେ
ଯୋଡ଼ ଯୋଡ଼ କରି ହାତୀ ଜଳରେ ପୂରାଇ
ବାନ୍ଧିଲେ କୌଶଳେ ସେତୁ, ଏଣୁ ବାଧା ପାଇ
ପୂର୍ବମୁଖୀ ଭାଗୀରଥୀ ସ୍ରୋତ ବାଧାପାଇ
ସେ କାଳରେ ହୋଇଗଲା ପଶ୍ଚିମ ବାହିନୀ ।
ନଦୀ ପାର ହେବାକାଳେ କୁଶଙ୍କ ବାହିନୀ,
କଳରବେ ହଂସମାଳ ଚଞ୍ଚଳ ପକ୍ଷରେ
ଉଡ଼ିଲେ ଗଗନ ପରେ ଧାଡ଼ି ଧାଡ଼ି ହୋଇ,
ଦେଖି ହେଉଥିଲା ମନେ ସତେକି ଗଗନ
ବନ୍ଦୁଥିଲା ନରେଶଙ୍କୁ ଧବଳ ଚାମରେ ।
ମହର୍ଷି କପିଳ କୋପେ ହୋଇ ଭସ୍ମୀଭୂତ
କୁଶଙ୍କର ପିତୃଗଣ ଯେଉଁ ଜାହ୍ନବୀର
ପବିତ୍ର ସଲିଳ ସ୍ପର୍ଶେ ଲଭିଥିଲେ ମୁକ୍ତି,
ପୁଣ୍ୟତୋୟା ସେ ଗଙ୍ଗାକୁ ବଳୋଭୂତ କରି
ତୋଷ କଳପର ମଣି, ଭକ୍ତିରେ ପ୍ରଣମି
ସୈନ୍ୟସଙ୍ଗ ନିଜପଥେ ହେଲେ ଅଗ୍ରସର ।
ଏହିରୂପେ କିଛିଦିନ ଗମି ଅବଶେଷେ
ପ୍ରବେଶିଲେ ଶୂର ସେହି ସରଯୂ ତଟରେ
ଯହିଁ ଯଜ୍ଞରତ ପୂର୍ବ ରଘୁବୀରଙ୍କର
ବେଦୀ ପ୍ରତିଷ୍ଠିତ ଯୂପ ଶୋଭେ ଶତ ଶତ ।
ଉପବନମାନଙ୍କର ଶୀତଳ ପବନ
ସେକାଳେ ଦୋଳାଇ ଧୀରେ କୁସୁମିତ ଶାଖା ।
ସରଯୂର ମୃଦୁବୀଚିମାଳେ ନାଚି ନାଚି
ନବ ନରେଶଙ୍କୁ ଆସି କଲେ ଅଭ୍ୟର୍ଥନା ।
ଅରିକୁଳବିମର୍ଦ୍ଦନ, ସ୍ୱକୁଳ କେତନ

ଅଶ୍ୱୀସ୍ତ ରକ୍ଷକ ଚର୍ଦ୍ଧ ବଳଶାଳୀ କୁଶ
ସ୍ଥାପିଲେ ନଗରପାଶେ ବନ୍ଦିତ ବିଧାନେ
ଚଞ୍ଚଳଧ୍ୱଜିନୀ କ୍ଳାନ୍ତ ବାହିନୀ ନିକର ।
ଜଳ ବରଷଣେ ନବ ଜଳଦ ଯେସନ
ଗ୍ରୀଷ୍ମଦଗ୍ଧ ଧରଣୀକୁ ସାଜେ ନବବେଶେ
କଅଳାଇ ଶୂନ୍ୟପତ୍ର ତରୁଲତା ଆଦି,
ତେସନ ଶିଳ୍ପୀଏ ମିଳି ପ୍ରଭୁଙ୍କ ଆଦେଶେ
ଠୁଳକରି ଯଥାଯୋଗ୍ୟ ଉପାଦାନମାନ
ଭଗ୍ନ ଅବଶେଷ ସେହି ପ୍ରାଚୀନ ପୁରକୁ
ନୂଆକରି ଆଉ ଥରେ ଗଢ଼ିଲେ ଗଠନେ ।
ଯଥାବିଧି ନରମଣି ଉପବାସ ଅନ୍ତେ
ଅଗ୍ନୀଧ୍ରମାନଙ୍କ ସଙ୍ଗ ବେଦୋକ୍ତ ମତରେ
ପ୍ରଶସ୍ତ ପ୍ରାଙ୍ଗଣଶୋଭା, ଅଟ୍ଟାଳମଣ୍ଡିତ
ଅଯୋଧ୍ୟାକୁ ପଶିଲେ ସୁପବିତ୍ରମନେ ।
ପ୍ରଣୟିନୀ ହୃଦେ ଯଥା ପଶଇ ପ୍ରେମିକ,
ପ୍ରବେଶିଲେ କୁଶ ତଥା ରାଜଭବନରେ
ସାମନ୍ତ ଅମାତ୍ୟ ଆଦି ସକଳ ଲୋକଙ୍କୁ
ଯଥାଯୋଗ୍ୟ ବାସଗୃହେ ନିବେଶି ସଦୟେ
ବଢ଼ାଇଲେ ସେମାନଙ୍କ ବଂଶର ମର୍ଯ୍ୟାଦା ।
ପୂର୍ବରୁ ନିର୍ଦ୍ଦିଷ୍ଟ ରମ୍ୟ ଶାଳମାନଙ୍କରେ
ବାନ୍ଧିଲେ ରକ୍ଷକେ ନେଇ ଯେତେ ହାତୀ ଘୋଡ଼ା,
ଗାଈଙ୍କୁ ଗୁହାଳଘରେ, ଛେଳିଙ୍କୁ କୋଠିରେ,
ଅନ୍ୟାନ୍ୟ ପଶୁ ପକ୍ଷୀଙ୍କୁ ନିର୍ଦ୍ଦିଷ୍ଟ ସ୍ଥାନରେ ।
ନାନାବିଧ ପଣ୍ୟଜାଳେ ହୋଇ ସୁଶୋଭିତ
ଅଳକାଳେ ସେ ନଗରୀ, ରହେ ସମୁଜ୍ଜ୍ୱଳ
ମାର୍ଗ ଦୁଇପାରୁଶର ବିପଣୀନିକରେ
ଦିଶିଲ ରୁଚିରତର, ସର୍ବାଙ୍ଗସୁନ୍ଦରୀ
ଅଳଂକାରେ ବିମଣ୍ଡିତା ବନିତା ପରାଏ ।
ଏହିରୂପେ ଶ୍ରୀରାମଙ୍କ ପ୍ରିୟ ରାଜଧାନୀ
ଲଭିଲ ପୂର୍ବର ଶୋଭା, ତହିଁ ରହି କୁଶ

ଇନ୍ଦ୍ରଙ୍କୁ କୁବେରଙ୍କୁ ନଗଣିଲେ ମନେ ।
ଏଥୁଅନ୍ତେ ଉପସ୍ଥିତ ହେଲା ଗ୍ରୀଷ୍ମକାଳ
ଘେନି ସମାଦରେ ଅଙ୍ଗେ ଜର ଉତ୍ତାପକୁ
ପାଣ୍ଡୁର ଉରଜେ ଖଞ୍ଜି ରତ୍ନହାରାବଳୀ
ସୂକ୍ଷ୍ମ ବସନ ପିନ୍ଧି ଚନ୍ଦନ ରୁଚିରେ
ଅଙ୍ଗନାଏ, ହରନେଲେ କୁଶଭୂପ ମନ
ଦକ୍ଷିଣ ଦିଗରୁ ଫେରି ଏକାଳେ ମିହିର
ଚଳିଲେ ଉତ୍ତର ମୁଖେ ଅପୂର୍ବ ଗତିରେ,
ବହୁକାଳ ଅଦର୍ଶନେ ସୁଚିର ଦୁଃଖିନୀ
ବିୟୋଗ ବିଧୁରା ଅହା ଉତ୍ତରଦିଗ୍‌ବଧୂ,
ତାହାଙ୍କ ମିଳନେ ପ୍ରେମେ ପୁଲକିତ ହୋଇ
ସୁଶୀତଳ ଆନନ୍ଦାଶ୍ରୁ ତ୍ୟାଗ କଲାପରି
ପ୍ରାତଃକାଳେ ବୃଷ୍ଟି ହେଲା ହିମବିନ୍ଦୁମାଳ
ମହୋନ୍ନତ ହିମାଳୟୁ ହିମ ସମ୍ପର୍କରୁ ।
ବଢ଼ିଲା ଦିନକୁ ଦିନ ଦିବସର ତାପ
କ୍ଷୀଣ ହୋଇଗଲା ନିଶା, ଜାୟାପତି ଯଥା
ପ୍ରଣୟ କଳହେ ତୀବ୍ର ମନୋବେଦନାରେ
ଦୁହିଙ୍କ କାର୍ଯ୍ୟରେ ଦୁହେଁ ଅନୁତପ୍ତ ହୋଇ
ଦେକ ଲଭଇ ତାପ ଦେହକୁ ହୋଇଯାଏ କ୍ଷୀଣ ।
ପୁଷ୍କରିଣୀ ଜଳରାଶି ଦିନେ ଦିନେ ଖସି
ତଳ ପାବଚ୍ଛରେ ଯାଇ ଲଭିଲା ଆଶ୍ରୟ,
ବଢ଼ିଲା କ୍ରମଶଃ ଜଳେ ଶୈବାଳ ନିକର,
ଯାରୁଁ ବହୁଦୂର ଉଠି ମୃଣାଳଦଣ୍ଡରେ
ପ୍ରସ୍ଫୁଟିତ ନଳିନୀଏ ଦୋହଲିଲେ ବାତେ ।
ଜଳର ଯେ ମୃଦୁ ବୀଚି ବିଛୁରନ ଅଗେ
ବାମାମୁଖ ସୁଧାଲିଭେ ହେଉଥିଲା ସୁଖୀ,
ଏବେ ସେ ସଲିଳରାଶି କ୍ଷୀଣଦଶା ଭଜି
ସେମାନଙ୍କ ନିତମ୍ବକୁ ନ ପାରିଲା ଛୁଇଁ ।
କାନନେ ମଲ୍ଲିକା ଫୁଲ ଫୁଟିଣି ଉଲ୍ଲାସେ
ପୂରାଇଲେ ଚୌଦିଗକୁ ସୁନ୍ଦର ସୌରଭେ,

ମଧୁକର ପ୍ରେମଭରେ ଶାଖେ ଶାଖେ ଯାଇ
ପ୍ରତ୍ୟେକ ଫୁଲରେ ବସି ଗୁଣୁଗୁଣୁ ସ୍ୱରେ
ହେଜିଲା କି ସେମାନଙ୍କୁ ଗୋଟିଗୋଟି କରି ?
ଶିରୀଷକୁସୁମସ୍ତବ କାମିନୀଙ୍କ କର୍ଣ୍ଣୁ
ଖସି, ଧରାତଳେ ଆଉ ପଡ଼ିଲା ନାହିଁଟି
ଝାଳେ ଜରଜର ରମ୍ୟ ଗଣ୍ଡମଣ୍ଡଳର
ସଦ୍ୟ ନଖକ୍ଷତେ ଯେଣୁ ରହିଲା ଲଟକି ।
ଧନବନ୍ତ ବିଳାସୀଏ ପ୍ରଫୁଲ୍ଲ ମନରେ
ଭୃତ୍ୟମାନେ ମନୋରମ ଶୀତଲ ଗୃହକୁ
ଚନ୍ଦନ ଜଲରେ ଧୋଇ ମଣିମୟ ପୀଠ
ବିଛାଇ ଶୀତଲପାଟି, ତଥିପରେ ଶୋଇ
ବିନାଶିଲେ ଗ୍ରୀଷ୍ମତାପ ନାନା ଗନ୍ଧାମୋଦେ ।
ବସନ୍ତ ଯିବାରୁ ସ୍ଥଳ ବଚ୍ଛଶୂନ୍ୟ ହୋଇ
କେଳିଉପବନ ବେଗ ଯାଉଥିଲା ଛୁଟି,
କାମିନୀଏ ସ୍ନାନ ସାରି ବିମୁକ୍ତ କେଶକୁ
ସୁମଧୁର ଧୂପଗନ୍ଧେ ସୁବାସିତ କରି
ମଞ୍ଜୁଳମଲ୍ଲିକା ତହିଁ ଖଞ୍ଜନ୍ତେ ଚୂଡ଼ରେ,
ଏସବୁ ସୁଯୋଗ ଲଭି ସେ କାମରାଜାର
ଲୁପ୍ତପ୍ରାୟ ବଳ ପୁଣି ଆସିଲା ଲେଉଟି ।
ଅର୍ଜ୍ଜୁନ ବୃକ୍ଷର ନବ ବିକଚ କୁସୁମ
ପରାଗ ନିକର ଚୂର୍ଣ୍ଣି ପିଞ୍ଜର ବର୍ଣ୍ଣରେ
ହେଲା ଅତି ସୁଶୋଭିତ, ଜଣାଗଲା ମନେ
କାମକୁ ପୋଡ଼ାଇ ପୂର୍ବେ ଶଶାଙ୍କଶେଖର
ତାର କାର୍ମୁକରୁ ଗୁଣ ଉତ୍ପାଟି କୌଶଳେ
ରଖିଛନ୍ତି ଅବା ନିଜ ଦେହ ରକ୍ଷା ପାଇଁ ।
ଇକ୍ଷୁ ରସେ ବିନିର୍ମିତ ପ୍ରାଚୀନ ମଦ୍ୟକୁ
ପାଟଳ ପୁଷ୍ପର ଗନ୍ଧେ ସୁବାସିତ କରି
ରସାଳ କର୍ପୂରପତ୍ର ପକାଇ ତହିଁରେ
ବିଳାସୀଏ ଗ୍ରୀଷ୍ମତାପ କଲେ ପରିହାର ।
କ୍ରମେ ଖରକାଳ ସନ୍ଧୁଁ ହୋଇଲା ପ୍ରବଳ

ନବୋଦିତ ଚନ୍ଦ୍ର ପୁଣି ଅଭ୍ୟୁଦିତ ନୃପ
ହୋଇଲେ ପ୍ରୀତିପ୍ରଦ ଅତି ଏମାନଙ୍କ ପାଦ (୧)
ସେବିଲେ ସନ୍ତାପ (୨) ଯେଣୁ ହୁଅଇ ଶମିତ ।
ଏକାଳେ ମହୀଶ କୁଶ ବାମାଗଣ ସହ
ଗ୍ରୀଷ୍ମତାପ ଦୂର ପାଇଁ ସରଯୂ ସଲିଳେ
ଜଳକ୍ରୀଡ଼ା କରିବାକୁ ବଳାଇଲେ ମତି ।
ଏକେତ ସରଯୂ ନଦୀ ସୁପବିତ୍ର ଜଳ ।
ମୃଦୁଳ ଲହରୀମାନେ ଧୀରେ ନାଚିନାଚି
ରାଜହଂସେ ଖେଳୁଥିଲେ ତହିଁରେ ଉଲ୍ଲାସେ,
ଫୁଟି ନାନାବିଧ ଫୁଲ ବିତରି ସୁବାସ
ତଟସ୍ଥିତ ପ୍ରାଣୀମନ ନେଉଥିଲା ହରି,
ଅତି ସୁଶୀତଳ ଜଳ ଗ୍ରୀଷ୍ମକାଳେ ସୁଖା,
କାହାର ନହେବ ମନ ତହିଁ ସ୍ନାନ ପାଇଁ ।
ବିଷ୍ଟପର ବଳବନ୍ତ ଏଣୁ କୁଶ ଭୂପ
ସେ ତଟିନୀ ତଟଭୂମେ ନିବେଶି ଶିବିର
ଧୀବରମାନଙ୍କ ଯୋଗେ ବାଗୁରୀ ଚଳାଇ
କୁମ୍ଭୀରମାନଙ୍କୁ ତଡ଼ି, ନିଃଶଙ୍କ ମନରେ
କୂଳକୁଳେ ଜଳକେଳି କଲେ ଆଚରଣ ।
ଅନ୍ତଃପୁର ଅଙ୍ଗନାଏ ଦଳ ଦଳ ହୋଇ
ଜଳକେଳି ଯୋଗ୍ୟ ବେଶେ ଆନନ୍ଦିତ ମନେ
ସେ ନଦୀ ସୋପାନ ପଥେ ଓହ୍ଲାଇବାବେଳେ
ପରସ୍ପର ବାହୁବନ୍ଧ ଘସାଘସି ହୋଇ ।
ପାଦର ନୂପୁର ଖସି ମଧୁର ନାଦରେ
ଜଳସ୍ଥିତ ବରଟାଙ୍କୁ କରିଲା ଚକିତ ।
ସୁନ୍ଦର ତରଣୀ ପରେ ଆରୋହି ନରପେ
ଜଳ ଫିଙ୍ଗାଫିଙ୍ଗି-ବ୍ୟସ୍ତ ରମଣୀମାନଙ୍କ
ସ୍ନାନ ଅଭିଳାଷ ଦେଖି, କଉତୁକେ କୁଶ
ସ୍ମରଧାରିଣୀ ପ୍ରତି କହିଲେ ଏମନ୍ତ—

(୧) ପାଦ ନୃପପକ୍ଷେ ଚରଣ, ଚନ୍ଦ୍ରପକ୍ଷେ କିରଣ ଅର୍ଥ ହେବ (୨) ସନ୍ତାପ—ଦୁଃଖ ଓ ଉଷ୍ମ ।

"ଦେଖ ମୋର ଶତ ଶତ ଶୁଦ୍ଧାନ୍ତବାସିନୀ
ବାଳାଏ କରନ୍ତେ ସ୍ନାନ ମନ୍ଥର ପ୍ରବାହେ
ହଳଦୀ ଜର୍ଦ୍ଦର ତାଙ୍କ ଦେହ ଧୋଇ ହୋଇ,
ଅବାଧ ବର୍ଣ୍ଣରେ ଏହି ସରଯୂର ନୀର
ଧରଇ ହେମନ୍ତ ସନ୍ଧ୍ୟା ମେଘମାଳା ଶୋଭା ।
ତଥା ଅନୋଦନୀ ଏହି ନାରୀମାନଙ୍କର
କ୍ଷେପଣୀ ତାଡ଼ିତ ଏହି ସରଯୂ ସଲିଳ
ଉଚ୍ଛଳ ଛିଡ଼ିକି ପଡ଼ି ହରିଥିଲା ଯାହା
ସେମାନଙ୍କ ନୟନରୁ କଜ୍ଜଳର ରେଖା
ଏବେ ମଦରାଗ ଶୋଭା ପ୍ରକାଶି ତହିଁରେ
ଦେଖ ପୁଣି ପ୍ରତ୍ୟର୍ପଣ କରୁଛି ହେମନ୍ତ ।
ଯହିଁ ଯହିଁ କି ରଙ୍ଗରେ ବିଳାସିନୀମାନେ
ସ୍ତନ ପୁଣି ନିତମ୍ବର ଗୁରୁତା ବଶରୁ
ପାରୁ ନଥିଲେହେଁ ନିଜ ଶରୀରକୁ ବୋହି
କ୍ରୀଡ଼ା ଅଭିନୟ ବଶେ ମଚ୍ଛି ଭୁଜଦ୍ୱୟେ
ପହଁରନ୍ତି ବାହୁଯୁଗ ଧୀରେ ଧୀରେ ଯହିଁ ।
ବାର ବିହାରଣୀ ଏହି ରମଣୀମାନଙ୍କ
ଶିରୀଷ ଫୁଲର ରମ୍ୟ କର୍ଣ୍ଣ ଅଳଂକାର
ଶ୍ରବଣଯୁଗରୁଁ ଖସି ସଲିଳରେ ପଡ଼ି
ଚଞ୍ଚଳ ତରଙ୍ଗେ ଯହିଁ ଇତସ୍ତତ ଭାସି
ବାଳେହେଁ ମୀନାଳିଙ୍କୁ କରି ପ୍ରତାରିତ
ଚଳାଉଛି ଭକ୍ଷ୍ୟଦ୍ରବ୍ୟ ଭ୍ରମ ଦେଇ ମନେ ।
ପାଣି ଫିଙ୍ଗାଫିଙ୍ଗି ଖେଳେ ମାତିଛନ୍ତି ଦେଖ
ହେମନ୍ତ ବାଳାଏ, ତାଙ୍କ ମଞ୍ଜୁ ମୁକ୍ତାହାର
ଦୋହଲି ଦୋହଲି ସ୍ତନେ ବାଜି ସବେଗରେ,
ଛିଡ଼ି ଯାଇଥିଲେ ସୁଦ୍ଧା ଜଣା ପଡୁ ନାହିଁ
ସ୍ଥୂଳ ଜଳବିନ୍ଦୁ ସହ ବକ୍ଷସ୍ଥଳେ ମିଶି ।
ନମ୍ରନାଭି ସୁଷମାରେ ଭଉଁରିକୁ ଗଞ୍ଜି,
ଭ୍ରୂଭଙ୍ଗରେ ତରଙ୍ଗକୁ ରଙ୍ଗେ ଉପହାସି
ଚକ୍ରବାକ ମିଥୁନକୁ ସ୍ତନରେ ହସାଇ

ଦେଖ ଅଚଳା ଏ ନିଜ ରୂପେ, ଅବସ୍ଥେ
କେମନ୍ତ ତଟିନୀ ସଙ୍ଗେ ଦ୍ୱନ୍ଦ୍ୱ ଭୁଳନ୍ତ ?
କାମିନୀଙ୍କ କରଯୁଗେ ପ୍ରତାଡ଼ିତ ହୋଇ
ଅନାଥ ଏ ନଦୀଜଳ କେମନ୍ତ ରୁଚରେ
ମୃଦଙ୍ଗ ବାଦ୍ୟର ପରି ମଧୁର ନିନାଦେ
ସେମାନଙ୍କ ଗୀତସ୍ୱରେ ଦେଉଅଛି ଯୋଗ,
ପାକଣ୍ଡି ସେ ମୃଦୁନାଦ ଅତ୍ୟନ୍ତ ଉତ୍ସବେ
ଦେଖ ଦେଖ ତଟଦେଶେ ମୟୂର ସକଳ
କେମନ୍ତ ସୁନ୍ଦର ପୁଚ୍ଛଗୁଚ୍ଛ ଊର୍ଦ୍ଧ୍ୱେ ତୋଳି
ନାଚି ନାଚି ସୁମଧୁର କେକାଧ୍ୱନି ସହ
ଆନନ୍ଦରେ କରୁଛନ୍ତି ଆବାହନ ତାର ।
ସୁଶ୍ରୀନବସନ ଭଙ୍ଗ ମୃଣାଳଭୁଜାଙ୍କ
ସୁଥୁଳ ନିତମ୍ବ ଦେଶେ ଯାଉଛି ଲଟକି,
ଜ୍ୟୋସ୍ନାରେ ବଲ୍ଲପ୍ରକାଶ୍ୟ ତାରାମାଳପର
ତା ତଳେ ମେଖଳା ଦୁରୁଁ ଦଶେ ସ୍ଥାନଭ୍ରଷ୍ଟ,
ପାଣି ପଶିବାରୁଁ ପୁଣି ସ୍ୱରଚକ୍ର ବାଟେ
ଏବେ ତା ମୁଖର-ମଞ୍ଜୁ କ୍ଷୁଦ୍ର ଘଣ୍ଟିମାଳ
ପୂର୍ବପରି ନ କରନ୍ତି ସୁମଧୁର ରବ ।
ମଣ୍ଡଳାସିନୀଏ ଦେଖ ମନେ ଦର୍ପ ବହି
ଛିଞ୍ଚନ୍ତି ସ୍ୱହସ୍ତେ ଜଳ ସଖୀଙ୍କ ଉପରେ
ପ୍ରତି ବଦଳରେ ତାର ସଖୀଏ ସତ୍ୱରେ
ଦେବାରୁ ସଲିଳ ତାଙ୍କ ବଦନେ ଅଜାଡ଼ି
କୁଙ୍କୁମ ଚୂର୍ଣ୍ଣର ଜଳ ପିଚକାରେ ଭରି
କରନ୍ତି ଅରୁଣବର୍ଣ୍ଣ ସଖୀଙ୍କୁ ସେମାନେ ।
ଚୁହିଁ ଚୁହିଁ ଜଳକେଳିଲୋଳାବାଳାଙ୍କର
ଫିଟିଅଛି କେଶପାଶ, ଲମ୍ବିଛି ଅଳକା,
ମୁକ୍ତାମୟ କର୍ଣ୍ଣଫୁଲ ପାଇଅଛି ଖସି,
ତଥାପି ତାଙ୍କର ରୂପ ନୈସର୍ଗିକ ବେଶେ
କେମନ୍ତ ସୁନ୍ଦର ଦୁରୁ ଦିଶୁଅଛି ଫୁଟି ।"
ଏହା କହି ତରଣୀରୁ ଓହ୍ଲାଇ ତରୁଣ

ମାଡଲେ ବାଳାଙ୍କ ସଙ୍ଗ ସଲିଲ ଉଚ୍ଛ୍ୱାସରେ,
ବାହୁଯୁଗ ଆସ୍ଫାଳନ ବଶେ ସବେଗରେ
ଦୋହଲିଲା ମୁକ୍ତାହାର ଅଧୀରେ ସ୍ତନରେ,
ଦେଖି ମନେହେଲା ଯେହ୍ନେ ଚକ୍ରବାକ ଯୁବା
ଉପାଡ଼ି ମୃଣାଳଦଣ୍ଡ, ଚଞ୍ଚୁପୁଟେ ଥୋଇ
ମିଳିତ ହେଲା କି ଆସି ଭଗିଣୀଙ୍କ ସଙ୍ଗ ।
ତମାଳ ଶ୍ୟାମଳ ତନୁ କୁଶ ନରବର
କେଳି ରସେ ମଗ୍ନହୋଇ ତହିଁ ମିଶିବାରୁ
ଶୋଭାଙ୍ଗୀମାନଙ୍କ ଶୋଭା ବଢ଼ିଲା ଦ୍ୱିଗୁଣେ,
ସ୍ୱଭାବେତ ମୁକ୍ତାହାର ନେତ୍ରପ୍ରୀତିକର,
ପ୍ରସ୍ମମଧ୍ୟ ଇନ୍ଦ୍ରନୀଳ ତହିଁ ଗୁନ୍ଥା ହେଲେ
ଦ୍ୱିଗୁଣେ ସୁନ୍ଦର ହେବ ନ ଜାଣଇ କିଏ ?
କୁଙ୍କୁମ ମିଶ୍ରିତଜଳ ସଙ୍ଗେ ସପନ୍ତେ
କୁଶ ଶିରେ ବନିତାଏ ଅଜାଡ଼ନ୍ତେ ନେଇ
ବହିଲେ ବଚନ ଶୋଭା ଶ୍ରୀରାମଙ୍କ ସୁତ
ଗୈରିକ ପ୍ରପାତଶୋଭି ଗିରି ଶିରେ କରେ
ପ୍ରତ୍ୟୁଷରେ ବାଳାତପ ହେଲା ନିପତିତ ?
ଅନ୍ତଃପୁର ସୁନ୍ଦରୀଙ୍କ ସଙ୍ଗ ବୀରମଣି
ଏହିରୂପେ ଜଳକ୍ରୀଡ଼ା କରନ୍ତେ ଆନନ୍ଦେ
ମନେ ହେଲା କ୍ରୀଡ଼ାରତ ଦେବରାଜ ଅବା
ଅପ୍ସରୀମାନଙ୍କୁ ଘେନି ଲୀଳା ସହକାରେ
କରନ୍ତି ବିହାର ରଙ୍ଗେ ଆକାଶ ଗଙ୍ଗାରେ ।
ମହାବୀର ରାବଣକୁ ରଣେ ହତ କରି
ଜୟମାଳାରୂପେ ରାମ ପାଇଥିଲେ ଯେଉଁ
ଅଗସ୍ତ୍ୟ ମୁନିଙ୍କଠାରୁ ଦିବ୍ୟ ଆଭରଣ,
ରାଜ୍ୟସହ ଦେଇଥିଲେ ପୁତ୍ରକୁ ତାହା ସେ,
ଗୁଣବାନ ପୁତ୍ର ଏବେ ସେ ଭୂଷଣ ଗୋଟି
ଜଳ ବିହାରରେ ମାତି ଭାମିନୀଙ୍କ ସଙ୍ଗ
ଅଲକ୍ଷେ ହଜାଇ ଦେଲେ ସଲିଳ ଭିତରେ ।
ଯଥେଚ୍ଛାରେ ସ୍ନାନସାରି ନାରୀଗଣ ସଙ୍ଗ

ତୀରସ୍ଥ ଶିବିରେ ବୀର ଉପସ୍ଥିତ ହୋଇ
ବେଶ ବିରଚନ ପାଇଁ ନ ପଶି ଗୃହରେ
ଦେଖିଲେ ବାହୁରେ ନାହିଁ ସେହି ଅଳଂକାର ।
ଜୟଲକ୍ଷ୍ମୀଙ୍କର ବଶୀକରଣ ସ୍ୱରୂପ
ଥିଲା ସେହି ମହୋଜ୍ଜ୍ୱଳ ଦିବ୍ୟ ଆଭରଣ
ପୂଜ୍ୟପାଦ ପିତୃଦେବ ପୁଣି ସ୍ୱହସ୍ତରେ
ପିନ୍ଧିଥିଲେ ସ୍ନେହେ ତାହା ଏଣୁ ନରମଣି
ସେ ଅଳଂକାରର ନାଶ ନ ପାରିଲେ ସହି,
ନୋହିଲେ ସାମାନ୍ୟ ହାର ନିମନ୍ତେ ଚଞ୍ଚଳ
ନୋହୁଥାନ୍ତେ କେତେବେଳେ, ତିଳେସୁଦ୍ଧା ଲୋଭ
ନ ଥିଲା ତାଙ୍କର ଚିତ୍ତେ, କୁସୁମହାରକୁ
ଭୂଷଣ ସହିତେ ଭୂପ ମଣୁଥିଲେ ଏକ ।
ସତ୍ୱରେ ହକାରି ସେତେ ଧୀବରଗଣଙ୍କୁ
ଆଦେଶ କହିଲେ ରାୟେ, ସଲିଳରେ ବୁଡ଼ି
ଖୋଜି ଆଣିବାକୁ ସେହି ଉଜ୍ଜ୍ୱଳ ରତନ ;
ଜଳଗର୍ଭେ ନାସେ ପଶି ରାଜାଙ୍କ ଆଦେଶେ
ବୁଡ଼ି ବୁଡ଼ି ଅବିରତ ଅସଂଖ୍ୟ ଧୀବର
ଘାଣ୍ଟି ପକାଇଲେ ହେଲେ ସରୟୂ ଜଳକୁ
ନ ପାଇଲେ ଖୋଜି କାହିଁ ସେ ଦିବ୍ୟ ଭୂଷଣ ।
ବିଫଳ ପ୍ରୟାସେ ତହୁଁ ସେମାନେ ସଭୟେ
ଜଣାଇଲେ ଶିରମୁରେ ଦେନ କରଯୋଡ଼ି,
ହେଦେବ ! ବହୁତ ଯତ୍ନେ ନ ପାଇଲୁ ଖୋଜି
ଦେବଙ୍କ ଦୁର୍ଲ୍ଲଭ ସେହି ମହାର୍ଘ ରତନ
ଜଣାଯାଏ ଲୋଭବଶେ ହ୍ରଦତଳ ବାସୀ,
ଏହାକୁ କୁମୁଦ ନାଗ ହରିଛି କୌଶଳେ ।
ଶୁଣି ବଳବନ୍ତ କୁଶ ଶରାସନ କରେ
କ୍ରୋଧକଷାୟିତ ନେତ୍ରେ ନଦୀତଟେ ଯାଇଁ,
ସର୍ପକୁଳ ନାଶ ପାଇଁ ଗରୁଡ଼ ଅସ୍ତ୍ରକୁ
ସତ୍ୱର ତୂଣୀରୁ ବାଛି କରିଲେ ବାହାର,
ଶର ଯୋଖୁଁ ଯୋଖୁଁ ଦ୍ରୁତେ ବେଗେ ନରମଣି

ବିଶାଳ ସଲିଳରାଶି ହେଲା ଉଦ୍‌ବେଳିତ,
ଉତ୍ତୁଙ୍ଗ ତରଙ୍ଗମାଳ ଠେଲାଠେଲି ହୋଇ
ଭୀମବେଗେ ତଟଦେଶେ ଆସି ହେଲା ପିଟି,
ଦେଖୁଁ ଦେଖୁଁ ମହାଘୋର ଶବଦ ଉଠାଇ ।
ସେ ଜଳ ତାଣ୍ଡବ ହେତୁ ପ୍ରତେ ହେଲା ମନେ
ବଳଦୃପ୍ତ ମଦମତ୍ତ ଏକ ବନ୍ୟହସ୍ତୀ
ହାଣ୍ଡଧର ଗର୍ତ୍ତ ମଧ୍ୟେ ଅନାୟାସେ ପଡ଼ି
ଥୋରଘାଇ ଫେଇ ନାସେ କରୁଛି କି ନାଦ ?
ମନ୍ଥି ହ୍ରୋଦଗର୍ଭ ଜଳ, କୁମ୍ଭୀର ସକଳ
ଆତଙ୍କେ ମୀନଙ୍କ ସଙ୍ଗ ହୋଇଲେ ଚକିତ,
ତକ୍ଷଣେ ଭୁଜଙ୍ଗରାଜ-କୁମୁଦ ସଭୟେ
ଆଗରେ ଚଳାଇ ନିଜ ରୂପସୀ ଭଗ୍ନୀକୁ
ଲକ୍ଷ୍ମୀସହ ପାରିଜାତ ତରୁବର ପରି
ହ୍ରଦଗର୍ଭୁଁ ସିନ୍ଧୁଁ ଗର୍ଭୁଁ ପଡ଼ିଲେ ବାହାରି,
ଉପହାର ଦେବାପାଇଁ ତାହାଙ୍କ ଛାମୁରେ ।
କନ୍ୟାରୂପ ଅଲଙ୍କାର ସଙ୍ଗତରେ ନେଇ
ବିନୟେ କୁମୁଦନାଗ ପ୍ରବେଶ ହୁଅନ୍ତେ
କୋପଶାନ୍ତ କରି ବୀର ସଦୟ ହୃଦରେ
ପ୍ରତି ସଂହରିଲେ ଉଗ୍ର ଗରୁଡ଼ ଅସ୍ତ୍ରକୁ,
ବଶ୍ୟତା ସ୍ୱୀକାର କଲେ ସାଧୁଙ୍କ ନିକଟେ
କେ ନ ଜାଣେ ତାଙ୍କ କ୍ରୋଧ ହୁଏ ଉପଶମ ?
ଜାଣିଥିଲେ ନାଗ ପୂର୍ବୁଁ ଏ ଶର ମହିମା
ଶତ୍ରୁଙ୍କ ଅଙ୍କୁଶରୂପୀ ମହାପରାକ୍ରମୀ
ଶ୍ରୀରାମଙ୍କ ପ୍ରିୟସୁତ କୁଶ ନରେଶଙ୍କୁ
ମାନୋନ୍ନତ ମସ୍ତକରେ ଏଣୁ ସବିନୟେ
ବନ୍ଦି ଭକ୍ତିଭାବେ ନାଗ କହିଲେ ଏସନ—
ହେ ଦେବ ! ତୁମ୍ଭର ପିତା ପ୍ରଭୁ ଶ୍ରୀବତ୍ସାଙ୍କ
ଦେବକାର୍ଯ୍ୟ ସାଧିବାକୁ ନରଦେହ ବହି
ଜନ୍ମିଥିଲେ ମର୍ତ୍ତ୍ୟଲୋକେ, ତୁମ୍ଭେ ହେ ଯଶସ୍ୱି !
ତାହାଙ୍କର ପ୍ରିୟପୁତ୍ର ଦ୍ୱିତୀୟ ମୂରତି,

ଏଣୁ ପୂଜନୀୟ ଭବେ ଅଟ ସମସ୍ତଙ୍କ,
ତୁମ୍ଭପରି ମହାତ୍ମାଙ୍କ ଇଚ୍ଛା ପ୍ରତିକୂଳେ
କିରୂପ ହେ ଦେବ ମୁହିଁ ଚଳାଇବି ମତି ?
ବିସ୍ତାରି କହୁଛି ସେହି ସକଳ ଚରିତ
ଶୁଣ ଥରେ ମନଦେଇ ହେ ବୀରେନ୍ଦ୍ରମଣି !
"ଅଜି ସକାଳରୁ ଉଠି ପୁର ପ୍ରାଙ୍ଗଣରେ
କନ୍ଦୁକ କ୍ରୀଡ଼ାରେ ରତ ଥିଲା ମୋ ଭଗିନୀ,
ଏଣୁ ହସ୍ତ କନ୍ଦୁକକୁ ଉପରକୁ ଫିଙ୍ଗି
ଧରିବାକୁ ବାଳା ଥିଲା ଏକଦୃଷ୍ଟେ ଚାହିଁ
ଏକାଳେ ଆକାଶଦେଶୁଁ ନକ୍ଷତ୍ର ବେଗରେ
ପଡ଼ିଲା ହ୍ରଦରୁ ତୁମ୍ଭ ଏହି ଆଭରଣ,
ଛଟକେ ବଢ଼ାଇ କର ସେ ଭୂଷାକୁ ଧରି
ନେଇଥିଲା ସଦନକୁ କୁତୂହଳ ବଶେ ।
ଯେବେ ଏହି ଆଭରଣ ଅହେ ଗୁଣମଣି
ଧନୁର୍ଗୁଣ ଘରଷଣ କିଣରେ (୧) ଲାଞ୍ଛିତ,
ପୃଥିବୀର ରକ୍ଷାପାଇଁ ଅର୍ଗଳ ସ୍ୱରୂପ,
ଅତିଶୟ ବଳଶାଳୀ, ଆଜାନୁ ଲମ୍ବିତ,
ତୁମ୍ଭର ଭୁଜରେ ତାହା ଶୋଭା ପୂର୍ବପର,
ଆହୁରି ମାଗୁଣି ଏକ ଅଛି ନରମଣି
ଏହି କୁମୁଦ୍ୱତୀ ମୋର କନିଷ୍ଠା ଭଗିନୀ
ଚିରକାଳପାଇଁ ତୁମ୍ଭ ପଦ ସେବିବାକୁ
ଇଚ୍ଛୁ ଅଛି, ନିଜ ଦୋଷକ୍ଷାଳନ ନିମନ୍ତେ,
ସଦୟେ ପ୍ରାର୍ଥନା ତାରି କର ହେ ପୂରଣ ।
ଏରୂପ ଭଣି ସେ ରତ୍ନ ଦିଅନ୍ତେ ଫେରାଇ
ତୁମ୍ଭେ ଅମ୍ଭ ଯୋଗ୍ୟବନ୍ଧୁ ବୋଲି କୁଶ ନୃପ ।
ତାହାଙ୍କୁ ଆଦର ଯତ୍ନେ ସନ୍ତୋଷି ବଧୂରେ
ବନ୍ଧୁଯୋଗ୍ୟ ବ୍ୟବହାରେ ବରିଲେ ସ୍ୱପୁରେ ।
ଯଥାକାଳେ ନାଗପତି ବନ୍ଧୁଗଣ ସହ

(୧) କିଣ—ଚିହ୍ନ ।

ସବିଧିରେ କୁଶ ହସ୍ତେ କଲେ ସମ୍ପ୍ରଦାନ
ଝଟକ ହାଟକଗୋଷ୍ଠୀ ନିଜ ଭଗିନୀକୁ ।
କୌତୁକ ସୂତ୍ରରେ ଯୁକ୍ତା ସୁଲଳିତ ହସ୍ତା
କୁମୁଦ୍ୱତୀ ହେମା କର କରନ୍ତେ ଗ୍ରହଣ
ପୁରୋହିତ ମନ୍ତ୍ରସହ ଧନୁର୍ଦ୍ଧର କୁଶ
ଚଉଦିଗ ଚମକାଇ ଉଠିଲ ସଘନେ
ସ୍ୱର୍ଗୀୟ ମଙ୍ଗଲବାଦ୍ୟ ଧ୍ୱନି ତାନେ ତାନେ ।
ଅଚମ୍ବିତେ ମେଘମାଳ ନଭେ ଦୂଲହୋଇ
ସୁବାସିତ ନବପୁଷ୍ପ ମକରନ୍ଦ ପର
ବିନ୍ଦୁ ବିନ୍ଦୁ ଜଳ ଧୀରେ କରିଲେ ବର୍ଷଣ ।
ଏରୂପେ କୁମୁଦନାଗ ତ୍ରିଭୁବନ ଗୁରୁ—
ଶ୍ରୀରାମଙ୍କ ଔରସରେ ସୀତାଗର୍ଭେ ଜାତ
କୁଶଙ୍କୁ ଜାମାତାରୂପେ ଲଭି, ଏକପକ୍ଷେ
ଯେମନ୍ତ ପାଇଲେ ମୁକ୍ତି ଗରୁଡ଼ ଭୟରୁ,
ଅନ୍ୟପକ୍ଷେ ତଥା ବୀର କୁଶନୃପବର
ତକ୍ଷକର ପ୍ରିୟପୁତ୍ର କୁମୁଦନାଗକୁ
ବନ୍ଧୁରୂପେ ପ୍ରାପ୍ତହୋଇ, ଚିରକାଳପାଇଁ
ସର୍ପ ଭୟଶୂନ୍ୟ କରି ଏହି ପୃଥିବୀକୁ
ସକଳ ଲୋକଙ୍କଠାରୁ ଲଭିଲେ ପ୍ରଶଂସା ।

# ସପ୍ତଦଶ ସର୍ଗ

ପ୍ରସନ୍ନତା ଲଭେ ଯଥା ମାନବର ବୁଦ୍ଧି
ରାତ୍ରି ଶେଷ ପ୍ରହରରେ, କୁମୁଦ୍ୱତୀ ତଥା
କୁଶଠାରୁ ପ୍ରାପ୍ତହେଲେ ଭୁବନଭୂଷଣ
ଅତିଥି ନାମକ ଏକ ତନୟରତନ ।
ଦକ୍ଷିଣ ଉତ୍ତର ଦୁଇ ଦିଗକୁ ଉଜ୍ଜ୍ୱଳ
କରନ୍ତି ଯେମନ୍ତ ରବି ଗଗନେ ସଞ୍ଚରି,
ଅନୁପମ ଦ୍ୟୁତିଶାଳୀ ତେମନ୍ତ ଅତିଥି
ପିତୃମାତୃ ବେନିକୁଳ କଲେ ସୁପବିତ୍ର ।
ଋଷିଗଣ ଅଗ୍ରଗଣ୍ୟ ସେହି ନରାଧିପ
କୁଳବିଦ୍ୟା ଶିକ୍ଷାଦେଇ ଆଗେ ତନୟକୁ,
ପରେ ବିଭା କରାଇଲେ ଯୋଗ୍ୟପାତ୍ରୀ ସହ ।
ଶୌର୍ଯ୍ୟଶାଳୀ ଜିତେନ୍ଦ୍ରିୟ ଉଚ୍ଚକୁଳୋଦ୍ଭବ
ଗୁଣୀନ୍ଦ୍ର ନୃପତି କୁଶ ଆତ୍ମଅନୁରୂପ
ଯୋଗ୍ୟତମ ବଂଶଧର ଅତିଥିଙ୍କୁ ପାଇ
ଏକାକୀ ହେଲେହେଁ ନିଜେ, ସେ ତନୟ ଯୋଗେ
ଅନେକ ବୋଲିଣ ଶୂର ମଣିଲେ ନିଜକୁ ।
ଇନ୍ଦ୍ରଙ୍କ ସାହାଯ୍ୟ ପାଇଁ କୁଳପ୍ରଥାବଶେ
ଏକଦା ସେ ନୃପବର ସୁରଲୋକେ ଯାଇ
ଦୁର୍ଜୟ ନାମକ ଦୈତ୍ୟେ ନାଶି ସମରରେ,
ତାହାର ହସ୍ତରେ ନିଜେ ହୋଇଲେ ନିହତ ।
କୁମୁଦ ଆନନ୍ଦଦାତ୍ରୀ କଳାକର ସଙ୍ଗେ
କୌମୁଦୀ ଯେସନ ଯାଏ, କୁମୁଦ ଭଗିନୀ
ମହାରାଣୀ କୁମୁଦ୍ୱତୀ ତେହ୍ନେ ପତିପ୍ରେମେ
କୁଶ ସହିତରେ ଗଲେ କଳେବର ଛାଡ଼ି ।
ବେନି ପତିପତ୍ନୀ ସୁଖେ ସ୍ୱର୍ଗପୁରେ ଯାଇ
ଏକାଙ୍ଗ ଇନ୍ଦ୍ରସହ କରିଲେ ବିହାର,
ଅନେକ ଶଚୀର ସଖୀ ହୋଇ କୁତୁହଳେ
ଭୋଗକଲେ ପାରିଜାତ ପୁଷ୍ପପରିମଳ ।

ଯୁଦ୍ଧକୁ ଯିବାର ପୂର୍ବେ କୁଶ ନରମଣି
ଦେଇଥିଲେ ଶେଷ ଆଜ୍ଞା, ଦୈବଦୁର୍ବିପାକେ
ଯୁଦ୍ଧୁ ନ ଫେରିଲେ ସେହ୍ନ' ତାହାଙ୍କ ଅଭାବେ
କରିବାକୁ ସ୍ୱପୁତ୍ରକୁ ରାଜ୍ୟେ ଅଭିଷେକ ।
ସେ ଆଦେଶ ଶିରେ ବୋହି ବୃଦ୍ଧ ମନ୍ତ୍ରୀମାନେ
ରାଜପଦେ ଅତିଥିଙ୍କୁ କଲେ ପ୍ରତିଷ୍ଠିତ,
ସାମ୍ରାଜ୍ୟର ଚିରାଗତ ବିଧି ଅନୁଯାୟୀ ।
ଯଥାକାଳେ ସୁଶିକ୍ଷିତ ଶିଳ୍ପୀକୁଳ ମିଳି
ନବ ନରେଶଙ୍କ ଶୁଭ ଅଭିଷେକ ଲାଗି
ଚାରିଗୋଟି ସ୍ତମ୍ଭତଳେ ଉଚ୍ଚ ବେଦୀପରେ
ନୂତନ ମଣ୍ଡପ ଏକ ନିର୍ମିଣିଲେ ଖରେ ।
ପ୍ରଜାମାନେ ଠୁଳ ହୋଇ ସେ ଭଦ୍ର ପୀଠରେ
ବସାଇ ନବୀନ ନୃପେ, ହେମ କୁମ୍ଭ ଯୋଗେ
ତୀର୍ଥ ସଲିଳରେ ତାଙ୍କୁ କଲେ ଅଭିଷେକ ।
ସେ କାଳେ ଅହତ ହୋଇ ବାଦ୍ୟ ସକଳ
ମଧୁର ଗମ୍ଭୀର ଶବ୍ଦ ଯୋଗେ ବାରମ୍ବାର
କୁଶତନୟଙ୍କ କଲେ ମଙ୍ଗଳ ସୂଚନା ।
ଦୂବ, ଯବ, ବରକୋଳି କୋମଳ ପଲ୍ଲବ
ଆଦି ନାନାବିଧ ଦ୍ରବ୍ୟ ନୀରାଜନା କରି
ସେ ପୁରର ସୁପ୍ରସିଦ୍ଧ ଜ୍ଞାନୀ ବୃଦ୍ଧଗଣ
ନବୀନ ରାଜନ ତାହା ଗ୍ରହିଲେ ସାଦରେ ।
ରାଜଗୁରୁ ପୁରୋହିତ ବ୍ରାହ୍ମଣ ମଣ୍ଡଳୀ
ସର୍ବେ ମିଳି ଜୟଯୁକ୍ତ ବେଦୋକ୍ତ ମନ୍ତ୍ରରେ
ଯଥାବିଧି ଅଭିଷେକ କରନ୍ତେ ସମ୍ପନ୍ନ,
ସିନ୍ଧୁ ସର ସରିତର ସୁପବିତ୍ର ଜଳ
ପଡ଼ିଲା ତାହାଙ୍କ ଶିରେ ଅବିରଳ ଧାରେ
ଭାଗୀରଥୀ ସ୍ରୋତ ଯଥା ଶିବଙ୍କ ମସ୍ତକେ ।
ବନ୍ଦୀମାନେ ଏକାଳରେ ଆରମ୍ଭିଲେ ସ୍ତୁତି,
ଆଶାୟୀ ସ୍ତୁତକଗଣ ଏକସ୍ୱରେ କବା
ବଡଲେ ଏକାନ୍ତେ ଉଚ୍ଚେ ନବ ନୀରଦକୁ?

ଘନକାଳେ ଯାପ୍ରମତ୍ତ ବଜ୍ରାନଳକଣା
ଜ୍ୱଳଇ ଦ୍ୱିଗୁଣ ଯଥା ବୃଷ୍ଟି ଧାରାପାତେ
ତେମନ୍ତେ ମନ୍ତ୍ରପୂତ ନୀରେ ସ୍ନାନ କରିବାରୁ
ସ୍ୱାଭାବିକ ତେଜ ତାଙ୍କ ବଢ଼ିଲା ଦ୍ୱିଗୁଣେ ।
ଅଭିଷେକ ବିଧି ସାରି ମହାସମାରୋହେ
ଗୃହସ୍ଥ ବ୍ରାହ୍ମଣେ ଭୂପ ଦେଲେ ବହୁଦାନ,
ଯେ ବିପୁଳଦାନ ପାଇ ସେମାନେ ଅକ୍ଳେଶେ
ନିଜେ ନିଜେ ଯଜ୍ଞ କରି ତାହାର ଦକ୍ଷିଣା
ପୂର୍ଣ୍ଣରୂପେ ଦେବାଲାଗି ହୋଇଲେ ସମର୍ଥ ।
ଦାନ ଦେଇ ଦ୍ୱିଜେ ତାଙ୍କୁ କଲେ ଆଶୀର୍ବାଦ,
ମାତ୍ର ଭାଗ୍ୟବଳେ ଭୂପ ଲଭିଥିଲେ ଯାହା
ସାମ୍ରାଜ୍ୟ ଐଶ୍ୱର୍ଯ୍ୟ ସୁଖ ଆଦି ସବୁଫଳ,
ତହିଁ ବଳି ଆଶୀର୍ବାଦେ ଲାଭ କରିବାକୁ
ନଥିଲା ତାହାଙ୍କ ଆଉ କିଛିତ ଅଭାବ ।
ଅତିଥି ପୈତୃକ ରାଜ୍ୟେ ଅଭିଷିକ୍ତ ହୋଇ
କାରାଗାରୁ ମୁକ୍ତକଲେ ବନ୍ଦୀ ନରଙ୍କୁ,
ଛାଡ଼ଦେଲେ ବଧଦଣ୍ଡ ବଧାର୍ହମାନଙ୍କୁ,
ବାଛୁରିଙ୍କ ପାନ ପାଇଁ ନ ଦୁହିଁଲେ ଦୁଗ୍ଧ,
ଅନ୍ୟମାନଙ୍କର କଥା କେ କରେ ଗଣନ ।
ପିଞ୍ଜରରେ ବନ୍ଦଥିଲେ ଯେତେ ଶୁକ ସାରୀ
ସେ ସକଳ ମୁକ୍ତହୋଇ ମନ ଆନନ୍ଦରେ
ଯାଇ ଯହିଁ ଇଚ୍ଛା ତହିଁ ଗମିଲେ ଚଳିଲେ ।
ସମାପି ଏସବୁ ରାଜ୍ୟେ ବେଶ ହେବାପାଇଁ
ପ୍ରସାଧନ ଗୃହେ ପଶି, ବସିଲେ ଉଲ୍ଲାସେ
ସୁସଜ୍ଜିତ ଗଜଦନ୍ତ ସୁନ୍ଦର ଆସନେ,
ପ୍ରସାଧିକାକୁଳ ତହିଁ ବହୁ ଯତନରେ
ଧୂପଯୋଗେ କେଶପାଶ ସୁରଭିତ କରି,
ଗନ୍ଧମାଳା ଆଦି ଦ୍ରବ୍ୟ ମଣ୍ଡିଲେ ଶ୍ରୀଅଙ୍ଗେ ।
ମନୋହର ମୁକ୍ତାମାଳା ମସ୍ତକରେ ଖଞ୍ଜି
ପଦ୍ମରାଗମଣି ତହିଁ ନିବେଶିଲେ ନେଇ,

ମୃଗନାଭି ରସେ ଘୋରି ସୁରଭି ଚନ୍ଦନ
ଲିପିଲେ ବହୁଳେ ନବ ନୃପଙ୍କ ଶରୀରେ ।
କୁନ୍ତଳରେ ବକ୍ରଭାବେ କଲି ଭଙ୍ଗି ଭଙ୍ଗି
ତାପରେ ବାନ୍ଧିଲେ ରମ୍ୟ ଗୋରୋଚନା ଟିକା ।
ବହୁମୂଲ୍ୟ ଅଳଙ୍କାରମାନ ମଣ୍ଡି ହୋଇ,
ସୁରଭିତ ଫୁଲମାଳ ଶରୀରରେ ଖଞ୍ଜି
ହଂସାବଳୀ ବାସ ପିନ୍ଧି ଆଭାସିଲେ ସ୍ୱୟେ
ରାଜଲକ୍ଷ୍ମୀ କନ୍ୟାର ସେ ଯୋଗ୍ୟବର ପରି ।
ବେଶ ବିରଚନ ସାରି ତହୁଁ ଯୁବାମଣି
ସୁବର୍ଣ୍ଣ ଦର୍ପଣ ଆଗେ ଯାଇ ହେଲେ ଉଭା
ଦେଖିବାକୁ ନିଜ ରୂପ, ସେ ହେମ ଦର୍ପଣେ
ପ୍ରତିଫଳି ତାଙ୍କ ଛବି ଦିଶିଲା ସୁନ୍ଦର,
ମେରୁଗିରି ମଧ୍ୟସ୍ଥିତ କଳ୍ପଦ୍ରୁମ ଛବି
ନବୋଦିତ ରବି ବିମ୍ବେ ପଡ଼ି ଦିଶେ ଯଥା ।
ଅବଲମ୍ବେ ନରପତି ବିଜେ ହେଲେ ତହୁଁ
ସଭାକୁ ମନ୍ଥର ପାଦେ, ରାଜ ଆଟୋପରେ,
ପାର୍ଶ୍ୱବର୍ତ୍ତୀ ଅନୁଚରେ ଧରି ଯତନରେ
ଶ୍ୱେତଛତ୍ର ଚାମର ରାଜଚିହ୍ନମାନ
ଚାଲିଲେ ଗମ୍ଭୀରଭାବେ ସ୍ତୁତି କରି କରି,
ଅଗେ ବୈତାଳିକଗଣ ସ୍ୱର୍ଣ୍ଣଦଣ୍ଡ ହସ୍ତେ
ବାହାରିଲେ ରମ୍ୟବେଶେ ଯୋଡ଼ିଯୋଡ଼ି ହୋଇ,
ଏଭାବେ ପ୍ରବେଶି ଯୁବା ସଜ୍ଜିତ ସଭାରେ
ଚନ୍ଦ୍ରୁଆ ମଣ୍ଡିତ ଦିବ୍ୟ ପୈତୃକ ଆସନେ
ବସିଲେ ଆନନ୍ଦମନେ, ସାମନ୍ତ ରାଜାଏ
ପ୍ରଣାମ କରିଲେ ଆସି ଯେ ଯାହା ବିଧିରେ ।
ଶିରୋମଣି ଘର୍ଷିହୋଇ ପ୍ରଣାମ କାଳରେ
ଅତିଥିଙ୍କ ପାଦପୀଠ ହୋଇଲା ରଞ୍ଜିତ ।
ଶ୍ରୀବତ୍ସ ନାମକ ସେହି ସଭା ସଦନରେ
ପ୍ରବେଶନ୍ତେ ମହୀପାଳ, ଆଭାସିଲା ତାହା
କୌସ୍ତୁଭମଣିରେ ମଞ୍ଜୁ ଶ୍ରୀବତ୍ସ ଚିହ୍ନିତ—

ଭଗବାନ ବିଷ୍ଣୁଙ୍କର ବକ୍ଷସ୍ଥଳ ପର ।
ନବ କଳାକର ଯଥା ଗୋଟିଏ କଳାରୁ
ଅର୍ଦ୍ଧଚନ୍ଦ୍ରତ୍ୱକୁ ପାଇ, ଅର୍ଦ୍ଧଚନ୍ଦ୍ରଠାରୁ
ପୂର୍ଣ୍ଣଚନ୍ଦ୍ର ଅବସ୍ଥାକୁ ଲଭଇ ସନ୍ତତ,
ତେସନ ଶୈଶବକାଳ ଅତିକ୍ରମେ ସେହି
ଅତିଥି ଅବନୀପତି, କିଛିକାଳ ଗତେ
କ୍ରମେ କ୍ରମେ ଲଭିଲେ ପୂର୍ଣ୍ଣ ସ୍ୱାଧୀନତା ।
ଥିଲେ ସେ ସକଳ କାର୍ଯ୍ୟେ ସକଳ ବିଶ୍ୱାସୀ,
ତଳେମାନ ଚରିତରେ ଥିଲା ନାହିଁ ଦୋଷ,
କିନ୍ତୁ ନ ଥିଲେ ସେ କଥା କଦାପି ନ ତୃପ୍ତ,
ପ୍ରଜାଏ ଆଳାପ କରି ତାହାଙ୍କର ସହ
ସାକ୍ଷାତ ବିଶ୍ୱାସ ବୋଲି ମଣୁଥିଲେ ମନେ ।
ବିକୂଳ ପରଏ ସ୍ତୁରୁ ପତାକାମଣ୍ଡିତ
ସୁନ୍ଦର ଅଯୋଧ୍ୟାପୁର, କଳଦ୍ରୁମ ସମ
ନାନାରତ୍ନେ ପରିପୂର୍ଣ୍ଣ ଅକ୍ଷୟ ଭଣ୍ଡାର,
ଶାସ୍ତ୍ରବତବତ ମହାବଳଶାଳୀ ଗଜେ,
ନିଜେ ଦେବରାଜ ସମ ଶ୍ରୀବୃଦ୍ଧିସମ୍ପନ୍ନ
ଅତିଥି ରାଜନବର, ଯତ୍ନେ ହୋଇ ତହିଁ
ସେ ପୁରକୁ କରିଦେଲେ ସ୍ୱର୍ଗର ସମାନ ।
ମୃତରାଜା କୁଶଙ୍କର ବିୟୋଗବଶରୁ
ଦୁଃଖ ଜନ୍ମିଥିଲା ଯାହା ପ୍ରଜାଙ୍କର ମନେ,
ଏହାଙ୍କ ଧବଳଛନ୍ଦ ବିମଳ ପ୍ରଭରେ
ସେ ଦୁଃଖାନ୍ଧକାର ଶୀଘ୍ର ପଳାଇଲା ଭୟେ ।
ଅଗ୍ନିରୁ ପ୍ରଥମେ ଧୂମ, ପରେ ଜନ୍ମେ ଶିଖା,
ସୂର୍ଯ୍ୟ ଆଗେ ଉଇଁ ପରେ ବିଛିନ୍ନ କିରଣ,
ତେଜ ପଦାର୍ଥର ଏହା ସ୍ୱାଭାବିକ ରୀତି,
ମାତ୍ର ଏହି ନିୟମକୁ ଅତିକ୍ରମେ ରାମେ
ଏକାବେଳେ ଗୁଣ ସଙ୍ଗେ ହୋଇଲେ ଉଦୟ ।
ପୁଣ୍ୟମୟୀ ଅଯୋଧ୍ୟାର ସୀମନ୍ତିନୀମାନେ
ଆନନ୍ଦ ପ୍ରଫୁଲ୍ଲ ନୟନେ ନବନରେଶଙ୍କୁ

ଦେଖୁଥିଲେ ପ୍ରୀତିଭରେ ପରିତୃପ୍ତ ନୋହି,
ଶରତକାଳର ମଞ୍ଜୁ ବିସ୍ୱବିସ୍ୱ ଯଥା
ଧ୍ରୁବଙ୍କୁ ଦେଖନ୍ତି କୋଟି ତାରା—ନେତ୍ରଫେଡ଼ି ।
ସେ ପୁରରେ ଅସ୍ୱଧିତ ଦେବତା ସକଳ
ନିଜ ନିଜ ପ୍ରତିମାରେ ସନ୍ନିହିତ ହୋଇ
କଲ୍ୟାଣସ୍ୱଜନ ସେହି ଅତିଥି ନୃପଙ୍କୁ
କରୁଥିଲେ ଅଗ୍ରହର ସହିତ କଲ୍ୟାଣ ।
ଅଭିଷେକ ହେବାକାଳେ ଜଳେ ଭିଜିଥିଲ
ଯେଉଁ ଅଭିଷେକ ବେଦୀ, ନ ଶୁଖୁଁ ନ ଶୁଖୁ
ସେ ବେଦିକା, ନୃପଙ୍କର ଦୁଃସହ ପ୍ରତାପ
ମହୋଦଧିଶିଖପାଏ ହୋଇଲା ବିସ୍ତୃତ ।
ବଶିଷ୍ଠ ଋଷିଙ୍କ ମନ୍ତ୍ର, ଅତିଥିଙ୍କ ଶର,
ଦେନି ମିଳି ଲାଗୁଥିଲେ ଲୋକ ଉପକାରେ,
ନଥିଲା ଏମନ୍ତ କାର୍ଯ୍ୟ ଧରଣୀମଣ୍ଡଳେ
ନୋହୁଥିଲା ଦେନଙ୍କର ମିଳନେ ସାଧିତ ।
ମନ୍ତ୍ରୀଗଣ ସଙ୍ଗେ ମିଳି ଆଳସ୍ୟ ଉପେକ୍ଷି
ବାଦୀ ପ୍ରତିବାଦୀଙ୍କର ବାକ୍ୟଜାଳ ଛେଦି
ନିଜେ ତନ୍ନତନ୍ନକରି ନଥିମାନ ଦେଖି,
ଯେମନ୍ତ ଦୁର୍ବୋଧସ୍ୱବ ହେଉନା କାହିଁକି
ପ୍ରକୃତ ତଥ୍ୟକୁ ଭୂପ ଆଣୁଥିଲେ ଠାଣି ।
ପୂର୍ବେ ପିତୃଦେବଙ୍କର ରାଜତ୍ୱ ସମୟେ
ଶ୍ରାବଣର ନଦୀ ପରି ବଢ଼ିଥିଲେ ପ୍ରଜା,
ଏବେ ତାଙ୍କ ଅଧୀନରେ ସୁପାଳିତ ହୋଇ
ଭାଦ୍ରମାସ ନଦୀ ସମ ଲଭିଲେ ସୁବୃଦ୍ଧି ।
ଯେତେବେଳେ କହୁଥିଲେ ଯାହା ନୃପମଣି
ନୋହୁଥିଲା ମିଥ୍ୟା ତାହା କେବେ କେଉଁକାଳେ,
ଦେଉଥିଲେ ଦାନ ଯାହା ପ୍ରସନ୍ନ ମନରେ
ନେଉଥିଲେ ନାହିଁ ତାହା କେବେ ଲେଉଟାଇ ।
ସବୁଠାରେ ସବୁକାଳେ ସକଳ ବିଷୟେ
ଚଳୁଥିଲେ ନରମଣି ନିୟମକୁ ଲକ୍ଷି,

ଏକା ଶତ୍ରୁମଣ୍ଡଳକୁ ଉପାଡ଼ି ସବଳେ
ପୁଣି ତାଙ୍କୁ ନିଜପଦେ ରଖି ଦୟାବଶେ
ନୟମର ବ୍ୟତିକ୍ରମ କରୁଥିଲେ ସେହୁ ।
ସୁରୂପ ଯୌବନଧନ ପ୍ରତ୍ୟେକେ ଏକାକୀ
କରନ୍ତି ସର୍ବଦା ଭବେ ମନୁଷ୍ୟକୁ ମତ୍ତ,
ଅତଥିଙ୍କ ସହିତରେ ମାତ୍ର ଏକାବେଳେ
ତିନହେଁ ମିଳିଲେ ସୁଦ୍ଧା, ଭ୍ରମେ ସେ କଦାପି
ଅଣୁମାତ୍ର ଗର୍ବସ୍ତବ ନ ବହିଲେ ମନେ ।
ହେଲେହେଁ ନବୀନ ରାଜା, ଯଶସ୍ୱୀ ଅତଥି
ଏହିରୂପେ ହିତକର ନାନାକାର୍ଯ୍ୟ ଯୋଗେ
ପ୍ରଜାଙ୍କ ମନକୁ ଟାଣି ନିଜ ଅନୁକୂଳେ,
ଅସ୍ଥାୟୀ ସ୍ୱଜନେ ତୋଷି, ଅଳ୍ପ ସମୟରେ
ମହାକାୟ ଦୃଢ଼ମୂଳ ମହୀରୁହ ପରି
ଏକାବେଳେ ରାଜ୍ୟପଟ୍ଟେ ହୋଇଲେ ଅଟଳ ।
ରିପୁ ଅଧୀନତା ସଙ୍ଗେ ପର ଅଧୀନତା
ଧାଇଁଆସେ ସଦାବେଳେ ଭବର ଏ ରୀତି,
ଏଣୁ ସେ ଅନ୍ତରସ୍ଥିତ ମହା ହାନିକର
କାମ କ୍ରୋଧ ଲୋଭ ଆଦି ଷଡ଼୍‌ରିପୁମାନଙ୍କୁ
ପ୍ରଥମରୁ ପରାଭବ ରଖିଲେ ଆୟତ୍ତେ ।
ଚଞ୍ଚଳା ହେଲେହେଁ ଆସ୍ତେ ରାଜଲକ୍ଷ୍ମୀଦେବୀ
ତାହାଙ୍କର ପ୍ରାସାଦରେ ସଦା କଲେ ବାସ,
ଅଚଳ ଅଟଳ ଭାବେ ନୋହି ବିଚଳିତା,
ନିକଷ ପାଷାଣେ ସ୍ଥିର ସୁନାଗାର ପରି ।
ଅର୍ଥହୀନ ଶୌର୍ଯ୍ୟହୀନ ରାଜନୀତିମାନ
ନହୁଏ ସୁଫଳପ୍ରଦ ଭାବି ବେଳୁଁକାଳେ,
ସେ ନୀତିରୁ ଜନ୍ମେ ମନେ ଘୃଣା କେବଳ,
ନୀତିହୀନ ବଳ ପୁଣି କରିଲେ ପ୍ରୟୋଗ
ନିନ୍ଦାମାତ୍ର ହୁଏ ସାର, ହିଂସ୍ରକର କାର୍ଯ୍ୟ
ସବୁମତେ ଅଟେ ତାହା, ଏଣୁ ନରମଣି
ସୁନୀତି ସହିତ ଶୌର୍ଯ୍ୟ ମିଶାଇ କୌଶଳେ

ସୁଫଳ ପାଇବା ଲାଗି କରୁଥିଲେ ଯତ୍ନ ।
ସ୍ୱରଦ୍ଧେଗ ଚରରୂପ ରଶ୍ମି ଖଣ୍ଡ ସ୍ୱ
ଯଥାକାଳେ ପାଉଥିଲେ ସକଳ ସନ୍ଦେଶ
ମେଘଆବରଣ ମୁକ୍ତ ସୂର୍ଯ୍ୟବିମ୍ବ ପରି
ସ୍ୱରାଷ୍ଟ୍ର ମଣ୍ଡଳେ କିଛି ନ ଥିଲା ଅଜ୍ଞାତ ।
ବୁଝୁଥିଲେ ନୃପବର ସମୟର ମୂଲ୍ୟ
ଦିନରାତି ପ୍ରହରର ଏଣୁ ସବୁକାଳେ
ସ୍ୱନୀତିକ୍ତ ରାଜାଙ୍କର କାର୍ଯ୍ୟ ଅନୁସରି
ନିଃସଂଶୟ ହୃଦୟରେ ନିଶ୍ଚଳ ମନରେ
ସମ୍ପାଦୁଥିଲେ ସେ ଯେତେ ରାଜକାର୍ଯ୍ୟମାନ ।
ମନ୍ତ୍ରୀମାନଙ୍କର ସଙ୍ଗ ପ୍ରଚ୍ଛଦନ ସେହି
କୌଶଳରେ କରୁଥିଲେ ଏପରି ମନ୍ତ୍ରଣା,
ଆକାରୁ ଇଙ୍ଗିତୁ କେବେ ଅନ୍ୟେ ସୁଦ୍ଧା କେହି
ପାରୁଥିଲେ ନାହିଁ ତାହା ମନେ ଅନୁମାନି।
ନିଦ୍ରିତ ହେଲେହେଁ ନୃପ ଚେତନ ପରାଏ
ରହୁଥିଲେ ସ୍ଥିର ମନେ, ସବୁ ସମୟରେ
ଶତ୍ରୁମିତ୍ରମାନଙ୍କର ଅଜ୍ଞାତସାରରେ
ସ୍ୱରପାଖେ ଗୁପ୍ତଚର ରଖି ଅନାୟାସେ ।
ସାମଦିକ କଉଶଳେ ନିଜ ବୁଦ୍ଧି ବଳେ
ସହଜେ ଶତ୍ରୁଙ୍କୁ ଭୂପ କରିଲେହେଁ ରୋଧ,
ବହୁତ ଦୁର୍ଭେଦ୍ୟ ଦୁର୍ଗ ଥିଲା ତାହାଙ୍କର,
ଭୟରେ ଏ ଦୁର୍ଗମାନ ଗଢିଥିଲେ ସେହି
କଦାପି ଏମନ୍ତ ନୁହେ, ଗଜଘ୍ନ ସିଂହ,
ଶୟନ କରେଯା ଉଚ୍ଚ ପର୍ବତ ଗୁହାରେ
ସ୍ୱାଭାବିକ ସ୍ୱଭାବ ତାର, ନୁହେ ଭୟବଶେ ।
ଇପ୍ସିତାରେ ବଶବର୍ତ୍ତୀ ହୋଇ ନରମଣି
ନ ଆଚରେ କେବେ କିଛି ନବ ଅନୁଷ୍ଠାନ,
ପରିଣାମ ଶୁଭପ୍ରଦ ଲୋକହିତକର
କାର୍ଯ୍ୟାବଳୀ, ସ୍ୱକଟନ୍ତ ଯଥାର୍ଥ କାଳରେ
ସୁଧୀରେ ସମ୍ପାଦୁଥିଲେ ସୁମନ୍ତ୍ରଣାସହ,

ଏଣୁ ତାର ସୁଖୀଫଳ ହେଉଥିଲା ଶୁଭ
ଗଉଡ଼ ଭୂତଳେ ପକ୍ୱ ଶାଳିଧାନ୍ୟ ପରି ।
ଅତ୍ୟନ୍ତ ବଳବନ୍ତ ମହା ପରାକ୍ରମୀ
ପ୍ରକୃତରେ ସର୍ବଶ୍ରେଷ୍ଠ ଥିଲେହେଁ ରାଜନ
ଦେଉଥିଲେ ନାହିଁ କେବେ ଅପଥରେ ପାଦ,
ଲବଣ ସାଗର ଜଳ ହେଲେହେଁ ଉଦ୍ବେଳ
ମହାନଦୀ ମୁହାଣକୁ ଛାଡ଼ି ଦେଇ କାଳେ
ଅନ୍ୟପଥ ଦେଇ କାହିଁ କରଇକି ଗତି ?
ଦଇବେ ବିପ୍ଳବ ଜାତ ହେଲେ ପ୍ରଜାମନେ
ତତକ୍ଷଣ କରୁଥିଲେ ଶାନ୍ତ ନରମଣି,
ମାତ୍ର ପ୍ରତିକାର ସାର ହେଉଥିଲା ଲୋଡ଼ା
ପରିଣାମେ, ଏହିରୂପ ଆଚରଣ ଯୋଗେ
ପ୍ରଜାଙ୍କ ମନରେ କ୍ଷୋଭ ଜନ୍ମାଇବା ପାଇଁ
କେବେହେଁ ସୁବିଧା ସେହୁ ଦେଉଥିଲେ ନାହିଁ ।
ଅତଏବ ପରାକ୍ରମୀ ଥିଲେହେଁ ଭୂପାଳ
ନିଜଠାରୁ ହୀନ ବଳ ବିପକ୍ଷଙ୍କୁ ଦେଖି
ଦେମ୍ଭେ ଅବମୁଥିଲେ ସତର୍କ ଭାବରେ,
ସହାୟ ହେଲେହେଁ ବାୟୁ ଦାବାନଳ କେବେ
ଲୋଡ଼ଇବ ସଲିଳକୁ ପୋଡ଼ାଇବା ପାଇଁ
ନଜର ସେ ଥିଲେ ଗ୍ଲାନି ଦେବେହେଁ ଧର୍ମର
ଅର୍ଥ ପୁଣି କାମ ଯୋଗେ, ଧର୍ମ କମ ପାଇଁ
ଅର୍ଥ କାମ ଦେନଙ୍କର ଅପବ୍ୟବହାର,
କାମଦ୍ୱାରା ଧର୍ମର, ଧର୍ମଦେ ଅର୍ଥର,
ତିନଙ୍କୁ ସମାନ ଭାବେ ରଖୁଥିଲେ ପାଖେ ।
ଅଶିକ୍ଷିତ ବଳହୀନ ମିତ୍ରଙ୍କ ନିକଟୁଁ
ସାମାନ୍ୟ ସାହାଯ୍ୟ ସୁଦ୍ଧା ନମିଳଇ କେବେ,
ପୁଣି ସେହୁ ମିତ୍ରପକ୍ଷ ହେଲେ ବଳଶାଳୀ
ବିଷମ କରୁଥିବାସ୍ତ ଦୁଃପନ୍ତ ସମୟେ,
ଏଣୁ ନୀତିଜ୍ଞାନ ପୁଣି ନୀତି ବଳବାନ
ରାଜ୍ୟରେ ସେ କରୁଥିଲା ମିତ୍ରତା ସ୍ଥାପନ ।

ସମର ଘୋଷଣା ପୂର୍ବୁଁ କରୁଥିଲେ ଭୂପ
ଆତ୍ମପକ୍ଷ ଶତ୍ରୁପକ୍ଷ ନାନା ଉପାୟରେ
ପରପକ୍ଷଙ୍କଠାରୁ ସବଳ ବିଷୟେ
ଆତ୍ମପକ୍ଷ ବଳବାନ ନ ହେଲେ ହେବେହେଁ
ଅଗ୍ରସର ହୋଉଥିଲେ ଯୁଦ୍ଧସାଜା ପାଇଁ ।
ଅର୍ଥରେ ସଭଙ୍କ ମନ ତୋଷିବା ନିମନ୍ତେ
ସଞ୍ଚି ରଖୁଥିଲେ ଅର୍ଥ, ନୋହି ଲୋଭଯୁକ୍ତ,
ସକଳେ ଧନର ବଶ କେ ନ ଜାଣେ ଏହା ?
ଜଳଭରେ ଅବନତ ନବଘନ ସିନା
ଚାତକମାନଙ୍କ ଯୋଗେ ହୁଅଇ ବନତ ?
ନିଜକାର୍ଯ୍ୟ ରତଥାଇ ସେ ଦକ୍ଷ ନରେଶ
ଅଲକ୍ଷ୍ୟରେ ନାଶୁଥିଲେ ଶତ୍ରୁପକ୍ଷ କାର୍ଯ୍ୟ
ଦେଖିଲେ ନିଜର ଛିଦ୍ର ଲୁଚାଇ ଯତନେ,
ଖୋଜି ଖୋଜି ନାନାମତେ ଅଭିଜ୍ଞତା ବଳେ
କରୁଥିଲେ ପ୍ରହାର ସେ ପ୍ରତିପକ୍ଷ ରନ୍ଧ୍ରେ ।
ଦଣ୍ଡଧର ଅତିଥିଙ୍କ ପିତୃଦେବ କୁଶ
ଯେ ବିଜୟୀ ସଇନଙ୍କୁ ରଖିଥିଲେ ପାଶେ,
ସେ ସୈନ୍ୟମାନଙ୍କୁ ନିଜ ଦେହଠାରୁ ବଳି
ଯତନରେ ସମ୍ଭାଳିଲେ ଏବେ ନରମଣି ।
ଫଣୀଶିର ମଣିପରି ଶତ୍ରୁପକ୍ଷ ଲୋକେ
ନେଇ ପାରୁଥିଲେ ନାହିଁ ତାହାଙ୍କର ବଳ,
ମାନବ ଚୁମ୍ବକ ଯଥା ଟାଣଇ ଲୌହକୁ
ତେସନ ବିପକ୍ଷପକ୍ଷ ବଳକୁ ଭୂପାଳ
ଗୁପ୍ତ ଅନୁଚର ଯୋଗେ ପାରୁଥିଲେ ଜାଣି
ତାହାଙ୍କ ଶାସନକାଳେ ବଣିକ ନିକର
ନଦୀନଦଶିଳା ଖଣ୍ଯାଶାସ୍ତ୍ରୀ ସଗତଙ୍କୁ
ସଦନର କେଳିସର ପରି ହୃଦେ ମଣି,
ପର୍ବତକୁ ନିଜଘର, ବନକୁ ଉଦ୍ୟାନ
ଭାବି, ପଣ୍ୟ ଦ୍ରବ୍ୟ ଘେନ ନିର୍ଭୟ ହୃଦୟେ
ଇଚ୍ଛାସୁଖେ ଭ୍ରମୁଥିଲେ ସଦା ସର୍ବତହିଁ ।

ତସ୍କର ବନାଣି ଧନ ରତ୍ନାକର ପୁଣି
ଦୁର୍ବୃତ୍ତ କୁଳକୁ ଧ୍ୱଂସି ସ୍ୱଭୁଜ ବଳରେ
ତପସ୍ୟାର ସହାୟତା କରୁଥିଲେ ଭୂପ,
ଏଣୁ ବର୍ଣ୍ଣାଶ୍ରମମାନେ ସବୁ ସମୟରେ
ସ୍ୱ କାର୍ଯ୍ୟରୁ ଷଷ୍ଠଅଂଶ ଦେଉଥିଲେ ତାଙ୍କୁ ।
ଖଣିରୁ ରତନ ଜାଳ, କ୍ଷେତ୍ରୁ ଶସ୍ୟାବଳୀ,
ଅରଣ୍ୟରୁ ଗଜଗଣ, ସିନ୍ଧୁରୁ ରତନ—
ଜନ୍ମାଇ ଧରଣୀଦେବୀ ସତେକି ଭୂପଙ୍କୁ
ଦେଉଥିଲେ ଗୁରୁତର ଶ୍ରମର ମଜୁରି ।
ଥିଲେ କାର୍ତ୍ତିକେୟ ପରି ବିକ୍ରମଶାଳୀ ସେ,
ଭେଦ, ସନ୍ଧି, ବିଗ୍ରହାଦି ଷଡ଼୍‌ବିଧ ଗୁଣରେ
ସ୍ୱରୂପେ ମୂଳ ଭୃତ୍ୟାଦି ଷଡ଼ବିଧ ବଳ
ଯୋଗହୁଏ, ଜାଣୁଥିଲେ ସମ୍ପୂର୍ଣ୍ଣ ରୂପରେ,
ଚତୁର୍ବିଧ ରାଜନୀତି ଏରୂପେ ପ୍ରୟୋଗି
ଅଷ୍ଟାଦଶ ମନ୍ଧାଡର ପାଉଥିଲେ ଫଳ ।
ଏ ରୂପରେ କୂଟଯୁଦ୍ଧ ହୁଏ ଅନୁଷ୍ଠାନ
ଜାଣିଲେହେଁ ଭଲଭାବେ, ତଥାପି ସମରେ
ଧରମ ସୀମାକୁ ଲଙ୍ଘି ବିଜୟ ଆଶାରେ
ନାଶୁ ନଥିଲେ ସେ ଶତ୍ରୁ କପଟ ସମରେ,
ଏଣୁ ବୀର ଅନୁକୂଳା ଜୟଲକ୍ଷ୍ମୀ ସଦା
ହେଉଥିଲେ ନରେନ୍ଦ୍ରଙ୍କ ସଦା ପକ୍ଷପାତୀ ।
ମଦମତ୍ତ ହସ୍ତୀ ଯଥା ନିଜ ମଦଗନ୍ଧେ
ଅନ୍ୟାନ୍ୟ ବାରଣ ଗଣେ ତଡ଼ଇ ଭଗାଇ
ତେମନ ସେ ବୀରବର ନିଜର ପ୍ରତାପେ
ଦେଉଥିଲେ ଅରିଙ୍କୁ ପାଖରୁ ଘଉଡ଼ି ।
ପୂର୍ଣ୍ଣତାକୁ ପ୍ରାପ୍ତ ହେଲେ ବଢ଼ି ବଢ଼ି ଇନ୍ଦୁ
ପୁଣି ଧୀରେ ହୁଏ କ୍ଷୟ, ସେହିପରି ସିନ୍ଧୁ
ଜୁଆର ବେଗରେ ଉଠେ ଫୁଲାଇ ସ୍ୱ ବପୁ
ଭଟ୍ଟା କାଳେ ହଠା ଭଙ୍ଗ ହୋଇଯାଏ ଲଘୁ
ମାନବ ଅବଧି ଭୂପ ବଢ଼ିଲେ କେବଳ

ସ୍ଥ ବନ୍ଧମେ ଦନ୍ତ ବନ୍ତ୍ର, ନୋହୁ କେବେ ଗର୍ବ ।
ଜଳଶୂନ୍ୟ ମେଘ ଯଥା ସମୁଦ୍ର ସହାୟେ
ପ୍ଲାବଇ ନୂତନ ନୀରେ ଧରଣୀ ବକ୍ଷକୁ
ଧନହୀନ ସାଧୁମାନେ ତେସନ ସର୍ବଦା
ଯଶସ୍ୱୀ ନୃପତିଙ୍କର ସହାୟତା ଲଭି
ସମ୍ପତ୍ତି ବିତରୁ ଥିଲେ ଅନ୍ୟ ଯାଚକଙ୍କୁ ।
ପ୍ରଶଂସାର ଉପଯୁକ୍ତ କାର୍ଯ୍ୟ କରି ସୁଦ୍ଧା
ଲଜ୍ୟାନମ୍ର ମୁଖେ ଶୂର ସ୍ୱପ୍ରଶଂସା ଶୁଣି
ସେ ସ୍ତବକାରୀର ପ୍ରତି କରିଲେହେଁ କ୍ରୋଧ,
ତଥାପି ତାହାଙ୍କ ଯଶ ଉଠୁଥିଲା ବଢ଼ି ।
ଉଦ ନବ ପ୍ରସ୍ତରର ଉଦୟ ଅଚଳେ
ସଂସାରରୁ ତମ ରାଶି ବିନାଶି ଯେମନ୍ତ
ସ୍ୱର୍ଣ୍ଣାଲୋକେ ଦଶଦିଗ କରନ୍ତି ଉଜ୍ଜ୍ୱଳ,
ସୁଦର୍ଶନେ ଉଦେ ହୋଇ ତେସନ ରାଜନ
ଦୁଷ୍ଟ ଜନଙ୍କୁ ପୋଛି ଦୀନ ପ୍ରଜାଙ୍କର
ସଦୟେ ବିତରୁ ଥିଲେ ସୁଖ ସ୍ୱଚ୍ଛନ୍ଦତା ।
ଚନ୍ଦ୍ରର କିରଣ ପଦ୍ମେ, ସୂର୍ଯ୍ୟର କୁମୁଦେ
କେବେହେଁ ପଶିବା ପାଇଁ ହୁଏ ନାହିଁ କ୍ଷମ
ମାତ୍ର ତାଙ୍କ ଗୁଣାବଳୀ ଶତ୍ରୁ ମିତ୍ର ହୃଦେ
ପ୍ରକାଶିତ ହେଉଥିଲା ସମାନ ଭାବରେ ।
ଯଶ ବଢ଼ାଇବା ଅର୍ଥେ ସୁଲକ୍ଷଣା ଅଶ୍ୱେ
ବାହାରୁ ନଥିଲେ ଏକା ଦିଗ୍‌ବିଜୟ ପାଇଁ,
ଅବାଧ ଅଶାନ୍ତ ପ୍ରତିଦ୍ୱନ୍ଦ୍ୱୀ ନୃପତିମାନଙ୍କୁ
ଦମିବାକୁ ବାଧ ହୋଇ ମନ୍ତ୍ରୀଙ୍କ ମତରେ
ରାଜନୀତି ଅନୁରୋଧେ ଗଲେହେଁ ସମରେ
କଦାପି ଧର୍ମକୁ ସେ ଲଙ୍ଘୁଥିଲେ ନାହିଁ ।
ଏହି ରୂପେ ନୀତି ଶାସ୍ତ୍ର—ବାଟ ଅନୁସରି
ପରିବ ବିସ୍ତାର ଭବେ ଉଦ୍ୟୋଗୀ ସେ ଭୂପ
ଦେବତାମାନଙ୍କ ରାଜା ପୁରନ୍ଦର ସମ
ରାଜାମାନଙ୍କର ରାଜା ହୋଇଲେ ଭୂତଳେ ।

ସାକ୍ଷାତମେ ଲୋକ ରକ୍ଷା ପର ଉପକାର,
ପୃଥିବୀ ପାଳନ ଆଦି ଧର୍ମ କର୍ମ ଯୋଗୁଁ
ଲୋକପାଳ (୧) ଚତୁଷ୍ଟୟ ମଧ୍ୟରେ ପଞ୍ଚମ,
କ୍ଷିତି ଆଦି ପଞ୍ଚ ମହାଭୂତ ମଧ୍ୟେ ଷଷ୍ଠ,
ସପ୍ତ କୁଳାଚଳଙ୍କର ମଧ୍ୟରେ ଅଷ୍ଟମ—
ଆଖ୍ୟା ଲଭିଥିଲେ ସେହି ସାଧୁଙ୍କ ମତରେ,
ପ୍ରବୃତ୍ତ ଥିଲେ ସେ ଯେବେ ଯେଉଁ ଅଙ୍ଗ ରାଜ୍ୟେ
ଅବନତ ମସ୍ତକରେ ପାଳୁଥିଲେ ତାହା
ସକଳ ନୃପତିମାନେ, ଦେବଗଣ ଯଥା
ଇନ୍ଦ୍ରଙ୍କ ଆଦେଶେ ସଦା ବହନ୍ତି ସାଗ୍ରହେ ।
ଅଶ୍ୱମେଧ ଯଜ୍ଞ କରି ସେ ଧାର୍ମିକ ବର
ଏରୂପ ଦକ୍ଷିଣା ଦେଲେ ବ୍ରାହ୍ମଣମାନଙ୍କୁ
ଯାଦେଖି ଦର୍ଶକମାନେ କୁବେରଙ୍କ ସଙ୍ଗେ
ଧନାପଣେ ଭୂପେନ୍ଦ୍ରଙ୍କୁ ତୁଳୁଥିଲେ ସଦା ।
ତାଙ୍କ ଅଧିକାରେ ଇନ୍ଦ୍ର ନିୟମାନୁସାରେ
ବର୍ଷୁଥିଲେ ଘନରସ, ଯମରାଜ ନିଜେ
ବ୍ୟାଧି ଉପଶମ ପାଇଁ ନେଉଥିଲେ ତତ୍ତ୍ୱ,
ସମୁଦ୍ର ଗାମିନୀ ନୌକା ଗତାଗତ ଲାଗେ
ସୁଗମ ସରଳ ପଥ ଦେଉଥିଲେ ପାଶୀ,
ରଘୁ, ଅଜ, ରାମ ଆଦି ପୂର୍ବ ପୁରୁଷଙ୍କ
ମହିମାକୁ ସ୍ମରି, ଭୟେ ଧନଦ କୁବେର
ଧନବୃଷ୍ଟି ଭରୁଥିଲେ ଗନ୍ତାଘରେ ଆଣି ।
ଏରୂପେ ରାଜେନ୍ଦ୍ର ପଦେ ପ୍ରତିଷ୍ଠିତ ହୋଇ
ଲୋକପାଳଗଣଠାରେ ପ୍ରକାଶି ପ୍ରଭାବ
ସ୍ୱଭୁଜ ବିକ୍ରମେ ଭୂପ ଅଖଣ୍ଡ ପ୍ରତାପେ
ଧରାକୁ ଶାସିଲେ ଦମ୍ଭେ ବହୁକାଳଯାଏ ।

---

(୧) ଇନ୍ଦ୍ରାଦି ଲୋକପାଳମାନେ ।

# ଅଷ୍ଟାଦଶ ସର୍ଗ

ଥିଲେ ତାଙ୍କ ଯୋଗ୍ୟ ରାଣୀ ବନ୍ଧୁ ଗୁଣବତୀ
ନିଷଧ ପତିର କନ୍ୟା, ସେ କୁମାରୀ ଗର୍ଭେ,
ନିଷଧ ନାମକ ପୁତ୍ର ଲଭିଲେ ରାଜନ
ଯଥାକାଳେ ମହାନନ୍ଦେ ମଜାଇ ପ୍ରଜାଙ୍କୁ
ଅତିଥିଙ୍କ ସେ କୁମାର ସକଳ ପ୍ରକାରେ
ନିଷଧ ପର୍ବତ ସମ ହେଲେ ସାରବନ୍ତ ।
ଯୌବନରେ ପଦାର୍ପଣ କରନ୍ତେ ତନୟ
ପ୍ରଜାଙ୍କର ଭବିଷ୍ୟତେ ରକ୍ଷା ହେବ ବୋଲି
ଯେମନ୍ତ ଆନନ୍ଦ ହେଲେ ସେ ବୃଦ୍ଧ ଭୂପତି,
ସୁବୃଷ୍ଟିରେ ଶସ୍ୟରାଜି ପାଚିଲେ ଯେପାରେ
ନରେଶି କୃଷକେ ହୃଷ୍ଟ ହୁଅନ୍ତି ଯେମନ୍ତ ।
କୁମୁଦ୍ୱତୀ ପୁତ୍ର ସେହୁ ଅତିଥି ନୃମଣି
ବିବିଧ ଐଶ୍ୱର୍ଯ୍ୟ ସୁଖମାନ ଅନୁଭବି
ନିଷଧଙ୍କୁ ରାଜପଦେ ବସାଇ ଆଦରେ,
ଅଶ୍ୱମେଧ ଆଦି ନାନା ଧର୍ମକର୍ମଯୋଗେ
ସଞ୍ଚିଥିଲେ ଯେଉଁ ପୁଣ୍ୟ, ତାହାର ବଳରେ
ସ୍ୱର୍ଲୋକକୁ ଯାତ୍ରାକଲେ ତପସ୍ୟା ଆଚରି ।
ପ୍ରଶାନ୍ତ ଗମ୍ଭୀର ମୂର୍ତ୍ତି କମଳଲୋଚନ
ଅର୍ଗଳ ସମାନ ବାହୁ ଅଦ୍ୱିତୀୟ ବୀର
କୁଶ ନରେଶଙ୍କ ନାତି ନିଷଧ ରାଜନ
ଏକଛତ୍ରେ ପୃଥିବୀକୁ ପାଳିଲେ ଯତନେ ।
ତାହାଙ୍କ ତନୟ ନଳ, ଅନଳର ପର
ପ୍ରବଳ ତେଜସ୍ୱୀ ବୀର ମହାବଳବନ୍ତ,
ପିତା ଅନ୍ତେ ସିଂହାସନ ଲଭି ଯଥାବିଧି,
ନଳ ବନଗଜ ଯଥା କରଇ ମର୍ଦ୍ଦନ
ତେସନ ସେ ଶତ୍ରୁକୁଳ ଧରଷିଲେ ବଳେ ।
ନଳଙ୍କର ସୁତ ନାମ ଅଟେ ନଭଶବ୍ଦ
ଗାଉଥିଲେ ତାଙ୍କଯଶ ନଭଶ୍ଚରମାନେ (୧)

---

୧ ନଭଶ୍ଚର—ଗନ୍ଧର୍ବ

ନଭସ୍ୱମାସ (୨) ସମ ସେହି ଗୁଡେନ୍ଦ୍ର ନନ୍ଦନ
ହୋଇଥିଲେ ପ୍ରଜାଙ୍କର ଆନନ୍ଦବର୍ଦ୍ଧକ ।
ଧାର୍ମିକପ୍ରବର ନଳ ସୁଧୀର ନଭକୁ
ଉତ୍ତର କୋଶଳ ରାଜ୍ୟ ସିଂହାସନ ଦେଇ
ପ୍ରାଚୀନ ଅବସ୍ଥା ଲଭି, କାନନକୁ ଗମି
ଆଚରିଲେ ମହାତପ ମୃଗସହ ଭ୍ରମି,
ଯେମନ୍ତ ମର୍ତ୍ତ୍ୟରେ ଆଉ ନ ହୁଏ ଜନମ ।
ବହୁବର୍ଷ ନଭଶଶ୍ୱ ସିଂହାସନେ ବସି
ଲଭନ୍ତେ ନର୍ବାଣପଦ, ପୁତ୍ର ପୁଣ୍ଡରୀକ
ପିତୃଅନ୍ତେ ଅଯୋଧ୍ୟାର ରାଜଦଣ୍ଡ ଧରି
ଅଗ୍ରଜମାନଙ୍କ ମଧ୍ୟେ ହେଲେ ଦୁର୍ନିବାର,
ମହାକାୟ ଗଜମଧ୍ୟେ ପୁଣ୍ଡରୀକ (୧) ଯଥା ।
ଶ୍ୱେତପଦ୍ମ ନିବାସିନୀ ସୁହାସିନୀ ଲକ୍ଷ୍ମୀ
ରହିଲେ ସର୍ବଦା ଆସି ତାହାଙ୍କ ଆଶ୍ରୟେ ।
ଅର୍ଯ୍ୟର୍ଥ ଯହାଙ୍କ ସେହି ପୁଣ୍ଡରୀକ ଭୂପ
କ୍ଷମାଗୁଣେ ବିଭୂଷିତ କ୍ଷେମଧନ୍ୱା ପୁତ୍ରେ
ସିଂହାସନ ଦାନକରି ନିଜେ ସୁସ୍ଥମନେ
କ୍ଷମାଶୀଳ ନାମ ବହି ଗମିଲେ ବନକୁ ।
ଦେବାନୀକ ତାଙ୍କ ପୁତ୍ର, ଯେମନ୍ତ ସେ ବୀର
ରଣସ୍ଥଳେ ଅଗ୍ରଗାମୀ, ତେମନ୍ତ ଚରିତେ
ଥିଲେ ଦେବତାଙ୍କ ପରି, ଦେବପୁରେ ସୁଦ୍ଧା
ତାହାଙ୍କ ବିମଳ କୀର୍ତ୍ତି ହେଉଥିଲା ଗାନ
ପିତା କ୍ଷେମଧନ୍ୱା ଯଥା ସୁପୁତ୍ର ଯୋଗରେ
ହୋଇଥିଲେ ପୁତ୍ରବନ୍ତ ତେସନ୍ତେ ଦେବାନୀକ
ତନୟବତ୍ସଳ ସେହି ଜନକଙ୍କ ଯୋଗେ
ହୋଇଥିଲେ ପିତୃବନ୍ତ, ସକଳ ପ୍ରକାରେ,
ପିତାପୁତ୍ର ଦୁହିଁମଧ୍ୟେ ଦୁହିଁଙ୍କ ଗୁଣର
ତୁଳେଷୁଦ୍ଧା ଥିଲା ନାହିଁ କିଛି ତାରତମ୍ୟ ।

---

୨ ନଭସ୍ୱମାସ—ଶ୍ରାବଣମାସ । (୧) ଦିଗ୍‌ଗଜ ।

ଯାଗଜଷ୍ଟପରାୟଣ କ୍ଷେମଧନ୍ୱା ନୃପ
ଏହିରୂପେ ବର୍ଣ୍ଣଚତୁଷ୍ଟୟଙ୍କର ଗୁର
ପୁତ୍ର ଦେବାନୀକ ହସ୍ତେ ସମର୍ପି ସୁଖରେ
ଗମନ୍ତେ ଅମର ପୁରେ, ଦେବାନୀକ ତହୁଁ
ଯଥାବିଧି ରାଜ୍ୟରକ୍ଷୀ, ବହୁକାଳ ପରେ
ଲଭିଲେ ଅନ୍ତିମ ଦଶା, ତାହାଙ୍କ ତନୟ
ଅହୀନଗୁ ଗୁଣମଣି ସ୍ୱକୁଳ ପ୍ରଦୀପ
ଅମାୟିକ ବ୍ୟବହାରେ ମଧୁର ବଚନେ
ଆତ୍ମୀୟମାନଙ୍କ ପରି ଶତ୍ରୁଙ୍କର ସୁଦ୍ଧା
ଅନାୟାସେ ନେଇଥିଲେ ମାନସକୁ ଟାଣି,
ସୁମଧୁର ସୁଲଳିତ ବଂଶୀସ୍ୱର ଯଥା
ଭୀତ ମୃଗ ନିକରକୁ କରେ ବଶୀଭୂତ ।
ସୁତେ ପୁଣି ପରିଣାମେ ଅହୀନଗୁ ଶୂର
ଲଭିଥିଲେ ସମୁନ୍ନତି, ଭ୍ରମରେ କଦାପି
ରହୁଥିଲେ ନାହିଁ କେବେ ହୀନ ସହବାସେ,
ଏଣୁ ଯୁବା ହୋଇଲେହେଁ ଅଖଣ୍ଡ ମହୀକୁ
ପ୍ରବୀଣ ପରାଏ ଦମ୍ଭେ ଶାସିଲେ କୌଶଳେ ।
ସର୍ବଲୋକ ହୃଦୟଙ୍ଗ ସେ ଭୂପତିମଣି
ପୃଥିବୀରେ ଅବତୀର୍ଣ୍ଣ ବିଷ୍ଣୁଙ୍କର ପରି
ସାମ ଦାନ, ଦଣ୍ଡ, ଭେଦ ଉପାୟ ସହାୟେ
ବହୁକାଳ ପାଳି ମହୀ ଗମନ୍ତେ ସ୍ୱର୍ଗକୁ,
ତାଙ୍କପୁତ୍ର ପାରିଯାତ୍ର ସ୍ୱ ପ୍ରତିଷ୍ଠା ବଳେ
ଶତ୍ରୁ ସମାଜରେ ନିଜ ମସ୍ତକ ଉତ୍ତୋଳି
ସମ୍ପାଦିଲେ ରାଜଶ୍ରୀକୁ, ଯାହାଙ୍କ ଗୌରବେ
କୁଳାଚଳ ପାରିଯାତ୍ର ହେଲା ପରାଭୂତ ।
ତାହାଙ୍କ ତନୟ ଶୀଳ, ଶୀଳରେ ଯେମନ୍ତ
ଥିଲେ ସେହି ମନୋହର, ଶିଳାପଟ୍ଟ ପରି
ତେମନ୍ତ ବିଶାଳବକ୍ଷ ଥିଲା ତାହାଙ୍କର,
ଶିଳୀମୁଖ ବାଣଯୋଗେ ଦେଲେହେଁ ସେ ଦଳ
ବିପକ୍ଷ ପକ୍ଷକୁ ରଣେ, ଛାଡୁଥିଲେ ନାହିଁ

ଲଜ୍ଜାଶୀଳତାକୁ କେବେ ହୃଦୟୁ ଉତରୁ ।
ପ୍ରଶଂସିତ ପାରସ୍ୟର ସ୍ୱସୁଶୀଳ ସୁତ
ଉତ୍ସାହି ଶୀଳକୁ ବର ଯୁବରାଜ ପଦେ
ଭୋଗସୁ ସମ୍ଭୋଗ ସୁଖେ ବଳାଇଲେ ମନ,
ଯେହେତୁ ରାଜା ଏ ଜଡ ରାଜ୍ୟପାଳନରେ
ବିସର୍ଜି ମନରୁ ବ୍ୟସ୍ତେ ବିଳାସ ସୁଖକୁ
ବନ୍ଦୀ ହେଲପର ନିଜେ ସ୍ୱବନ୍ଧ ନିଜକୁ ।
ସ୍ୱକାୟ ସୁନ୍ଦର ରୂପେ ପାରସ୍ୟର ନୃପ
ଟାଣୁଥିଲେ ବିଳାସିନୀମାନଙ୍କ ହୃଦୟ
ଯେତେବେଳେ ଇଚ୍ଛୁଥିଲେ ସେ ବିଳାସ ସୁଖ
ମିଳୁଥିଲା ଅନାୟାସେ, ତଥାପି ମନରୁ
ଦୁର୍ନିବାର ପ୍ରେମସ୍ପୃହା ନୋହୁଥିଲା ଲୟ,
ଯେତେ ଯୋଗାଇଲେ ସୁଦ୍ଧା ଭୋଗ ଇନ୍ଧନକୁ
ବାସନାନଳର କେବେ ହୁଏକି ତୃପ୍ତି ?
ଏକାଳେ ସହସା ଜଗ ହାରୁଥିଲା ଅସି
ରଣ ପରାଙ୍ମୁଖ ସେହୁ (୧) ହେଲେହେଁ ସହଜେ
ତାହାଙ୍କର ରତିପ୍ରିୟା ବିଳାସିନୀଙ୍କର
ସୌନ୍ଦର୍ଯ୍ୟେ ଅସୂୟା ବହି, ସେ ଈର୍ଷା ବର୍ଣ୍ଣି କି ?
ମର୍ତ୍ତ୍ୟଧାମୁଁ ନରେଶଙ୍କୁ କରିଲ ଅନ୍ତର ।
ପାରସ୍ୟ ନରେଶଙ୍କ ତନୟୁ ଉଭାଭ
ନାଦରକ୍ତ ଯାହାଙ୍କର ଉଚିତ ନ ହୋଇ
ହୋଇଥିଲା ସୁଗସ୍ୱର ପଦ୍ମନାଭ ପର,
ମହାରାଜ ମଣ୍ଡଳୀରେ ଥିଲେ ସେ ପ୍ରଧାନ,
ତାଙ୍କ ପୁତ୍ର ବଜ୍ରନାଭ, ବଜ୍ରଧର ପର
ପ୍ରଭବରେ ପରିପୂର୍ଣ୍ଣ, ବଜ୍ରଧ୍ୱନି ବତ
ଭରନ୍ତି ଯୁଦ୍ଧରେ ନାଦ, ହୋଇଥିଲେ ସେହୁ
ରହଶଣି ଭମଣ୍ଡିତ ପୃଥିବୀର ସାଇଁ ।
ସ୍ୱପୁଣ୍ୟରେ ଉପାର୍ଜିତ ଅମର ଧାମକୁ

(୧)—ଜୟ ।

ଗମନ କରନ୍ତେ ଭୂପ, ସସାଗରାଧରା
ଯୁବରାଜ ଶତ୍ରୁହନ୍ତା ଶଙ୍ଖଣ ଶୂରକୁ
ସେବା କଲେ ନାନାମତେ ଉପହାର ଦେଇ
ମଣିଜାତ ବହୁମୂଲ୍ୟ ରତ୍ନ ଦ୍ରବ୍ୟମାନ ।
ନବୋଦିତ ପ୍ରଭାକର ସମ ତେଜବନ୍ତ
ଅଶ୍ୱିନୀ କୁମାର ଅତି ମୋହନ ମୂରତି
ଜ୍ୟେଷ୍ଠପୁତ୍ର ହରିଦଶ୍ୱ ଅଭିଷିକ୍ତ ହେଲେ
ପୈତୃକ ଆସନପରେ ସର୍ବସମ୍ମତିରେ
ଯଥାକାଳେ ପିତୃଦେବ ଗମନ୍ତେ ସ୍ୱର୍ଗକୁ ।
ଏକଦା ସେ ସିନ୍ଧୁତୀରେ ରଣ ଉଦ୍ଦେଶ୍ୟରେ
ଚତୁରଙ୍ଗ ସେନାସହ ଉପସ୍ଥିତ ହୋଇ
ରହିଥିଲେ ବହୁକାଳ, ଏଣୁ ବୁଧଗଣ
* ବ୍ୟୁଷିତାଶ୍ୱ ବୋଲି ତାଙ୍କୁ ଦେଇଥିଲେ ଆଖ୍ୟା ।
ସେ କ୍ଷିତୀଶ ବ୍ୟୁଷିତାଶ୍ୱ ତପସ୍ୟାରେ ତୋଷି
କାଶୀନାଥ ମହେଶଙ୍କୁ ଲଭିଥିଲେ ସହେ
ବିଶ୍ୱସହ ନାମେ ଏକ ତନୟ ରତନ
ସମଗ୍ର ବିଶ୍ୱର ସେହୁ ଯଥା ସମୟରେ
ହୋଇଥିଲେ ଏକଛତ୍ର ପ୍ରତାପୀ ସମ୍ରାଟ୍,
ପୁଣ୍ୟରୂପୀ ଅମ୍ବାପରି ଥିଲେ ଜନକର ।
ସୁଗୀତଙ୍କ ବିଶ୍ୱସହ ବିଷ୍ଣୁଙ୍କ ଅଂଶରେ
ସୁନ୍ଦର ହିରଣ୍ୟନାଭ ନାମେ ଏକ ସୁତ
ଜନ୍ମଦେଇ, ବାୟୁସହ ସମ୍ମିଳିତ ବହ୍ନି
ଯେସନ ପାଦପକୁଳ ଦହଇ ପ୍ରଚଣ୍ଡେ
ତେସନ ସେ ଶତ୍ରୁକୁଳ ନିର୍ମୂଳିଲେ ବଳେ ।
ଯଶସ୍ୱୀ ପୁତ୍ରକୁ ଲଭି ବିଶ୍ୱସହ ଭୂପ
ପିତୃମାନଙ୍କର ଋଣୁ ହୋଇଣ ବିମୁକ୍ତ
ସେ ପୁତ୍ରକୁ ବସାଇଣ ସିଂହାସନପରେ
ସ୍ୱର୍ଗସୁଖ କାମନାରେ ଅନ୍ତିମ ବୟସେ

*—ଅଧ୍ୟୁଷିତ୍ୱ ନିବେଶବାସ ।

ବନେପଶି ମନସୁଖେ ପିନ୍ଧିଲେ ବଲ୍କଲ ।
ସୂର୍ଯ୍ୟବଂଶ ଅବତଂସ ସେ ହିରଣ୍ୟନାଭ
ଧର୍ମରେ ଶାସିଲେ ଧରା, ଅନ୍ୟକଥା ଥାଉ
ବିପ୍ରଙ୍କୁ ଦେଉଥିଲେ ଯଜ୍ଞେ ସୋମରସ,
କ୍ରିଗସ୍ତ ସୋମଙ୍କସମ ପ୍ରିୟପତ୍ନୀ ଗର୍ଭେ
କୌଶଲ୍ୟ ନାମରେ ଏକ ଜନ୍ମିଲେ କୁମାର ।
ବିସ୍ତାର ସେ ଯଶରାଶି ବ୍ରହ୍ମଲୋକଯାଏ ।
ଲଭି ମହା ସୁପ୍ରତିଷ୍ଠା ଭୂପାଳମଣ୍ଡଳେ
ବ୍ରହ୍ମନିଷ୍ଠ ତନୟଙ୍କୁ ନିଜ ଅଧିକାରେ
ବସାଇ ପରମ ସୁଖେ, ବାର୍ଦ୍ଧକ୍ୟାବସ୍ଥାରେ
ଲଭିଥିଲେ ବ୍ରହ୍ମତ୍ୱକୁ ସୁରଧାମେ ଯାଇ
କୁଳର ପ୍ରଦୀପରୂପୀ ସତ୍ପୁତ୍ରର ପିତା
ସୁଧୀର ବ୍ରହ୍ମିଷ୍ଠ ଭୂପ ବିନା ବ୍ୟାଘାତରେ
ସୁଶାସିତା ଧରଣୀକୁ ଶାସି ଯଥାବିଧି
ବୁହାଇଲେ ପ୍ରଜାନେତ୍ରୁ ଆନନ୍ଦାଶ୍ରୁଧାର ।
ତାଙ୍କ ହୂତନାମ ପୁତ୍ର, କମଳଲୋଚନ
ସାକ୍ଷାତ ବିଷ୍ଣୁଙ୍କ ପରି ଦିଶୁଥିଲେ ସ୍ୱରୂ,
ମାନନୀୟ ଗୁରୁବର୍ଗେ ସମ୍ମାନ ଦେଖାଇ
ବିନୟ ବିନମ୍ରବାକ୍ୟେ ପରିଜନେ ତୋଷି,
ବ୍ରହ୍ମିଷ୍ଠ ତନୟ ପୁଣି ସ୍ୱୀୟ ଜନକଙ୍କୁ
ପୁତ୍ରବନ୍ତ ନରକୁଳେ କରିଥିଲେ ଶ୍ରେଷ୍ଠ ।
ଧାର୍ମିକ ବ୍ରହ୍ମିଷ୍ଠ ଭୂପ ତପସ୍ୟ ସୁଖରୁ
ବୀତସ୍ପୃହ ହୋଇ ଉତ୍ତମ ସ୍ୱର୍ଗସୁଖ ଲୋଡ଼ି
ଦେବରାଜ ଇନ୍ଦ୍ରଙ୍କର ସଖା ହେବା ଆଶେ
ଯଶସ୍କର ପୁତ୍ରଯୋଗେ ବଂଶସ୍ଥିତିକର
ତୀର୍ଥପର୍ଯ୍ୟଟନ ଶେଷେ ଲଭିଲେ ଦେବତ୍ୱ ।
ତାହାଙ୍କର ପୁତ୍ରବଧୂ ପୁଷ୍ୟାନକ୍ଷତ୍ରରେ
ପ୍ରସବିଲେ ସର୍ବଶୁଭେ ପୌଷପୂର୍ଣ୍ଣମୀରେ
ପୁଷ୍ୟନାମଧାରୀ ଏକ ସୁନ୍ଦର ତନୟ
ସେ ସୁତର ଦିବ୍ୟତେଜେ ମ୍ଳାନ ହୋଇଗଲା

ସୁମାର୍ଜ୍ଜିତ ମହୋଜ୍ଜ୍ୱଳ ପୁଷ୍ପରାଗମଣି
ପୁଷ୍ୟାନକ୍ଷତ୍ରର ପରି ଦ୍ୟୁତନ୍ତେ ସେ ଉଦେ
ସମୃଦ୍ଧିସମ୍ପନ୍ନ ହେଲେ ପରଜାନକର ।
ଫସାର ବନ୍ଧନେ ସ୍ଥିତ ମହାଶସ୍ୟ ପୁଷ୍ୟ
ରାଜନ୍ୟଙ୍କୁ ପରିହରି ଋଷିଧୁରନ୍ଧର
ଜୈମିନଙ୍କ ଶିଷ୍ୟ ହୋଇ ତାହାଙ୍କ ନିକଟୁ
ଯୋଗଶିକ୍ଷା ଅବଶେଷେ ଲଭିଲେ ମୁକତି ।
ଧ୍ରୁବସମ ଧ୍ରୁବସନ୍ଧି ତାହାଙ୍କ ଆତ୍ମଜ
ତହୁଁ ହେଲେ ଅଧିପତି, ଯେମନ୍ତ ସେ ବୀର
ଗୁଣେ ସର୍ବଙ୍କର ଶ୍ରେଷ୍ଠ, ତେମନ୍ତ ଅଟଳ,
ସତ୍ୟ ପ୍ରତିଜ୍ଞାରେ ବଦ୍ଧ ଥିଲେ, ଚିରକାଳ,
ଅରାତିମଣ୍ଡଳ ଭୟେ ମସ୍ତକ ନୁଆଁଇ
କରିଥିଲେ ତାଙ୍କ ସହ ଚିରସ୍ଥାୟୀ ସନ୍ଧି ।
ସୁଦର୍ଶନ ସୁଦର୍ଶନ ତାହାଙ୍କ ତନୟ
ପାର୍ବତୀ ଚନ୍ଦ୍ରର ପରି ମୋହନ ମୂରତି
ମୃଗସମ ବିଲୋଚନ, ପଦ୍ମପରି ମୁଖ ।
ନରସିଂହ ଧ୍ରୁବସନ୍ଧି ଅରଣ୍ୟକୁ ଯାଇ
ମୃଗୟାବିନୋଦ ଦିନେ ଦୁର୍ଭାଗ୍ୟବଶରୁ
ପୁତ୍ର ସୁଦର୍ଶନଙ୍କର ବାଲ୍ୟ ଅବସ୍ଥାରେ
ଅକାଳରେ ସିଂହମୁଖେ ଲଭିଲେ ନିଧନ
କରନ୍ତେ ସେ ମହାଯାତ୍ରା, ମନ୍ତ୍ରୀମାନେ ମିଳି
ମତ ନେଇ ଶୋକାକୁଳ ପ୍ରଜାନିବହଙ୍କ
ସ୍ୱକୁଳର ଏକମାତ୍ର ଅଙ୍କୁର ସ୍ଥଳ
ଶିଶୁପୁତ୍ର ସୁଦର୍ଶନେ କଲେ ଅଭିଷେକ
ଅଯୋଧ୍ୟାର ସିଂହାସନେ ବିହିତ ବିଧାନେ
ସିଂହାସନେ ଶିଶୁରାଜା ଶୋଭନ ଅନାବୃସେ
ସୁବିଶାଳ ରଘୁକୁଳ ହେଲ ପ୍ରକାଶିତ
କିଶୋରଚନ୍ଦ୍ରଙ୍କୁ ଧରି ନଭସ୍ଥଳ ଯଥା,
କିମ୍ବା ସିଂହଶିଶୁଶୋଭି କାନନ ଯେସନ,
ଅବା ପଦ୍ମକଳିଯୁକ୍ତ ସରୋବର ପରି ।

ଯେ କାଳେ ମୁକୁଟ ସେହି ବହିଲେ ମସ୍ତକେ
ପିତାପରି ହେବେ ବୋଲି ଭାବିଲେ ସକଳେ,
କ୍ଷୁଦ୍ରକାୟ ମେଘଖଣ୍ଡ ନଭସ୍ଥଳେ ଦେଖି
ସମ୍ମୁଖ ପବନ ଲଭି ଅଗୋଚରେ ନାହିଁକି ?
ଦେଖୁଁ ଦେଖୁଁ ଅଲକ୍ଷଣେ ସମୁଦାୟ ବଣ ।
ଅମାରୀରେ ହାତୀପରେ ଅଶେଷ ଭୂଷଣ
ରାଜପଥେ କୁତୂହଳେ ଭ୍ରମୁଥିଲେ ସୁଖେ,
ରାଜ ଉପଗୁରୁମାନ ଘେନି ସଙ୍ଗତରେ
ବସୁଥିଲେ ପାଖେ ଆସି ଶ୍ରେଷ୍ଠ ଅନୁଚର,
ଛ ବର୍ଷରୁ ନ୍ୟୂନ ତାଙ୍କ ଥିଲେହେଁ ବୟସ
ଉତ୍ସବରେ ପ୍ରଭୁ ଭାବି ନଗରବାସିଏ
ସମ୍ମାନ ଦେଖାଉଥିଲେ ଜନକର ପରି,
ଯଦିବା ବାଳକ ହେତୁ କ୍ଷୁଦ୍ର କଳେବରେ
ଭରି ପାରୁ ନ ଥିଲେ ସେ ପିତୃ ସିଂହାସନ,
ତଥାପି ସୁବର୍ଣ୍ଣ ସମ ଗଉର ବର୍ଣ୍ଣରେ
ତେଜୋଦୀପ୍ତ ସୁକୁମାର ଶରୀର ଦେଖାଇ
ପୂର୍ଣ୍ଣ କରି ଦେଉଥିଲେ ସେ ସିଂହାସନକୁ
ନରେଶଙ୍କ ପାଦଦ୍ୱୟ ଅତି ସାନ ହେବୁ
ପହଞ୍ଚୁ ନଥିଲା ନମ୍ର ସୁବର୍ଣ୍ଣ ପୀଠକୁ ।
ଉନ୍ନତ ମୁକୁଟେ ଏଣୁ ସାମନ୍ତରାଜାଏ
ଭକ୍ତିରେ ଯୁହାରୁଥିଲେ ସେ ପଦକୁ ଛୁଇଁ ।
କ୍ଷୁଦ୍ରାକୃତ ଇନ୍ଦ୍ରନୀଳମଣିକୁ ଯେସନ
ମହାନୀଳ ଆଖ୍ୟା ଦେଲେ ଜହୁରି ଅତ୍ୟୁଚ୍ଚ,
ତେଜୋଦୀପ୍ତ ହେବାରୁ ତେସନେ ନୃପ ସୁଦର୍ଶନ
ଲଭିଲେହେଁ ଶିଶୁମୂର୍ତ୍ତି, ନୋହୁଅଷ୍ଟ ସ୍ଥାନ,
ତାଙ୍କଠାରେ ପ୍ରଯୋଜିତ ମହାରାଜ ଶବ୍ଦ ।
ସଭାରେ ବସିଲା ବେଳେ, ନୃପମଣିଙ୍କର
ବେନି ପାଖେ ପଡ଼ୁଥିଲା ଭୁଚରେ ଚାମର
ସେ ଚାମର ପବନରେ ଉଡ଼ାଇ ରଭସେ
କି ମଧୁରେ ଖେଳି ଚୁମ୍ବି କାକପକ୍ଷବେନ ।

ବାହାରୁଥିଲ ସେ ଆଜ୍ଞା ମୁଖୁ ଯେଉଁ କାଳେ,
ସାଗର ଯେମନ ତଟ ନକରେ ଲଙ୍ଘନ
ତେମନ ସେ ଆଜ୍ଞା କେହୁ ଲଙ୍ଘୁଥିଲେ ନାହିଁ ।
ଜନକପଟରେ ବନ୍ଧ ଲଲାଟ ପଟ୍ଟରେ
ଜଳଧର ଛଟାବହୁ ଶିଶୁ ନରବର
ଶତ୍ରୁ ନାରୀମାନଙ୍କର ବଦନମଣ୍ଡଳ
ପୋଛି ଦେଉଥିଲେ ନବ ଜଳଧର ଛଟା ।
ସୁକୁମାର ଥିବାରୁ ସେ ଶିରୀଷ ଫୁଲରୁ
ଭୂଷାପିନ୍ଧ ଭାରଭରେ ହେଉଥିଲେ ଶ୍ରାନ୍ତ ।
ତଥାପି ଏ ଧରଣୀର ଅତି ଗୁରୁଭର
ବହୁଥିଲେ ନକରଣ ଜଳେ ଶ୍ରମବୋଧ ।
ଖଡ଼୍ଗଧର ସୁଦର୍ଶନ ନଶିଖୁଁ ନଶିଖୁଁ
ସ୍ୱର ବ୍ୟଞ୍ଜନରେ ଯୁକ୍ତ ଅକ୍ଷର ସକଳ
ଜ୍ଞାନବୃଦ୍ଧଲୋକଙ୍କର ନିକଟରେ ରହି
ଅକ୍ଳେଶେ ଲଭିଲେ ସେତେ ସୁମାଜର ଫଳ ।
ବାଳକ ଥିବାରୁ ଭୂପ ତାଙ୍କ ହୃଦ୍‌ବକ୍ଷେ
ଲକ୍ଷ୍ମୀଙ୍କ ବିଳାସ ପାଇଁ ଥିଲ ନାହିଁ ସ୍ଥାନ,
ତେଣୁ ସେ କିଶୋରଙ୍କର ବୟସକୁ ଠାବି
ରହିଲେ ସେ ଛଦତଳେ ଲଜ୍ଜିତାର ପରି,
କେବେ କେବେ ଆଲିଙ୍ଗନ କରି ଅଲକ୍ଷରେ ।
ଯୁଆଳି କାଠର ସମ ସୁଦୀର୍ଘ ନ ଥିଲ
ଅଥବା ତାହାଙ୍କ ବାହୁ, ଜ୍ୟାଘାତ ଚିହ୍ନରେ
ଅବା ସେବେ ନୋହୁଥିଲ ଅଙ୍କିତ ସେ ଭୁଜ
ଛୁଇଁଥିଲ ନାହିଁ ତାହା ଅଥବା ଅସିକୁ,
ତଥାପି ଏ ମହୀ ସେହି କ୍ଷୁଦ୍ର ବାହୁଯୋଗେ
ସୁରକ୍ଷିତ ହେଉଥିଲ ଯଥାର୍ଥ ଭାବରେ ।
କ୍ରମେ ଗତହେଲ କାଳ, ବଡ଼ହୋଇ ଏବେ
ଦିନୁ ଦିନୁଁ ସୁଦର୍ଶନ, ପାଇଲେ ନାହିଁଟି
ଦୈହିକ ଉଳଣ ଏବା, ପୁଣ ପ୍ରତିଷ୍ଠିତ
ସ୍ୱବଂଶର ଅଧିକୃତ ସବୁ ଲୋକପିତ୍ର—

ଶୌର୍ଯ୍ୟାଦି ଗୁଣାବଳି ଲଭିଲେ ସକଳ ।
ହସ୍ତୀ, ବାଜି, ଦଣ୍ଡନୀତି ଏବିଦ୍ୟା ନିଚୟ
ଅଟଇ ମୋକ୍ଷର ହେତୁ, ଏଣୁ ନରମଣି
ଏହୁ ବିଦ୍ୟା ନିଚୟକୁ. ପୂର୍ବ ଜନମରେ
ଲବ୍ଧ କରିଥିଲେ ସବୁ, ଅଭ୍ୟାସର କ୍ଲେଶ
ଶିକ୍ଷକମାନଙ୍କୁ କିଛି ନଦେଇ ଅକ୍ଲେଶେ
ସ୍ମରଣ ମାତ୍ରକେ ତାହା ପଶିଲେ ଅନ୍ତରେ ।
ଧନୁର୍ବିଦ୍ୟା ଶିକ୍ଷାକାଳେ ଦେହର ପୂର୍ବାଂଶ
ସାମାନ୍ୟ ବକ୍ରାଗ ସେହୁ, ଦମ୍ଭେ ଠିଆହୋଇ
ମୁକୁଳିତ କେଶପାଶ ଉର୍ଦ୍ଧ୍ୱେ ଟେକି ବାନ୍ଧି,
ବାମଜାନୁ ବଢେଥୋଇ ତହିଁ ଭରଦେଇ
ସଶର ଧନୁକୁ ଟାଣି କର୍ଣ୍ଣଯାଏ ବଳେ
ଦର୍ଶକଙ୍କ ମନହେଜ ନେଉଥିଲେ ହରି ।
ନାରୀଏ ନୟନ ସହେ ପିଅନ୍ତି ଯେ ମଧୁ
ଅଟେ ଯାହା ମନୋହର ନନ୍ଦନ ବୃକ୍ଷର
ଅନୁରାଗ ସହଯୁକ୍ତ ପ୍ରସୂନର ପରି,
ସର୍ବାଙ୍ଗ ମଣ୍ଡିବା ପାଇଁ ପ୍ରାଣୀ ସମାଜର
ଅକୃତ୍ରିମ ଅଳଂକାର ଅଟଇ ଯେ ଭବେ,
କଳାପର ଅଦ୍ୟସ୍ଥାନରୂପୀ ସେ ଯୌବନ
ପଶି ଅଙ୍ଗଦେଶ ତାଙ୍କ କଲେ ମଣ୍ଡନ ।
ନଥିବାରୁ ତାହାଙ୍କର ଉତ୍ତରାଧିକାରୀ
ଶୀଘ୍ର ପୁତ୍ରକାମନାରେ ବୃଦ୍ଧ ମନ୍ତ୍ରୀମାନେ
ବହୁଯତ୍ନେ ରାଜକନ୍ୟା ଆଣି ଦେଶାନ୍ତରୁ.
ନବୀନ ନରେଶଙ୍କର ନୈସର୍ଗିକ ପତ୍ନୀ·
ଲକ୍ଷ୍ମୀ, ପୃଥ୍ୱୀ ଦେବୀଙ୍କର କରିଲେ ସପତ୍ନୀ
ଘଟେକେ ସମ୍ବନ୍ଧ ପାଇଁ ଦଉଡ଼ି ସନ୍ତତ
ଯେ ସକଳ ପାତ୍ରୀଙ୍କର ପ୍ରତିରୂପ ଆଣି
ଦେଖାଇଲେ, ତାହାଠାରୁ ବହୁଗୁଣେ ବଳି
ସେମାନେ ରୂପରେ ସିନା ଥିଲେ ଶ୍ରେଷ୍ଠତର ।

———

# ଊନବିଂଶ ସର୍ଗ

ବାଣୀଙ୍କର ବରପୁତ୍ର ଗୁଣୀ ଶିରୋମଣି
କ୍ଷତ୍ରେନ୍ଦ୍ରସ୍ୱ ରଘୁସୁତ ସୁଦର୍ଶନ ନୃପ
ଅବଶେଷେ ବୃଦ୍ଧହୋଇ ଉଦାସୀନ ମନେ
ଅଗ୍ନି ତୁଲ୍ୟ ତେଜୀୟାନ ଅଗ୍ନିବର୍ଣ୍ଣ ପୁତ୍ରେ
ନିଜ ରାଜପଦେ ସ୍ଥାପି ନୈମିଷ ବନକୁ
ବାହାରିଲେ ଜାୟାସହ ତପସ୍ୟା ପାଇଁକି ।
ତୀର୍ଥ ସଲିଳରେ ମଜ୍ଜି ସେହି କାନନରେ
ବିହାର ତଡ଼ାଗମାନ ମନୁ କଲେ ଦୂର,
ଭୂମିରେ ବିଛାଇ କୁଶ ତହିଁପରେ ଶୋଇ
ସୁକୋମଳ ଶଯ୍ୟା ଆଉ ନକଲେ ସ୍ମରଣ,
ଉଟଜରେ ବାସକରି ଅଟ୍ଟାଳିକା ସୁଖ
ବରଜି ହୃଦରୁ ତୃପ୍ତ ଆନନ୍ଦ ମାନସେ
ଫଳକାମ ଶୂନ୍ୟମନେ ସେହି ଅବସ୍ଥାରେ
ଯୋଗସମାଧିରେ ଋଷି ଗମିଲେ ସ୍ୱର୍ଗକୁ ।
ପୁତ୍ର ଅଗ୍ନିବର୍ଣ୍ଣ ତହୁଁ ସେ ଲବ୍ଧ ରାଜ୍ୟକୁ
ଅକ୍ଳେଶେ ପାଳନ କଲେ, ଯେଣୁ ସୁଦର୍ଶନ
ଭୁଜବଳେ ଶତ୍ରୁଦଳ ନିଷ୍କଣ୍ଟକ କରି
ତନୟର ଭୋଗଲାଗି ଥିଲେ ତାହା ରଖି ।
ଅତ୍ୟନ୍ତ କାମୁକଥିଲେ ଅଗ୍ନିବର୍ଣ୍ଣ ନୃପ,
ଏଣୁ ଆଗେ କୁଳଧର୍ମ ପାଳି ଯତନରେ,
ପରେ ମନ୍ତ୍ରୀଗଣ କରେ ରାଜ୍ୟଭାର ଦେଇ
ଏକାନ୍ତରେ ବଶହୋଇ କାନ୍ତାଙ୍କ ସଙ୍ଗରେ
ଯୌବନ ସୁଲଭ ସୁଖେ ବଳାଇଲେ ମନ ।
ରାଜକାର୍ଯ୍ୟ ଆଲୋଚନା ପାଇଁ ମନ୍ତ୍ରୀସହ
ନରହି ସେ ମହୀପାଳ କ୍ଷଣକାଳ ସୁଦ୍ଧା
ଦରବାରେ, ଦିବାନିଶି କେଳିପୁରେ ବସି
ହାସ୍ୟରସେ ରସୁଥିଲେ ନାରୀ ମଣ୍ଡଳୀରେ ।
ରାଜ ଦରଶନ ଆଶେ ପ୍ରଜାପୁଞ୍ଜ ଆସି,
ଫେରି ଯାଉଥିଲେ ଦୁଃଖେ ଅଶାନ୍ତମନରେ

ନପାଇ ଛାମୁଙ୍କ ଦେଖା, ମନ୍ତ୍ରୀଙ୍କ କଥାରେ
କଦାଚିତ ଯେବେ ଦେଖା ଦେଉଥିଲେ ଛାମୁ
ତଥାପି ସମ୍ମୁଖେ ନୁହେଁ, ମନ୍ଦିର ଭିତରୁ
ଗବାକ୍ଷ ବିବର ବାଟେ ଲମ୍ବାଇ ଚରଣ
କରୁଥିଲେ ସେମାନଙ୍କ ସହିତ ସାକ୍ଷାତ ।
ନବରବି-କରଦୀପ୍ତ—କମଳ ସଦୃଶ
ନଖରାଗେ—ସୁରଞ୍ଜିତ ନୃପଙ୍କ ପଦକୁ
ଭକ୍ତିଭରେ ପ୍ରଜାମାନେ ଯୁହାରି କରନ୍ତେ
ସ୍ୱର୍ଗର ସମ୍ପଦ ବୋଲି ମଣୁଥିଲେ ମନେ,
ସାଧାରଣ ନେତ୍ରେ ଦେଖିବା ଅପ୍ରାପ୍ୟ ଦ୍ରବ୍ୟକୁ
ଗ୍ରହଣ କରନ୍ତି ନାହିଁ କିଏ ବା ଆଦରେ ?
କାମରସେ ମଗ୍ନହୋଇ କାମିନୀଙ୍କ ମେଳେ
ମୃଦଙ୍ଗ ଧ୍ୱନିରେ ପୂର୍ଣ୍ଣ କେଳି ସଦନରେ
ଦିନୁ ଦିନୁ ସମଧିକ ଆଡ଼ମ୍ବରସହ
ମହୋତ୍ସବେ ସଦାବେଳେ ମାତିଲେ ନରେଶ ।
ମହିଳାମାନଙ୍କସହ କେବେ ଆନନ୍ଦରେ
ଜଳେ କରୁଥିଲେ କେଳି, ସେ କଳକଣ୍ଠୀଙ୍କ
ଉତ୍ତାନ ପ୍ଲବନ କାଳେ ଉଚ୍ଚକୁଚମାନେ
ଦିଶୁଥିଲା ମନୋହର ସରସୀର ଜଳ
କମଳ କୋରକ ଜାଲେ ଭରିଗଲା ପରି ।
ମଦରାଗେ ମନୋହର ବନିତାବୃନ୍ଦର
ଅଧରରୁ ଲାକ୍ଷାରାଗ, ନୟନୁ ଅଞ୍ଜନ
ଜଳ ଛିଟିବାରୁ କେବେ ଧୋଇହୋଇ ଯାଇ,
ବ୍ୟକ୍ତକର ଶ୍ରୀମୁଖର ସ୍ୱାଭାବିକ କାନ୍ତି
ଉପୁଜାଉଥିଲା ମନେ ଦ୍ୱିଗୁଣେ ବିକାର ।
ପ୍ରମତ୍ତ ବାରଣ ଯଥା କରିଣୀ ସଙ୍ଗରେ
ସୁରଭିତ ପଦ୍ମାକରେ ପଶଇ ଆନନ୍ଦେ
ପ୍ରେୟସୀଙ୍କ ମେଳେ କେବେ ସେ କାମୁକ ଭୂପ
ଆଘ୍ରାଣ ଆନନ୍ଦ ଦାୟୀ ମଦସମୋଦିତ
ପାନଭୂମି ନିକଟକୁ ଯାଉଥିଲେ ରଙ୍ଗେ ।

ନାରୀଏ ଆନନ୍ଦେ ଯଥା ଅଗ୍ନିବର୍ଣ୍ଣଙ୍କର
ଅସ୍ଖଳିତ ନଣାଦାସୀ ନୃତ୍ୟ ମନ୍ଦିରରେ
ହେଉଥିଲେ ସୁହାଗିନୀ, ଯେମନ ସେ ସ୍ନେହେ
ପିଉଥିଲେ ବାମା ମୁଖୁଁ ମଦିରା କୌତୁକେ ।
କେବେ କାମିନୀଙ୍କୁ ଘେନି ସରସୀ ତୀରରେ
କେଳି ଗୃହେ ଗୃହେ ଭୂପ ଭ୍ରମୁଥିଲେ ସୁଖେ,
ସୁହାସିନୀ ବାମା ପୁଣି ମୃଦୁନାଦୀ ବୀଣା
ଏ ବେନିଙ୍କୁ କୋଳେ ଘେନି କାଟୁଥିଲେ କାଳ,
ବିହାରର ଉପଯୁକ୍ତ ସାମଗ୍ରୀ ପାଇଲେ
ସହଜେ କାମୁକ ମନ ସ୍ଖଳିବ ଉର୍ଦ୍ଧେ ?
ବିଳାସିତା ପାଇଁ ଲୋଡ଼ା ଯେତେ କଳା ବିଦ୍ୟା
ତହିଁ ସବୁମତେ ଯତ୍ନେ ଥିଲେ ସୁନିପୁଣ,
ମଝିକେ ବଜାଉଥିଲେ ନିଜ କରେ ଘେନି
ବାଦ୍ୟଯନ୍ତ୍ର, କଙ୍କଣରୁ ନିସ୍ୱନ ଉଲ୍ଲାସେ
ସୁବଳିତ ସୁମଞ୍ଜୁଳ ପ୍ରକୋଷ୍ଠ ପ୍ରଦେଶେ ।
ବିବିଧ ଭଙ୍ଗୀରେ ବାଦ୍ୟ ବଜାଇବା କାଳେ
ନରେଶଙ୍କ ସୁଲଳିତ ମୂରତିକୁ ଦେଖି
ଅବଶେ ନର୍ତ୍ତକୀମାନେ ମଦନ ବିକାରେ
ବେଳେବେଳେ ଭ୍ରଷ୍ଟ କରି ନାଟ୍ୟ ଅଭିନୟ,
ଓସ୍ତାଦମାନଙ୍କ ପାଖେ ଅଧୋବଦନରେ
ରହୁଥିଲେ, ଆନନଶ୍ରୀ ଲଜ୍ଜେ ଲାଲ ହୋଇ
ବିନ୍ଦୁ ବିନ୍ଦୁ ସ୍ରବୁଥିଲା ଝାଳ ଭାଲଦେଶୁଁ,
ସେହି ସ୍ୱେଦ ବିନ୍ଦୁମାନେ ଯେବେ ଧୋଇ ହୋଇ
ନର୍ତ୍ତକୀଙ୍କ ଲଲାଟରୁ ଲିଭୁଥିଲା ଟୀକା
ତେବେ ନାଟ ଶେଷେ ତାଙ୍କ ଚିବୁକକୁ ଧରି,
ଆଦରେ ସୁନ୍ଦର ମୁଖେ ନିଜମୁଖ ଥୋଇ,
ଯାଚିବା ଛଳରେ ସ୍ନେହ ଅଳକକୁ ଫାଳି
ସୁରଭିତ ମୁଖବାତେ ଆନନ୍ଦେ ମସ୍ତାଇ
ସେମାନଙ୍କୁ, ପୁଣି ନିଜେ ମଣ୍ଡି ସେ ସୁଖରେ
ସୁନାରୀର ଶିରୀକୁ ସେ କରୁଥିଲେ ଭୁଞ୍ଜ ।

ସମାନ ଆମୋଦେ ସଦା ନ ହୋଇ ସନ୍ତୁଷ୍ଟ
ନବ ନୁଆ ନୁଆ ଭାବ ଖୋଜୁଥିଲେ ଭୂପ,
ପ୍ରେୟସୀ ନାରୀଏ ଯେତେ ଗୋପନରେ ଯାଇ
ମିଳୁଥିଲେ କେଳିପୁରେ ନୃପଙ୍କ ସହିତ
ସେମାନଙ୍କ ଆକସ୍ମିକ ଉପସ୍ଥିତ ପାଇଁ
ନ ହୋଇ ବିରକ୍ତ ଭଲେ, ପ୍ରେମ ଅନୁରାଗେ
ତୋଷୁଥିଲେ ରସମୟ ବିବିଧ ଆଳାପେ ।
ପ୍ରିୟତମାଗଣେ ଛଳ କେବେ ସେ ରସିକ
ଅନ୍ୟ ନାରୀସହ ମିଳି ରହୁଁ ଚନ୍ଦ୍ରାପଢ଼,
ବିବିଧ ଭର୍ତ୍ସନା ପାଇ ସେମାନଙ୍କଠାରୁ
ଲଜ୍ଜା ହେଉଥିଲେ ତାଙ୍କ ରଚନା ଦାମରେ ।
ବିହରଣୀ ପ୍ରିୟାଙ୍କର ଅଜ୍ଞାତସାରରେ
ଉଭା ହୋଇ କେଳିପୁରେ ତାହାଙ୍କ ପଛରେ
କେବେ ବା ନରେନ୍ଦ୍ରମଣି ସେ ବାଳାମାନଙ୍କ
ବିରହ ଜନିତ ଖେଦ କାକୁକ୍ତି ସକଳ
ଶୁଣୁଥିଲେ କୁତୂହଳେ ଏକାନ୍ତ ମନରେ ।
ଗୁପ୍ତ କେଳିମନ୍ଦିରରେ କେବେ ରାଣୀମାନେ
ଅଲକ୍ଷିତ ଭାବେ ଆସି ହେଲେ ଉପସ୍ଥିତ
ଗଣିକାଏ ସେ ସ୍ଥାନରୁ ଯାଉଥିଲେ ଘୁଞ୍ଚି
ଭୟବଶେ, ଏଣୁ ତାଙ୍କ ମୂର୍ତ୍ତି ଚନେ ଅଙ୍କି
କଷ୍ଟେ କାଟୁଥିଲେ କାଳ ସମୁତ୍ସୁକେ ଭୂପ ।
ବହୁଦିନ ନରେଶଙ୍କ ଦର୍ଶନ ନ ପାଇ
ବିରହିଣୀ ପ୍ରିୟାମାନେ ମଦନ ପୀଡ଼ାରେ
ମାନସରୁ ପରିହରି ଅଭିମାନ ରୋଷ
ପୁରେ ଆଣି ମହୋତ୍ସବ କାର୍ଯ୍ୟ ଛଳନାରେ
ପୂରୁଥିଲେ ମନୋରଥ ବାଞ୍ଛା ଅନୁକୂଳେ ।
କେଳିଚନ୍ଦ୍ର ଦେଖି ଯାହେ ଅନ୍ୟ ବାମାଙ୍କର
ପ୍ରଣୟିନୀମାନେ ରୋଷେ ହେଲେ ବିଚଳିତା,
ହାତ ଯୋଡ଼ି କେତେମତେ ଚାଟୁକଥା କହି
କରୁଥିଲେ ଯଥା ତାଙ୍କ ମନକୁ ପ୍ରସନ୍ନ,

ବଣ୍ଟୁଥିଲ ଚାଲ ତାହା ଅଳତା ରସରେ ।
ରଞ୍ଜୁଥିଲେ ଯେବେ ନୃପ ମଞ୍ଜୁ କେଶୀଙ୍କର
କଞ୍ଜପଦ କରେ ଧରି ନଜେ ଲକ୍ଷାରସେ,
ସେ କାଳରେ ତାହାଙ୍କର କରସ୍ପର୍ଶ ଲଭି
କନ୍ଦର୍ପବିକାର ଲେଳା ବାଳାଙ୍କ ନତମୁଁ
ଅନାୟତ୍ତେ ଶ୍ଳଥ ହୋଇ ଝୀନବାସ ଖସି
ଧୀରେ ଧୀରେ ପଡ଼ବାରୁ ତଳକୁ ଓହଳ,
ଅନୁରାଗେ ସ୍ନେହ ବେଗେ ନରେନ୍ଦ୍ରଙ୍କ ଦୃଷ୍ଟି
ଧାଇଁଥିଲ ଅବାରତ, ରଞ୍ଜନ କାର୍ଯ୍ୟରେ
ଦେଇ ପାରୁ ନ ଥିଲେ ସେ ଏଣୁ ମନୋଯୋଗ ।
କାମାଏ ବିହାର କାଳେ ଚୁମ୍ବ ଦେବା ବେଳେ
ସ୍ୱଭାବରେ ଆନନକୁ ଲେଉଟାଇ ଖରେ
ଦୃଢ଼ସ୍ୱରେ କରେ କର ଧରୁଥିଲେ ବଳେ
ଅଭିଳାଷ ପୂରଣରେ ଏଣୁ ବାଧାପାଇ
ଉଦ୍ଦୀପିତ ହେଉଥିଲ କାମ ଅଧିକନ୍ତୁ ।
ସ୍ୱପ୍ନରେ ବିହାର ଚିହ୍ନ ଦେଖୁଥିବା ବେଳେ
କରେ ଦରପଣ ଘେନି, କୁନ୍ତଳେ ଭୂପ
ସେମାନଙ୍କ ପିଠିପାଖେ ହେଉଥିଲେ ଉଭା,
ହାସ୍ୟରସେ ସୁପ୍ରସନ୍ନ ନୃପଙ୍କର ଛାୟା
ବିମଳ ଦର୍ପଣ ଗର୍ଭେ ଦେଖି ଲଲନାଏ
ରହୁଥିଲେ ଲଜ୍ଜାଭରେ ନମ୍ରମୁଖ ହୋଇ ।
ସହାସ୍ୟ ଶଯ୍ୟାରୁ ଉଠି ପ୍ରେମିକାକୁ ଛାଡ଼ି
ଯିବାବେଳେ ନରମଣି, ସେ ରସିକାସତ
ସୁଦୃଢ଼ ଅଣ୍ଟାରେ ଭିଡ଼ି ମୃଦୁ ବାହୁପାଶେ,
ନିଜପଦେ ପଦଛନ୍ଦ କେତେ ଗେଲ କରି
ବିଦାୟ କାଳୀନ ଚୁମ୍ବ ଖୁନ୍ଥୁଁଥିଲେ ରଙ୍ଗେ
ଆକର୍ଷିବା ପାଇଁ ସିନା ମନକୁ ତୋଷିଲେ ।
ବହ୍ନିଶିଖା ଠାରୁ ବଳି ନିଜ ରାଜବେଶ
ଦର୍ପଣରେ ନରମଣି ନିରେଖି ନିରେଖି
ଯେବେ ହୋଉଥିଲେ ତୃପ୍ତ ସମ୍ଭୋଗ କାଳର

ସ୍ପଷ୍ଟ ଚିହ୍ନମାନ ଦେଖି ସ୍ୱୀୟ ଶରୀରରେ
ତତୋଧିକ ଆହ୍ଲାଦିତ ହେଉଥିଲେ ମନେ ।
କେବେ ବା କାର୍ଯ୍ୟର ଛଳ ଧରି କ୍ଷିତିପାଳ
ସ୍ଥାନାନ୍ତରେ ଯିବାପାଇଁ ହେଲେ ସମୁଦ୍ୟତ
ତାହାଙ୍କର ମନବୁଝି ଚତୁରୀ ବାଳାଏ
କହୁଥିଲେ ଏହିରୂପ, "ହେ ଗୁଣନାଗର ?
ପଳାଇବା ଶିକ୍ଷା ସବୁ ପଢ଼ିଲଣି ଜଣା
ଦେବୁ ନାହିଁ ଆଉ ଗତି" ଏମନ୍ତ ବଖାଣି
ସୁମଧୁର ଗୂଢ଼ବାକ୍ୟେ ଭଣୁଥିଲେ ଠାଣି ।
ନିର୍ଦ୍ଦୟ ସୁରତ ଶ୍ରମେ ପରିଶ୍ରାନ୍ତ ହୋଇ
ଆଲିଙ୍ଗନ ଆରମ୍ଭିବା ଛଳେ ଛଇଳାଏ
ସ୍ୱୀୟ ସ୍ତନ ଚନ୍ଦନକୁ ଘଷି ମହୋଲ୍ଲାସେ
ରାଜାଙ୍କର ବକ୍ଷସ୍ଥଳେ, ଶୋଉଥିଲେ ସୁଖେ ।
ରଜନୀ ବିହାର ପାଇଁ ବୁଲିବା ସମୟେ
ଏବରେ ସେଉଠରେ ପଶି ଗୁପତ ଭାବେ ଯେ
ସ୍ୱପ୍ରାନ୍ତସଙ୍କାମୀ ଦୂତୀମାନେ ତାହା ଜାଣି
ପ୍ରିୟତମାଙ୍କର ଆଗେ ଦିଅନ୍ତେ ପ୍ରକାଶି,
ତରୁଣୀଏ ଅଧିକନ୍ତୁ ଅସୂୟା ବଶରେ
ଅହଙ୍କାର ଗର୍ବେ ବ୍ୟଙ୍ଗ୍ୟେ ସମ୍ମୁଖରୁ ଆସି
କହୁଥିଲେ "ନଟବର ! ଏତିକି ତୁମ୍ଭର
ସୁଚରିତ, ସ୍ୱୈରପର ଲୁଚି ଲୁଚି ଯିବେ
ପ୍ରକାଶ କରୁଛ ଭଲ ରସିକ ମଣିଅ !"
ଏହା କହି ବଳେ ଠାଣି ଯାଉଥିଲେ ସେନ ।
କୁମୁଦ ଆକର ଯଥା ଚନ୍ଦ୍ରକର ଲଭି
ରଜନୀରେ ଚେତ, ଦିନେ ହୁଅଇ ନିଦ୍ରିତ,
ତେସନ ସେ ତରୁଣୀଙ୍କ ସ୍ୱର୍ଣ୍ଣସୁଖ ବଶେ
ମଉଜରେ ସନ୍ତୋଷେ ଜାଗରିତ ହୋଇ,
ଦିବସରେ ଶୋଉଥିଲେ ସବୁକାର୍ଯ୍ୟ ଛାଡ଼ି ।
କେବେ କେବେ ନରବର ପ୍ରୀତି ରହସ୍ୟରେ
ବାଳାଙ୍କ ଅଧର ଦଂଶି ଚୁମ୍ବ ଦେବା ଛଳେ,

କରୁଥିଲେ ଊରୁଦେଶ ନଖାଘାତେ କ୍ଷତ,
ଉତ୍ସଙ୍ଗେ ବୀଣା ନଧରି ଏଣୁ ଯାତନାରେ,
ଉଚ୍ଚରେ ସଙ୍ଗୀତ ଗାଇ ନପାରି ସେମାନେ,
ଲଜ୍ଜା ସ୍ନିଗ୍ଧ କଟାକ୍ଷରେ ମୋହୁଥିଲେ ମନ
ମଜ୍ଜନେ, ବିବିଧରୂପେ ଅଙ୍ଗଭଙ୍ଗୀ ଯୋଗେ ।
କେବେ ବା ସାତ୍ତ୍ୱିକ ପୁଣି ଆଙ୍ଗିକ ବାଚିକ
ଏହି ତିନି ପ୍ରକାରର ଅଭିନୟ ଯୋଗେ
ନାଚିବାକୁ ନଟୀଙ୍କୁ କହନ୍ତେ ଆଦେଶି
ସହଚରଗଣ ସଙ୍ଗେ କୁତୂହଳେ ଭୂପ,
ସେ ନାଟ୍ୟକଳାର ନାନା ଆଲୋଚନା କରି,
ଅଭିନୟ ଲୀଳାଦକ୍ଷ ନାଟୁଆମାନଙ୍କୁ
ପରିଭବି, ମନେମନେ ଲଭୁଥିଲେ ତୋଷ ।
କୁଟଜ ଅର୍ଜ୍ଜୁନ ହାରି ସ୍କନ୍ଧରେ ଲମ୍ବାଇ
କଦମ୍ବ କୁସୁମ ରଜେ ଅଙ୍ଗରାଗ ରଚି
ବର୍ଷାକାଳେ କେବେ ନୃପ ମୟୂରେ ବେଷ୍ଟିତ
କୃତ୍ରିମ ପର୍ବତେ ଯାଇ କ୍ରୀଡୁଥିଲେ ରଙ୍ଗେ ।
ପ୍ରଣୟ କଳହ ଯୋଗେ ଅତ୍ୟନ୍ତ କୁପିତ ।
ଶୟନରେ ପରାଙ୍ମୁଖୀ ସୁମୁଖୀମାନଙ୍କୁ
ଅନୁନୟେ ପ୍ରୀତିଭରେ ପାଶେ ଡାକିବାକୁ
ନହୋଇ ଚଞ୍ଚଳ ତଳେ, ଚାହୁଁଥିଲେ ରାଏ
ଚପଳା ଚମକ ଘନ ଘଡ଼ଘଡ଼ ଶୁଣି
ଆତଙ୍କ ଚକିତ ଚିତ୍ତେ ଅଭିମାନ ଛାଡ଼ି
ସେମାନେ ତାହାଙ୍କୁ ଦୃଢ଼େ ଧରିବାକୁ ଯାକ ।
ମଧୁର ଶରତ କାଳେ ସେ ରସିକବର
ବୃନ୍ଦୁଆମଣ୍ଡିତ ରମ୍ୟ ପ୍ରାସାଦ ଉପରେ
ରହି ହେମହାସି ସ୍ଥିରୁଚନ୍ଦ୍ର କିରଣରେ
ଦେଖୁଥିଲେ ସେ କାଳରେ ବାତାୟନ ପଥୁଁ
ଜ୍ୟୋତ୍ସ୍ନାଧୌତ ସରଯୂର ମନୋହର ଶୋଭା,
ସୁନ୍ଦର ଶରତ କୃଶା ସେ ପ୍ରବାହିଣୀର
ତୀର ହୋଇଥିଲା ରମ୍ୟ ପୁଳିନ ପ୍ରଦେଶ

ଉନ୍ମୁକ୍ତ ଜଘନ ପର, ରାଜହଂସଗଣ
ମେଖଳା ସମାନ ଦୂରୁ ଯାଉଥିଲେ ଦେଖା,
ପ୍ରତେ ହେଉଥିଲା ମନେ ସତେକ ତଟିନୀ
ଅନୁସରୁଥିଲା ଆହା ବିବିଧ ଭଙ୍ଗୀରେ
ସ୍ୱକ ବିଳାସିନୀଙ୍କର ବିଳାସ କଳାକୁ ।
ନିତମ୍ବରୁ ନରମଣି ସ୍ୱହସ୍ତ ବନ୍ଧନ
ଉନ୍ମୋଚନ କରିବାକୁ ବଳାଇଲେ ମନ
ସୁମଧ୍ୟମା ନାରୀମାନେ ନବ ସବହୃତ
ମଞ୍ଜିର ଶବଦଯୁକ୍ତ ଅଗୁରୁ ଧୂପିତ—
ହେମନ୍ତକ ବାସେ ତାଙ୍କ ମୋହୁଥିଲେ ଚିତ୍ତ ।
ଶ୍ରମସ୍ୱେଦ ବାଧାହୀନା ସୁରତ ବ୍ୟାପାର
ଚଳୁଥିଲା ସେ କାଳରେ ଯଦି କାଳଯାଏ,
ସେହି ଶୀତ ରଜନୀରେ ସଦା ଗୃହଗର୍ଭ
ନିବାତ ପ୍ରଦୀପ ନେନେ ଅନାଇ ଅନଦେ
ବିହାର ବିଳାସ ଲୀଳା ନୃପ ବାଳାଙ୍କର
ହେଉଥିଲେ ନିକାଞ୍ଚନେ ମୂକସାକ୍ଷୀ ପର ।
ବସନ୍ତେ ମଳୟାନିଳ ଯୋଗେ ପଲ୍ଲବିତ
ମଞ୍ଜୁଳ ରସାଳ ଫୁଲ ନରେଶେ ଅଧୀରେ
ବିରୋଧ ବହ୍ନିର ମନ୍ତ୍ର ବାମାଏ ଉତ୍ସୁକେ
ନିଜେ ଉପସ୍ଥିତ ହୋଇ ହର ନେଉଥିଲେ
ଦୁଃସହ ବିରହ ବ୍ୟଥା ଅଗ୍ନି ବର୍ଣ୍ଣଙ୍କର
ଡାକିବାକୁ ଅଲ୍ପ ତାଙ୍କୁ ପଡ଼ୁଥିଲା ନାହିଁ ।
ଦୋଳଖେଳେ ମତ୍ତ ହୋଇ କେବେ ନରମଣି
ବସାଇ ନିଜର ଦୋଳେ କାମିନୀମାନଙ୍କୁ
ହସ୍ତରଜ୍ଜୁ ଛାଡ଼ି ଦେଇ ଝୁଲୁଥିଲେ ଦୋଳି
ଖସି ପଡ଼ିବା ଭୟେ ନାନା ଛଳନାରେ
ସେ ବାମାଏ ବଳୟିତ ଭୁଜକୁ ବିସ୍ତାରି
ଆଦରେ କଣ୍ଠକୁ ବେଳେ ଧରୁଥିଲେ ଯାକି,
ଉତ୍ତପ୍ତ ନିଦାଘ କାଳେ ପ୍ରଣୟୀମାନେ
ସେ କାଳର ଉପଯୁକ୍ତ ବେଶଭୂଷା କରି

ଉରଜେ ଚନ୍ଦନ ବୋଳ, ମୁକ୍ତାମାଳ ପିନ୍ଧ
ସୁବଳିତ ନିତମ୍ବରେ ମେଖଳା ଝୁଲାଇ
ସେବାକରି ମୋହୁଥିଲେ ନରେଶଙ୍କ ମନ ।
ବସନ୍ତ ଯିବାରୁ ଗ୍ରୀଷ୍ମ ସଙ୍ଗେ ସଙ୍ଗେ ତାର
ଦେଇଥିଲା ନୃପପାଖେ ଅନଙ୍ଗ ଲିପ୍ସତା
ଏବେ ଆମ୍ରପଲ୍ଲବଯୁକ୍ତ ପାଟଳ ମଦିରା
ପାନରୂପ ଅଦ୍ଧାନରେ ପରିତୃପ୍ତ ହୋଇ
ପୁଣି ସ୍ୱକାର୍ଯ୍ୟର ଅପି ନେଲା ପରୁଆନା ।
କାମ ପରତନ୍ତ୍ର ହୋଇ ଏଣୁବେ ନୃପତି
ଅନ୍ୟାନ୍ୟ ସକଳ କାର୍ଯ୍ୟ ଛାଡ଼ି ଅବିରତ
ଇନ୍ଦ୍ରିୟ ସମ୍ଭୋଗ ସୁଖେ ମଜ୍ଜି ନାନା ମତେ
କରୁଥିଲେ ବର୍ଷାଆଦି ଷଡ଼୍‌ଋତୁ ଅତୀତ ।
ପୂରୁବ ପୁରୁଷଙ୍କର ବିଶାଳ ପ୍ରତିଷ୍ଠା
ପୁଣି ପୂର୍ବ ସାମରିକ ସାଜସଜ୍ଜାମାନ
ଥିବାରୁ ସୁଦୃଢ଼ତର, ସେ କାମୁକ ଭୂପ
ଅବିରତ ହୋଇଲେହେଁ ବ୍ୟସନେ ଆସକ୍ତ
ସଦାବୈରୀ ପ୍ରତିବେଶୀ ନରନାଥମାନେ
ଆକ୍ରମିବା ଲାଗି ତାଙ୍କୁ ନୋହିଲେ ସାହସୀ ।
ମାତ୍ର ରତିରାଗୁଁ ଜନ୍ମ କ୍ଷୟକାସ ରୋଗ
ଅତି ଦ୍ରୁତବେଗେ ଆସି କଲା ଆକ୍ରମଣ
ପୂର୍ଣ୍ଣ ଚନ୍ଦ୍ରମାକୁ ପୂର୍ବେ ଦକ୍ଷ ଶାପ ଯଥା ।
ନଥିଲେ ସେ କାଳେ ବାଧ୍ୟ ବୈଦ୍ୟମାନଙ୍କର
ଏଣୁ ସେମାନଙ୍କ ବାକ୍ୟେ ନ ରହିଲେ କ୍ଷଣେ
ମଦ୍ୟ, ମହୁଲାଦି ଯେତେ ଅସ୍ୱାସ୍ଥ୍ୟଜନକ
ପଦାର୍ଥରୁ, ପ୍ରାଣୀମନ ଅକୃଷ୍ଟ ହୋଇଲେ
ଆପାତ ମଧୁର ଏହୁ ବିଷୟ ରସରେ
ମୃତ୍ୟୁ ପଣ କରେ ପଛେ ନ ଫେରାଇ ତହୁଁ ।
ରାଜଯକ୍ଷ୍ମା ତାଡ଼ନାରେ କ୍ଷୀଣାବସ୍ଥା ଲଭି
କାମୁକ ବିରହୀ ପରି ଦିଶିଲେ ନୃମଣି,
ମୁଖ ହେଲା ପାଣ୍ଡୁବର୍ଣ୍ଣ, ସ୍ୱର ହେଲା କ୍ଷୀଣ,

ଉଠି ନ ପାରିଲେ ବିନା ସଖୀ ସାହାଯ୍ୟରେ,
ଭୂଷଣର ଭର ସୁଦ୍ଧା ବହିବା ପାଇଁକ
କ୍ରମେ କ୍ରମେ କଳେବର ହେଲା ଅସମର୍ଥ
ଏହିରୂପେ ରୋଗେ ସେହି ଅତୁଳ ଦୁରନ୍ତେ
ଲଭିଲା କଦର୍ଯ୍ୟ ଦଶା ଏହି ରଘୁବଂଶ
କଳାମାତ୍ର ଚନ୍ଦ୍ରେ ଯଥା ଦିଶଇ ଗଗନ
କିମ୍ବା ଜଳ ପୁଷ୍ପଶୂନ୍ୟ ପଙ୍କ ଅବଶେଷ
ନିଦାଘରେ ପୁଷ୍କରିଣୀ ଦିଶଇ ଯେମନ୍ତ,
ଅବା ଦୀପପାତ୍ର ଯଥା ନିର୍ବାଣଉନ୍ମୁଖ
ସ୍ନେହମାତ୍ର ଅବଶିଷ୍ଟ ଶିଖା ବହିଦଶେ ।
ଦେଖି ତାହା ପ୍ରଜାକୁଳ ଅକୁଳ ଅନ୍ତରେ
ନାନାବିଧ ଉପଦ୍ରବ କରିଲେ ଆଶଙ୍କା,
ବ୍ୟାଧିକୁ ଗୋପନ ରଖି ମନ୍ତ୍ରୀମାନେ ଛଳ
କହୁଥିଲେ ସେମାନଙ୍କୁ, ଅପୁତ୍ରିକ ହେତୁ
ପୁତ୍ରଉତ୍ପତ୍ତିର ପାଇଁ ଏବେ ନରସାଇଁ
ଦିବସରେ ପୂଜାପାଠେ ହୋଇଛନ୍ତି ରତ ।
ମାତ୍ର ସେହି ଛଳନାକୁ ମାନଇ କି ରୋଗ ?
କ୍ରମେ କ୍ରମେ ବଢ଼ି ତାହା, ବୈଦ୍ୟମାନଙ୍କର
ଔଷଧକୁ ପରିହରି ହେଲା ଅସମ୍ଭାଳ ।
ପବନେ ପ୍ରଦୀପ ଯଥା ହୁଅଇ ବିନାଶ
ପଡ଼ିଲେ ଭୂପାଳ ତାର କବଳେ ତେସନ ।
ନଗରରେ ବହୁପତ୍ନୀ ଥିଲେ ତାହାଙ୍କର
ତଥାପି ତନୟ ମୁଖ ଦେଖିଲେକି ନିଜକୁ
ନ ପାରିଲେ ମୁକ୍ତ କରି ପିତୃଗଣ ଋଣୁ ।
ଗୁରୁ ପୁରୋହିତସହ ମନ୍ତ୍ରୀଗଣ ମିଳି
ରୋଗଶାନ୍ତ ଛଳଧରି ଗୃହ ଉପବନେ
ଅଗ୍ନିବର୍ଣ୍ଣଙ୍କର ଶବ ଦହି ଅପ୍ରକାଶ୍ୟେ
ଯଥାବିଧି ଶ୍ରାଦ୍ଧକ୍ରିୟା କଲେ ସମାପନ ।
ଉଚ୍ଚ କର୍ମଚାରୀମାନେ, ପୁରବାସୀଗଣ
ଏକତ୍ରିତ ହୋଇ ଶୀଘ୍ର ରାଜ ମହିଷୀଙ୍କ

ଶୁଭ ଗର୍ଭଚିହ୍ନ ଲକ୍ଷି ପରାମର୍ଶ କରି
ରାଣୀକରେ ରାଜ୍ୟଭାର ଅର୍ପିଲେ ପଚରେ
ନୃପଙ୍କ ବିୟୋଗ ଶୋକେ ଉଷ୍ଣ ଅଶ୍ରୁଜଳେ
ରାଣୀଙ୍କ ଯେ ଗର୍ଭଅଗେ ଲଭିଥିଲା ତାପ,
ଏବେ ତାହା ସ୍ୱର୍ଣ୍ଣମୟ କୁମ୍ଭରୁ ନିଃସୃତ ।
ସୁତ ଅଭିଷେକ ନୀରେ ହେଲା ଆପ୍ୟାୟିତ ।
ରହିଲେ ପ୍ରତୀକ୍ଷା କରି ପରଜା ମଣ୍ଡଳ
ମହିଷୀଙ୍କ ଶୁଭମୟ ପ୍ରସବ କାଳକୁ ।
ଆଷାଢ଼ ଶ୍ରାବଣ ମାସେ ବୁଣା ହୋଇଥିବା
ବୀଜକୁ ଯେସନ ଧରା କରନ୍ତି ଧାରଣ
ତେସନ ସେ ମହାରାଣୀ ପ୍ରଜାମାନଙ୍କର
ହିତପାଇଁ ଅନ୍ତର୍ଗତ ଗର୍ଭସ୍ଥର ବହି
ସ୍ୱର୍ଣ୍ଣସିଂହାସନେ ବସି ବୃଦ୍ଧ ଅମାତ୍ୟଙ୍କ
ସହିତ ସ୍ୱାମୀଙ୍କ ରାଜ୍ୟ କରିଲେ ଶାସନ ।
ଯେତେବେଳେ ଯାହା ସେହି ଦେଉଥିଲେ ଆଜ୍ଞା
ଲଙ୍ଘନ ନ କରି କେହି ଟିକିଏ ମାତର
ଅବନତ ମସ୍ତକରେ ପାଳୁଥିଲେ ତାହା ।

---

ରଘୁବଂଶ ସମାପ୍ତ ।

ଶ୍ରୀମାନ୍ ଲାଲ ରାଜୀବଲୋଚନଦେବ

କଲ୍ୟାଣବରେଷୁ

ଭାଇ ରାଜୀବ !

ତୁମ୍ଭର ଉତ୍କଳ ସାହିତ୍ୟ ପ୍ରତି ପ୍ରୀତି ଓ ଅନୁରାଗ

ଅଗ୍ରଜର ସୁସ୍ନିଗ୍ଧ ମମତାସ୍ୱରୂପ ମୋର

ଏହି ପୁସ୍ତିକାର ନିବିଡ଼ ଛାୟାରେ

କାଳର ପ୍ରୟାଣପଥରେ

ଅକ୍ଷୟ ହେଉ ।

ତୁମ୍ଭର

ସ୍ନେହର ପଞ୍ଚାୟତଦାଦା

# କାଦମ୍ବରୀ

ଶୂଦ୍ରକ ନାମରେ          ରାଜା ଏକ ଥିଲେ
ତ୍ରିଦଶ ଦେବେନ୍ଦ୍ର ପରି
ସକଳ ସାମନ୍ତ          ମାନେ ମାନୁଥିଲେ
ତାଙ୍କ ଆଜ୍ଞା ଶିରେ ଧରି ।
ସମୁଦ୍ର ମେଖଳା          ଧରଣୀକୁ ଭୂପ
ଶାସୁଥିଲେ ବାହୁବଳେ
ପ୍ରବଳ ପ୍ରତାପ          ଉଠୁଥିଲା ତାଙ୍କ
ନରତ ବୈରୀ ମଣ୍ଡଳେ ।
ସମ୍ରାଟଙ୍କ ଯେତେ          ଲକ୍ଷଣ, ସକଳ
ବହୁଥିଲେ ନରରାଣ
ଶଙ୍ଖ ଚକ୍ର ଚିହ୍ନ          କର କମଳରେ
ଥିଲା ବିଷ୍ଣୁଙ୍କ ସମାନ ।
ଶିବ ତୁଲ୍ୟ ସେହି          ମଦନ ବିଜୟୀ
ରୂପବନ୍ତ ସ୍ମର ସର
ମରାଳବାହାନ          ବ୍ରହ୍ମାଙ୍କ ପରାଏ
ବେଦଜ୍ଞ ନୃପ କେଶରୀ ।
ଦର୍ପିତ ସକଳ          ଦୁର୍ଦ୍ଦାନ୍ତ ସାମନ୍ତ—
ମାନଙ୍କୁ ଦମି ସମରେ
ଗୁମାନ ଗରିମା          ସେମାନଙ୍କ ଭୂପ
ହରିଥିଲେ ସହଜରେ ।
କମଳା ଦେବୀଙ୍କ          ଅଦ୍ଭୁତ ନିଳୟ
ସଦା ଯଥା ରତ୍ନାକର
ଧନ ସମ୍ପତ୍ତିର          ସଦନ ତେସନ
ତାହାଙ୍କର ରାଜ୍ୟାଗାର ।
ବହୁଥିଲେ ଗଙ୍ଗା          ଯଥା ଭଗୀରଥ—
ରଥଚକ୍ର ଚିହ୍ନ ଧରି

ରାଜଦଣ୍ଡ ତେଣୁ ଚଳାଉଥିଲେ ସେ
ଧର୍ମପଥ ଅନୁସରି ।
ସୂର୍ଯ୍ୟଙ୍କ ପରିଏ ଉଦୁଥିଲେ, କେବେ
ଅସ୍ତ ନୋହୁଥିଲେ ଲବେ ।
ଉଦିଥିଲା ଏଣୁ ସବୁମତେ ତାଙ୍କ
ପ୍ରବଳ ପ୍ରତାପ ଭବେ
ଜନହିତ କାର୍ଯ୍ୟ ସବୁ କରୁଥିଲେ
ବନ୍ଧୁସଙ୍ଗ ଅନୁଷ୍ଠାନ
କଳାବିଦ୍ୟା ବୁଦ୍ଧ ଥିଲେ ସେ ବିବିଧ
ଶାସ୍ତ୍ରେଥିଲା ବିଜ୍ୟଜ୍ଞାନ ।
ଅମୃତ ସମାନ କାବ୍ୟରସ ଲୋଭୀ
ଦୟା ଦାକ୍ଷିଣ୍ୟର ଖଣି
ବିଦ୍ୱାନ ମଣ୍ଡଳ କୂଳ ପଦ୍ମାକର
ଥିଲେ ସେ ଭୂପାଳମଣି ।
* ମିତ୍ରଙ୍କ ଉଦୟେ ସମୁଜ୍ଜ୍ୱଳ ବେଶେ
ଯେସନ ଉଦୟାଚଳ
ତେଣୁ ତାଙ୍କ ଯୋଗେ ହସୁଥିଲା ସଦା
ମିତ୍ରମୁଖ ଶତଦଳ ।
ରସିକ ଜନର ପ୍ରଧାନ ସହାୟ
ଶରଣାଗତ ଶରଣ୍ୟ
ଅସୀମ ସାହସୀ ଚତୁରଙ୍କ ମଧ୍ୟେ
ଥିଲେ ସେହି ଅଗ୍ରଗଣ୍ୟ ।
କ୍ରୋଧରେ ଶମନ ପ୍ରତାପେ ଅନଳ
ବିବେକରେ ବୃହସ୍ପତି
କ୍ଷମାରେ ପୃଥିବୀ, ନୟନେ କମଳ,
ବଚନରେ ସରସ୍ୱତୀ ।
ରୂପେ କାମଦେବ, ଦୟାରେ କୁବେର,
ମୁଖେ ଚନ୍ଦ୍ର, ଚିତ୍ତେ ଧର୍ମ—

* ସୂର୍ଯ୍ୟ ।

ଷର ଥିବାରୁ ସେ ଶୋଭୁଥିଲେ ସର୍ବ
ଦେବମନ୍ତ୍ର ବସ୍ତୁସମ ।
ସମରେ ଶୂଦ୍ରକ ଉପସ୍ଥିତ ହୋଇ
କସ୍ଲ କୃପାଣ କରେ
ବିଦାରଣ କରୁ— ଥିଲେ ବୈରୀଙ୍କର
କୁଞ୍ଜର କୁମ୍ଭ ଦମ୍ଭରେ
ତହୁଁ ବଡ଼ ବଡ଼ ମୁକୁତା ସହଜେ
ଲାଗିଯାଇ ସିନା ଗାଢ଼େ
ଜଳବିନ୍ଦୁ ପରି ରହି ଦିଶୁଥିଲା
ବହୁର, କୃପାଣ ଧାଢ଼େ ।
ମହାରାଜ ପୃଥୁ ଯେମନ୍ତ ନିଜର
ଅଜେୟ ଧନୁ ଅଗ୍ରରେ
ମହେନ୍ଦ୍ର ପ୍ରଭୃତି କୁଳ ଅଚଳକୁ
ଘୁଞ୍ଚାଇଥିଲେ ବଳରେ
ତେସନ ଅସଂଖ୍ୟ ଧନୁର୍ଦ୍ଧର ଚମ—
ଚମୂଙ୍କ ନେଇ ସହାୟ
ବଇରୀ କୁଳକୁ ଅନାୟାସେ ପାଶୁଁ
ହଟାଇଥିଲେ ସେ ସ୍ୱୟଂ ।
ଶାସିଥିଲେ ବହୁ ଦୁର୍ବୃତ୍ତ ରାଜାଏ
ଏହି ଉର୍ବୀକୁ ପୂର୍ବରେ ।
ତାହାଙ୍କ ସଂସର୍ଗେ ଲାଗିଥିଲା ସେତେ
କଳଙ୍କ ନିଜ ଦେହରେ
ରାଜଲକ୍ଷ୍ମୀ ଦେବୀ ଏବେ ସେ କଳଙ୍କ
ଭାଳମାରୁ ଛୁଡ଼ୁଥିଲେ ।
ଧୋଇଲେ ସାଦରେ ସିନା ଶୂଦ୍ରଙ୍କର
ଖଡ୍ଗ ଅସିଧାର ଜଳେ ।
କପାଟ ପ୍ରସର ବିସ୍ତୀର୍ଣ୍ଣ ପ୍ରଶସ୍ତ
ଶୋଭାଙ୍କର ବକ୍ଷସ୍ଥଳ
ଲୁହାର କବଚ ତହିଁ ଶୋଭୁଥିଲା
ମେଘନାଦ ଅବିକଳ ।

ବାରଣ ମାନଙ୍କ ଗଣ୍ଡରୁ ନିର୍ଗତ
ମଦ ଜଳ ବୃଷ୍ଟି ସର
ସେ ଯୁଦ୍ଧସ୍ଥଳୀକି ଦେଉଥିଲା ଯେବେ
ଘୋର କର୍ଦ୍ଦମରେ ଭର ।
ରିପୁ ରାଜଲକ୍ଷ୍ମୀ ସେ କାଳରେ ଅତି—
ଆଶଙ୍କା ନାସ୍ତିକା ବଡ
ଶୁଦ୍ରକ ସନ୍ନିଧେ ଧାଇଁଧାଇଁ ଆସି
ହେଉଥିଲେ ଉପଗତ ।
ସେ ପ୍ରତାପୀ ରାଜା ଶୁଦ୍ରକର ଅତି
ପ୍ରଚଣ୍ଡ ପ୍ରତାପାନଳ
ବରାଙ୍ଗନୀ ସହୁ ବନିତାମାନଙ୍କ
ଜାଳି ଦେଇ ମର୍ମସ୍ଥଳ ।
ସେ ବାମାମାନଙ୍କ ହୃଦୟରେ ସ୍ଥିତ
କାନ୍ତଙ୍କୁ ଦହିବା ଆଶେ
ସମାନ ତେଜରେ ଦିବା ନିଶି କିବା
ଜଳୁଥିଲା ଚଉପାଶେ ।
ସମର କ୍ଷେତ୍ରରେ ଏକାକୀ ତାହାକୁ
କରନ୍ତ ନାହିଁ ସେ ଲେଖା
ହସ୍ତୀ, ଅଶ୍ୱ, ସୈନ୍ୟ ଥିଲେ ରାଜାସ୍ୱ
ଆଡ଼ମ୍ବର ପାଇଁ ଏକା ।
ଏକ ସ୍ଥାନେ ରହି ନିଖିଳ ଧରଣୀ
ବାନ୍ଧି ଭୁଞ୍ଜୁଥିଲେ ସେହି
ଆସନରେ ବସି ରହୁଥିଲେ ସଦା
ଧନୁରେ ନିର୍ଭର ଦେଇ ।
ଜଳୁଥିଲା ବୈରୀ ଇନ୍ଧନକୁ ଦହି
ଦୁଃସହ ପ୍ରତାପ ବହ୍ନି
ଅଯୁତ ଲୋଚନ ବହି ସୂକ୍ଷ୍ମଦର୍ଶୀ
ହୋଇଥିଲେ ନରମଣି ।
ସିଂହ ଶିଶୁସମ ପରାକ୍ରମଶାଳୀ
ବନସ୍ଥୀ ଯୁବାଙ୍କ ସହ

ପ୍ରଥମ ବୟସେ          କ୍ରୀଡ଼ୁଥିଲେ ଭୂପ
ଆନନ୍ଦରେ ଅନୁରକ୍ତ
ସବୁରୂପେ ଥିଲେ          ପ୍ରତିବିମ୍ବ ଯତ
ସେ ସଙ୍ଗୀ ରାଜକୁମାରେ
ସମାନ ବୟସ୍କ          ସମାନ ଶିକ୍ଷିତ
ଭୂଷିତ ସମ ଭୂଷାରେ ।
ସଦାଭୂପ ଯେଣୁ          ଯଶ ଅଭିଳାଷୀ
ଅତ୍ୟନ୍ତ ଅଧ୍ୟବସାୟୀ
ବିଳାସିନୀଙ୍କର          ହାବଭାବ ତାଙ୍କ
ମନେ ରଚୁଥିଲା ନାହିଁ ।
ରତିଠାରୁ ବଳି          ମାନସ ମୋହିନୀ
ସୁନ୍ଦରୀ କେତେ ଯୁବତୀ
ଥିଲେହେଁ ନଗରେ          ତାଙ୍କପ୍ରତି ଭଲେ
ବଳାଉ ନ ଥିବଲ ମନ ।
ବିଶାଳ ସାମ୍ରାଜ୍ୟ          ଅଧୀଶ୍ୱର ପୁଣି
ବୟସେ ନବ ଯୁବକ
ଐଶ୍ୱର୍ଯ୍ୟ ସମ୍ପନ୍ନ          ପରମ ସୁନ୍ଦର
ଥିଲେହେଁ ରାଜା ଶୂଦ୍ରକ
ପୁତ୍ରାର୍ଥେ ପ୍ରେୟସୀ          ନ ଘେନ ମନ୍ତ୍ରୀଙ୍କ
ମତକୁ ଉପେକ୍ଷେ ହେଲେ
ଅନ୍ୟାନ୍ୟ ପ୍ରସିଦ୍ଧ          ଯଶସ୍କର କାର୍ଯ୍ୟେ
ରତ ଥିଲେ ସଦାବେଳେ ।
କେବେ ଅଶ୍ଳୀଳତା—          ଶୂନ୍ୟ ପରିହାସେ
କେବେ ଅବା କାବ୍ୟାମୋଦେ
କେବେ ଚିତ୍ର କର୍ମେ,          କେବେ ବୀଣାବାଦ୍ୟେ
କେବେ ବା ଗୀତ ବିନୋଦେ ।
କେବେ ବା ପଣ୍ଡିତ          ସଙ୍ଗ ତାଙ୍କ କାବ୍ୟ
ପ୍ରବନ୍ଧ ରଚି ସଙ୍କଥା
କେବେ ଶାସ୍ତ୍ରାଳାପେ          ମଜୁଥିଲେ କେବେ
ଶୁଣୁଥିଲେ ଉପକଥା ।

ସେବୁଥିଲେ କେବେ ଅଗତ ଅନାଥ—
ମାନଙ୍କ ପାଦ ପଖାଳି
ବୃନ୍ଦାବନ୍ଦ ହୋଇ ଥିଲେ ପରସ୍ପରେ
କେବେ ବା ତଗ ତମାଳ
ମୃଦଙ୍ଗ ବଜାଇ କେବେ ସଂସ୍ତୃତିନେ
ନାଚୁଥିଲେ ସେ ସମୟ
ହଲୁଥିଲା ହସ୍ତ ଯୁଗ୍ମେ ତାଳେ ତାଳେ
ଯୁଗଳ ରତ୍ନ ବଳୟ
ବଜାଇବା ବେଳେ ସିତାର କେବେ ବା
ଶିରକମ୍ପେ ବାରବାର
ଝଣଝଣ ଶବ୍ଦେ ବାଜୁଥିଲା ତାଙ୍କ
ରତନ କର୍ଣ୍ଣାଳଙ୍କାର ।
ଗମୁଥିଲେ ଚାଲ କେବେ ବା କାନନେ
ଚଞ୍ଚଳ ତୁରଙ୍ଗେ ଚଢ଼ି
ସବେଗେ ଦଉଡ଼ୁ ଥିଲେ ଜନ୍ତୁମାନେ
ଭୟେ ତାଙ୍କ ଆଗେ ପଡ଼ି ।
କେବେ ବାହୁଯୁଦ୍ଧେ ବିପକ୍ଷମାନଙ୍କ
ମତ୍ତ ମାତଙ୍ଗକୁ ଜିଣି
କେବେ ତୀକ୍ଷ୍ଣ ଭଲ୍ଲେ କେଶରୀକୁ ନାଶି
ଯଶ ଆଣୁଥିଲେ କିଣି ।
ନେଉଥିଲେ ବନ ସେ ସବେ ସେ ସବେ
ନାନା ହାସ ପରିହାସେ
ସଖାଗଣ ସହ ମିଳି ଯାମିନୀକୁ
ଯାପୁଥିଲେ ମହୋଲ୍ଲାସେ ।
ଜଳଜାଳ ଭୟେ ସଦା ସଙ୍କୁଚିତ
ସତ୍ୟଯୁଗ ସଖୀ ପରି
ଓଡ଼ିଶା ନାମରେ ଥିଲା ତାହାଙ୍କର
ବିଖ୍ୟାତ ରମ୍ୟ ନଗରୀ ।
ସକଳ ଦେଶର ଅଗ୍ରଗଣ୍ୟ ସେହି
ନଗରୀ ସୌଧମାଳିନୀ

ସୁରଙ୍ଗ ବେଣି         ବହୁଥିଲା ତାର
　　ବେତ୍ରବତୀ ପ୍ରବାହିନୀ ।
ସନ୍ତରିବା ବେଳେ         ମାଳବ କାମିନୀ
　　ମହିଳା ଉରଜେ ବାଢ଼
ଅବିରତ ଚୂର୍ଣ୍ଣ         'ହୋଇ ଯାଉଥିଲା
　　ଯାହାର ଲହରୀସବ ।
ମଜ୍ଜନ ବେଳରେ         (ଜମ୍ବୁ ହଂସୀଙ୍କର)
　　ମୁଣ୍ଡର ସିନ୍ଦୂର ମାଳ
ଧୋଇ ହୋଇ ଯାଇ         ଜଳ ଦିଶୁଥିଲା
　　ସନ୍ଧ୍ୟାକାଳ ସମ ଲାଲ ।
କେଳି ଖେଳି କଳ—         ହଂସ ନାଦେ ଯାର
　　ପୁଳିନ ଦେଶ କମ୍ପିତ
ସଲିଳ ସମ୍ଭାରେ         ତରଙ୍ଗ ଭଙ୍ଗରେ
　　ବହୁଥିଲା ସେ ସରିତ ।
ସାମ, ଦଣ୍ଡ, ଭେଦ         ନୀତି ଅନୁସରି
　　ବାଧା ବିଘ୍ନ ପରିହରି
ଜଗତର ଶ୍ୱର         ବହୁଣ ନଗର
　　ଭୁଜେ ବଳସ୍ଥିର ପରି ।
ସ୍ୱର୍ଗ ପ୍ରାୟ ରମ୍ୟ         ବିଦିଶା ନଗରେ
　　ମର୍ତ୍ତ୍ୟ ସୁନାସୀର ସମ
ସୁଖରେ ସମସ୍ତ         କାଟୁଥିଲେ ସର୍ବ
　　ଗୁଣଗ୍ରାହୀ ନରୋତ୍ତମ ।
ବୃହସ୍ପତି ବତ         ଅତି ଜ୍ଞାନବନ୍ତ
　　ଲୋଭଶୂନ୍ୟ ବିଚକ୍ଷଣ
ଅବିରତ ନୀତି         ଶାସ୍ତ୍ର ଆଲୋଚନା
　　ଯୋଗରେ ନିର୍ମ୍ମଳ ମନ ।
କୁଳ କ୍ରମାଗତ         ସକଳ କାର୍ଯ୍ୟରେ
　　ସତର୍କ ସଚିବଗଣ
ମନପ୍ରାଣ ଦେଇ         ସାଧୁଥିଲେ ଯହିଁ
　　ରାଜକାର୍ଯ୍ୟ ଅନୁକ୍ଷଣ

ଏକଷନ ନବ                    କମଳ ମୁଦକୁ
ଫେଡ଼ ଏକଚକ ରଥେ
ଅଳ ରଙ୍ଗବର୍ଣ୍ଣ                    ଛାଡ଼ ଦିନନାଥ
ଉଠନ୍ତେ ଅକାଶ ପଥେ ।
ପ୍ରତିହାରଣୀଏ                    ରୁଚକର ବେଶ-
ଭୂଷାରେ ନୟନ ଲୋଭ
ଆସ୍ଥାନ ମଣ୍ଡପେ                    ଆସୀନ ଭୂପଙ୍କ
ଆଗେ ଆସି ହେଲେ ଉଭା ।
ନାରୀ ଅସୁଲଭ                    କୃପାଣ ଝୁଲଇ
କଟିଦେଶେ ରମାବର
ସସର୍ପ ଚନ୍ଦନ                    ବଲ୍ଲୀବତ ଦଣ୍ଡ—
ଥିଲା ସେ ରୁଦ୍ର ସୁନ୍ଦର ।
ଫୁଟି ଉଠିଥିଲା                    ଧବଳ ବାସକୁ
ଠେଲି ତା ସ୍ତନମଣ୍ଡଳ ।
ମଜ୍ଜନ କାଳରେ                    ସୁରକରୀ କୁମ୍ଭେ
ଯଥା ମନ୍ଦାକିନୀ ଜଳ ।
କଳହଂସ ମଞ୍ଜୁ                    ମଧୁର ଗରତ
କାଳ ସୁଷମାକୁ ଜିଣି
ସଞ୍ଚାରିଣୀ ହେମ                    ପ୍ରତିମା ପରାଏ
ଦିଶୁଥିଲା ବରୋଦନା ।
ଅଣୁପାର ବସି                    ବିନୟେ ଭୂମିରେ
ଲଗାଇ ଶିର ଯତ୍ନାର
ସବିନୟେ ସଭା                    ସମକ୍ଷେ ଏମନ୍ତ
ନିବେଦିଲା ସୁକୁମାରୀ ।
“ହେ ଦେବ କୁପିତ                    ଦେବରାଜଙ୍କର
ହୁଙ୍କାରେ ଅଧୋଗାମିନୀ
ତ୍ରିଶଙ୍କୁର ସ୍ୱର୍ଗ                    ଚ୍ୟୁତ ରାଜଲକ୍ଷ୍ମୀ
ସମାନ ମନୋହାରିଣୀ ।
ଚଣ୍ଡାଳ କନ୍ୟାଏ                    ଶୁକଟିଏ ଧରି
ଆସି ସିଂହଦ୍ୱାର ପାଶେ

ଏକାନ୍ତ ନିକଟ ଜଣାଏ ଅଧୀରେ
ଛମୁଙ୍କ ବଚନେ ଆଣେ
କହୁଛି "ଅମ୍ଭର ମହାରାଜ ଭବେ
ସକଳ ରତ୍ନ ଆକର
ରତନ ସ୍ୱରୂପୀ ଅଟେ ପୁଣି ସେହୁ
ପକ୍ଷୀ ଗୋଟି ଜଗତର ।
ଏଣୁ ତାକୁ ଘେନ ଚରଣ ଦର୍ଶନ
ଆସିଛି ଶ୍ରୀଛମୁ କତ
ବାସନା ପୁରଇ ଚରିତାର୍ଥ ହେବ
ଏତକ ମୋର ନିକଟ ।"
ପ୍ରତିହାରଣୀର ବଚନେ କୌତୁକ
ଜନ୍ମିଥିଲା ନୃପମନେ.
ସଭାସଦେ ଚାହିଁ କହିଲେ "କି ଦୋଷ
ଘେନ ଆସ ତାକୁ କ୍ଷଣେ ।"
କୁତୂହଳାକ୍ରାନ୍ତ ନୃପଙ୍କ ଆଦେଶ
ଲଭି ସେ ଅତି ଆଦରେ
ଚଣ୍ଡାଳ କନ୍ୟାକୁ ଘେନି ପ୍ରବେଶିଲା
ଆସ୍ଥାନ ମଣ୍ଡପ ପରେ ।
ଦେଖିଲା ଚକିତେ ସୁସଜ୍ଜିତ ସେହୁ
ସଦନେ ହାଡ଼ି ଦୁଲଣୀ
ଚନ୍ଦ୍ରକାନ୍ତମଣି ନିର୍ମିତ ଆସନେ
ବସିଛନ୍ତି ନରମଣି ।
କଳ୍ପବୃକ୍ଷେ ଫୁଲ କୁଳାଚଳ କୁଳ
ମଧ୍ୟେ ଯଥା ମେରୁ ଗିରି
ଶୋଭୁଥିଲେ ତଥା ସାମନ୍ତ ମଣ୍ଡଳ
ମଧ୍ୟେ ମହୀପାଳ ଶିରି ।
ନରବରଙ୍କର ନାନା ଅଲଂକାର
ପ୍ରଭାପୁଞ୍ଜେ ସମୁଜ୍ଜ୍ୱଳ
ଇନ୍ଦ୍ରଧନୁମୟ ଦୁର୍ଦ୍ଦିନ ପରାଏ
ଦିଶୁଥିଲା ସଭାସ୍ଥଳ ।

ପାଟର ଶୁଭ୍ର ଯା ଝୁଲୁଥିଲା ଗଙ୍ଗା—
ଫେନକୁ ହାନ୍ତରେ ଦଳ
ବଡ଼ ବଡ଼ ମୁକ୍ତା— ମାଳେ ସେ ଶୁଭ୍ର ଯା—
ଗାନ୍ଥ ଯାଇଥିଲା ଝଳ ।
ତା ତଳେ ସୁରମ୍ୟ ସ୍ଫଟିକ ନିର୍ମିତ
ପାଦ ପୀଠରେ ଯତନେ
ଚରଣ ନବେଶି ହାସ୍ୟମୁଖେ ରାଜେ
ବସିଥିଲେ ସୁଖାସନେ ।
ପିନ୍ଧିଥିଲେ ସେହ ଦୁଗ୍ଧଫେନନିଭ
ଧବଳ ପଟ୍ଟବସନ
ଯୋଡ଼ ଯୋଡ଼ ହୋଇ ଶୋଭୁଥିଲେ ତାର
ଦାଢ଼େ ଚନ୍ଦ୍ର ହଂସଗଣ ।
ସ୍ଵମର ପବନେ ଧୀରେ ଧୀରେ ହଲୁ—
ଥିଲା ସେ ବସନାଞ୍ଚଳ
କର୍ଣ୍ଣ ଅଳଙ୍କାରେ ଅଲୋ କରିଥିଲା
ରୁଚରେ କର୍ଣ୍ଣଯୁଗଳ ।
ଚନ୍ଦନେ ଚର୍ଚ୍ଚିତ ସୁବଶାଳ ଦୃଢ଼
ସୁନ୍ଦର ବକ୍ଷସ୍ଥଳରେ
ଶୋଭୁଥିଲା ରକ୍ତ ପଙ୍କଜର ଚନ୍ଦ୍ର
କମନୀୟ କୁଙ୍କୁମରେ ।
ସ୍ଥୂଳ ମୁକ୍ତାମାଳ କେଣ୍ଠରେ ଉଜ୍ଜ୍ୱଳ
ଦଶୁଥିଲା ବକ୍ଷସ୍ଥଳ
ଅପର ଚନ୍ଦ୍ରମା ଭ୍ରମେ ବେଢ଼ିଥିଲେ
କି ଅବା ତାରମଣ୍ଡଳ ।
ନୀଳକାନ୍ତମଣି ଖଚତ କେୟୂରେ
ବାହୁବେନ ମନୋରମ
ଉପୁଜାଉଥିଲା ରାଜଲକ୍ଷ୍ମୀଙ୍କର
ବନ୍ଧନ ଶିକୁଳ ଭ୍ରମ ।
ଚନ୍ଦନ ସୌରଭ ଲୋଭେ ସମାଗତ
ଉରଗ ଯୁଗଳ ପର

ପ୍ରକୋଷ୍ଠେ ରୁଚିର   ରତନ ବଳୟ
ମନ ନେଉଥିଲା ହରି ।
ଉନ୍ନତ ନାସିକା   ନୟନ ଯୁଗଳ
ବିକଚ କମଳ ସମ
ଇନ୍ଦ୍ରଧନୁ ଖଣ୍ଡ   ପ୍ରଥମ ଭ୍ରୂଲତା
ତଥିପରେ ମନୋରମ ।
ସୁନିର୍ମଳ ସ୍ୱର୍ଣ୍ଣ   ଫଳକରୁ କର
ବିସ୍ତୃତ ଲଲାଟ ଦେଶ
ଅଷ୍ଟମୀର ଚନ୍ଦ୍ର   ସମାନ ତହିଁ ତ
ନଥିଲା କଳଙ୍କ ଲେଶ ।
ବିବିଧ ଭୂଷଣ   ପ୍ରଭାରେ ପିଙ୍ଗଳ
ବର୍ଣ୍ଣ ଦିଶୁଥିଲେ ସର୍ବେ
ମହାଦେବଙ୍କର   ନୟନ ଅଗ୍ନିରେ
ସ୍ଥିତ କାମଦେବ ପ୍ରାୟେ ।
ଉଷା ରକ୍ତିମାରେ   ରଞ୍ଜିତ ନବୀନ
ସୂର୍ଯ୍ୟ କରେ ଉଦ୍ଭାସିତ
କୈଳାଶ ଶୈଳ   ସମ ମଣ୍ଡପାଳି
ହେଉଥିଲେ ବିଲୋକିତ ।
ଦିଗ୍‌ବଧୂଙ୍କ ପରି   ମଧୁର ମୂରତି
ନବୀନାଏ ମୃଦୁହାସ୍ୟେ
ଉଗ୍ର ହୋଇଥିଲେ   ଦେଖି ଚଉପାଶେ
ତାଙ୍କ ପରିଚର୍ଯ୍ୟା ଆଶେ ।
ଭୁବନମୋହିନୀ   ସେମାନଙ୍କ ଛାୟା
ଦିଶୁଥିଲା ତଳେ ପଡ଼ି
ଧରାଦେବୀ ଅବା   ଅନୁସରିଥିଲେ
ଅନୁରାଗ ବଶେ ଜଡ଼ି ।
ଏରୂପେ ଚଣ୍ଡାଳ   କୁମାରୀ ନୃପଙ୍କୁ
ନିରେଖି ଦୂରରେ ରହି
ରତ୍ନାଳଙ୍କୃତ   କମଳ କରରେ
ବଂଶୀଦଣ୍ଡ ଖଣ୍ଡ ବହି ।

ସଭ୍ୟସଦଙ୍କର ଦୃଷ୍ଟି ଆକର୍ଷିବା
ପାଇଁ ବେଦୀ ମଣ୍ଡପରେ
କର ସଞ୍ଚାଳି ସେ କରନ୍ତ ରଚନା
ଅଜ୍ଞାତ କଳ୍ପ ପଥରେ ।
କରତାଳି ନାଦେ ଧନ୍ୟ କଣ୍ଠସ୍ୱର
ସମ ସଭ୍ୟସ୍ଥ ସକଳେ
ସମକାଳେ ସେଥୁ ଶତକୁ ବଦନ
ଫେରାଇ ସକୌତୂହଳେ ।
ଦେଖିଲେ ଅସ୍ପୃଷ୍ଟ ଯଷ୍ଟି ଅବଲମ୍ବି
ଆଗେ ଏକ ବର୍ଷୀୟାନ
ବାର୍ଦ୍ଧକ୍ୟେ ଧବଳ ଦଣ୍ଡେ ବକ ପକ୍ଷୀ
ପର ତାର କେଶମାନ ।
ଯୌବନ ଅତୀତ ହେଲେହେଁ ଆତର
ପରିଶ୍ରମ ଚରକାଳ
ହୋଇ ନାହିଁ ଅତ ଶିଥିଳ ତାହାର
ଶରୀରର ଶିରମାଳ ।
ନେତ୍ର ପ୍ରାନ୍ତଦେଶେ ଫୁଟି ଦିଶୁଥିଲା
ସୂକ୍ଷ୍ମରକ୍ତ ଶିରାଚକ୍ର
ଚଣ୍ଡାଳ ହେଲେହେଁ ଆକୃତି ତାହାର
ନଥିଲା ଅତ କଠିନ ।
ମଣ୍ଡିଥିଲା ଅଙ୍ଗ ସ୍ୱଚ୍ଛତର ବସନ
ଭୂଷଣ ନବ ବାସରେ
ସଭ୍ୟପରି ଜଣା— ଯାଉଥିଲା ନବ୍ୟ
ପୋଷାକ ପରିଚ୍ଛଦରେ ।
ତାହାର ପଶ୍ଚାତେ ଅନୁସରୁଥିଲା
ଅପର ଏକ କୁମର
ଝୁଲାଇ ଦକ୍ଷିଣ କରେ ହେମକାଠି—
ନିର୍ମିତ ରମ୍ୟପିଞ୍ଜର ।
ତନ୍ମଧ୍ୟେ ସ୍ଥିତ ଶୁକପକ୍ଷୀ ଦେହ
କାନ୍ତରେ ପିଞ୍ଜର ଝଳ

ହେଉଥିଲା ପଟେ          ମରକତ ମଣି
ମାଳେ ତା ନିର୍ମିତ ବୋଲି ।
ନବ ଶ୍ୟାମ କାନ୍ତି          ଯୋଗେ ସେ କୁମାରୀ
ବଳେ ନେଉଥିଲା ଟାଣି
ଅମୃତ ହରଣେ          ମୋହନୀ ମୂରତି
ଭଗବାନଙ୍କର ଠାଣି
ସଞ୍ଚାରିଣୀ ନୀଳ—          ମଣିର ପିତୁଳା
ପ୍ରାଏ ସେହୁ ଅବଳା
ଗୁଳ୍ଫଯାଏ ଲମ୍ବି          ଜଡ଼ିଥିଲା ଦେହେ
ନୀଳବର୍ଣ୍ଣର କାଞ୍ଚୁଲା ।
ତଦୁପରି ରକ୍ତ          ଚେଳର ଓଢ଼ଣା
ବହୁ ରଙ୍ଗେ ନିତମ୍ବିନୀ
ସନ୍ଧ୍ୟାକାଳେ ନୀଳ          ପଦ୍ମସ୍ଥ ସର
ଶୋଭା ପାଉଥିଲା ଜଣି ।
ଗଜଦନ୍ତ କର୍ଣ୍ଣ—          ଭୂଷଣରେ ଗଣ୍ଡ
ଦିଶୁଥିଲା ଶୁଭ୍ରବର୍ଣ୍ଣ
କରୁଥିଲା ଚନ୍ଦ୍ର          ରଞ୍ଜିତ ରଜନୀ
ନବ ସେ ନେତ୍ର ରଞ୍ଜନ
ପିଙ୍ଗଳାଭ ଗୋରେ—          ଚନାର ଖଳକ
ଲଲାଟ ଦେଶରେ ଦେଇ
କୁସୁମନୀ ରୂପୀ          ହିମସୁତା ଉମା
ସମ ଗ୍ରଜୁଥିଲା ସେହୁ
ବସ୍ତ୍ର ବକ୍ଷେ ଜଡ          ଯେସନ ଶ୍ୟାମଳ
ଦିଶେ କମଳାଙ୍କ କାୟା
ଅବା ହର ନେତ୍ରେ          ଦଗ୍ଧ କାମଦେବ
ଧୂମେ ମାନ କାମକାୟା
ସାନ୍ଧ୍ୟ ଅନ୍ଧକାରେ          କଅବା କାସାରେ
ଯେମନ୍ତ ଫୁଲ୍ଲ ନଳିନୀ
ତେମନ୍ତେ ସଞ୍ଚାରିଣୀ          ଶ୍ୟାମବଲ୍ଲୀ ବତ
ଶୋଭୁଥିଲା ସୁହାସିନୀ

ଅଳତା ରସରେ ଚରଣ ବେଢ଼ନକୁ
ବାଳାମଣି ଥିଲା ରଞ୍ଜି
ରୁଧିର ଜର୍ଜ୍ଜର ମନ୍ମଥ-ମର୍ଦ୍ଦିନୀ
ପାଦ ପଙ୍କଜକୁ ଗଞ୍ଜି ।
ଗାଢ଼ ଲାଲ ବର୍ଣ୍ଣେ ସ୍ରଞ୍ଜିତ ଚରଣ
ଅଙ୍ଗୁଳି ନଖରୁ ଉଠି
ଉଜ୍ଜ୍ୱଳ ଆରକ୍ତ ପ୍ରଭା ନେଉଥିଲା
ଗୁଞ୍ଜଫଳଙ୍କ ପ୍ରଭା ଲୁଟି ।
ପକାଇ ନପାରି କୋମଳ ଚରଣ
କଠିଣ ଭୂମିରେ କରେ
ନବ ପଦ ବାଳା ବଢ଼ାଇ ବଢ଼ାଇ
ଗମୁଥିଲା କି ଢଙ୍ଗରେ ?
ଅଳଂକାର ତେଜେ ପଡ଼ୁଥିଲା ତାର
ଠିକ୍ରି ଦେଉଁ ନୟନ
ରୂପ ଉପପାତା ବନ୍ଧି କି କାନ୍ତାକୁ
କରୁଥିଲେ ଆଲିଙ୍ଗନ
କୁଟିଳ କୋମଳ ପ୍ରେମ ଲଣ୍ଡକାର
ସ୍ଫୁରୁ ଅଳକାଳ ପରି
ପୃଥୁଳ ନିତମ୍ବେ କାଞ୍ଚୀଦାମ ବାଳା
ପଡ଼ନେ ଥିଲା ପହର ।
ମୁକ୍ତାମାଳା ଅବା ଥୂଆ ହୋଇଥିବା
ଯୌବନ କଳସୀ କୁମ୍ଭରେ
କଢ଼ା ରଖିଥିଲା ପୁଷ୍ପହାର ଧନୀ
ଅନଙ୍ଗ ଗର୍ଭ ଶିଳାରେ ।
କାମଦେବ ଫୁଲ ଧନୁ ଭଳି କଟି
ମୁଠାରେ ହେବଟି ଧରି
ଶୋଭାକର ପିତୁଳା ଶିରୀଷ ମୃଦୁଳା
ସୁକୁମାରୀ ବିମ୍ବାଧରୀ ।
ଫୁଲ ପଦ୍ମସମ ନୟନ, ନବଢ଼
ମେଘସମ କେଶପାଶ

ଚନ୍ଦନ ଲତାର    ପର ଶରୀରରୁ
ଫୁଟି ଉଠୁଥିଲା ବାସ.
ସ୍ୱର୍ଗ ବାସିନୀଏ    ନପାରନ୍ତି ଯଥା
ଏ ମର୍ତ୍ତ୍ୟ ଭୂମିକୁ ଛୁଇଁ
ତେଣୁ ସତ୍‌କୁଳକୁ    ସ୍ପର୍ଶି ନଥିଲ ତ
ଏପୂର୍ଣ୍ଣଚନ୍ଦ୍ରମାମୁହାଁ ।
ଆକର୍ଷିବ ନିଦ୍ରା    ନୟନକୁ ଯେବେ
ପଲକେ ଆସି ଯେସନେ
ଟାଣୁଥିଲା କୁଚେ    ମାନସକୁ ଏହି
ରମଣିମଣି ତେସନ ।
ଶୋଭାସଦନାକୁ    ଅଗ୍ରେ ଉଭା ଦେଖି
ଭୁଲିଲେ ବିସ୍ମୟେ ଭୂପ
ବିଦ୍ୟୁତେ ଗଢ଼ି    ବିଧାତା ଅପାଣେ
ନହିଲେ କିପାଁ ଏରୂପ ।
ଏ ରୂପସୀ ରୂପେ    ଜଗତର ସର୍ବ
ସୌନ୍ଦର୍ଯ୍ୟ ହୁଅଇ ତୁଚ୍ଛ
କାହୁଁ ଲୁଚିଥିଲା    ଅଜ୍ଞସାଏ ଏହି
ଅପୂର୍ବ ଶୋଭାର ଉତ୍ସ ।
ଗଢ଼ିଥିଲେ ଯେବେ    ଧାତା ଏ ବାଳାକୁ
କରି ଏତେ ନିରୁପମ
ତେବେ କିପାଁ ଦେଲେ    ସ୍ୱର୍ଗସୁଖ ଶୂନ୍ୟ
ହାଡ଼ିର ଘରେ ଜନମ
ଦେଖି ମନେ ହୁଏ    ଛୁଇଁବାକୁ ନୀଚ
ଜାତିକୁ ପଶି ଭୟରେ
ହସ୍ତ ନ ଲଗାଇ    ଗଢ଼ିଛନ୍ତି ବିହି
କେବଳ ଚିନ୍ତା ମନରେ ।
ନୋହିଲେ ବାଳାର    ସୁବଳିତ ତନୁ
ମସୃଣ ସ୍ନିଗ୍ଧ ଉଜ୍ଜ୍ୱଳ
କରସ୍ପର୍ଶ ଦୋଷେ    ଠାବେ ଠାବେ ନଷ୍ଟ
ହୋଇଥାନ୍ତା ଅବିରଳ ।

ଚଣ୍ଡାଳ ଘରରେ       ଏରୂପ ରୂପସୀ
ଭବେ ଦେଖାନାହିଁ କାହିଁ
କଣ୍ଟକ ନାଡ଼ରେ       ପଦ୍ମ ଖଞ୍ଜିବାକୁ
ଇଚ୍ଛିଲେ ଧାତା କପାଇଁ ।
ଦୈତ୍ୟ ଲକ୍ଷ୍ମୀସମ       ଶ୍ୟାମଳ ତମାଳ
କରଣୀ ଏ ରସବତୀ
ତୁଇଁ ହେଉନାହିଁ       ବୋଲି ସିନା ମନେ
ଉଦ୍‌ବେଗ ଜନ୍ମାଏ ଅତି ।
ଏ କାଳେ କୁମାରୀ       ମସ୍ତକ ନୁଆଁଇ
ନମିଲ୍ଲ ନୃପ ପୟରେ
କର୍ଣ୍ଣଛଡ଼ କଣ୍ଠ—       ଅଳଙ୍କାର ଭାର
ସ୍ୱଳଲେ ବେନ ଗଣ୍ଡରେ
ସଧୀରେ ସ୍ତବର       ପିଞ୍ଜରସ୍ଥ ଶୁକ
ପକ୍ଷୀଟିକୁ ତହିଁ ନେଇ
କ୍ଷିପିଲ୍ଲ ବନସ୍ଥ—       ଗୀତେ ଶ୍ରୀଛମୁରେ
ତାହା ଉପହାର ଦେଇ ।
"ମହାରାଜ ଏହୁ       ବହଙ୍ଗମ ଗୋଟି
ଧରାର ସାର ରତନ
ସକଳ ଶାସ୍ତ୍ରରେ       ବହୁଦର୍ଶୀ ନାମ
ଏହାର ବୈଶମ୍ପାୟନ ।
ରାଜନୀତିପଟୁ       ରଚନା କୌଶଳୀ
ନାଟକ କାବ୍ୟେ ପ୍ରବୀଣ
କୋକଶାସ୍ତ୍ରଦକ୍ଷ       ପରହାସ ପ୍ରିୟ
ସଙ୍ଗୀତ ବିଦ୍ୟା ଧୁରୀଣ
ଶ୍ରୀଛାମୁଁ ସକଳ       ଦୁର୍ଲ୍ଲଭ ରତ୍ନର
ଆଶ୍ରୟେ ବିଚାରି ମନେ
ମୋର ପ୍ରଭୁକନ୍ୟା       ଆସିଛନ୍ତି ତୁରୁ
ଚରଣ ପଦ୍ମ ଦର୍ଶନେ ।"
ଏତେ ବୋଲି ତୁଣ୍ଡ       ଅନ୍ତର ହୁଅନ୍ତେ
ଜୟ ଜୟ ସ୍ୱରେ ଶୁକ

ଦକ୍ଷ ପାଦ ଟେକି ରାଜାଙ୍କ ଉଦ୍ଦେଶେ
ଭାଷିଲା ଫେରାଇ ମୁଖ ?
"ଭ୍ରେଦେବ ଅଞ୍ଜନ— ଧ୍ୟାନ ନେତ୍ରଜଳେ
ଗଭୀର ଦୁଃଖେ ପାଖୋଇ
ହୃଦେ ଜଳୁଥିବା ଶୋକ ହୁତାଶନ
ହୁତାଶ ନିକଟେ ରହି ।
ଶୀଘ୍ରମୂଳ ଦୃଷ୍ଟି ବୈରି ନାଶନର
ଯୁଗଳ ସ୍ତନ ସନ୍ତତ
ମହାର୍ଘ ଭୂଷଣ ବରଜି ସର୍ବଦା
ଆଚରନ୍ତି ଦୃଢ଼ବ୍ରତ ।"
ହାବଭାବ ପୂର୍ଣ୍ଣ ମାନବ ପରାଏ
ପକ୍ଷୀର ସ୍ୱର ଲହରୀ
ସ୍ୱଜନ ସହ ଶୁଣି ସବିସ୍ମୟେ
ଭାବିଲେ ନୃପକେଶରୀ ।
"ଆହାର, ମୈଥୁନ, ଭୟ, ନିଦ୍ରା, ସିନା
ବୃତ୍ତି ପଶୁମାନଙ୍କର
ମାତ୍ର ଏ ପକ୍ଷୀର ନରତୁଲ୍ୟ ଅଟେ
ଚେଷ୍ଟାର ଅତି ସୁନ୍ଦର ।"
ଏକାଳେ ଗଗନ କେନ୍ଦ୍ରେ ଝଟକିଲେ
ଗ୍ରହରାଜ ଦିନମଣି
ଉଠିଲା ସଘନେ ବାଦ୍ୟନାଦ ସହ
ସୁମଧୁର ଶଙ୍ଖଧ୍ୱନି ।
ସ୍ନାନକାଳ ଜାଣି ସଭା ଭାଙ୍ଗି ଭୂପ
ବାହାରିଲେ ବୈଠକରୁ
ଉଠି ଠିଆ ହେଲେ ପଛଘୁଞ୍ଚା ଦେଇ
ସଭିଏ ଯେ ଯା ସ୍ଥାନରୁ ।
ସ୍ୱନରେ ଭ୍ରମର ଯୋଇ ରମଣୀଏ
ଯିବାପାଇଁ ହେଲେ ସାଜି
ପ୍ରତି ପଦକ୍ଷେପେ ସେମାନଙ୍କ ମଣି
ନୂପୁର ଉଠିଲା ବାଜି ।

ମେଖଳା ନାଦରେ ଉତ୍କଣ୍ଠିତ ପୁରେ
ପୋଷା ରାଜହଂସମାନ
ମାଳବା କାଳର କଂସା ଶବ୍ଦ ପର
ଧୀରେ ଧୀରେ ଦେଲେ ତାନ ।
ବୀଣାଧାରୀ ଦାସୀ— ମାନେ ମେଲିଦେଲେ
ବୀଣାକୁ ପାଣି ଚଟାଇ
ଅବଜ୍ଞା ସହିତ ହଠୋ ହଠୋ ଶବ୍ଦେ
ଡାକିଲେ ଉଠେ ନଠାଇ ।
ଝାଣ୍ଟିସ୍ୱରେ ଛଟେ ସ୍କନ୍ଧ ଫଡ଼ି ଫଡ଼ି
ବୁଲୁଥିଲେ ଆଗେ ଆଗେ
ବ୍ୟସ୍ତେ ରହି ରହି ବାଲାଏ ଭ୍ରମର
ଝଙ୍କୁଥିଲେ ପୁଷ୍ପରାଗେ ।
ପ୍ରବେଶି ଏ ସବେ ନିରୂପିତ ସ୍ଥାନେ
ଯଥାକାଳେ ନରବର
ଭୂଷଣ ଉତାରି ଦେହୁଁ କାଢ଼ିଲେ ସେ
ପ୍ରଦୋଷକାଳ ଭାସ୍କର ।
ପରସ୍ପରକା ଏ ପିଙ୍ଗଳ ବସ୍ତ୍ରରେ
ଅଣ୍ଟାକୁ ଭିଡ଼ ନଠାଇ
କୋଳତ କୁନ୍ତଳ— ରାଜ ଭୂପଙ୍କର
ଶ୍ରବଣ ମୁକ୍ତ ଘୁଞ୍ଚାଇ ।
ସୁବର୍ଣ୍ଣ ଶିକାରୁ ସୁରଭି ତଇଲ
ତରଳାକ୍ଷୀଗଣ ନେଇ
ସୁକୁମାର କରେ ସଧୀରେ ମର୍ଦ୍ଦିଲେ
ଗାତ୍ରରେ ଯତନେ ଦେଇ ।
କଣ୍ଠଦେଶୁଁ କଣ୍ଠି, କର୍ଣ୍ଣୁ ରତ୍ନଭୂଷା,
ହସ୍ତରୁ ବଳୟ କାଢ଼ି
ସ୍ନାନ କରାଇଲେ ତାହାଙ୍କ ମଥାରେ
ସଲିଳଧାରା ଅଜାଡ଼ି ।
ରୂପା କଳଶରେ ଜଳ ଅଜାଡ଼ିଲେ
ମହିଳାଏ ଧୀରେ ଧୀରେ

ଧରଣୀ ଗାତକୁ ପୌର୍ଣ୍ଣମାସୀ, ଜ୍ୟୋତ୍ସ୍ନା
ସ୍ରୋତରେ ଧୋଉଛି କରେ ?
କୁଙ୍କୁମଜଳରେ ପଖାଳିଲେ ନୃପ
କଳେବର ବାମାବ୍ରାତ
ଅଙ୍ଗଲଗ୍ନ ବିନ୍ଦୁ ନବୋଦିତ ରମ୍ୟ
ରବିକରକୁ ପ୍ରସୂତ ?
ସ୍ନାନ ଶେଷେ ଭୂପ ବହିଲେ ଶରତ
ଆକାଶ ପରି ମୋହନ
ଭୁଜଙ୍ଗ କଞ୍ଚୁକ ନନ୍ଦ ପିଣ୍ଡ ଶୁଭ୍ର
ନବୀନ ଝୀନବସନ ।
ଶିରେ ରମ୍ୟପାଗ ରଚିଲେ ସୁଘାର୍ଦ୍ଧ
ଧବଳ ପାଟ ଖଣ୍ଡରେ
ହିମାଳୟ ଶୃଙ୍ଗ ବେଢି ମନ୍ଦାକିନୀ
ପ୍ରବାହ ବହୁଛି କରେ ?
ବେଜେ ହୋଇ ଭୂପ ସ୍ନାନାନ୍ତେ ସୁବର୍ଣ୍ଣ
ବେଦୀପରେ ରତ୍ନାସନେ
ଉଜ୍ଜ୍ୱଳ ତୁଷାର ଖଣ୍ଡ ସମ ଶୁଭ୍ର
ଅମ୍ବରଣେ ଭୃତ୍ୟମନେ ।
ପୁଚ୍ଛିଲେ ଶୁକକୁ ଇଚ୍ଛାମତେ ତାର
ମିଳଇ କି ନା ଭୋଜନ ?
ନରେନ୍ଦ୍ରଙ୍କ ପ୍ରଶ୍ନେ ବିନୟେ ଶବୁନ୍ତ
ଉତ୍ତରଇ ତତକ୍ଷଣ—
"ଦେବ ଦେବ ପ୍ରମତ୍ତ— ପିକନେତ୍ର ସମ
ଶ୍ୟାମଳ ପାଟଳବର୍ଣ୍ଣ
କଷାୟ ମଧୁର ଜମ୍ବୁ ରସେ ତୃଷା
କରଇ ଅପନୋଦନ ।
ସିଂହ ବଦାରିତ ମତ୍ତ କୁମ୍ଭୀ କୁମ୍ଭ
ରକ୍ତାକ୍ତ ମୁକ୍ତାଭ ପର,
ଦାଡ଼ିମ୍ବର ମଞ୍ଜି ଖାଇଛି ଚଞ୍ଚୁର
ମୂନେ ଖଣ୍ଡ ଖଣ୍ଡ କରି

ଉଦ୍‌ଘନ କାନ୍ତ    ରସ୍ମଯୁକ୍ତ ଗୋଲ
ଅଁଳା ଫଳ କୌଶଳେ
ମଞ୍ଜିରୁ ଛଡ଼ାଇ    ଉଲ୍ଲାସତେ ଭୂପ
ଭକ୍ଷିଅଛି କୁତୂହଳେ ।”
ତହୁଁ ନରମଣି    ପୃଚ୍ଛିଲେ “ବିହଙ୍ଗ
ଶୁଣି ତୋ ମୁଖରୁ ବାଣୀ
କୌତୁକ ବଢ଼ୁଛି    ମନେ ଜାଣିବାକୁ
ଅପାର ଯେତେ କାହାଣୀ ।
କିଏ ତୁହି ଅଟୁ    କାହାର କୁମର
କେଉଁ ସ୍ଥଳରେ ଘର ?
କାହିଁଥିଲୁ ପୂର୍ବେ ?    ଏ ବୈଶମ୍ପାୟନ
ନାମ କେ ଦେଲା ତୋହର ?
ପିଞ୍ଜରେ କିପରି    ବନ୍ଧ ହେଲୁ କହ
ପଡ଼ିଲୁ ଚଣ୍ଡାଳ କରେ ?
କାହିଁକି ଏଠାକୁ    ଆସିଲୁ ଏ କ୍ଷଣ
ଲଭିଲୁ କାହାର ବରେ ?”
ରାଜାଙ୍କ ବଚନେ    ନିବେଦିଲା ଶୁକ
ପକାଇ ଶ୍ୱାସ ପ୍ରଖର
ଅତି ଦୀର୍ଘ ମୋର    ଜୀବନ ବୃତ୍ତାନ୍ତ
ଶୁଣିବ କି ଦଣ୍ଡଧର ।
ପୂର୍ବ ସାଗରର    ତୀରରୁ ବିସ୍ତୃତ
ପଶ୍ଚିମ ସାଗର ଯାଏ
ବିନ୍ଧ୍ୟାଟବୀ ନାମେ    ଏକ ମହାବନ
ଜନସ୍ଥାନେ ଶୋଭାପାଏ ।
ପୃଥିବୀର ରମ୍ୟ    ମେଖଳା ପରାଏ
ଅଟେ ସେ ଦୀର୍ଘ ଅଟବୀ
ବଢ଼ୁଛି ଉର୍ବିଳ    ମଧ୍ୟ ପ୍ରଦେଶର
କୁନ୍ଦ ଅଳଂକାର ଛବି ।
ବୃଦ୍ଧି ଲଭେ ବନ    ବାରଣମାନଙ୍କ
ମଦ ସଲିଳ ସେଚନେ

ସୁବିଶାଳ ଦ୍ରୁମୋଘୁ          ଲଗାଇ ନଜର
ଉନ୍ନତ ଶିର ଗଗନେ ।
ନକ୍ଷତ୍ରମାନଙ୍କ          ପର ପ୍ରସ୍ଫୁଟିତ
ଫୁଲରେ ଭୂଷି ଶରୀର
ତରୁସ୍କନ୍ଧ ସନ୍ଧି          ବିରାଜନ୍ତ ଜସୁ
ସ୍ତମ୍ଭସମ ଅଟବୀର ।
ତମାଳର ଡାଳ          ସ୍କନ୍ଧେ ଠାଣି ବାନ୍ଧି
ଶୁଣ୍ଡାଳ ଶିଶୁ ଶୁଣ୍ଡରେ
କାନନ ଭୂମିକୁ          ପୁରାଇଣ ଶୀର
ସୁମଧୁର ସୌରଭରେ ।
ମରିଚର ପତ୍ର          ଖୁମ୍ପି ଖୁମ୍ପି ବାନ୍ଧି
ଖାଅନ୍ତ ହରଡ଼ଚୟ
ପଡ଼ ପଡ଼ ବାନ୍ଧି          ଫୁଲରେଣୁ ଭାର
ଲତା ତଳ ଧୂଳିମୟ ।
କେରଳମାନଙ୍କ          ମଞ୍ଚସ୍ରମାର୍ଜିତ
ରୁଚିର ଗଣ୍ଡମଣ୍ଡଳ
ଅସ୍ଏ ମନକୁ          ହର ନଏ ତାର
କୋମଳ ମସୃଣତଳ ।
ଅଲ୍ଲାବତ ଭାବୁଁ          ବନଦେଶ ସେହୁ
ପାଟଳବର୍ଣ୍ଣ ତୃଣରେ
ବନଦେବୀ ପାଦ          ସୁରଞ୍ଜିତ ହେଲ
ଅସ୍ଏ ଲକ୍ଷାରସରେ ।
ଛଦାଛନ୍ଦ ହୋଇ          ପରସ୍ପର ଭାଙ୍ଗି
ପାଦପ ଲତା ବସ୍ତ୍ର
ସରଳ ଅଛନ୍ତ          କେନ୍ଦ୍ରତ୍ରିତର
ମଞ୍ଜୁଳ ମଣ୍ଡପରାଜି ।
ଶୁକମାନେ ତହିଁ          ବସି ଖଣ୍ଡିବାରୁ
ଥଣ୍ଟରେ ଦାଡ଼ିମଫଳ
ରସ ଚୋପି ଚୋପି          ରଙ୍ଗା ହୋଇଥାଏ
ସେ ଲତା ବିତାନତଳ ।

ତମାଳ ଦ୍ରୁମର ତାକୁ ଡାଳେ ଚେଇଁ
କପିଏ କମ୍ପିତ କରୁ
ପତ୍ର, ଫଳ, ଫୁଲ ଝରଝର କାହିଁ
ପଡ଼ଇ ସଦା ଉପରୁ ।
ଧାଡ଼ ଧାଡ଼ କଅ ଚେତଙ୍ଗ, ନଡ଼ଅ
ବୃକ୍ଷ ଦଣ୍ଡେ କାହିଁ ଅବା
କାହିଁ ଶୁଆପତ୍ରେ ତାମ୍ବୁଳ ଲତିକା
ବେଢ଼ି ବଢ଼ାଉଛି ଶୋଭା ।
କାନନ ଲକ୍ଷ୍ମୀଙ୍କ କେଳିଗୃହ ପରି
କାହିଁ ଘଞ୍ଚ ଲତାକୁଞ୍ଜ,
ଗୁଞ୍ଜରୁ ଆସନ୍ତି ଫୁଲୁଁ ଫୁଲେ ଉଡ଼ି
ମଧୁକର ପୁଞ୍ଜ ପୁଞ୍ଜ ।
ମତ୍ତ ଗଜଙ୍କର ମଦଜଳେ ଭିଜି
କାହିଁ ଅନାଭିତ ବନ
ତ୍ରିଗୁଣ ଉତ୍କଟ ଗନ୍ଧେ ସେ ନିର୍ଜନ
ସ୍ଥଳୀକୁ କରେ ପୂରଣ ।
କେଶରୀ ନଖର ନଖରୁ ନିର୍ଗତ
ବାରଣ ମୁକ୍ତା ଅଗ୍ରରେ
ଏକହିତ ହୋଇ ବ୍ୟାଧେ ରଖିଥାନ୍ତି
କାହିଁ ସିଂହ ବଧିବାରେ ।
ଝମ ଝମ ଝମ ଅରଣା ମହିଷେ
କାହିଁ ହୋଇଥାନ୍ତି ଗଦା
କାହିଁ ଖଡ୍ଗଧାରୀ ସୈନିକ ପରାଏ
ଗଣ୍ଡାଏ ବୁଲନ୍ତି ସଦା ।
କଞ୍ଚନ ବରଣ ପୁଚ୍ଛ ଦୋହଲାଇ
କାହିଁ ବା ମୟୂର ଥାଟ
ମନୋହର ସ୍ୱନେ ଦୋହଲି ଦୋହଲି
ସୁଖେ କରୁଥାନ୍ତି ନାଟ ।
ଝିଲ୍ଲିକ ନାଦରେ ଗିରିଗୁହା କାହିଁ
ଧ୍ୱନିତ ହୁଏ ସତତ

ସେ ଗନ୍ଧେ ଚକିତ ସ୍ଥିତ କୃଷ୍ଣସାର
ଦଉଡ଼ନ୍ତି ଅବିରତ ।
ଚନ୍ଦନ କସ୍ତୁରୀ ସୁବାସେ ମତ୍ତକ
ଉଠଇ ତାହିଁ ଅରଣ୍ୟ
ଏଗନ୍ଧଗନ୍ଧକୁ ବହି ନେଉଥାଏ
ତାହା ମୃଦୁ ସମୀରଣ ।
ଝପଟି ଥିବାରୁ ଏଣେ ତେଣିଠାରେ
ବ୍ୟାଘ୍ରପଦ ନଖ ଚିହ୍ନ
କାହିଁବା ବରାହେ ଦନ୍ତେ କରୁଥାନ୍ତି
ଭୂମି ତଳକୁ ବିଦାର୍ଣ୍ଣ ।
ଉନ୍ମତ୍ତ ସିଂହର ଗର୍ଜନକୁ ଶୁଣି
ଭୟରେ ହୁଙ୍କାର ଛାଡ଼ି
ଡେଇଁବାରୁ କାହିଁ ବାନରେ ଗଛରୁ
ଡାଳ ପଡ଼ୁଥାଏ ମାଡ଼ି ।
ଶୁଭୁଥାଏ କାହିଁ ନିରତ ଅବ୍ୟକ୍ତ
କଳଗୀତ କୋକିଳର
ସୁରପାନେ ଭୋଳା ମହୁଲାର ଯଥା
ଅସ୍ପଷ୍ଟ ସଙ୍ଗୀତ ସ୍ୱର ।
ବିନ୍ଧ୍ୟାରଣ୍ୟ ପାଖେ ଅଛି ନରବର
ଦଣ୍ଡକାରଣ୍ୟ ରାଜଇ
ଭୁବନ ବିଦିତ ଅଗସ୍ତ୍ୟଙ୍କ ମଠ
ପୂର୍ବକାଳେ ଥିଲା ତହିଁ ।
ଯେ ଅଗସ୍ତ୍ୟ ଋଷି ଗଣ୍ଡୁଷେ କ୍ଷଣକେ
ସିନ୍ଧୁଜଳ ଥିଲେ ଶୋଷି
ଯାହାଙ୍କ ଭ୍ରୂଭଙ୍ଗୀ ମାତ୍ରକେ ନହୁଷ
ସ୍ୱର୍ଗରୁ ପଡ଼ିଲେ ଖସି ।
ସୁମେରୁର ସମ ଗଣ୍ଡଗୋଳ କର
ସମୁନ୍ନତ ବିନ୍ଧ୍ୟଗିରି
ଦେବେନ୍ଦ୍ରଙ୍କ କଥା ନ ମାନି ବସ୍ମାର
ସ୍ୱ ଉନ୍ନତ ଶୃଙ୍ଗ ଶିରୀ ।

ଉଠୁଥିଲ ବେଗେ        ରୋଧିବାକୁ ଖରେ
ରବିଙ୍କର ଗତିପଥ
ଯାହାଙ୍କ ଆଦେଶ        ନ ଲଙ୍ଘି ରହିଛ
ଅଦ୍ୟାପି ପୂର୍ବବତ ।
ବାତାପି ଦୈତ୍ୟକୁ        ନିମିଷକେ ଜୀର୍ଣ୍ଣ
କଲେ ସେ ଜଠରାନଳେ
ଦେବାସୁରଗଣ        ମସ୍ତକ ଲୁଣ୍ଠାନ୍ତି
ଯାହାଙ୍କ ଚରଣ ତଳେ ।
ଉଲକ ପରି ଯେ        ରାଜନ୍ତି ଶରତେ
ଦକ୍ଷିଣ ଦିଗ୍‌ବଧୂ ସ୍ଥଳେ
ସେହି ଅଗସ୍ତ୍ୟଙ୍କ        ଧର୍ମପତ୍ନୀ ଧନ୍ୟା
ଲୋପାମୁଦ୍ରା ପୂର୍ବକାଳେ ।
ଆଲବାଳମାନ        ନିର୍ମିଣି ସ୍ୱେ ଦେବ !
ଜଳ ଛିଞ୍ଚି ସ୍ୱ ହସ୍ତରେ
ପୁତ୍ରନିର୍ବିଶେଷେ        ତରୁ ଲତା ତହିଁ
ପାଳିଥିଲେ ଯତନରେ ।
ସ୍ନିଗ୍ଧ ଛାୟାପ୍ରଦ        ଶ୍ୟାମବର୍ଣ୍ଣ ସେହି
ତରୁ ବ୍ରତତୀ ଗହଳେ
ସେ ନିକୁଞ୍ଜ ମଠ        ଶୋଭା ପାଉଥିଲ
ନାନାବିଧ ଫୁଲ ଫଳେ ।
ମୋ ଶରୀର ପରି        ହରିତ କଦଳୀ-
ବନ ଫଳ ଭରେ ନଇଁ
ମହାଋଷିଙ୍କର        ଆଶ୍ରମକୁ ବେଢ଼ି
ସଦା ରହୁଥିଲା ତହିଁ ।
ରାବଣର ରାଜ-        ଲକ୍ଷ୍ମୀଙ୍କ ବିଳାସ
ଶୋକନାଶକାରୀ ରାମ
ପିତୃ ସତ୍ୟପାଳ        ସୀତାସହ ତହିଁ
କରିଥିଲେ ଆଶ୍ରମ ।
ପାଣ୍ଡବମାନେ        ଅଦ୍ୟାପି ଯେ ସ୍ଥାନେ
ପାଦପେ ବସି ନିର୍ଜନେ

ତପସ୍ୱୀମାନଙ୍କ ଅଗ୍ନିକୁଣ୍ଡ ଧୂମ
ଭ୍ରାନ୍ତ ଉପୁଜାନ୍ତ ମନେ ।
ମଧୁ ମାସେ ନବ ପଲ୍ଲବେ ପାଟଳ
ତରୁଲତା ଅଗଣନ
ଦେଖି ସେ ପବନ ଦଣ୍ଡକାରଣ୍ୟରେ
ମାନସ ପାଏ ଏସନ ।
ଫଳ ତୋଳୁଥିଲେ ତହିଁ ସୀତାସତୀ
ତାଙ୍କ ଶ୍ରୀକରୁ ରକ୍ତିମା
ଲାଗି ଅବା ସେହୁ ଜାଙ୍କୁ ବନରାଜ
ଲଭଛନ୍ତି ପାଟଳମା ।
ଅବା ଶ୍ରୀରାମଙ୍କ ଶରରେ ନିହତ
ରାକ୍ଷସ ରୁଧିରେ ସିକ୍ତ
ମୃତ୍ତିକାରୁ ଉଠି ବଢନ୍ତି ପାଦପ
ଲତାଏ ରକ୍ତରଞ୍ଜିତ
ଦୟାବନ୍ତୀ ସୀତା ଦେବୀଙ୍କ ପାଳିତ
ଚନ୍ଦ ଅଚନ୍ଦ ବରଣ
ଅଦ୍ୟାଏ ତହିଁ ଛନ୍ତି ଜରାଜୀର୍ଣ୍ଣ
ବୃଦ୍ଧ କୃଷ୍ଣସାରଗଣ ।
ବର୍ଷାକାଳେ ଯେହ୍ନେ ଶୁଣି ଘନଗର୍ଜ
ଘୋରନାଦ ବାରବାର
ସ୍ୱର୍ଗ ମର୍ତ୍ତ ଦୁଃଖେ ତ୍ରିଭୁବନ ବ୍ୟାପୀ
ରାମଙ୍କ ଧନୁ ଟଙ୍କାର ।
ଉତ୍ପକ୍ଷ ଲୋଚନେ ଆକାଶକୁ ଚାହିଁ
ବସାବେ ଲୋତଙ୍କ ଦେଖି
ତୃଣ ନ ଖେଳାଇ ତାହାଙ୍କ ସନ୍ତାନୁ
ମୂର୍ତ୍ତି ହୋଇଥାନ୍ତି ହେଜ ।
ମାରୀଚ ମାୟାରେ ମାୟାମୃଗ ରଚି
ରାମେ ସୁମାନ୍ତକେ ଛଳି
ସୀତାଙ୍କୁ ରଥରେ ହରି ନେଇଥିଲା
ତହୁଁ ଦଶାନନ ବଳୀ

ମାନସ ସରହେ ବିଜନ ବନରେ
କୁଳ କୁଳ କୁଳସ୍ୱନ
ଶୁଣିଥିଲେ ଯେବେ ନିକଟସ୍ଥ ତାର
ତରୁଲତାକୁ ବନ୍ଦାଇ ।
ଚଳିଥିଲେ ତହିଁ ସୀତାଙ୍କ ସହାଙ୍କ
ପ୍ରେମଭରେ ଦାଶରଥି
ଅଦ୍ୟାଏ ଯାହା ଦେଖି ନମ୍ରଚିତ୍ତ
ଭକ୍ତିରେ ଭକ୍ତ ଯୁବତୀ
ତାର ଉପକଣ୍ଠେ ହେ ସୁଜନ ! ସେଠେ
ସମାନାମେ ସରୋବର
ଦେଖି ମନେ ହୁଏ ଭୂତଳରେ ଖସି
ରହିଛି କି ନୀଳାମ୍ବର ।
ତପସ୍ୟାନିରତ ଋଷିମାନଙ୍କର
ହୃଦୟ ପ୍ରାୟ ନିର୍ମଳ
ତାହାର ବିସ୍ତୀର୍ଣ୍ଣ ଜଳ ସଦାବେଳେ
ହେଉଥାଏ ଝଳଝଳ ।
ରହିଅଛି ତହିଁ ଏକନେ ସତେକି
ବୈଦୁର୍ଯ୍ୟମଣି ତରଳ
କିଅବା ଜଳିଛି ପୀୟୂଷ ପୂରିତ
ଚନ୍ଦ୍ରମାମଣ୍ଡଳ ଗଳି ।
ପ୍ରଭାତବେଳେ ଫୁଟି ଫୁଲ୍ଲଥାଏ
ରକ୍ତପଦ୍ମ ମନୋରମ
ଜନ୍ମାଇ ମାନସେ ଉଲ୍ଲାସରେ ସୁଧା
କୁମୁଦ କୁସୁମ ଭ୍ରମ ।
ଦର୍ଶନ ମାତ୍ରକେ ସେ ସ୍ୱଚ୍ଛ ସଲିଳ
ହରି ନେଉଥାଇ ମନ
ହଂସମାନ ଖଣ୍ଡା ପୁଷ୍ପ ପରାଗରେ
କଷାୟ ରସସମ୍ପନ୍ନ ।
କେଳିକେଳା ଭକ୍ଷ ବାଳାଙ୍କ ନିତମ୍ବେ
ଲୁଚେ ଦ୍ରୁତେ ଉଡ଼ିଯାଇ

ସୁବର୍ଣ୍ଣନାଳ ସବୁ    କମଳ ସକଳ
ସର୍ବଦା ଦୋହଲୁ ଥାଇ ।
ଶ୍ୱେତ, ରକ୍ତ, ନୀଳ    ତ୍ରିବିଧ ଉତ୍ପଳେ
ଫୁଟି ବହୁରନ୍ତି ଦ୍ୟୁତି
ପଦ୍ମମଧ୍ୟ ପଡ଼ି    ତାହିଁ ଜଳ ଉପରେ
ଦେଖାଯାନ୍ତି ଚନ୍ଦ୍ରାକୃତି ।
ରକ୍ତ ଉତ୍ପଳକୁ    ବେଢ଼ି ଗୁଞ୍ଜୁଥାନ୍ତି
ତାହିଁବା ଭ୍ରମରଗଣ
ଉନ୍ମତ୍ତ ସାରସ    ପଦ୍ମିନୀପତ୍ରରେ
ଶୁଣୁଥାଏ ତାହିଁ ସ୍ୱନ ।
କଳହଂସେ ମଧୁ    ପିଉଥାନ୍ତି ତହିଁ
ସୁମଧୁର କୋଳାହଳେ
କ୍ରୀଡ଼ୁଥାନ୍ତି ତହିଁ    ପକ୍ଷ ଝାଡ଼ି ଜଳ
ପକ୍ଷୀଏ ମୃଦୁ ହିଲ୍ଲୋଳେ ।
ଆକାଶେ ଉଡ୍ଡୀନ    ସେ ପକ୍ଷୀଙ୍କ ପକ୍ଷୁଁ
ବିନ୍ଦୁ ବିନ୍ଦୁ ନୀର ପଡ଼ି
ବର୍ଷଣ ଭ୍ରମକୁ    ସଦା ଜୀବ ତରୁ
ପନ୍ଥୁଁ ଦେଉଥାଇ ତଡ଼ି
ଦେହେ ପଙ୍କ ମାଖି    ଖେଳୁଥାନ୍ତି ତାହିଁ
ଉଲ୍ଲାସେ ବନ୍ୟକୁଞ୍ଜରେ
ଜଣାଏ ସାଗରୁ    ଜଳ ନେବାକୁ କି
ପଶିଛନ୍ତି ଜଳଧରେ ।
ବାୟୁବେଗେ ଉଠି    ପ୍ରଚଣ୍ଡ ତରଙ୍ଗ
ତାହିଁବା ଜଳ ଲବରେ
ବୃଦ୍ଧି ହେଲେ ପର    ତପସ୍ୱୀ ପ୍ରାଣୀ
ଶରୀର ଜର୍ଜ୍ଜର କରେ ।
ଗାଧୋଇବା ପାଇଁ    ନିଃଶଙ୍କରେ ପଶି
ତାହିଁ ବନଦେବୀଚୟ
ପିନ୍ଧିଥିବା ନିଜ    ଫୁଲେ ସକଳକୁ
କରନ୍ତି ସୌରଭମୟ ।

ଯେମାନଙ୍କ ମୂଳ— ସ୍ନାନ ଚନ୍ଦନରେ
ଭଲବାସ କାହିଁ ଶୀତ
କୁଙ୍କୁମାକ୍ତ ଅଙ୍ଗ— ରାଗ ଧୋଇହୋଇ
କାହିଁ ଅବା କରୁଁ ରତ ।
ମୁନିଏ ମନ୍ତ୍ରେନ ଆସି କମଣ୍ଡଳୁ
ଜଳେ ପୁରାଇବାକ୍ଷଣି
ମନକୁ ସଙ୍କା ଓଠାରେ ତାହାର
ଅବ୍ୟକ୍ତ ମଧୁର ଧ୍ୱନି ।
ତପସ୍ୱୀଏ କାହିଁ ଧୂଅନ୍ତ ବୃକ୍ଷରୁ
ଛଡ଼ାଇ ସଦ୍ୟ ବଲ୍କଳ
ସେହି କଷ ଲଗି ଶାର ପାଖେ କାହିଁ
ପାଠଳ ବଣର ଜଳ ।
ଭାଙ୍ଗିଥିଲ କାହିଁ ଶ୍ୟାମଳ ଅରଣ୍ୟ
ଶ୍ରେଣୀ ତଟଦେଶ ତାର
ନବଡ଼ ତମାଳ ତରୁର ଛାୟାରେ
ହୋଇଛି କାହିଁ ଅନ୍ଧାର ।
ହେ ରାଜନ ଯେବେ ସୁଗ୍ରୀବକୁ ରାଜ୍ୟ
ତଡ଼ିଥିଲା ବାଳୀବଳୀ
ଋଷ୍ୟମୂକେ ଥାଇ ଏଥିରୁ ସେ ଫଳ
ଫୁଲ ନେଉଥିଲେ ତୋଳି ।
ପମ୍ପା ସରସୀର ପ୍ରସ୍ଫୁଟିତ ନୀଳ-
ଉତ୍ପଳ ପ୍ରଭାପୁଞ୍ଜରେ
ପକ୍ଷପୁଟେ ଦେନ ବିସ୍ମିତ ହୁଏ
ଗଭୀର ଶ୍ୟାମ ବର୍ଣ୍ଣରେ ।
ପହଁର ପହଁର ଏଣୁ ବୁଲୁଥିବା
ସମସ୍ତେ କୋକଦମ୍ପତି
ସୀତାପତିଙ୍କର ମୂର୍ତ୍ତିମତୀ ଶାପ
ପରାଏ ବୁଲୁ ଦଶନ୍ତ ।
ସରଟୀରେ ରାମ ଶରେ ବିଖଣ୍ଡିତ
କାଣ୍ଡ ସପ୍ତଶାଳ ପାଖେ

ସେ କାଳରୁ ଏକ ଶାଲ୍ମଳୀ ପାଦପ
ରହିଅଛି ଅଛସାକେ ।
ଶୁଣ ନରମଣି ସେ ତରୁ ତଳରେ
ଘଟିଲା ଯେଉଁ ଚରିତ
ଭବିତବ୍ୟ ସବୁ କରିପାରେ ତାକୁ
ଭବେ କିବା ଅଚମ୍ଭିତ ।
ଦିଗ୍‌ଦନ୍ତୀର ଶୁଣ୍ଢ ସମ ସୁବୃହତ
ସେ ଶାଲ୍ମଳୀ ବୃକ୍ଷବର
ତାର ମୂଳ ବେଢ଼ି ରହିଛି ଭୀଷଣ
ଏକ ମହା ଅଜଗର ।
ସତେ କି ସେ ତରୁ ବେଢ଼ା ହୋଇଅଛି
ସୁନ୍ଦର ଆଲବାଳରେ
କିବା ମଣ୍ଡିଅଛି କଟିଦେଶ ତାର
ସୁବୃହ କାଞ୍ଚୀଦାମରେ ।
ଶାଖାରେ ଲମ୍ବିତ ସର୍ପର ନିର୍ମୋକ
ପବନରେ ହଲି ହଲି
ସେ ମହାଦ୍ରୁମର ଉତ୍ତରୀୟ ବସ୍ତ୍ର
ଶୋଭା ନେଉଥାଏ କଳି ।
ସ୍ଥିର ପାରୁଶକୁ ପ୍ରସାରି ପ୍ରକାଣ୍ଡ
ଧାର୍ତ୍ତର ଶାଖାମାନ
କହୁଛି ଅବା ସେ ବାହୁ ତୋଳି ମାଳ
ଗଗନର ପରିମାଣ ।
ପ୍ରଳୟ କାଳରେ ଭୀଷଣ ତାଣ୍ଡବ
ନୃତ୍ୟକାରୀ ଶିବଙ୍କର,
ଅସଂଖ୍ୟ ବାହୁକୁ ଅନୁସରୁଅଛି
କିବା ସେହୁ ତୋଳି କର ।
କି ଅବା ନତାନ୍ତ ବୃଦ୍ଧ ହେବୁ ଢଳେ
ପଡ଼ିଯିବାର ଭୟରେ
ଆକାଶର ସ୍କନ୍ଧ ଅବଲମ୍ବି ଛେ ତ
ଧାଇଁ ବାହୁମାନଙ୍କରେ ।

ଏକ ପରେ ଏକ ହୋଇ ଲତାଜାଲ
ତହିଁ ଯାଇଛନ୍ତି ମାଡ଼ି
ଦେଖୁଯାଏ ତାର ଦଶୁଅଛି କବା
ବାର ହୋଇ ଶିର ଧାଡ଼ି ।
ବୃକ୍ଷଜାଳେ ସଙ୍ଗ ଶଯ୍ୟେ ଉତ୍ପନ୍ନ
କୃଷ୍ଣବର୍ଣ୍ଣ ସ୍ଥଳପର
କଣ୍ଟକ ନକରେ ତାହାର ପ୍ରକାଣ୍ଡ
ଦେହେ ଯାଇଅଛି ଭରି ।
ଜଳଧିର ଜଳ ପିଇ ନାନା ପାଖୁଁ
ଗତିଶୀଳ ନୀର ଧରେ
ଲାଗି ଯାଉଥାନ୍ତି ପକ୍ଷୀ ପରି ତାର
ଉଚ୍ଚ ବାହୁମାନଙ୍କରେ ।
ଜଳଭରେ ମନ୍ଦ- ଗାମୀ ସେ ଜଳଦ
ମାନଙ୍କର ଲଭି ବୃଷ୍ଟି
ନିମ୍ନେ ସ୍ଥିତ ତୃଣ ଲତା ଗୁଳ୍ମ ଆଦି
ନିତ୍ୟ ଲଭୁଥାନ୍ତି ପୁଷ୍ଟି ।
ଶାଖାମାନ ତାର ଶୁଭ୍ର ଦିଶୁଥାଏ
ଝୁଲା ସମୂହରେ ଜଡ଼ି
କ୍ଲାନ୍ତ ରବିରଥ ଅଶ୍ୱ ମୁଖୁ ଫେନ
ପଡ଼ିଥିଲା କିବା ଝଡ଼ି ?
କଣ୍ଡୂଳ କପୋଳ ଘଷିବାରୁ ଆସି
ପ୍ରମତ୍ତ ମାତଙ୍ଗଗଣ
ମଦ-ଜଳଧାର ମୂଳରେ ତାହାର
ଲାଗିଥାଏ ଅନୁକ୍ଷଣ ।
ବେଢ଼ି ବସିଥାନ୍ତି ତହିଁ ଅଳିକୁଳ,
ଦେଖି ସ୍ୱର ହୁଏ ମନେ
ରହିଛି ସେ ଅବା ବନ୍ଦୀଙ୍କ ଲୌହ
ଶିକୁଳି ଦୃଢ଼ ବନ୍ଧନେ ।
ଥରେ ଥରେ ଦେବ ! ବାତେ ଅଳିକୁଳ
ହୋଇବାରୁ ବିଚଳିତ

ସେ ଲୌହ ଶିକୁଳି ତୁଳସ ପତ୍ରେ
ତୁରନ୍ତୁ ହୁଏ ପ୍ରତୀତ ।
ଦଣ୍ଡକ ଅରଣ୍ୟ ନିବାସିନୀ ବନ
ଦେବତା ସୌଧ ବିଶାଳ
ପ୍ରକାଣ୍ଡ ଘନ ଶ୍ୟାମଳ ବ୍ରତତୀ
ବିଜଡ଼ିତ ଶାଖାମାଳ ।
ସେ ଶାଲ୍ମଳୀ ତରୁ ଶୃଙ୍ଗୁଆ ପତ୍ରେ
ବହୁତ ସ୍ଥାନ ଅବୋର
ଦୂରଦର୍ଶୀ ହୋଇ ରହିଛି ସକଳ
ପାଦପଙ୍କ ପ୍ରଭୁ ପର ।
ହେ ସ୍ୱଜନ ତାର ଜୀର୍ଣ୍ଣ ସ୍ଥଳ ରନ୍ଧ୍ରେ
ସ୍ୱପକ୍ଷ ପକ୍ଷମାନଙ୍କେ
ନିର୍ମିଣି କୌଶଳେ ବସା, ରହୁଥିଲେ
ବିହଙ୍ଗ କୁଳ ନିଃଶଙ୍କେ ।
ଦୁଢ଼ାଗଛ ଫଳ ପକ୍ଷ ମାସ ସଦା
ବସିବାରୁ ପକ୍ଷୀଦଳ
ବହଳ ପଲ୍ଲବେ ପୂର୍ଣ୍ଣ ହେଲା ସ୍ଥାନେ
ଦିଶଇ ସଦା ଶ୍ୟାମଳ ।
ବିହଙ୍ଗ ନିକର ନିଜ ନିଜ ନୀଡ଼େ
ସୁଖେ ରଜନୀରେ ରହି
ଖାଦ୍ୟ ଖୋଜିବାକୁ ଦିନେ ଉଡୁଥାନ୍ତି
ନଭେ ଦଳ ଦଳ ହୋଇ ।
ଜଣା ଯାଉଥାଏ ସେକାଳେ ତୁଳୀଙ୍କ
ଲାଙ୍ଗଳର ଆକର୍ଷଣେ
ଯମୁନା ନଦୀର ବିକୀର୍ଣ୍ଣ ପ୍ରବାହ
ବହୁଳ ପର ଗଗନେ ।
ଶ୍ରେଣୀବଦ୍ଧ ହୋଇ ଆକାଶେ ଉଡ୍ଡୀନ
ସେ ପକ୍ଷୀ ପନ୍ତିର କାନ୍ତ
ଉପୁଜାଉଥିଲା ଗଗନ ଗଙ୍ଗାରୁ
ଚ୍ୟୁତ ପଦ୍ମଲତା ଭ୍ରାନ୍ତ ।

ପ୍ରକାଶିତ ହୋଇ ନଭେ ସେମାନଙ୍କ
ହରିଦ୍‌ବର୍ଣ୍ଣ ପ୍ରଭାଜାଲ
ବିସ୍ତୁଥିଲା ବେଗେ ଧାଇଁଲା ପଶ୍ଚାଏ
ରବିରଥ ଅଶ୍ୱମାଳ ।
ଭୁଞ୍ଜୁଥିଲେ ଖଗେ କେବେ ଶଷ୍ପଗୀଳ
ମରକତ ଭୂମିଶୋଭା
କେବେ ବ୍ୟୋମସର ଶୈବାଳ ସମ ସେ
ହେଉଥିଲେ ମନଲୋଭା ।
କେବେ ବା କଦଳୀ ପତ୍ର ପରି ତାଙ୍କ
ଶ୍ୟାମଳ ତେଣା ବାତରେ
ସୂର୍ଯ୍ୟ କରେ କ୍ଳାନ୍ତ ଜଗ୍‌ବଧୂମାନଙ୍କୁ
ବିଞ୍ଚୁଥିଲେ ଯତନରେ ।
ସ୍ୱ ବଦନ ଦେହ କାନ୍ତିରେ କେବେ ବା
ଅକାଶ ବର୍ଣ୍ଣକୁ ଖଣ୍ଡି
ଦେଉଥିଲେ ଦେବ ! ଶତ ଶତ ସ୍ତରୁ
ଇନ୍ଦ୍ର କୋଦଣ୍ଡରେ ମଣ୍ଡି ।
କୁରଙ୍ଗ ଶୋଣିତେ ପାଟଳ ଶାର୍ଦ୍ଦୂଳ
କରଜ ସମ ଥଣ୍ଟରେ
ନାନା ଖାଦ୍ୟ ଆଣି ରକ୍ଷା କରୁଥିଲେ
ସନ୍ତାନଙ୍କୁ ଯତନରେ ।
ବୃଦ୍ଧ ପିତା ମୋର ବାସ ବଟଥିଲେ
ସେ ତରୁ କୋଟର ତଳେ
ପ୍ରାଚୀନ ବୟସେ ଏକମାତ୍ର ପୁତ୍ର
ଥିଲି ମୁଁ ତାହାଙ୍କ କୋଳେ ।
ଜନ୍ମକାଳେ ଅହା ପ୍ରଖର ପ୍ରସବ
ବେଦନା ସହି ନ ପାରି
ଜନନୀ ଶୋକରେ ଭସାଇ ଯାଆନ୍ତେ
ପରଲୋକକୁ ବାହାରି ।
ପ୍ରେୟସୀ ବିରହ ଦୁଃଖେ ଜନକଙ୍କ
ହେଲେହେଁ ମନ ବିଧୁର

ମୋତେ ଦେଖି ମୋର ସ୍ନେହେ ସେହୁ ଶୋକ
ମନ୍ତୁ କରିଥିଲେ ଦୂର ।
ଅତି ବୃଦ୍ଧ ହେତୁ ଲୋମମାନ ଖସି
ବେନ ପକ୍ଷୁଁ ପିତାଙ୍କର
ହୋଇଥିଲା ତାହା କୁଶରେ ନିର୍ମିତ
ପ୍ରାଚୀନ ବସ୍ତ୍ର ପ୍ରକାର ।
ଖଣ୍ଡି ଉଡ଼ାଦେଇ କଷ୍ଟେ ପାରୁଥିଲେ
ଚଳାଇ ପକ୍ଷ ଯୁଗଳ
ଦଣ୍ଡୁଥିଲା ଚଞ୍ଚୁ ଶେଫାଳିକା ଫୁଲ
ବୃନ୍ତପରିଏ ପିଙ୍ଗଳ ।
ବହୁକାଳ ଧାନ ଖୁଣ୍ଟି ଖୁଣ୍ଟି ଛିଡ଼
ଯାଇଥିଲା ଅଗ୍ରମୂନ
ସତେକି କରକା ପାତେ ହୋଇଥିଲା
ପଲାଶ କୁସୁମ ଲୂନ
ଅସମର୍ଥ ହୋଇ ଖାଦ୍ୟ ଅନ୍ୱେଷଣେ
ଅନ୍ୟତ୍ର ଭ୍ରମିବା ପାଇଁ
ଅପର ପକ୍ଷୀଙ୍କ ବସାରୁ ପତିତ
ତଣ୍ଡୁଳ କଣା ଠୂଳାଇ ।
ନିଜ ଶେଷ ରଖି ଖାଇବାକୁ ମୋତେ
ଦେଉଥିଲେ ସସ୍ନେହରେ
ମୋରଠାରୁ ଯାହା ବଳୁଥିଲା ତାହା
ଖାଉଥିଲେ ସନ୍ତୋଷରେ
କୋଠର ଭିତରେ ରହୁଥିଲି ମୁହିଁ
ସଦା ତାହାଙ୍କର କୋଳ
ଅତ୍ୟନ୍ତ ବାଳକ ହେତୁ ଉଠିବାର
ନଥିଲା ଷଲେ ଶକଠ ।
କେବଳ କୋମଳ ତେଣା ମାନଙ୍କରେ
ଗଜା ହେଉଥିଲା ପର
ମାଂସପିଣ୍ଡ ପରି ଦେଖାଯାଉଥିଲା
ଲୋମଶୂନ୍ୟ ଦେହ ମୋର

ଝିପିଦରୁ ତାତ ରଖୁଥିଲେ ସଦା
ଯୁଗଲ ପକ୍ଷେ ଅଦୋଷ
ଧୂଳି ତାଙ୍କୁ ଅରୁ ଯାନକୁ ଯେମନ୍ତ
ବଞ୍ଚାଏ ପଙ୍କ ପ୍ରକୋଷ (୧)

---

(୧) ମଡ୍‌ଗାର୍ଡ Mud guard.

# ଦ୍ୱିତୀୟ ସର୍ଗ

ପୂର୍ଣ୍ଣିମା ନିଶାନ୍ତ,      ଉଷାଲୋକେ ହେଲ
ପ୍ରାଚୀଦିଗ ସମୁଜ୍ଜ୍ୱଳ
ବୃଦ୍ଧ କୁରଙ୍ଗର      ଲୋମସମ ପାଣ୍ଡୁ
ଶଶିଙ୍କ ଚରମାଚଳ ।
ସ୍ୱର୍ଗଚ୍ୟୁତ ହୋଇ      ସିନ୍ଧୁଜଳେ ଡେଇଁ
ପଡ଼ନ୍ତେ ତାଙ୍କ ସଙ୍ଗାଳ
ପେଶ୍ୱରବ ଛଳେ      ପଶ୍ଚିମେ ସେମନ୍ତ
ପଡ଼ିଲା କାନ୍ଦବୋବାଳ ।
ଗର୍ଭବତୀ ପ୍ରାଚୀ      ଏଣେ ସେହିପର
ରବିଙ୍କୁ ପ୍ରସବ କରୁ
ଶଙ୍ଖ ହୁଳହୁଳି      ଶୁଭିଲା ଭ୍ରମର
କୁକ୍କୁଟକୂଳ ମୁଖରୁ
ପଦ୍ମମଧୁ ବୋଳା      ହଂସପର ଜଳେ
ପହଁରିଲେ କଳାକର
ଗଜ ରକ୍ତେ ଲାଲ      ସିଂହ ମୁଖସମ
ଉଦିଲେ ନବ ଭାସ୍କର
ତପ୍ତଲକ୍ଷା ସୁତା      ସମାନ ସଜତା
ସ୍ନିଗ୍ଧ କର-ଗଞ୍ଜୁଣୀଙ୍କ
ଆକାଶ ପଥରୁ      ପରସ୍ପର କଷ
ଫାଙ୍କେଇ ତାରାବଳୀଙ୍କ ।
ଉଷା ବନ୍ଦିବାକୁ      ଉତ୍ତର କଣରୁ
ଓହ୍ଲାଇଲେ ଧୀରେ ଧୀରେ
ସପ୍ତର୍ଷି ମଣ୍ଡଳ      ପ୍ରବେଶିଲେ ଆସି
ମାନସରୋବର ତୀରେ ।
ଉନ୍ମୀଳିତ ହେଲେ      ଶୁଭ୍ରମାନେ ଦୂର
ପଶ୍ଚିମସିନ୍ଧୁ ବାଲିରେ
ସେ ଶୁଭ୍ର ମଧ୍ୟରେ      ସ୍ନାତ ସମୁଜ୍ଜ୍ୱଳ
ମୁକ୍ତାସକ୍ତ ସ୍ୱ ଜ୍ୟୋତିରେ ।

ପୁଲିନ ଦେଶକୁ ଶୁଭ୍ରବର୍ଣ୍ଣେ ରଞ୍ଜି
ହୋଇବାରୁ ପ୍ରକାଶିତ
ପ୍ରତେ ହେଉ ପଡ଼ି- ଥିଲେ କି ତାହାଏ
ସ୍ୱର୍ଣ୍ଣଜରେ ହୋଇ କ୍ଷିପ୍ତ ।
ପାଦପ ପଲ୍ଲବୁଁ ଟପ ଟପ ହୋଇ
ଖସିଲା ନିଶା ଶିଶିର
ଅରଣ୍ୟ ପ୍ରଦେଶ କମ୍ପାଇ ମଧୁର
ସ୍ୱର ଶୁଭିଲା ଶିଖୀର ।
ନବୀନ ସୂର୍ଯ୍ୟଙ୍କ ଉଦ୍ଦେଶ୍ୟେ ତରୁଏ
ପତ୍ରଯୁକ୍ତ ଅଞ୍ଜଳିରେ
କୁସୁମଚନ୍ଦନସିକ୍ତ ଫୁଲରେ ତାହାଙ୍କୁ
ପୂଜିଲେ ଯଥାବିଧିରେ ।
ବନଦେବତାଙ୍କ ଅଟ୍ଟାଳିକା ଶିରେ
ଧାର୍ମିକର ଧ୍ୱଜବତ
ହୋମଧୂମ ଉଠି ଅନ୍ତରୀକ୍ଷେ ହେଲା
ମନ୍ଦବାତେ ଇତସ୍ତତଃ ।
ପ୍ରଫୁଲ୍ଲ କମଳ କାନନ କମ୍ପାଇ
ସାନ୍ଦ୍ର ଭ୍ରମରଶ୍ରେଣୀ ବନ୍ଧୁ
ରବିଙ୍କ ଉଦୟ ସମାଚାର ପ୍ରତି
ପୁଷ୍ପକର୍ଣ୍ଣେ କହି କହି ।
ସୁହାସେ ମୁଖରୁ ଝାଳଲବ ମୋଚି
ଶ୍ରାନ୍ତ ଶବରୁଣୀଙ୍କର
ନମ୍ରଇ ଏବଧ— ରଙ୍ଗେ ପଲ୍ଲବିତ
ବ୍ରତତୀ ତରୁନିକର ।
ମଧୁପମାନଙ୍କୁ ମଜାଇ ମଧୁର
କୁସୁମଗନ୍ଧେ ଅଧୀରେ
ବହିଲା ପ୍ରଭାତ ଶୀତଳ ସମୀର
ମନ୍ଥପାଇ ! ସବିଧିରେ ।
ଉଷାସଙ୍ଗ ଛାଡ଼ି ଦକ୍ଷିଣ ନାୟକ
ପସ୍ୱଏ ଦେବ ତପନ

କ୍ରମେ ନଭେ ଉଠି        ଚୁମ୍ବିଲେ ସୁରଭ
ଜଗବଧୂର ବଦନ ।
ଅର୍ପିସି ତା ପରେ        କନକ ଉଦୟା—
ଚଳକୁ ମାର୍ଜିତ କରେ
ସେ ଶିଖଣ୍ଡୀ ଜାତ        ଲତାକାନନକୁ
ଆଲିଙ୍ଗିଲେ ପ୍ରେମଭରେ ।
ଭ୍ରମର ଗୁଞ୍ଜନେ        ରସାଇ ପୁଷ୍ପିତା
ନଳିନୀକୁ ଅନୁରାଗେ
ଧୀରେ ଧୀରେ ଖସି        ବିରାଜିଲେ ଉର୍ଦ୍ଧ୍ୱ
ଧରଣୀର ତଳସ୍ୱରେ ।
ଉଠାଇବା ଲାଗି        ଶସ୍ୟନ୍ତୁ ଯମୁକୁ
ଗାଆନ୍ତି ଯେମନ୍ତ ସ୍ତବେ
ତେତେ ପଦ୍ମାକରେ        ଗୁଞ୍ଜରି ଗୁଞ୍ଜନ
ଭ୍ରମରେ ଗର୍ଜିଲେ ଅନ୍ଧେ ।
ଉଲ୍ଲାସେ ଭ୍ରମିଲେ        ଏଣେ ତେଣେ ଉଠି
ଅରଣ୍ୟର ପ୍ରାଣୀଗଣ
ପମ୍ପା ସରୋବରେ        ବଢ଼ିଲା ହଂସଙ୍କ
କର୍ଣ୍ଣରସାୟନ ସ୍ୱନ ।
କରତାଳ ପ୍ରାୟ        ମତ୍ତ ଗଜଙ୍କର
ମନୋହର କର୍ଣ୍ଣ ତାଳେ
ଉତ୍ପୁଚ୍ଛେ ନାଚିଲେ        ନୀଳକଣ୍ଠ କୁଳ
ଫେରି ଫେରି ସେହି କାଳେ ।
ଖାଦ୍ୟ ଖୋଜିବାକୁ        ବିହଙ୍ଗେ ଗଲେ
ଦିଗ ଦିଗନ୍ତରେ ଉଡ଼ି
ଶିଶୁମାନେ ତାଙ୍କ        ନିଜ ନିଜ ନୀଡ଼େ
କାନ୍ଦିଲେ ଆହାର ଲୋଡ଼ି ।
ସହସା ସେକାଳେ        ଉଠିଲା ଭୀଷଣ
ମୃଗୟାର କୋଳାହଳ
ଶୁଣି ମହାଭୟେ        କମ୍ପିଲେ କାନନ
ନିବାସୀ ପ୍ରାଣୀ ସକଳ ।

ପକ୍ଷ ପବନରେ ଭମାଇ ଗଗନ
ଉଡ଼ିଲେ ପକ୍ଷୀ ନିକର
ଘର୍ଘର ଶବ୍ଦରେ ଶୁଭିଲା ବସନ୍ତ-
ମାନଙ୍କ ଘୋଷାର ସ୍ୱର ।
ସୁପ୍ତୋତ୍‌ଥିତ ଶିର ଗୁହ୍ୱେ କେଶରୀର
ଆକର୍ଣ୍ଣି ଗର୍ଜ୍ଜିର ନାଦ
ଜନନୀ ସନ୍ନତେ କସି ଶିଶୁମାନେ
ଗଣିଲେ ମହାପ୍ରମାଦ ।
ପୁଷ୍ପରୁ ଉଡ୍ଡୀନ ଇତସ୍ତତଃ ଅଳି—
ମାନଙ୍କ ତୀବ୍ର ଝଙ୍କାରେ
ସେ ଉତ୍କଟ ଶବ୍ଦ ଚୌଦିଗେ ଚହଳେ
ବ୍ୟାପିଲା ଭୂମୁଳାକାରେ ।
ଶିବଜଟା ଭ୍ରଷ୍ଟା ଭଗୀରଥୀ ସ୍ରୋତ
ପରାଏ ମୃଗଯୂଥ ଦ୍ରୁତ
କାନନ ଭ୍ରମାଇ ଅଗ୍ରସର ହେଲ
ସମ୍ମୁଖରୁ ଦୂର ଦୂର ।
ସେ ଅଶ୍ରୁତପୂର୍ବ ତୀବ୍ର କୋଳାହଳେ
ଭୟରେ ବ୍ୟାକୁଳ ହୋଇ
ପିତାଙ୍କ ଶିଥିଳ ପକ୍ଷଯୁଗଳର
ଭିତରେ ଲୁଚାଇ ମୁହିଁ ।
ସାରଥି ଇସାରେ ମାଡ ସମୁଲ୍ଲାସେ
ନିପୁଣ ଶିକାରୀଗଣ
ଅଭିଜ୍ଞତା ବଳେ ଏରୂପ ବଢଧ
ଟାଣ୍ଡି କଲେ ଅନ୍ୱେଷଣ ।
କାଦୁଅ ଜର୍ଜ୍ଜର ପଦ୍ମ ପଦ୍ମଲତା
ଦେଖି ବୁଝିଲେ ସେମାନେ
କାନନ କୁଞ୍ଜର— କୁଳ ଖେଳୁଥିଲେ
ସକଳ ବୋଲି ଏ ସ୍ଥାନେ ।
କାହିଁ ପୁଷ୍କରଣୀ ପାଖେ ପଡ଼ିଥିବା
ମୁଣ୍ଡା ଖଣ୍ଡମାନ ସହିଁ

ସ୍ୱଚ୍ଛଳେ ଶୂକରେ ମୂଳ ଖାଉଥିଲେ
ଦନ୍ତରେ ଏଥୁ ଉଠାଇ ।
ସ୍ୱର୍ଗେ ପଡ଼ିଥିବା ଛଳଛଳ ମୃଦୁ
ଶଲ୍ଲକୀ ବୃକ୍ଷର ବାହ
କରୀ ଶାବକର କ୍ରୀଡ଼ାସ୍ଥଳ ହୋଇ
ତାହାଙ୍କୁ ଦେଇ ଚନ୍ଦାଇ ।
ପଦ ଦଳିତ ଧୂଳି ଜର୍ଜ୍ଜରିତ
ଭଗ୍ନ ବେଣୁଅ ଦଣ୍ଡାଟି
ବହୁଳ ମହିଷ ଶିଙ୍ଗ ମାରି ମାରି
ଏଥି ଖେଳିଅଛି ମାଟି ।
ମଦ ସୌରଭରେ ବସିଥିଲେ ବେଢ଼ି
ବୃକ୍ଷରେ ଭ୍ରମରଗଣ
ଦେଖି ଜାଣିଲେ ସେ ଗଣ୍ଡ ଘଷିଥିଲେ
ଏଥିରେ ମତ୍ତବାରଣ ।
ପତେ ପଡ଼ିଥିବା ଥୋପା ଥୋପା ଫେନୁଁ
ଅନାୟାସେ ନେଲେ ଜଳ
ଫେନଯୁକ୍ତ ଜଳ ମୃଗ ସେମନ୍ତ୍ରୁ
ଖସିପଡ଼ିଅଛି ହୋଇ ।
ଘନଘୋଷନଭ ସ୍ୱନ ଉଦ୍ବୋଧକ
ଭୃଙ୍ଗରବୂଳର ରଡ଼
କଣ୍ଠଦେଶ ସିଂହ ଅଦାରୁଛି ସେପେ
ତାଙ୍କ କୁମ୍ଭଦେଶେ ଚଢ଼ି ।
ହୃଷ୍ଟୁଗମାନଙ୍କ ସ୍ପର୍ଦ୍ଧି ସ୍ୱରସହ
ଶାଖାମୃଗଙ୍କ ହୁଙ୍କାର
ସୁବୁଦ୍ଧିଲ ତାଙ୍କୁ ଏଥିରେ ଶ୍ୱାପଦେ
କରନ୍ତି ସଦା ସଞ୍ଚାର ।
ତଳରେ ଲଲ୍ଲଥି ପାଦପ ଡାଳରେ
ଅନେକ ବନ୍ଧ ଶକୁନି
ସ୍ୱଚ୍ଛଳେ ଶାର୍ଦ୍ଦୂଳ ମଢ଼ ରଖି ନଷ୍ଟେ
ଶୋଇଅଛି ହୋଇ ହୂନ ।

ହତହସ୍ତୀ ରକ୍ତେ        ପାଟଳ ବିକ୍ଷିପ୍ତ
ଗଜମୁକ୍ତା ଅଗଣନ
ନୀରବେ ଲୁଷିଲ        ଗମନାଗମନ
କରେ ତହିଁ ପଞ୍ଚାନନ ।
ରକ୍ତରେଖା ସହ        ବିଦଳିତ ତୃଣ
ଲତାଚକ୍ର ଅନୁମାନ
ଜାଣିଲେ ଏ ପଥେ        ଜୀବ ମାରି ବ୍ୟାଘ୍ର
ଦୂରକୁ ନେଇଛି ଟାଣି ।
ମୃଗ ହସ୍ତୀ ସିଂହ        ମହିଷ ଶୂକର
ଭଲ୍ଲୁକ ବ୍ୟାଘ୍ର ସମ୍ବର
ଚକ୍ଷୁ ଲକ୍ଷି ଲକ୍ଷି        ମହାଘୋର ସ୍ୱରେ
ଧାଇଁଲେ ଦୂରେ ସତ୍ୱର
ପଳାଇଲ, ଧାଇଁ—        ଅସ୍ତ୍ର, ଧର ଧର,
ଛେଦ ଛେଦ, ମାର ମାର
ଅବ ସ୍ୱମନାଦେ        ଅଟବୀ ହୋଇଲା
ଉଦ୍‌ବେଳିତ ବାର ବାର ।
ଅନନ୍ତ ବିଳମ୍ବେ        ସେ କାନନେ କେବ !
ଶୁଭିଲା ଦ୍ୱିଗୁଣେ ସ୍ୱନ
ବାଣରେ ଆହତ-        ହୋଇ ଗରଜିଲେ
କ୍ଷିପ୍ତସିଂହ, ମୃଗାଦନ ।
କ୍ରୋଧରେ ସ୍ୱ ଦନ୍ତ        ବଣିଷ୍ଟ ହୋଇଣ
ଶିକାରୀମାନଙ୍କୁ ତଡ଼ି
ଘୋରଘାର ପିଟି        ଭୂମିରେ ପ୍ରଚଣ୍ଡେ
ହାତୀଏ ଘଡ଼ିଲେ ବଡ଼ ।
ଚପଳ କୁକ୍କୁର—        ମାନଙ୍କ କଣ୍ଠରେ
ବିଷମ ଯାତନା ପାଇ
କେଉଁ କେଉଁ ବେଗେ        ପୁଚ୍ଛ ଟେକି ମୃଗେ
ଚୌଦିଗେ ବୁଲିଲେ ଧାଇଁ ।
ନବଜାତ ଶିଶୁ—        ମାନଙ୍କୁ ହରାଇ
ଭଲ୍ଲୁକ ଗଣ୍ଡା ଗମୂଳ

ଫେର ଫେର ଫଳେ       ତୂଣୀଙ୍କ ସ୍ନେହରେ
ଜନ୍ମାଇଲେ ମହାରୋଳ ।
କର୍ଣ୍ଣଘାଏ ଠାଣି       ମୃଗୟୁ ନିକର
ବିନ୍ଧୁଥିଲେ ଖର ଶର
ଗଣ୍ଡାଗଣ୍ଡା ହୋଇ       ପଡ଼ୁଥିଲେ ଘୋର
ଶମ୍ବର, ମୃଗ, ଶୂକର ।
ଆହତ ଜନ୍ତୁଏ       ଧାଇଁଥିଲେ ଘରେ
ପ୍ରାଣ ଆଶା ପରିହରି
କ୍ଷିପ୍ତ କୁକୁରେ       ନାଶୁଥିଲେ ତାଙ୍କୁ
ରକ୍ତ ଚିହ୍ନ ଅନୁସରି ।
ଏରୂପେ ମୃଗୟା       ଶେଷେ କୋଳାହଳ
କ୍ଷଣିକାଳ ଗଲା ବନ୍ଦ
ଘୋର ବୃଷ୍ଟି ପରେ       ନିସ୍ତବ୍ଧ ପ୍ରକୃତ
ପରାଏ ହେଲା ଅଟବୀ ।
ମନ୍ଥନ ଶେଷରେ       ପ୍ରଶାନ୍ତ ସାଗର—
କ୍ଷୋଭ ବହୁ ସେ କାନନ
ବନଚରଙ୍କର       ମନ୍ତ୍ର ମହାଭୟ
କଲା ଅପନୋଦନ ।
କି ବ୍ୟାପାର ଏହା       ଜାଣିବାକୁ ଦେବ ।
କୌତୁକ ହେବାରୁ ମନେ
ପିତାଙ୍କ କୋଡ଼ରୁ       ମସ୍ତକ ସେ ଟେକେ
ଚାଲି ଚାହିଁଲ୍ ତତ୍‌କ୍ଷଣେ ।
ଦେଖିଲ୍ ବାୟୁରେ       ଚଳିତ ତମାଳ—
ତରୁସମ ସାର ସାର
ଆସୁଥିଲେ ବନ—       ମଧ୍ୟରୁ ଅସଂଖ୍ୟ
କ୍ରମତ ସୈନ୍ୟ ବାହାର ।
ସହସ୍ରାର୍ଜୁନର       ବାହୁରେ ଚଳିତ
ଯଥା ନର୍ମଦାର ଜଳ
ଅବା ସ୍ୱରଭର       ଘନା ବଧବାଙ୍କ
ଦୁଃଖଦ ଶ୍ୱାସପଟଳ ।

କିବା ଭସ୍ମଙ୍କଣ     ତାଳ ରଙ୍ଗମାର
ସାମମାନ ପର୍ବତର
ଶବ ଗନ୍ଧବାହୀ     କି ଅବା ଭସ୍ମଦ
ଧୂମପନ୍ତ ଶ୍ମଶାନର ।
ଭୂମିକମ୍ପେ ଘନ—     ଘନ ଆନ୍ଦୋଳିତ
ଅବା ବୃଷ୍ଟ ଶିଳାମାଳ
ନଭ ଭଟକରେ     କିବା ସଂସ୍ଥାପିତ
ଅମାଅନ୍ଧକାରଜାଳ ।
ବିଚରଣଶୀଳ     କି ଅବା ଭୀଷଣ
କୃତାନ୍ତର ପରଜନ
ଅବା ରସାତଳ     ଦ୍ୱାରୁ ଉତ୍ଥିତ
ଉନ୍ମତ୍ତ ଦାନବଗଣ ।
କିଅବା ବିକୃତ     ବିଗଠ ମୁରତ
ମହୀର ସକଳ ପାପ
ଅବା ପୁଞ୍ଜୀଭୂତ     ମୁନିମାନଙ୍କର
ମୂର୍ତ୍ତିମନ୍ତ ଅଭିଶାପ ।
ସୈନ୍ୟସହ ଅବା     ଖର ଦୂଷଣର
ପିଶାଚମୂର୍ତ୍ତି ନିକର
କିବା ଏକତ୍ରିତ     ହାସପ୍ରଦ ଯେତେ
କଳିକାଳର କିଙ୍କର ।
ବନ୍ୟପଶୁ ନାଶ     ପାଇଁ ସମୁଦ୍ୟତ
ଅବା ଧୂମକେତୁଦଳ
ସୃଷ୍ଟି ଧ୍ୱଂସକାରୀ     ଅଥବା ପ୍ରଳୟ—
କାଳୀନ ମେଘମଣ୍ଡଳ !
କିଅବା ଧରଣୀ     ଧର୍ଷଣେ ଆଗତ
ମହାଭୂତଗଣବତ
ବିହୃତ କିସ୍ତ     ଆସୁଥିଲେ ଦେବ !
ଅନ୍ଧାର ଅରଣ୍ୟ ପଥ ।
ମାତଙ୍ଗ ନାମରେ     ଥିଲା ସେ ଶବର
ଦଳେ ଏକ ସେନାପତି

କଠିଣ ଲମ୍ବାରେ ଗଢ଼ା ହେମପର
ଦେହ ତାର ଦୃଢ଼ ଅତି ।
ସଜୁଥିଲା ଗଣ୍ଡେ କର୍କଶ କୁଟିଳ
ଅର୍ଦ୍ଧଧଳ ଦାଢ଼ିରେଖା
ମଦଧାରାବାହୀ କ୍ଷୁଦ୍ର କରୀ ପରି
ଯାଉଥିଲା ଦୃଷ୍ଟି ଦେଖା ।
କେଶରୀ ଗ୍ରୀବାରେ ଶରଦ ଯେସନ
ଗଜମଦେ ମ୍ଳାନ ଜଟା
କେସନ ସ୍କନ୍ଧରେ ବାର ହେଉଥିଲା,
କର୍କଶ କୁନ୍ତଳ ଘଟା ।
ସୁଥୂଳ ନାସିକା ସୁଦୀର୍ଘ ଲଲାଟ
ତାର ହେ ଭୂପାଳମଣି !
କର୍ଣ୍ଣଭୂଷା ପର ବାମ କର୍ଣ୍ଣେ ଏକ
ଦୋହୁଥିଲା ସର୍ପମଣି ।
ଲଲ ଦିଶୁଥିଲା ବାମଗଣ୍ଡ ସେହୁ
ମଣି କିରଣେ ମହିମା
ନବ ପର୍ଣ୍ଣେ ସଦା ଶୋଭିବାରୁ ତହିଁ
ଲଗିଥିଲା କି ରକ୍ତିମା ?
ସଦ୍ୟ ହତ ହସ୍ତୀ— ମାନଙ୍କ ଗଣ୍ଡରୁ
ମଦଜଳସିକ୍ତ ତୋଳ ।
ମଦଗନ୍ଧ ପର ସବୁରେ ମାତଙ୍ଗ
ଦେହେ ହୋଇଥିଲା ବୋଳ ।
ନବୀନ ତମାଲ ପଲ୍ଲବ ସଜ୍ଜିତ
କୃଷ୍ଣକାନ୍ତ ମଧୁକରେ
ମଦଗନ୍ଧେ ଅନ୍ଧ ହୋଇ ଭ୍ରମୁଥିଲେ
ଅଧୀରେ ତହିଁ ଉପରେ ।
ଶିଖୀ ଶିଖାମାଳେ ନିର୍ମିତ ସୁନ୍ଦର
ଛତ୍ରକ ଧରି କରରେ
ନାଶୁଥିଲେ ସେହୁ ଖରତପନର
ସନ୍ତାପକୁ ନିରନ୍ତରେ ।

ସେ ଗ୍ରାମ ମୁରନ୍ତ          ଦେଖି ବନଭୂମି
ଭୟେ ହୋଇ ଅସମ୍ଭାଳ
ପଲ୍ଲବ ବଟଣା          ବାଟେ ନାଶୁଥିଲେ
ସତେ କି ତା' ଦେହୁଁ ଝାଳ ।
ହରଣଙ୍କ ପାଳ—          ଗ୍ରନ୍ଥି ସାୟଂକାଳ
ସନ୍ଧିବ ରକ୍ତ ଲୋଚନ
ତସ୍କର ଭାବେ          ଭୟ ଜନମାଇଁ
ଘୂରୁଥିଲା ଅନୁକ୍ଷଣ ।
ବୃକ୍ଷ ପାର୍ଶ୍ୱବାହୁ          ବେନି ଶୁଣ୍ଡ ଦଣ୍ଡ
ସମାନ ସୁର ଗଜର
କୃଶ ହୋଇଥିଲା          ଅବିରତ ଶ୍ରମ
କରି କରି ତା ଉଦର ।
ବଳବାନ ଚାଳେ          ଚାଳୀ ମନ୍ଦରର
ଅସ୍ଥି ଶାଣଦିଆ ଶିଳା —
ପସ୍ୱଏ, ପ୍ରକାଣ୍ଡ          ବାହୁପିଖେ ଗାର୍ଣ୍ଣ
ଛତଢନ୍ତ ଦଣ୍ଡଥିଲା ।
ସାଜୁଥିଲା ବକ୍ଷ          ଝାଳକାନ୍ଦୁସର
ମୃଗରକ୍ତ ବନ୍ଦୁତୟେ
ଗଜ ମୁକୁତାରେ          ଗୁଞ୍ଜଫଳ ଗୁନ୍ଥି
ମଣ୍ଡିଥିଲା କି ହୃଦୟେ ?
ମଦ ସଲିଳରେ          ମଳିନ କଟିଙ୍କ
ଦଶନ ସ୍ତମ୍ଭ ସମାନ
କରାଳ ସଙ୍କାର          ରାଜୁଥିଲା ସ୍ଥୂଳ
ସୁବିଶାଳ ଉରୁମାନ ।
ନିଷ୍ଠୁର ସ୍ୱଭାବ,          ସବୁବେଳେ ଲଲାଟେ
ପ୍ରକଟ ହୋଇ ଭ୍ରୁକୁଟି
ଯାଉଥିଲା ଏକା          ବେଳେ ତହିଁ ଲମ୍ବ
ଛଡୋଟି ରେଖା ଉକୁଟି ।
ଦେଖି ହେଉଥିଲା          ପ୍ରତେ ତା' ବକ୍ତ୍ରେ
ଲୁଷ୍ଟ ହୋଇ କି ଭବାନୀ

ଏ ମୋର ଭକତ          ବୋଲି ଅଙ୍କିଥିଲେ
ସେ ରେଖା ହିଣଲେ ଠାଣି ।
ପିନ୍ଧି ଝୁଲୁଥିଲି          ଗେରୁ ମୃତ୍ତିକାରେ
କଷାଇ ମୋଟା ବସନ
ଗୋଡ଼ାଇ ଥିଲେ ତା          ପଛେ ପଛେ ଶ୍ୟାମ—
ମୂର୍ତ୍ତି ସାରମେୟଗଣ ।
ସେ ତାଙ୍କ କୁକ୍କୁର          କୁଳର ରସନା
ମୃଗୟା ଶ୍ରମେ ଓହ୍ଳଳ
ପଡେ ହେଉଥିଲି          ତହିଁ ରକ୍ତବିନ୍ଦୁ
ଥୋପି ପଡୁଅଛି ବୋଲି ।
ମୁଖ ମେଲି ଯୋଗୁ          ଦିଶୁଥିଲି ତାଙ୍କ
ଦନ୍ତରଶ୍ମି ଓଷ୍ଠାଧରେ
ଲଗିଥିଲି କିବା          ସିଂହର କଣ୍ଠାରୁ
ପୁଞ୍ଜାଏ ରକ୍ତ ଦବରେ ।
ବନ୍ୟ ବରାହର          ପଛରେ ଗୋଡ଼ାଇ
ଧରିବାରୁ ଅବିରତ
ଦେହ ହୋଇଥିଲି          ସେ ଶୂକର ତୀକ୍ଷ୍ଣ
ଦନ୍ତରେ କ୍ଷତ ବିକ୍ଷତ ।
ଆକାରରେ କ୍ଷୁଦ୍ର          ହେଲେହେଁ ଏସମାନେ
ମହାବଳ ଥିଲେ ଧର
ଜଣା ଯାଉଥିଲେ          ଜଠାଗ୍ନିନ ସ୍ୱାନ
ସିଂହ ଶାବକର ପରି ।
ହରିଣ ପତ୍ନୀକୁ          ଅସମୟେ ଦେଇ
ଅକ୍ଷମ ବୈଧବ୍ୟ ଯାତ୍ନା
କରୁଥିଲି ସେହି          ଶ୍ୱାନଙ୍କ ସହିତ
ମାତଙ୍ଗ ମୃଗୟା ଶିକ୍ଷା ।
କରିତପତିକୁ          ଘେରି ଗୁଳୁଥିଲେ
ଆରମ୍ଭେ ବନ୍ଧ କରିତ
ତାଙ୍କ ମଧ୍ୟ କେତେ          ମୃଗଶିଙ୍ଗ କେତେ
ବହୁଥିଲେ ହାତୀଦନ୍ତ ।

ମଧୁ ରଖିବାକୁ        ଘେନଥିଲେ କେତେ
ନାରଙ୍ଗ ବାଉଁଶ ନଳ
କି ଅବା ଅନେକ        ଗଜ ମୁକ୍ତା ଧର
ନନ୍ଦୁଥିଲେ ସିଂହବଳ ।
ଅସୁରଙ୍କ ପରି        ବନ୍ଧୁଥିଲେ କେତେ
ସ୍କନ୍ଧରେ ଖର ମାଂସର
କେବା ନେଉଥିଲେ        ସଙ୍ଗେ ବହୁମୂଲ୍ୟ
ବ୍ୟାଘ୍ର ଚର୍ମ ଶାର୍ଦ୍ଦୂଳର ।
ଧରିଥିଲେ କେତେ        ସୁଦୃଢ଼ ରସିରେ
ନର୍ମିତ ବାଗୁରାମାନ
ଆଦରେ ହୃଦରେ        ବସାଇଥିଲେ କେ
ବହୁଙ୍ଗ ବୈଶ୍ରି ଛଷ୍ଟାଣ ।
ଝୁଲାଇ ଥିଲେ କେ        ଷଣ୍ଢର ଗୁଣ୍ଡ୍ରୁର
ଲକ୍ଷ ଚାହୁଙ୍କର ଜଳ
ବାଘ ତଳେ ଯାକ        ଧରି ଆସୁଥିଲେ
କିଏ ବା କାଣ୍ଡିଆ ନଳ ।
ମୟୂର ପୁଚ୍ଛର        ଝୁଲୁଚୂଡ଼ା ଶୋଭ
ପାଉଥିଲା କାହା ଶିରେ
ବଳଦୃପ୍ତ କର        ଲଗ୍ନ ଥିଲା କାହା
ସୁବିଶାଳ ଧନୁଗରେ ।
ଅସୁଥିଲେ ହୁଙ୍କେ        ପାପର ସୋଦର
ବଳର ସାରଥି ସରି
ଦେଖି ମୁଁ ଭାଳିଲି        ଏହାଙ୍କର ସିଦ୍ଧ
ଘୃଣ୍ୟ ଭବେ ପଶୁପର ।
ଜଗତେ ଯାହାକୁ        ଅମଙ୍ଗଳ ବୋଲି
କରନ୍ତି ଦୁର ସଜ୍ଜନ
ସେ ସକଳ ସିନା        ଅଟେ ଏମାନଙ୍କ
ପୁରାଣେ ଶୁଭ ଲକ୍ଷଣ ।
ପ୍ରାଣୀ ହତ୍ୟା ଅଟେ        ବଚନ ବ୍ୟାୟାମ,
ଶାସ୍ତ୍ର ପାଠ ଶିବାସ୍ତର,

ଶବର୍ହିଂସା ବୃତ୍ତି, ଶଙ୍ଖ ହଳହଳ
ପ୍ରେମାଳାପ ଭଲ୍ଲୁକର ।
କାକସ୍ୱର ଶୁଭ ଶକୁନ, ଉଦର
ପୂର୍ତ୍ତି ଧର୍ମ୍ମ ଅନୁଷ୍ଠାନ ।
ସଙ୍ଗୀ ସାରମେୟ, ସାମ୍ରାଜ୍ୟ କାନନ
ଉତ୍ସବ ମଦ୍ୟ ପାନ
ମିତ୍ର ଶରାସନ, ସହାୟ ସାୟକ,
ଗୀତ ପଶୁଙ୍କୁ ଛଳିବା,
ଭୂଷା ସର୍ପମଣି, କାହ୍ନାହୂର ସିନା
ପର ନାରୀକୁ ହରିବା ।
କ୍ରମଶଃ କ୍ଳାନ୍ତ— ପଣ୍ଡ ଅସି ଦେବ !
ଶାଲ୍ମଳୀ ବୃକ୍ଷ ତଳରେ
ଶରାସନ ଥୋଇ ତାଳ ପାରଦେଇ
ବସିଲା ତାର ଉପରେ ।
କ୍ଷଣକେ ତାହାର ଏକ ସହଚର
ସରରେ ପଶି ପହଁରି
ଅଣିଲା ଥୋକାଏ ସୁନିର୍ମଳ ଜଳ
କମଳ ଦଳରେ ଭରି ।
ସଲିଳ ସହିତେ ସାନ ସାନ ମୃଦୁ
ମୃଣାଳ ମାଳ ସଙ୍ଗେ
ଏକାବେଳେ ନେଇ ଜମା କଲା ସେହୁ
ଶବରପତିର ଆଗେ ।
ଜଳ ପିଇସାରି ସନ୍ତୋଷେ ଘେନ ସେ
ମୃଣାଳ ମାନ ଆଦରେ
ଭକ୍ଷିଲା ଆନନ୍ଦେ ନବ ଶଶିକଳା
ରାହୁ ଯଥା ଗ୍ରାସ କରେ ।
ସୁସ୍ଥ ହୋଇ କ୍ଷଣେ ସୈନ୍ୟଗଣ ମେଳେ
ମାଂସଭାର ସଙ୍ଗେ ଧରି
ପଶୁଶୂନ୍ୟ ବନୁଁ ଗୃହ ମୁଖେ ଗଲା
ପଥ ଚିହ୍ନ ଅନୁସରି ।

ତା'ସବୁ ନ ଯାଇ    କ୍ରୂରବ୍ୟାଘ୍ର ଏକ
ନିଷ୍ଠୁର ବୃଦ୍ଧ ଶବର
ମୃଗୟାରେ କିଛି    ନ ପାଇ ବୃକ୍ଷକୁ
ଅନାଇଲା ଥର ଥର ।
ତରୁର ଉପରୁ    ବିହଙ୍ଗକୁଳର
ଶୁଣି ଅସ୍ପଷ୍ଟ କାକଳୀ
କ୍ଷଣକେ ନିଷ୍ଠୁର    କଳ ନେଲା ଏଥି
ପକ୍ଷୀବୁ ଅଛନ୍ତି ବୋଲି ।
ମୂଢ଼ ଶିଖପାଏ    ଭ୍ରୁ କୁଟି କୁଟିଳ
ନେହରେ ଚାହିଁ ନିମିଷେ
ଏକାବେଳ ଆମ୍ଭ—    ମାନଙ୍କର ଅସ୍ଥି—
ଯାଉ ପିଉ ଦେଲା କି ସେ ?
ଶିଶୁଙ୍କ କୋମଳ    ମାଂସ ଲୋଭେ ଦୁଷ୍ଟ
ଶବର କ୍ଷଣ ମଧ୍ୟରେ
ଗୋଟି ଗୋଟି କରି    ପକ୍ଷୀବସା ସବୁ
ଗଣି ପକାଇଲା ଖରେ ।
ଉଠିବାକୁ ତହିଁ    ନିଃଶଙ୍କ ମନରେ
ଉଗ୍ର ହୋଇ ଅଲକ୍ଷଣ
ସେ ପାଦପ ମୂଳ—    ଠାରୁ ଅଗପାଏ
ଅନାଇଲା ଘନଘନ ।
ତାର କ୍ରୂରମୂର୍ତ୍ତି    ଦେଖି ପକ୍ଷୀଙ୍କର
ଭୟେ ପ୍ରାଣ ଗଲା ଉଡ଼ି
ବଜ୍ର ପତନରୁ    ବଳ ଭୟଙ୍କର
ଯିନା ଖ୍ୱମ ଚଡ଼ଚଡ଼ି ।
କରତାଳ ଶବ୍ଦ    ନ ଶୁଭିବାପାଏ
ସେ ବୃକ୍ଷ ଥିଲେହେଁ ଉଚ୍ଚ
ମେଘସ୍ପର୍ଶୀ ତାର    ଶିଖାକୁ ଶବର
ମନେ ମନେ କଲା ତୁଚ୍ଛ
ସୋପାନେ ଉଠିଲା    ପରି ଅନାୟାସେ
ତହିଁ ସେ କ୍ଷଣକେ ଚଢି

ପକ୍ଷ ନ ଥିବାରୁ ଯେଉଁ ଛୁଆମାନେ
ପାରୁଥିଲେ ନାହିଁ ଉଡ଼ ।
ଗୋଟି ଗୋଟି କରି ଫଳପରି ନଇ
ବସା 'ଭିତରରୁ ଝିଙ୍କି
ଚପି ଚପି ଦୁଷ୍ଟ ସେ ଶିଶୁମାନଙ୍କୁ
ଭୂମିତଳେ ଦେଲା ଫିଙ୍ଗି ।
ଅଳ୍ପ ଦିନ ଆଗେ ଡିମ୍ବରୁ ବାହାରି
କେତେ ଶିଶୁ ମନୋରମ
ଜନମାଇ ଥିଲେ ରକ୍ତବର୍ଣ୍ଣ ଦେହେ
ଶାଲ୍ମଳୀ କୁସୁମ ଭ୍ରମ
ନବ ପକ୍ଷମାନ ଗଜା ହୋଇ ଦେହେ
କେତେକ ଶୁକ୍ଳ ଶରୀର
ହୋଉଥିଲା ମୃଦୁ ଦଳବିମଣ୍ଡିତ
ଶୋଭିକୁ ପଦ୍ମ କଳିର ।
କେତେ ଅବା ଶିଶୁ— ଥିଲେ ରକ୍ତବର୍ଣ୍ଣ
ଅପକ୍ୱ ଫଳର ପରି
କୋମଳ ପକ୍ଷରେ କେତେ ନେଉଥିଲେ
କେକୀ କଣ୍ଠ କାନ୍ତି ହରି ।
ଅବିରତ ମୁଣ୍ଡ ଥରୁଥିଲା କାହା,
ଦେଖି ହେଉଥିଲା ପ୍ରତେ
ମସ୍ତକ ହଲାଇ ବାରୁଥିଲେ କିବା
ବ୍ୟାଧିକୁ ଅଛି ଆରତେ ?
ଅକସ୍ମାତ ସେହି ପ୍ରାଣନାଶକାରୀ
ବିପଦ ଦେଖି ଆଗରେ
କମ୍ପିଲା ଦ୍ୱିଗୁଣେ ପୂର୍ବଠାରୁ ମୋର
ପିତାଙ୍କ ହୃଦ ଭୟରେ ।
ଘୂରିଲା ସବେଗେ ତାହାଙ୍କ ଉଜ୍ଜଳ
ନେତ୍ର ଯୁଗଳର ତାରା
ଓଦାଇ ସର୍ବାଙ୍ଗ ଅପତ୍ୟ ସ୍ନେହରେ
ଅଶ୍ରୁଜଳ ବହିଗଲା ।

ପ୍ରାଣ ରକ୍ଷା ପାଇଁ    ବ୍ୟସ୍ତ ସପତନେ
ବୋଡ଼ ଦେଲେ ମୋତେ ଧର
ଶିଥିଳ ପକ୍ଷରେ    ସୁଦୃଢ଼େ ସର୍ବାଙ୍ଗ
ରଖିଲେ ସ୍ନେହେ ଆବୋର ।
ତମେ ଏକ ଡାଳୁ    ଅନ୍ୟ ଡାଳେ ଡେଇଁ
ପାପାତ୍ମା ଶବର ଖରେ
ଘୂର୍ଣ୍ଣ ଘୂର୍ଣ୍ଣ ଚକ୍ଷୁ    ପଲକେ ଅସିଲ
ଅମ୍ବର ତରୁ ଝୋଟରେ ।
କୃଷ୍ଣବର୍ଣ୍ଣ ଗଣ୍ଡ    ଭୁଜଙ୍ଗମୁ ବଳ
ଅତିଶୟ ଭୟଙ୍କର—
ଯମଦଣ୍ଡ ସମ    ପାର୍ଶ୍ୱବାହୁ ଦେଇ
ବସାରେ ଭର ଅମ୍ବର ।
ବନ୍ୟ ବରାହର    ପକ୍ୱ ମେଦ ପରି
ହାରୁ ଉଠୁଥିଲ ଗନ୍ଧ
ସଦା ଧନୁଗୁଣ    ଟାଣି ଟାଣି କ୍ଷତ
ହୋଇଥିଲ ମଣିବନ୍ଧ ।
ଉଠେ ରଡ଼ ରଡ଼    ସେ ଭୁଜରେ ପିତା
ଖୁମ୍ପୁଥିଲେ ମହାବଳେ
ତାଙ୍କୁ ହିଙ୍କି ନେଇ    ଛପି ଦେଇ ଦୁଷ୍ଟ
ପଳାଇଲ ତରୁ ତଳେ ।
ହେ ଦେବ ! ପିତାଙ୍କ    ଡେଣା ତଳେ ମୁହିଁ
ରହୁଥିଲି ବୃକ୍ଷେ ଜତ
ନ ପାରିଲି ଦେଖି    ପାଷଣ୍ଡ ଭୁତଳେ
ତାଙ୍କ ସଙ୍ଗେ ଗଲି ପଡ଼ି ।
ଭାଗ୍ୟେ ତଳେ ବଦ୍ଧ    ଶୁଖିଲି ପତର
ଗାଦରେ ପଡ଼ିଲି ଯାଇ
ଦୁର ପତନର    ଯୋଗେ ହାଡଗୋଡ଼
ଏଣୁ ଚୂନା ହୋଇ ନାହିଁ ।
ବାଳ ପକ୍ଷୀ ମାର    ସେ କ୍ରୂର କିରାତ
ହେଉଁ ହେଉଁ ଉପସ୍ଥିତ

ଲୁଣ୍ଠିବାକୁ ବ୍ୟସ୍ତ ପ୍ରଥମ ଉଦ୍ୟମରେ
ହୃଦ ହେଲା ଉତ୍କଣ୍ଠିତ ।
ସଦ୍ୟଜାତ ପକ୍ଷ ଯୁଗଳେ ଭୂତଳେ
ଧୀରେ ଧୀରେ ଦେଇ ଭର
ଏଣେ ତେଣେ ପଡ଼ି ପାଦେ ପାଦେ ହେଲି
ସମ୍ମୁଖକୁ ଅଗ୍ରସର ।
ଶିଳ୍ପ ସୋଦର, ବଳଗ୍ରମଙ୍କର
ମୃଣାଳ ଦୁକୂଳ ସମ
ନିକଟରେ ଥିଲା ଏକ ମନୋରମ
ଶ୍ୟାମଳ ତମାଳ ଦ୍ରୁମ ।
ବନ୍ୟକରୀ ମଦ ନୀରେ ଯେ ପାଦପ
ପଦ ହୋଇ ସଦା ସିକ୍ତ
ଜଣା ଯାଉଥିଲା ହେଲପର ତାହା
ଯମୁନା ଜଳେ ନିର୍ମିତ ।
ଶବରଣୀମାନେ କର୍ଣ୍ଣ ଅଳଙ୍କାର
କରନ୍ତି ଯାହାର ଦଳେ
ମଞ୍ଜୁଳେ ସୁଖେ ବୀଡ଼ା ଚଢ଼ୁଥିବେ
ଅଧରେ ଗଣ୍ଡ ମଣ୍ଡଳେ ।
ଉଦୟରେ ସୁଦ୍ଧା ଅଳଦାଳ ଯାର
ଭଣ୍ଟୁଥିଲା ଅନ୍ଧକାର
ଠୋପେ ଝାଳ ଯହିଁ ପ୍ରଚଣ୍ଡ ଗ୍ରୀଷ୍ମରେ
ହେଉ ନ ଥିଲା ବାହାର ।
ସ୍ନିଗ୍ଧଚ୍ଛାୟାପ୍ରଦ ପିତାର ପଦନ
କୋଡ଼ ସମ ଶାନ୍ତଦାୟୀ
ପଦେ ବଷି ସେହ ତମାଳ ତରୁର
ତଳରେ ଲୁଚିଲି ଯାଇଁ ।
ଦେଖିଲି ତହିଁ, ଗହିଁ ଅବସର
ସେ ବ୍ୟାଧ ମୃତ ପକ୍ଷତ—
ଶୁକ ଶାବକଙ୍କୁ ଘୁଣ୍ଟି ଘୁଣ୍ଟି କଲା
ଲତାସୂତ୍ରେ ଏକତ୍ରିତ ।

ପନ୍ଥ ପରେ ପନ୍ଥ ରଖି ଏକ ପାନ୍ଥ
ନିର୍ମିଣି ବେଗେ ଦୁର୍ଦ୍ଦାନ୍ତ
ସିନ୍ଧି ଦେଶ ପନ୍ଥେ ଭର ଅନାୟାସେ
ସେ ମାଂସପିଣ୍ଡ ପାଷଣ୍ଡ ।
ଝଦାଲତ ତୃଣ ସମ ଗଣୁଥିଲି
ମୋର କଳେବର କାନ୍ତ
ଚଳିତି ନୋହୁଥିଲି, ଶୁଷ୍କପନ୍ଥ ବୋଲି
ମନେ ଜନ୍ମୁଥିଲା ଭ୍ରାନ୍ତ ।
ଏଣୁ ସେ ପାମର ନ ପାରିଲା ମୋର
ଗତିବିଧି କିଛି ବାରି
ସେନାପତି ପଦ ଅନ୍ତ୍ରସର ଶୀଘ୍ର
କାନନ୍ତୁ ଗଲା ବାହାରି !
ଯେମନ୍ତ ହୋଇଲା ଜିଇଁବାର ଆଶା
ତେମନ୍ତ ଦୁଃସହତର—
ପିତୃନାଶଶୋକ ହୁତାଶନ ହୃଦେ
ଜଳିଲା ହୋଇ ପ୍ରଖର ।
ତାହାଙ୍କ ମଧୁର ସ୍ନେହ ଭାବ ସବୁ
ଘାଣ୍ଟି ହେଲା ସଦା ମନ
ଦରମର ହୋଇ ସ୍ମରି ସ୍ମରି ଦେବ !
କାନ୍ଦିଲି ବହୁକ୍ଷଣ ।
ଦୂର ପତନରୁ ଶରୀରେ ବିଷମ
ବ୍ୟଥା ରହୁଥିଲା ଭରି
ହେବେ ଶୋକେ କ୍ଳାନ୍ତ ଅବୟବ ମୋର
ଦୁଃଖେ ଯାଉଥିଲା ଥରି ।
ଇତିମଧ୍ୟେ ସେହି ପାପାତ୍ମା ଶବର
ଦୂରକୁ ଫିଙ୍ଗିଣି ବୋଲି
ଶିଥିଳ ନୟନେ ଚୌଦିଗେ ଚାହିଁଲି
ଭୟେ ଭୟେ ଶିର ତୋଳି ।
ମୃଦୁଳ ପବନେ ତାଳ ହଲୁଥିଲେ
ଭୟେ ପଡୁଥିଲା ମନ

ପୁଣି ଆସି ସେହୁ କ୍ରୂରମୂର୍ତ୍ତି ବ୍ୟାଧ
ପକ୍ଷୀଙ୍କ ବୋଲି ଭଣି ।
ତରୁ ତରୁ ଶେଷେ ସାହସେ ସଧୀରେ
ପଦେ ପଦେ ମାଡ଼ି ମାଡ଼ି
ଜଳ ପାଣେ ପିବା ପାଇଁ ବାହାରିଲି
ସେ ତମାଳ ତଳ ଛାଡ଼ି ।
ଉଠି ନ ଥିବାରୁ ପକ୍ଷ ଅନାସ୍ଥରେ
ଚରଣେ ଚରଣ ଜଡ଼ି
ଦେହର ସମ୍ମୁଖ ଭାଗ ଯାଉଥିଲା
ଉତ୍ତପ୍ତ ଭୂମିରେ ପଡ଼ି ।
ନବ ଅଙ୍କୁରିତ ତେଣାର କୋମଳ
ପକ୍ଷରେ ଦେଇ ନିର୍ଭର
ଆଗ ପଛ ପୁଣି ପାର୍ଶ୍ୱ ପତନରୁ
ରଖୁଥିଲି କଳେବର ।
ଭୂତଳେ ଗମନ କରି କରି ସେହି
ପରିଶ୍ରମରେ ଏକାନ୍ତ
ଅରେମାନ ପାଦେ ଚାଲି ଅନଭ୍ୟାସ—
ବଣେ ହେଉଥିଲି କ୍ଳାନ୍ତ ।
ଶୁଖି ଯାଉଥିଲା ଶୋଷେ କଣ୍ଠ, ପ୍ରାଣ
ହେଉଥିଲା ଥର ଥର
ଧୂଳି ଧୂସରିତ ଦେହେ ଅତି କଷ୍ଟେ
ଯାଉଥିଲି ନରବର !
ପଡ଼ିଲେ ହେଁ ଅତି ପ୍ରବଳ ଦାରୁଣ
ଦୁଃଖେ ଜଗତର ଜନେ
ନିଜ ପ୍ରିୟତମ ପ୍ରାଣ ତେଜିବାକୁ
କେବେ ନ ଭାବନ୍ତି ମନେ ।
ପ୍ରାଣଠାରୁ ବଳି ଏ ଭୂଖଣ୍ଡେ ଭୂପ !
ପ୍ରିୟତମ କେହୁ ନାହିଁ
କିଏ ନ ଇଚ୍ଛଇ ସର୍ବସ୍ୱ ହରାଇ
ପ୍ରାଣ ବଞ୍ଚାଇବା ପାଇଁ ।

ସ୍ନେହମୟ ପୁତ୍ର  ଜନକ ବିନାଶ
ପୁଣି ଘୋର ଦୁଃଖମାନ
ସହିଲି ସକଳ  ଧିନା ହେ ଭୂପାଳ !
ଏକା ରଖିବାକୁ ପ୍ରାଣ ।
ବିଷମ ତୃଷାରେ  ହୋଇଲି ଅସ୍ଥିର
ଶୁଖିଗଲା କଣ୍ଠନଳୀ
ପିତ୍ତ ନାଶ ମହା  କଷ୍ଟକୁ ପ୍ରବଳ
ପିପାସା ଗଲା ତ ବଳ ।
ଅନୁମାନ କଲି  ଅଚ୍ଛୋଦଲ୍ ମୋର
ଅତି ନିକଟରେ ସର
ଜଳଦେବୀଙ୍କର  ନୂପୁର ସସ୍ୱେ
ଶୁଣି ହଂସଗଣ ସ୍ୱର ।
ଶୁଭୁଥିଲା ଦୂରୁ  ସାରସ ପକ୍ଷୀଙ୍କ
ଅସ୍ପଷ୍ଟ ମଧୁର ରବ
ସୁରଭାଣେ ବହି  ହେଉଥିଲା ବାତେ
ପଦ୍ମବନର ସୌରଭ ।
ଦିବସର ଏହି  ସମୟ ଅଟଇ
ଅତିଶଯ୍ୟ ପୀଡ଼ାଦାୟୀ
ଉତ୍ତପ୍ତ ପବନ  ବହୁଥିଲା ଖରେ
ସତତ ଟୂଳ ଉଡ଼ାଇ ।
ଆକାଶ କେନ୍ଦ୍ରରୁ  ଖରେ ଚଣ୍ଡାଂଶୁର
ପ୍ରଚଣ୍ଡ କରପଟଳ
ଶୋଷି ଜଳରାଶି  ପ୍ରାଣୀଙ୍କ ପିପାସା
ବଢ଼ାଉଥିଲା କେବଳ ।
ନୋହୁଥିଲା ତଳେ  ସୌରକରେ ତପ୍ତ
ଧୂସର ଧୂଳିରେ ସ୍ଥଳି
ସହସ୍ର କରରେ  ଅନଳ ସ୍ଫୁଲିଙ୍ଗ
ଫିଙ୍ଗୁଥିଲେ କରମାଳ ।
ଅବସନ୍ନ ନେତ୍ରେ  ଅବନୀମଣ୍ଡଳ
ଦିଶୁଥିଲା ଅନ୍ଧକାର

ଅସମର୍ଥ ହେଉ— ଥିଲି ପଦ ବେନ
ବହିବାକୁ ଦେହ ଭର ।
ଭୁବଷ୍ଣାସେ ମୋର ମରିବାର ଅଛି
ବିଳମ୍ବ ତ ଥିଲା ନାହିଁ
ଏ ଦେହ ପିଞ୍ଜର ଛାଡ଼ି ପ୍ରାଣପକ୍ଷୀ
ଯାଉଥିଲାଣି ପଳାଇ ।
ଏକାଳେ ହରିତ ନାମେ ଶୁଦ୍ଧଚେତା
ଜାବାଳି ଋଷି ତନୟ
ସଖାଗଣ ସହ ସ୍ନାନ ପାଇଁ ତହିଁ
ସହସା ହେଲେ ଉଦୟ ।
ଅତ୍ୟନ୍ତ ତେଜସ୍ୱୀ ଦ୍ୱିତୀୟ ଅଗ୍ନିର
ସମ ସେ ଅକୁଣ୍ଠବନ୍ତ
ଯାଉଥିଲା ତାଙ୍କ ଶରୀର ଦୀପ୍ତିରେ
ଝଲସି ନେତ୍ର ସନ୍ତତ ।
ଗଢ଼ା ହୋଇଥିଲା ତପିଙ୍କ ଅଙ୍ଗ କି
ବିଜୁଳିର ଉପାଦାନେ
ଅଥବା ମାର୍ଜିତ ହେଉଥିଲା ସ୍ୱରୁ
ସ୍ୱମୀକର ମୂର୍ତ୍ତି ଶାଣେ ?
ନବଜ କାନନେ ସଞ୍ଚରଣଶୀଳ
ଦାବାନଳ ଶିଖାସମ
ବହୁଥିଲେ ଋଷି ମହିମାମୟ କାନ୍ତି
ଉଜ୍ଜ୍ୱଳୁଁ ଉଜ୍ଜ୍ୱଳତମ ।
ଦିଶୁଥିଲା ଅଙ୍ଗ ପିଙ୍ଗଳ ବରଣ
ମହୋଜ୍ଜ୍ୱଳ କଳେବର
ଖାଣ୍ଡବ ଅରଣ୍ୟ ଗ୍ରାସେ ଅଗତ କି
ଛଦ୍ମବେଶୀ ବୈଶ୍ୱାନର ?
ଆଗ୍ନେୟ ସ୍କନ୍ଧରେ ଉଦ୍ଦୀପ୍ତ ସକଳ
ଲମ୍ବା କାଠିକି ଧିକ୍କାର
ଲମ୍ବିଥିଲା ପୃଷ୍ଠେ ଗର୍ଜଜଳେ ପୂତ
ଜଟାଜାଳ ଯାର ଯାର ।

ମଠ ଅଧିଷ୍ଠାତ୍ରୀ ଦେବୀଙ୍କ ରଜତ—
କଣ୍ଠିପ୍ରାୟ ମନୋହର
ଲମ୍ବିଥିଲେ ଗଳେ ପାପ ତାପହାରୀ
ଜପମାଳ ତାହାଙ୍କର
ଶ୍ୱେତ ନବୃତ୍ତିର ଶନ ପର ଦୃଢ଼
ପ୍ରଶସ୍ତ ଚନ୍ଦ୍ରର ସମ
ଭସ୍ମରେ ଅଙ୍କିତ ତ୍ରିପୁଣ୍ଡ୍ରକ ଭାଲେ
ଶୋଭୁଥିଲା ମନୋରମ ।
ବାମେ ଝୁଲୁଥିଲା କମଣ୍ଡଳୁ ବଳ
ପଗ୍ରଏ ଗ୍ରୀବା ଉଠାଇ
ସ୍ୱର୍ଗେ ଯାଅ ବୋଲି କରୁଥିଲା କିବା
ଇଙ୍ଗିତ ମାଗ ଦେଖାଇ,
ସ୍କନ୍ଧେ ଝୁଲୁଥିଲା ସୂକ୍ଷ୍ମ ଯଜ୍ଞସୂତ୍ର
ପବନରେ ଅହରହ
ଗଣୁଥିଲା ସିନା ମାଂସହୀନ ଦେହେ
ଧବଳ ଅସ୍ଥି ନବକ ।
ଦକ୍ଷିଣ ହସ୍ତେ ସେ ସୁପକ୍ୱ ଦୀର୍ଘ
ପଲାଶର ଦଣ୍ଡ ଧରି
ଆସୁଥିଲେ ତହିଁ ଫୁଲପୁର୍ଣ୍ଣ ପଦ—
ପୂଜକ ନବେଶ କର ।
ଅନୁସରୁଥିଲେ ପଛେ ଆଶ୍ରମର
ମୃଗଗଣ ରହି ରହି
ମୁନଙ୍କ ମାଜଣା ନମତ୍ରେ ମୂର୍ତ୍ତିକା
ବିଶାଳ ଶୃଙ୍ଗାଗ୍ରେ ବହି ।
ବିଶାଳ ସ୍କନ୍ଧରୁ ଜଟା ଲମ୍ବୁଥିଲା
ବଟର ଚେର ଗ୍ରନ୍ଥିକ ।
ଲତାଡୋର ମଞ୍ଜୁ ମେଖଳା ପରାଏ
ଅବୋରଥିଲା କଟିକ ।
ମୋର ଦୁରବସ୍ଥା ଦେଖି ଅତି ଦୁଃଖୀ
ହେଲେ ସେ କରୁଣାମୟ

ପର ଯାତନାରେ    କେବେହ ନୀରବ
ହୁଅନ୍ତ ସାଧୁ ହୃଦୟ ।
ସ୍ପର୍ଶିଲେ ତରୁଣ—    ତଣ୍ଟେ "ଅନ୍ତସ୍ଥିଶୁ"
ପଠନ୍ତ ଏମ୍ନ ଶୁଣନ୍ତି
ଜଣାଯାଏ ଏହି    କାରଣ ବଶରୁ
ଭୂତଳେ ପଡ଼ଛି ଲୋଟି ।
ପକ୍ଷ ପଲ୍ଲ ତାକ    ଅଛି ଗଢ଼ବାକୁ
ଏହାର ଦେହୁଁ ଜୀବନ
ମୁହୂର୍ତ୍ତକୁ ପାର୍ଶ୍ୱ—    ନଶ୍ୱାସ ଛଡ଼ୁଛି
ଘୋଡାଇ ବେନ ନୟନ ।
ବାର ବାର ଆଗ—    ପାଖେ ପଡୁଅଛି
ଚଞ୍ଚୁପୁଟରୁ ମେଲାଇ
ଅବଶେ ଅସ୍ଥିର,    ଉପରକୁ ଆଜ
ମୁଣ୍ଡ ଟେକି ପାରୁ ନାହିଁ ।
ମୁମୂର୍ଷୁ ପକ୍ଷୀ    ଏତେବେଳଯାଏ
ଦେହରେ ଅଛି ଜୀବନ
ବଞ୍ଚିଲେ ବା ବଞ୍ଚୁ    ପାରଇ ଏକାଳେ
ଲଭିଲେ ଭଲ ଯତନ ।
ପିଣ୍ଡେ ପ୍ରାଣ ଥିବ    ଯେ ଯାଏ, ସେ ଯାଏ
ଇନ୍ଦ୍ରିୟେ ଥିବ ଶକତି
ସେ ଯାଏ ଉତ୍କଣ୍ଠା    କର୍ତ୍ତବ୍ୟ, କେ ବୁଝେ
କାଳର କୁଟିଳଗତି ।
ଏତେ ବୋଲି ଜଳ    ପିଆଇବା ପାଇଁ
ମୋତେ ଘେନ ସ୍ନେହଭରେ
ହରିତଙ୍କ ସଙ୍ଗେ    ପରଞ୍ଜପକାଶି
ତପସ୍ୱୀସୁତେ ଆଦରେ
ସରସେରେ ଆଣି    ଅବସନ୍ନ ମୁଖ
ଟେକି, ଚଞ୍ଚୁପୁଟ ଫେଇ
ଅଙ୍ଗୁଳି ଅଗ୍ରରେ    ଧୀରେ ତହିଁ ଦେଲେ
ବନ୍ଦୁବନ୍ଦୁ ଜଳ ନେଇ ।

ତାହାଙ୍କ ପ୍ରଭାବ ମାରପାଣେ ଫେମେ
ଚେତନା ହେଲି ଶରୀରେ
ଛଇତଳେ ମୋତେ ଥୋଇ ସେ ତପିଏ
ମହିଲେ ସରସୀ ମାରେ ।
ଗାଧୋଇ ପଖାଳି ଜଳାର୍ଦ୍ର ବଲ୍କଳ
ଖଣ୍ଡେ ପିନ୍ଧି ଖଣ୍ଡେ ଧରି
ପ୍ରଦୋଷେ ଚନ୍ଦ୍ରିକା— ଯୁକ୍ତ ସୂର୍ଯ୍ୟାଲୋକ
ଦିବ୍ୟ ସୁଷମାକୁ ହରି ।
ମୋତେ ଯେନ ତହୁଁ ପାଣିହାଡ଼ ଜଳେ
ଜଟାମଣ୍ଡଳରୁ ସୁଖେ
ମୋ ବପୁରେ ନାନା ଜଷାବାଣ୍ଡି ହୋଇ
ଗମିଲେ ସ୍ୱମଠମୁଖେ ।
ଅଳ୍ପଦୂର ଯାଇଁ ଦେଖିଲି ଅଗରେ
ପବିତ୍ର ଏକ ଆଶ୍ରମ
ନାନାଜାତି ତରୁ ନିକଟେ ବେଷ୍ଟିତ
ଫୁଲ ଫଳେ ମନୋରମ ।
ଚମ୍ପା ନାଗେଶ୍ୱର ବକୁଳ ତମାଳ
ରସାଳ ତରୁ ଅଗଣା
ସମାଧିରେ ମଗ୍ନ ଧାଡ଼ଧାଡ଼ ଯୋଗୀ
ପ୍ରାୟେ ଯାଉଥିଲେ ଜଣା ।
ନାରିକେଳ ଗଛେ ଜଡ଼ି ରହିଥିଲା
ମଞ୍ଜୁଳ ଏଲାଚି ଲଟି
ଯାଉଥିଲା ମନ୍ଦ ମୃଦୁଳ ଅନିଳେ
ଲବଙ୍ଗଲତା ଦୋହଲି ।
ଉଡୁଥିଲା ବାତେ ଦୂର ପାରୁସରେ
ଆମ୍ର ବଉଳର ଧୂଳି
ପଡୁଥିଲା ମଞ୍ଜୁ ଭ୍ରମର କୋକିଳ
ସ୍ୱରେ ସେ ବନ ଉଛୁଳି ।
ବିଶୁଥିଲା ମଠ ବେତସ କୁସୁମ
ପରାଗେ ପୀତ ବରଣ

ଗୁଆଗଛୁଁ ଫଳ ପଡୁଥିଲା ଝଡ଼
ଚଳେଇବାରୁ କପିଗଣ ।
ସରଜଲେ ମୁନି— କୁମାରଙ୍କ କୁମ୍ଭ
ପୂରଣର ଧ୍ୱନି ଶୁଣି
ଉତ୍ଫୁଲେ ଡେଣାଏ ମେଘନାଦ ମଣି
ନାଚୁଥିଲେ ପୁଣି ପୁଣି ।
ମୃତ୍ତିକା, ସମିଧ, କୁଶ, ଫଳ, ଫୁଲ
ତପସ୍ୱି ସୁତେ ଆହ୍ୱରି,
କାନନୁ ବାହୁଡ଼, ଦେଉଥିଲେ ସେଠୁ
ଆଶ୍ରମ ଅଗଣା ଭରି ।
ଯେଉଁ ଯେଉଁ କ୍ଷଣେ ଜଳୁଥିଲା ଖଟର
ହୋମକୁଣ୍ଡର ଅନଳ
ବାସି ଯାଉଥିଲା ହବିଃ, ଶମୀ-ପୁଷ୍ପ
ଗନ୍ଧେ ସେ ଆଶ୍ରମ ସ୍ଥଳ ।
ସଦା ଶୁଣି ମୋର କାଣ୍ଡଭ୍ରଇମାନେ
ଅହୂତର ମନ୍ତ୍ରସ୍ୱର
ଅଭ୍ୟାସ ବଶରେ ଉଚ୍ଚରେ ଉଚ୍ଚାରୁ—
ଥିଲେ ତାହା ଥରଥର ।
କାନନ କୁକ୍କୁଟେ— ବଳି ଖାଉଥିଲେ
ସୁଖେ ବୈଶ୍ୱଦେବ ଅନ୍ନ
ଭକ୍ଷୁଥିଲେ ବାଛି ତଳରୁ ନୀବାର
ଧାନ୍ୟ ହଂସଛୁଆଗଣ ।
ଚାଟୁଥିଲେ ସ୍ନେହେ ମୁନିକୁମାରଙ୍କୁ
କାହିଁ ମୃଗଶିଶୁମାଳ
ପଢ଼ୁଥିଲା କାହିଁ ପୁଷ୍ପ ଚନ୍ଦନରେ
ସୁରଞ୍ଜିତ ବାଲ ଗଲ ।
ସନ୍ଧ୍ୟା ବନ୍ଦନର ରବେ ଭଣୁଥିଲା
ଭୂତଳ କାହୁଁ ଲୋହିତ
କାହୁଁ ହୋଇଥିଲା ତପସ୍ୱୀମାନଙ୍କ
ଭୋଜନସ୍ଥଳ ଚର୍ଚ୍ଚିତ ।

ତାହିଁ ହେଉଥିଲା ପିତୃଶ୍ରାଦ୍ଧ ତାହିଁ
ଲାଗିଥିଲା ଦେବ ସେବା
ତାହିଁ ଧର୍ମଚର୍ଚ୍ଚା ଚଳୁଥିଲା ତାହିଁ
ହେଉଥିଲା ଦେବା ନେବା ।
ରୂପାହୋଇ ତାହିଁ ମାଟିରେ କୁଟୀର
ହେଉଥିଲା ପରିଷ୍କାର
ଚଢ଼ାଉଥିଲା ଦେବ ସେବା ଶେଷେ
ତାହିଁ ନଇବେଦ୍ୟ ତାର ।
ମୁଖେ ଜ୍ୱଳା ଯେନ ପରସ୍ପର ପର
ସଦୟେ ଶୃଗାଳ ଥାଟ
ଆଗେ ଆଗେ ଚାଲି ତାହିଁ ବା ଦେଖାଉ—
ଥିଲେ ତପସ୍ୱୀଙ୍କୁ ବାଟ ।
ବାନର ନିକର ଉପେକ୍ଷି ମନରୁ
ସ୍ୱାଭାବିକ ଚପଳତା
ଆହରି ଆଣନ୍ତି ପୂଜା ପାଇଁ ତାହିଁ
ଫଳ ଫୁଲ ପତ୍ର ଲତା
ବାଛୁରମାନଙ୍କୁ ଯଥାବିଧି ବାନ୍ଧି,
ଅତି ପ୍ରତ୍ୟୁଷରୁ ଉଠି
ଦୋହିଁ ସାର ଗାଈ— ମାନଙ୍କୁ ଦୁହାଇ
ଛଡ଼ୁଥିଲେ ଗୋଟି ଗୋଟି ।
ବଳିଷ୍ଠ ଭଲ୍ଲୁକେ ହିଂସ୍ରତା ବରଜି
ତାହିଁ ଅତି ଯତନରେ
ଖୋଳୁଥିଲେ ସ୍ୱାଦୁ କନ୍ଦମୂଳ ଫଳ
ବଦାର ତୀକ୍ଷ୍ଣ ନଖରେ ।
ଘୋଣା ସାହାଯ୍ୟରେ ବସେ ହେ ତାହିଁ ବା
ରଚୁଥିଲେ ଆଲବାଳ
ଶୁଣ୍ଢେ ବହି ବହି ଜଳ ଦେଉଥିଲେ
ତହିଁ ବନ୍ୟହସ୍ତୀମାଳ ।
ଡେଙ୍ଗାକୁଳ ତାହିଁ ଡେଣା ବନ୍ଧ ବନ୍ଧ
ତାହାର ବାୟୁବେଗରେ

ଜାଳୁଥିଲେ ମୁନି — ମାନଙ୍କ ସକଳ
ହୋମାନଳକୁ ପ୍ରଖରେ ।
ତପସ୍ୟା ପ୍ରଭାବେ ସଦା ଆନନ୍ଦେ
ପରସ୍ପରେ ପ୍ରାଣୀମାନେ
ବିବାଦ ବିରତ ମିତ୍ରଭାବେ ସୁଖେ
ମିଳିଥିଲେ ଏହି ସ୍ଥାନେ ।
ନୀଳପଦ୍ମ ବନ ସମାନ ମୟୂର
ପୁଚ୍ଛର ଚନ୍ଦ୍ରିକା ତଳେ
ରବି କିରଣରେ ତପ୍ତହୋଇ ଅହି
ରହିଥିଲେ ଜଳବଳେ ।
ନିଜ ଶିଶୁସହ ହରିଣ ଶିଶୁକୁ
କେଶରଣୀ ଚୁହୁହଲେ
ମହାଦରେ ସ୍ତନ୍ୟ— ପାନ ଦେଉଥିଲେ
ଅତ୍ୟନ୍ତ ସ୍ନେହବଶରେ ।
ଚନ୍ଦ୍ରରଶ୍ମି ସମ ଧବଳ ସିଂହର
ଜଠାରୁ ମୃଣାଳ ପରି
ହାତୀଛୁଆମାନେ ଟାଣୁଥିଲେ ଶୁଣ୍ଢ
ଶୁଣ୍ଢର ଅଗ୍ରରେ ଧରି
ପଶୁରାଜ ସିଂହ ବିଚଳିତ ନୋହି
ଥିଲେ ଏ ରଙ୍ଗରସରେ
ଅଶ୍ୱାସୀ ସଧୀରେ ନିମୀଳିତ ନେତ୍ରେ
ଢୁଳୁଁଥିଲେ ସ୍ୱପ୍ନରେ ।
ମଦାନ୍ଧ ହେଲେହେଁ ଏ ପୁଣ୍ୟାଶ୍ରମର
ପ୍ରଭାବେ ବନ୍ୟବାରଣେ
ଗଣ୍ଡେ ବସିଥିବା ଭ୍ରମରଙ୍କୁ ନାଶୁ—
ନଥିଲେ କର୍ଣ୍ଣତାଡ଼ନେ ।
ସଲିଳରୁ ଉଠି ବସିଥିଲେ ତାହିଁ
ଭେକେ ବସୁ ପରିହର
ତାହାଙ୍କ ଉପରେ ଟେକିଥିଲେ ଫଣା
ଫଣିବର ଛତ୍ରପରି ।

ସୁପ୍ତ ଶାର୍ଦ୍ଦୂଳର ଦନ୍ତରୁ ନିର୍ଭୟେ
ମାଂସ ଖଣ୍ଡ ଛଡ଼ାଇ
ରଙ୍ଗି ବୃଷମାନେ ତାର ନଖ ଧରି
ଖେଳ ହେଉଥିଲେ ତାହିଁ ।
ବତ୍ସସବେ ମିଳି ପାଣି ପିଉଥିଲେ
ତାଣ୍ଡବା ଦୃଢ ଗଣେ
ବସ୍ତ୍ର ସହିତ ତାହିଁ ଖେଳୁଥିଲେ
ମୂଷିକମାନେ ନାଗଙ୍କେ ।
ସଚେତନ ପ୍ରାଣୀ— ମାନବର କଥା
କରଇ ଗଣନା କେହୁ
ଭଲ, ମନ୍ଦ, ସୁଖ, ଦୁଃଖ ପାପ ସବୁ
ଅନୁଭବୁଛନ୍ତି ସେହୁ ।
ଅଚେତନ ହୋଇ ବନ୍ଧୁଳ ବସନା
ଆଶ୍ରମ ଯେତେକ ବଲ୍ଲରୀ
ଅଗ୍ନି ହୋତ୍ର ଲଭି ଧୂମେ ଭରୁଥିଲେ
ବ୍ରତଧାରଣୀର ପରି ।
କଳିର କଳ୍ମଷ ଛୁଇଁଥିଲା ନାହିଁ
ସେ ପୁଣ୍ୟାଶ୍ରମର ସୀମା
ପ୍ରବଳ ପ୍ରତାପୀ ଅନଙ୍ଗ ଦେବଙ୍କ
ନଥିଲା ତହିଁ ଗରିମା ।
ଯମରଜା ସୁଦ୍ଧା ପଶିବାକୁ ତହିଁ
ଭରସୁ ନଥିଲା ଭଲେ
ଦୁଃଖଦଗ୍ଧ-ହୃଦ ଶାନ୍ତି ଲଭୁଥିଲା
ସର୍ବଦା ସୁଧାସବଳେ ।
ଏହି ନବାଟନ ପବନ ମଠରେ
ରହିଣ ବାଣୀ ବରଦା
ମୁନିମାନଙ୍କର ବଦନ ସଂସର୍ଗ
ସୁଖେ ଲଭୁଥିଲେ ସଦା ।
କଳକାଳ ଭସ୍ମ ନରୁ ପାଶୋର
ଏଥି ଧର୍ମକ୍ଷେତ୍ର ଥାଇ

ତୁମେ ସୁଦ୍ଧା ସତ୍ୟ            ଯୁଗରୁ ସେ ପଥ
      କେବେ ସରୁଥିଲେ ନାହିଁ ।
ଆଶ୍ରମର ମଧ୍ୟ—            ସ୍ଥିତେଥିଲା ଏକ
      ମଞ୍ଜୁଳ ଅଶୋକ ତରୁ
ବାର ହୋଇଥିଲା            ଉପଚାରେ ଯାର
      ଅଳତା ଗାଢ଼-ରସରୁ ।
ଜଳପାତ୍ର ରଚ            ମୃଗଚର୍ମେ ପୁଣି
      ନାରିକେଳ ଖୋଳମାନେ
ନତ୍ୟକର୍ମ ଶେଷେ            ମୁନିଏ ଝୁଲଇ
      ରଖୁଥିଲେ ଯାର ଡାଳେ ।
ତପସ୍ୱୀ ବାଳାଏ            ତୁଳସୀ ଚର୍ଚ୍ଚର
      ଭରେ ପାଣି ଅଞ୍ଜଳରେ
ବନ୍ଧ ଆକାରେ            ଚନ୍ଦ୍ର ଦେଉଥିଲେ
      ଯାହାର ମୂଳସ୍ଥଳରେ ।
ବସନ ବୁଣିବା            ନିମନ୍ତେ ଲୁଣକୁ
      ସୂକ୍ଷ୍ମ ଆକାରେ ନିର୍ମାଣି
ସେ ତରୁ ଡାଳରେ            ସୂତେଇ ସେମାନେ
      ରଖୁଥିଲେ ସଦା ଠାଣି ।
ଗୋବର ପାଣିରେ            ଲିପା ହୋଇଥିଲା
      ଯାର ସ୍ନିଗ୍ଧ ଛାଇତଳ
ଦେବଗୋଷ୍ଠି ଯାକ            ବଣ୍ଟୁଥିଲା ରକ୍ତ
      ଫୁଲରେ ଯାର ପାଟଳ ।
ସେହି ରମଣୀୟ            ଛାୟା ସୁଶୀତଳ
      ଘନପତ୍ର ସମାକୁଳ
ପାଦପ ଦେଶରେ            ମହର୍ଷି ଜାବାଳି
      ଧ୍ୟାନରେ ଥିଲେ ମଗନ ।
ସପ୍ତ ସମୁଦ୍ର            ମଧ୍ୟରେ ଯେମନ୍ତ
      ବସେ ଭୂମଣ୍ଡଳ ସ୍ଥିର
ଅଷ୍ଟକୁଳାଚଳ            ମଧ୍ୟରେ ଅଥବା
      ଯେପରି ସୁମେରୁ ଗିରି ।

ଅଥବା ଦ୍ୱାଦଶ ସୂର୍ଯ୍ୟରେ ଦୁଃସହ
ପ୍ରଳୟ ନଭ ଯେସନ
ବାର ହେଉଥିଲେ ମହର୍ଷି ଜାବାଲି
ଋଷିଙ୍କ ମଧ୍ୟେ ତେସନ ।
ଶୋଭୁଥିଲ ସ୍କନ୍ଧେ ଭସ୍ମରେ ଧୂସର
ତ୍ରିପୁଣ୍ଡ୍ରକ ରମ୍ୟ ଗାତ୍ର
ଜଟା ଶଯ୍ୟାରେ ବନ୍ଧୁଥିଲ ଅବା
ଜାହ୍ନବୀର ଜଳ ଧାର ।
ଅଧୋମୁଖୀ ସୋମ ସମ ଭ୍ରୂଲତାର
ଶୋଭା ବର୍ଷି ଖସିପାଉ
ଦୃଷ୍ଟିପଥ ରୋଧି ରହିଥିଲ ତାଙ୍କ
ନୟନଯୁଗ ଶୋଭାଇ ।
ଅବିରତ ମନ୍ତ୍ର ଜପିବାରୁ ମୁଖ
ଅଳ୍ପ ମେଲ ରହୁଥିଲ
ଫୁଟି ଉଠୁଥିଲ ତହିଁ ଦନ୍ତପଙ୍କ୍ତି
ସତ୍ୟର ଶାଶ୍ୱତଜ୍ୱାଳା ।
ସୋମରସ ପିଇ ଥିବାରୁ, ନିଃଶ୍ୱାସ
ପବନ ତୀବ୍ର ଗନ୍ଧରେ
ଆକୃଷ୍ଟ ହୋଇଣ ଉଡୁଥିଲେ ମୁଖ
ସ୍ଥିର ପାଖରେ ଭ୍ରମରେ ।
କୃଶ କଳେବର ନାସିକା ଉନ୍ନତ
ନୟନ ତାରା ଉଜ୍ଜ୍ୱଳ
ନାଭି ଚୁମ୍ବି ଦାଢ଼ି ଜଡ଼ିଥିଲ ଦେହେ
ନଥିଲ ଲୋମ ବହୁଳ ।
ଶିରସଜ୍ଜ ବେଣୀ ଗ୍ରୀବାରେ ଏକତ୍ର
ଜନମୁଥିଲ ଅନ୍ତରେ
ଚଞ୍ଚଳ ଇନ୍ଦ୍ରିୟ— ଅଶ୍ୱନିକରକୁ
ବାନ୍ଧିଥିଲେ କସେ ଡୋରେ ?
ଗୋଟି ଗୋଟି ଦଣ୍ଡ ଥିଲ ବାରହୋଇ
ବୁକୁରେ ଅସ୍ଥି ପଞ୍ଜରୀ

ଦେବଦାରୁ ଦେହେ ଜଡ଼ଯାଇ ଥିଲ
ସତେକି ଗଜପିପ୍ପଳୀ ?
ଫେନପୁଞ୍ଜ ହାସ୍ୟେ ଗଙ୍ଗା ଯଥା ବହେ
ଶୂଳୀଙ୍କ ମୌଳିମଣ୍ଡଳେ
ଅଥବା ଦୁଗ୍ଧର ଅଦ୍ଭୁତ ଯେମନ୍ତ
ପତଇ ସଙ୍ଗ ଅନଳେ ।
ତେସନ ତେଜସ୍ୱୀ ଋଷିବର ଶିରେ
ଚନ୍ଦ୍ରଖଣ୍ଡ ସମ ଗୋରା
ଜଟାଜାଳ ମଧ୍ୟେ ଶୁଭ୍ରମୂର୍ତ୍ତି ଧରି
ଆଶ୍ରା ନେଇଥିଲ ଜରା ।
କାମଧେନୁ ସ୍ତନୁ ସ୍ରବଇ ଯେମନ୍ତ
ବିମଳ ଦୁଗ୍ଧର ଧାର
ତାଙ୍କ ହୃଦୁଁ ତେମନ୍ତେ ବହୁଥିଲ ସଦା
ପ୍ରବାହ ଦୟା କ୍ଷମାର ।
ଥିଲେ ଋଷିବର ସତ୍ୟ ସହଚର,
ସଂସାର ସରିତ ସେତୁ,
ବିଳାସ ଲାଳସା ତରୁର କୁଠାର,
ମୋକ୍ଷ ପଦବୀର ହେତୁ ।
ଶାସ୍ତ୍ରସିନ୍ଧୁ ରତ୍ନ ପରୀକ୍ଷା ନିକଷ,
ଅଜ୍ଞାନ ଅନ୍ଧାର ରବି,
ଅସତ୍ତ୍ୱ କାନନ ଗ୍ରୀଷ୍ମ ଦାବାନଳ,
କ୍ରୋଧପାଦପର ପବି,
ନରକ ଦ୍ୱାରର ଅର୍ଗଳ, ମଙ୍ଗଳ
କାର୍ଯ୍ୟର ଆଶ୍ରୟସ୍ଥଳ
ବିଦ୍ୟାତଟିନୀର ସ୍ନାନଘାଟ, ଲୋଭ—
ସିନ୍ଧୁର ବାଡ଼ବାନଳ ।
ଜିଣିଥିଲେ ପୁଣି ତେଜେ ସେ ତରଣି
ଧୈର୍ଯ୍ୟରେ ଗିରିବରକୁ
ସହନେ ଧରଣୀ, ଗୁଣେ ନିଶାମଣି,
ନିର୍ମଳରେ ଆକାଶକୁ ।

ସିଂହ ଶାର୍ଦ୍ଦୂଳର ତେଜ ଯିନା ପ୍ରାଣୀ
ହିଂସା ପାଇଁ ବଳଥର
ମାନବ ସମାଜରେ ଯେତେ ତେଜ ତହୁଁ
ଏହାଙ୍କର ତେଜ ସାର ।
କ୍ଷଣକେ ମୁନିଙ୍କ ପବିତ୍ର ମୂର୍ତ୍ତି ମୋ
ହୃଦୁଁ ପାପତାପ ନାଶି
ମନକୁ ନିର୍ମଳ କରି ଦେଲା ଯଥା
ଆକାଶକୁ ପୌର୍ଣ୍ଣମାସୀ ।
ଯଥାକାଳେ ତହୁଁ ପ୍ରବେଶି ହରତ
ପ୍ରଣମି ପିତୃ ଚରଣେ
ସାବତ ଘଟଣା କହୁ ମୋତେ ନେଇ
ଥୋଇଦେଲେ ସଯତନେ ।
ମୋ ପୂର୍ବ ବୃତ୍ତାନ୍ତ ଶ୍ରବଣେ ଉତ୍ସୁକ
ତପସ୍ୱୀଙ୍କ ଅଳି ଶୁଣି
ସେମାନଙ୍କ ଚିତ୍ତ ବିନୋଦନ ପାଇଁ
ତ୍ରିକାଳଜ୍ଞ ମହାମୁନି ।
ଭଗବତ ପ୍ରାପ୍ତ ସକଳ ରହସ୍ୟ
ଜାଣି ଯୋଗଧ୍ୟାନ ବଳେ
କହିଲେ "ଏ ଶୁକ କଷ୍ଟ ପାଉଅଛି
ପୂର୍ବଜନ୍ମ ପାପଫଳେ ।
ଦେଖ ବନ ଶେଷ ପଶ୍ଚିମାଶା ଦେଶେ
କାଞ୍ଚନ ଉଜ୍ଜ୍ୱଳମୟ
ଅସ୍ତଗତ ହେଲଣି ଆମ୍ଭମାନଙ୍କର
ଦେବତା ପୂଜା ସମୟ ।
ସର୍ବେ ନିଜ ନିଜ ସନ୍ଧ୍ୟା କୃତ୍ୟ ସହ
କର୍ତ୍ତବ୍ୟ କରି ସମାପ୍ତି
ଉପାସନା ଅନ୍ତେ ସୁସ୍ଥଚିତ୍ତେ ବସି
ଶୁଣିବ ସେହି ବୃତ୍ତାନ୍ତ ।
ଏକାଳେ ବାରୁଣୀ ତରୁଣୀ କୋଳରେ
ବସିଲେ ଦିନମଣି

ଉଠିଲ ସଘନେ          ମୁନିମାନଙ୍କର
      ଆଳତିର ଘଣ୍ଟାଧ୍ୱନି ।
ଅର୍ଘ୍ୟଦାନ କାଳେ          ନପେଡ ସେହୁ
      ଅଙ୍ଗମେ ରକ୍ତ ଚନ୍ଦନ—
ପରେ ଲଗିଲେ          ପଶ୍ଚିମ ଅଚଳ
      ଚୂଳରେ ବର୍ଣ୍ଣଲେପନ ।
ଊର୍ଦ୍ଧ୍ୱମୁଖେ ମୁନି—          ମାନେ ସୂର୍ଯ୍ୟତେଜ
      ପାନ କରିବାରୁ ପରି
ଉତ୍ତାପ ବିରଳ          ପଶ୍ଚିମ ଗଗନେ
      ତେଜଶୂନ୍ୟ ହେଲ ଖରି ।
କାନନ କୁକୁଟ          ଆରକ୍ତ ମୁକୁଟ
      ଶୋଭିକୁ କାନ୍ତିରେ ଗଞ୍ଜି
ବଜେ ହେଲେ ହ୍ରଗ          କପୋତ ଚରଣ—
      ସୁଷମାରେ ଦଗ ରଞ୍ଜି ।
କ୍ଷୀରସିନ୍ଧୁଶାୟୀ          ବିଷ୍ଣୁଙ୍କ ନାଭିରେ
      ପାଟଳ କମଳ ସମ
ପଶ୍ଚିମ ସାଗରେ          ବୁଡ଼ିଲ ଭାସ୍କର—
      ବିମ୍ବ ଜନ ମନୋରମ ।
ଦିନ ଶେଷ ଦେଖି          ପକ୍ଷୀପଙ୍କ୍ତି ପରି
      ସୂର୍ଯ୍ୟଙ୍କ ହେମ କିରଣ
ପର୍ବତର ଉଚ          ବୃକ୍ଷେ ବସନ୍ତିଲ
      ଉପେକ୍ଷି କମଳବନ ।
ପ୍ରବାଳ ପାଟଳ          ସନ୍ଧ୍ୟା ଅନ୍ଧକାର
      ବୁଡ଼ିଲ ସାଗରନୀରେ
ଖେଳିଲ ସଗ୍ରେ          ଚଞ୍ଚଳ ତରଙ୍ଗ
      କଥିପରେ ଧୀରେ ଧୀରେ ।
ଧେନୁମାନଙ୍କର          ଦୁଗ୍ଧଧାର ଶବ୍ଦେ
      ଉଚ୍ଛୁଳ ଗଲ ଆଶ୍ରମ
ବହ୍ନି କୁଣ୍ଡ ଖୋଲି          ଆଣିଲେ ମୁନିଏ
      ଗୃହେ ହେବା ପାଇଁ ହୋମ ।

ଋଷି କୁମାରୀଏ ଦିଗ୍‌ପାଳମାନଙ୍କ
ପୂଜା ଆରାଧନା ପାଇଁ
ତୋଳିଲେ ପୁଷ୍ପକୁ— ଅଳ୍ପ ସଙ୍କୋଚେ
ସୁର ପାଖରେ ସଜାଇ ।
ଦିନଶେଷ ଦେଖି ପ୍ରବାଳ ପାଟଳା
ସେତେ ହୋମଧେନୁପନ୍ତି ।
ତୃଣମସ୍ତୁ ସେନେ ଖଡର ଖଡର
ମଠକୁ ଫେରି ଆସନ୍ତି ।
ହେମନ୍ତ ପିଙ୍ଗଳ— ବରଣ ପ୍ରଦୋଷ
ଅଟରେ ଝବସ ଶେଷେ
ଗିରି ବନକ୍ଷେତ ଲଙ୍ଘି ପ୍ରବେଶିଲ
ସୁବାସେ ନବୀନ ବେଶେ
ସ୍ୱର୍ଣ୍ଣ ସାଗରରେ ବୁଡ଼ିଲେ ଅଧୀରେ
ତାହାଙ୍କର ଅଦର୍ଶନେ
ନିଷ୍ଟଳ ସ୍ୱବରେ ଜଳପରେ ବସି
ପଦ୍ମିନୀ ମାନ ବଦନେ ।
ବହ୍ନିଣ କମଳ— କଳ କମଣ୍ଡଳୁ
ହଂସ ଛନ୍ଦ ମସ୍ତକରେ
ମଞ୍ଜୁଳ ଧବଳ ଉପବୀତ ଧରି
ଅଳ ଜପାମାଳା କରେ
ମିଳନ ହୋଇବା ପାଇଁ ପୁନରାୟ
ପ୍ରିୟ ପ୍ରଭାକର ସହ
ଅଚଳଙ୍କ ସିନା ଏକାନ୍ତେ କଠୋର
ମହାବ୍ରତ ଅହରହ
ଇଷ୍ଟ ଦେବତାଙ୍କୁ ପୂଜିଲେ ପୂଜକେ
ଊର୍ଦ୍ଧ୍ୱେ ଦେଇ ଜଳାଞ୍ଜଳି
ସେ ଜଳେ ସନ୍ଧ୍ୟାର ସବୁ ରକ୍ତିମାଭ
ଧୋଇ ହୋଇଗଲା ଗଲି
ତେଣୁ ପ୍ରଦୋଷର ଧରହେ ଶର୍ବରୀ
ସଭିଙ୍କୁ ଦୁଃଖେ ମହାଇ

ଉପଗତ ହେଲ     କୃଷ୍ଣବର୍ଣ୍ଣ ପର୍ବ
  କମ୍ବଳେ ମୁଖ ଘୋଡ଼ାଇ
ସେ କମ୍ବଳ ଛାୟା     ପର ଉପକାରୀ
  ସାଧୁଙ୍କ ହୃଦୟ ଭଳି
ଜଳେ, ସ୍ଥଳେ, ନଭେ     ସକଳ ପଦାର୍ଥେ
  ତମରେ ହେଲ ଏକାର୍ଣ୍ଣ ।
ପରିସ୍ଫୁଟ ନୀଳ     ପଟ୍ଟବସ୍ତ୍ର ପର
  ଆସ୍ତରିଲ ନଭସ୍ଥଳ
ସ୍ୱର୍ଣ୍ଣ ଫୁଲ ପରି     ଶୋଭିଲେ ଉଜ୍ଜ୍ୱଳ
  ଏଗରେ ସପ୍ତର୍ଷି ଦଳ ।
ଦେଖୁ ଦେଖୁ କୃଷ୍ଣ—     ପ୍ରଥମ ଚନ୍ଦ୍ରମା
  ଉର୍ଦ୍ଧ୍ୱକ ଉଠିଁ ସହଜେ
ରଞ୍ଜିଦେଲେ ଅଗ୍ର     ପ୍ରାଚୀବାଳା ମୁଖ
  ରଜତ କର୍ପୂର ରଙ୍ଗେ ।
ପୁଷ୍ପକାଳେ ଯଥା     ପତିତ ପାବନୀ
  ମହାସିନ୍ଧୁ ଉପ୍ଲାବନୀ ।
ପ୍ରଚର ମସୃଣ-     ମାଳତୀ-ଧବଳା
  ପୁଣ୍ୟତୋୟା ମନ୍ଦାକିନୀ,
ବିମଳ ଚନ୍ଦ୍ରମା—     ଭଲ ଅଳଂକୃତ
  ନର କପାଳ ଶୋଭିତ
ଧୂର୍ଜଟିଙ୍କ ଜଟା—     ଜୂଟରୁ ଛୁଟିଲେ
  ହୋଇଥିଲେ ନିପତିତ ।
ତେସନ କ୍ଷୀରୋଦ     ଫେନପୁଞ୍ଜପର
  ଜ୍ୟୋତ୍ସ୍ନାଜାଳ ଟଳଟଳ
ଆକାଶ ଦେଶରୁ     ସ୍ରୁତ ଅବଲମ୍ବେ
  ପ୍ଲାବିଲ ଧରଣୀତଳ ।
ପ୍ରଫୁଲ୍ଲିତ ଶ୍ୱେତ     ଶତପତ୍ରଦଳ
  ଦେଖି ଚନ୍ଦ୍ରମା-ସରସୀ
ଚନ୍ଦ୍ରିକା ସଲିଳ     ପିଇବାକୁ ଲୋଭେ
  ଭ୍ରମର ସେଥିରେ ପଶି ।

ଅମୃତ-ସଙ୍ଗରେ ଲଗିଗଲ ଉଠି
ନଖାର ବୁଲଇ ଘୂର
ଯାହାକୁ କଳଙ୍କ ତୋଳ୍ କବମାନେ
ବୃଥା କରୁଥାନ୍ତ ହ୍ବର ।
ଧବଳୁ ଦୁଅନ୍ତେ ଘନଜାଳ କଭ
ଅନ୍ଧାର ମାଳ ଅନ୍ତର
ପ୍ରସ୍ଫୁଟିତ ନବ କଣ୍ଟ କୁସୁମ
ସମ କଳାକର କର ।
ହସାଇ ଘନଢେ ନବ ମୁକୁଳିତ
ମନୋଜ୍ଞ କୁମୁଦମାଳ
ମାନସୁ ଘଗତ ରାଜହଂସ ପରି
ଉଜ୍ଜ୍ୱଳନ୍ତି ସରସୀର
ସ୍ୱର୍ଣ୍ଣଦୀ ସଳିଳେ ସ୍ନାନ କଲାବେଳେ
ଶିରକୁ ସିନ୍ଦୂରମାଳ
ଧୋଇହୋଇ ଯଥା ଧବଳ ଉଜ୍ଜ୍ୱଳ
ଦିଶଇ ସୁର ଶୃଙ୍ଗାଳ ।
କେସନ ଉଦାସ କାଳୀନ ରଜମା
ନଭଠୁ ସିବାକୁ ଘୁଞ୍ଚ
ତରଳ ପାରଦ ପଇ ଚଳଚଳ
ଦିଶିଲ୍ଲ ଚନ୍ଦ୍ରମା କୁଟ ।
ନବୋଦିତ ଶଶି ଅନ୍ତୁରଗେ ବସି
ବିମଳ ଗଗନାଙ୍ଗନେ
ବୋଲଦେଲ ସ୍ନେହେ ଶ୍ୱେତ ମୁଖରଜ
ଧରଣୀ ଭର ବଦନେ ।
ସ୍ୱଚ୍ଛ ସମୟରେ ଶୀତଳ ସମୀର
ଶିଶିର ବିନ୍ଦୁକୁ ବହି
ମୃଦୁଳେ ବହିଲ କୁମୁଦ ବନର
ମୋଦେ ସୁରଭିତ ହୋଇ ।
ହେମନ୍ତନ ଛଡ଼ ସେ ଶୀତ ଡାକରେ
ଅଗ୍ରିମ କୁରଙ୍ଗଦଳ

ଯେମ ଝାଙ୍କୁରର ନେତ୍ର ମୁଦ ହେଲେ
ପଡ଼ିଲେ ଧରଣୀତଳ ।
ସମାଧିରେ ବସି ଶୁଭ୍ର ଚନ୍ଦ୍ରାଲୋକେ
ତପୋବନେ ସର୍ଣ୍ଣାସନେ
ସେକାଳେ ମହର୍ଷି ସୃଷ୍ଟିର ରହସ୍ୟ
ଧ୍ୟାଉଥିଲେ, ଏକମନେ
ମୋତେ ଦେଖ ତହିଁ ତପସ୍ୱୀଙ୍କ ସହ
ଅସ୍ତେ ତାଙ୍କ ନନ୍ଦନ
ନୟନ ଉନ୍ମୀଳି କହିଲେ ଏମନ୍ତ
ତ୍ରିକାଳଜ୍ଞ ତପୋଧନ
ଅତି ଚମତ୍କାର ରହସ୍ୟମୟ ଏ
ସୁଦୀର୍ଘ ଶୁକ ବୃତ୍ତାନ୍ତେ
ଜନ୍ମିଥାଏ ଯେବେ କଉତୁକ ଶୁଣ
ସଭଏ ବସି ଏକାନ୍ତେ ।

## ତୃତୀୟ ସର୍ଗ ।

ଶୂଦ୍ରକ ଭୂପଙ୍କ        ଅଗ୍ରତ ବସେକ
ଶୁକ ନବେଦଲ ପୁଣି
ହେଦେବ ! ଏଥବେ        ମୋ ଚରିତ ତତ୍ତ୍ୱ
ବର୍ଣ୍ଣିଲେ ଜାବାଲି ମୁନି ।
ଅବନ୍ତି ଦେଶରେ        ଉଜ୍ଜୟିନୀ ନାମେ
ଅଛି ଏକ ରାଜଧାନୀ
ସୁଗଠିତ ସେତ—        ସଉଧ ଶୋଭାରେ
ମନ ପ୍ରାଣ ନଏ ଟାଣି ।
ପ୍ରଥମ ଯୁଗର        ଜନନୀ ସଦୃଶେ
ପୁଣ୍ୟମୟୀ ସେ ନଗରୀ
ସମୃଦ୍ଧି ସମ୍ଭାରେ        ପରିପୂର୍ଣ୍ଣ ବସେ
ନଥିବ କାହୁଁତା ସର
ଘେରିଛି ତାହାର        ଚଉପାଖ ଯାକ
ସୁଗଭୀର ଖାଇମାଳ ।
ନବୋଦିତ ଶଶି        ମଣ୍ଡଳକୁ ଯଥା
ନବୀନ ଜଳଦ ଜାଳ
ଅଗସ୍ତ୍ୟ ଶୋଷଣେ        ଶୁଷ୍କ ରତ୍ନାକର
ଛଡିକ ହେଲେ ଧିଡ୍ଡାର
ଶୋଭାପାଏ ପଥେ        ବିପଣି ବୀଥିକା
ମଣିରତ୍ନେ ସାର ସାର ।
ଉତ୍ସବ କାଳରେ        ଭ୍ରମୁଥିବା ଦେବ-
ବିମାନ ପରାଏ ତହିଁ
ଉଚ୍ଚ ଅଟ୍ଟାଳିକା        କାନ୍ଥମାନଙ୍କରେ
ଅସଂଖ୍ୟ ଚିତ୍ର ଶୋଭଇ ।
ଠାବେ ଠାବେ ରାଜେ        ଶୃଙ୍ଗାଟକ କୂଳ
ସଂକୁଳ ସେ ସରଣୀର
ଶଙ୍ଖ ଘଣ୍ଟାନାଦେ        ମୁଖରିତ ବନ୍ଧୁ
ପବିତ୍ର ଦେବ ମନ୍ଦିର ।

କ୍ଷୀରୋଦ ସାଗର    ମନ୍ଥନ କାଳରେ
ସାନ୍ଦ୍ର କ୍ଷୀରଲବେ ସିକ୍ତ
ଫେନିଳ ମନ୍ଦର    ସମ ସେ ମନ୍ଦିର-
ନିକର ହରନ୍ତି ଚିତ୍ତ ।
ସେମାନଙ୍କ ଚୂଳେ    ସୁବର୍ଣ୍ଣର କୁମ୍ଭ
ସ୍ପର୍ଶଇ ରଞ୍ଜି ଗଗନ
ହାଲୁଥାଏ ତହିଁ—    ପରେ ବାୟୁଭରେ
ସଧୀରେ ଶ୍ୱେତକେତନ
ଦେଖି ମନେହୁଏ    ଶିରେ ବହି କିବା
ଆକାଶ ଗଙ୍ଗାର ଶିଖା
ଶୌଖି-ଗୁରୁ ଯୁରୁ    ବିଶାଳ ବପ୍ରରେ
ରାଜଇ ଧବଳଗିରି ।
ସତେଜ ସବୁଜ    ତରୁ ଲତାମାନ
ଉଦ୍ୟାନେ କୁଲ୍ୟା ଜଳରେ,
ପାଷାଣେ ନିର୍ମିତ    ନାନା ପ୍ରାଣୀମୂର୍ତ୍ତି
ଶୋଭେ ଲତାମଣ୍ଡପରେ ।
କୀଡ଼ା କୁଞ୍ଜ ମଧ୍ୟେ    ଉପର ଉପର
ଧାଡ଼ି ଧାଡ଼ି ସୁସଜ୍ଜିତ
ଗମସ୍ତମାନଙ୍କେ    ଗଜନ୍ତି ଭବଧ
କରୁଲତା ସୁଶୋଭିତ ।
ଦୋହୃଥାନ୍ତି ଲତା—    ମାନେ ଅବିରତ
ମୃଦୁଳ ବାୟୁ ଲହରେ
କୁସୁମ ସୌରଭ    ବହି ଗନ୍ଧବହ
ପ୍ରାଣୀଙ୍କୁ ସଦାବ୍ରତରେ ।
ଅବିରତ ଘୋର    ଘନ ଘୋଷ ସମ
ଗମ୍ଭୀର ମୃଦଙ୍ଗ ନାଦେ
ଉତ୍ପୁଚ୍ଛେ କଳାପୀ    କୁଳ ନାଚୁଥାନ୍ତି
ନିରତେ ମତ୍ତ ଆହ୍ଲାଦେ ।
ଫୁସ୍ତୁରୁ ଜଳ    ବର୍ଷାକାଳପରି
ଉତ୍ତୂଳ ତଳେ ପଡ଼ଇ

ସେ ନୀର ଶୀକରେ ସୂର୍ଯ୍ୟ ମୟୂଖରେ
ସୁରେନ୍ଦ୍ର ଗୃପତୀତଇ
ଜଳ ପୁଷ୍ପଦଳେ ଖେଳ ସରୋବର
ନବର ଧଶେ ବାହାର
ସଲିଳ ତରଙ୍ଗେ ଭାସନ୍ତ ତହିଁରେ
ଯେସନ ମୁକ୍ତାହାର ।
ବିବିଧ ବର୍ଣ୍ଣର ମତ୍ସ୍ୟମାନ ଡେଇଁ
ନିର୍ଭୟେ ଉଲ୍ଲାସ ଭରେ
ଚଞ୍ଚଳେ ପହଁରି ବୁଲନ୍ତି ସ୍ୱଚ୍ଛ
ସରସୀ ନୀର ଭିତରେ ।
ଧବଳ ଦ୍ୱିରଦ ରଦେ ମନୋହର
ସୁନ୍ଦର ସଦନ ମାନ
ଦୁଗ୍ଧ ଚନ୍ଦ୍ରଠାରୁ ଦିଶନ୍ତି ଶ୍ୱେତେ
ଅମୃତ ଫେନ ସମାନ ।
ପ୍ରବାଳ ମାଳାରେ ମଣ୍ଡିତ ମଞ୍ଜୁଳ
ମକର ଚିହ୍ନେ ଚିହ୍ନିତ
ଶୂନ୍ୟ ସଦନରେ ମୀନ କେତନର
କେତନ ହରଇ ଚିତ୍ତ ।
ଆରକ୍ତ ଚାମର ସହିତ ଆରକ୍ତ
ପତାକା ବାତେ ଦୋହଲି
କହଇ ତହିଁରେ ଅନଙ୍ଗ ଦେବଙ୍କ
ଆରାଧନା ହୁଏ ବୋଲି ।
ପୁର ଉପବନେ ସ୍ୱଚ୍ଛନୀର ସିପ୍ରା
ସରିତ ସଧୀରେ ବହେ
ଯୌବନ ଗର୍ବିତା ମାଳବ ନାରୀଏ
ମଜ୍ଜନ୍ତି ତହିଁ ଆସି ହେ
ସ୍ତନ ଚକ୍ରବାକ ନୟନ ଶଫରୀ
କୁନ୍ତଳ ଶୈବାଳବଳୀ
ଭ୍ରୂଭଙ୍ଗ ବେନ ବୀଚୀ ସହିଁ ଅବିରତ
ଶୋଭିକୁ ନଅନ୍ତ ଜଳ ।

କୈଳାସ ଧବଳ    ଉଚ୍ଚ ଅଟ୍ଟାଳର
ଅମଳ ଛାତ ଉପରେ
ସଙ୍ଗୀତ ପ୍ରବୀଣା    ନବୀନାମାନଙ୍କ
ସୁମଧୁର ଗୀତସ୍ୱରେ ।
ଆନନ୍ଦେ ଅକୃଷ୍ଟ    ହୋଇ ସ୍ୱରମୁଗ୍ଧ
ରବି ରଥ ଅଶ୍ୱଗଣ
ଅଟକି ରହନ୍ତି    ଦେଲେ ଦେଲେ ସୁଦ୍ଧା
ଅନୁରୁଙ୍କର ତାଡ଼ନା (୧)
ବେଗଶୂନ୍ୟ ହୋଇ    ଏଣୁ ସେ କାଳରେ
ରହଇ ରଥ ଶୂନ୍ୟରେ
ନ ଉଡ଼ ପତାକା    ଓହଳ ପଛରୁ
ଝୁଲଇ ତଳ ମୁଖରେ ।
ସେ ରୁଚିର ପୁରେ    ସ୍ପନ୍ଦନ ପଡ଼
ପ୍ରଭାକରଙ୍କ କିରଣ
ଦିଶୁଅଛି ରଙ୍ଗେ    କେତେ ଅଭିନବ
ମୂରତି ମନମୋହନ ।
ପ୍ରବାଳ ନିର୍ମିତ    ପାଠଲ ପ୍ରାଙ୍ଗଣ
ମାନଙ୍କେ ପଡ଼ ସେ କର
ଖଦ୍ୟୋତନ ସନ୍ଧ୍ୟା—    କାଳ ପରି ଦିଶେ
ଅତି ରମଣୀୟତର
ମରକତ ମଣି    ଦେଖାପରେ ସେହୁ
ତରଳ ମୟୂଖ ଲେଖି
ନୀଳପ୍ରଦବନେ    ବନ୍ଦୀହେଲ ପ୍ରାୟେ
ଦୁରରୁ ଉଠଇ ଫୁଟି ।
ବଇଦୁର୍ଯ୍ୟମୟ    ପ୍ରଶସ୍ତ ପ୍ରାଙ୍ଗଣେ
ପଡ଼ ଯେହ୍ନେ ପ୍ରଭା ଦଶେ
ସୁନୀଳ ଆକାଶ    ତଳେ ବାର ବାର
ଝଙ୍କାର କରୁଛ କସେ ।

---

(୧) ଅନୁରୁ—ସୂର୍ଯ୍ୟଙ୍କ ସାରଥି

ଦଗ୍ଧ ଅଗୁରୁର          ଗାଢ଼ତମ ଧୂମ
ସମୂହକୁ ତାହା ପାଇ
ଜଣାଏ ଅନ୍ଧାର          ନାଶିବାକୁ ଏବା
ଖରବେଗେ ଅଛି ଧାଇଁ ।
ଝୁଲୁଥିବା ମୁକ୍ତା          ଝାଲରେ ଲଗିଣ
ଚଣ୍ଡାଂଶୁ ଅଂଶୁ ନକର
ନକ୍ଷତ୍ର ଶ୍ରେଣୀକୁ          ଶୋଭାଇଲା ପରି
ଦିଶେ ଅତି ମନୋହର ।
ଛୁଇଁବାରୁ ନବ          ରଶ୍ମିଘଙ୍କର
ଅମଳ ଚନ୍ଦ୍ରବଦନ
ପ୍ରତେ ହୁଏ ସତେ          ପ୍ରଫୁଲ୍ଲ ପଦ୍ମକୁ
ଦେଉଛି କିବା ଚୁମ୍ବନ ।
ପ୍ରତିଭାତ ହୋଇ          ଉଜ୍ଜ୍ୱଳ ଧବଳ
ସୁଧାର୍ଣ୍ଣ ପ୍ରାଚୀରମାନେ
ପହଁରିଲ ପରି          ଅପ୍ସରୀ ଉଷା
କାଳର ତନ୍ଦ୍ରାଜାଳେ ।
ବଣଦ ବରଷ          ପତାକାରେ ଜଢ଼
ସେ କମନୀୟ କିରଣ
ସ୍ୱର୍ଗଙ୍ଗା ତରଙ୍ଗେ          ଭ୍ରମିଲ ପ୍ରାଏ
ହସାଇ ମନ ନୟନ ।
ଜାଲକାନ୍ତମଣି —          ବାତାୟନ ଭିନ୍ନ
ଭିତରେ ଧୀରେ ପଶିଣ
ସେ କିରଣସଙ୍ଘ          ସଙ୍ଗେ ମୁଣ୍ଡକଟା
ହୁଣ୍ଡରେ ପଶିଲ ପରି ।
ଦେଉଳ କଳଶେ          ପ୍ରଦୋଷେ ସ୍ଫୁରିଲ
ଅଦ୍ଭୁତ ଜଳଜ ସମ
ଏରୂପେ ଏ ନଗରେ          ଚନ୍ଦ୍ରମସୁ ଅଂଶୁ
ଉପୁଜାଏ ଚିତ୍ତ ଭ୍ରମ ।
ପୁର ମହିଳାଙ୍କ          ମହୋଜ୍ଜ୍ୱଳମୟ
ଅଳଙ୍କାର କାନ୍ତି ଧର

ପ୍ରଶ୍ରମୟୀ ରମ୍ୟ      ଉଷାକାଳ ସମ
ଅଶ୍ୱସର ବଶ୍ୱବଶୀ ।
ଭୋଗ ଦର୍ପଣରୁ      ଏକାନ୍ତ ମିଳାଇ
ଦିଏ ସେନ୍ତୁ ଦିବ୍ୟପ୍ରସ୍ତ
ସୁରତ ପ୍ରଦୀପ      ଜାତ କାମାଗ୍ନିରେ
ଦଗ୍‌ଧାହର ବନ୍ଧ ଶୋଷ ।
ସେ ପ୍ରସ୍ୱ ଅଲୋକ      ଦେଖି ଦିନ ଭ୍ରମେ
ଗବଇ ରଥାଙ୍ଗ ନାରୀ
କାମ ଭସ୍ମକାଳେ      ଶ୍ରୀମତୀ ରଖନ୍ତ
ବଳାଉଥିନ ଧିକାର ।
ଚନ୍ଦ୍ରାଲୋକେ ଉଚ      ଧ୍ୱଜସ୍ତ ଦେଖି
ଏସ୍ୱବ ଅପେ ଅନ୍ତରେ
ସମ ନୋହିବାରୁ      ଖଣ୍ଡକ, ନାସିକ
ମୁଖଶ୍ରୀ ସହିତରେ ।
ଅଟ୍ଟାଳଏ ଅବା      ଉର୍ଦ୍ଧ୍ୱେ ବାନ୍ଧୁ ତୋଳ
କେତନଅଞ୍ଚଳ ଛଳେ
ଚୋଖ ଦେଉଛନ୍ତି      ଲଜ୍ଜିତ ଚନ୍ଦ୍ରଙ୍କ
କଳଙ୍କ ଅଙ୍କକୁ ବଳେ ।
ଚନ୍ଦନ ନୀରରେ      ସଦା ସୁଶୀତଳ
ମଣିଛ୍ରାତ ଧବଳମା
ପ୍ରକାଶ୍ମ ଛଳେ      ଘଡ଼ଥିବା ଦେଖି
ତହିଁରେ ଚନ୍ଦ୍ର ପ୍ରଣମା ।
ମନେ ହୁଏ ସେନ୍ତୁ      ପୁରବାସିନୀଙ୍କ
ରୁଚର ରୂପରେ ମଜ୍ଜି
କାମାତୁର ଶଶି      କଥିପରେ ଦ୍ରବା
ଲୋଠନ୍ତି ଲଜ୍ଜା ବରଜ୍ଜି ।
ମହାକାଳ ନାମେ      ବସନ୍ତ ତହିଁ
ପ୍ରଭୁ ଚନ୍ଦ୍ରଚୂଡ଼ାମଣି
ସଦା ଅଷ୍ଟସିଦ୍ଧି      ଲଭନ୍ତି ଯାହାଙ୍କ
ପ୍ରସାଦେ ପୁଂସ ରମଣୀ ।

ନମସ୍କାର କାଳେ        ଦେବ ଦାନବଙ୍କ
ମୌଳି ଫୁଲ ପରାଗରେ
ଯାହାଙ୍କ ଚରଣ        ନଖପ୍ରାନ୍ତ ସଦା
ଅରକ୍ତ ବରଣ ଧରେ ।
ତ୍ରିଶୂଳ ମୁନେ        ମହାବଳୀ ଦୃପ୍ତ
ଅନ୍ଧକାସୁରକୁ ନାଶି
ଦେବତାଙ୍କୁ ତୋଷି        ମନ୍ଥର ଏଣମ
ସ୍ୱର ଯେ ଥିଲେ ଉଚ୍ଛ୍ୱାସି ।
ପ୍ରବଳ ପ୍ରଣୟ        ରସରେ ଲୁପିତା
ଗିରିସୁତା ଜଗନ୍ମାତ ।
ଯାହାଙ୍କ ମସ୍ତକ        ଜଟାରେ କରନ୍ତ
ଘନ ଘନ ପଦାଘାତ ।
ଯେତାଲେ ଚଣ୍ଡୀଙ୍କ        ଚଞ୍ଚଳ ଚରଣ
ନୂପୁର ବାଜ ବେଗରେ
ଯା ଶିରମଣ୍ଡନ        ରୁଚିର ଚନ୍ଦ୍ରମା
କଳାକୁ ସକଳ କରେ ।
ତ୍ରିପୁରାସୁରକୁ        ଦହୁ ଯେ ପୂର୍ବରେ
ସୁନାଶୀରଙ୍କ ଅସ୍ତ୍ରେ
ଅଦ୍ଭୁତ ପରାଏ        ବୋଳଥିଲେ ତାର
ଭସ୍ମକୁ ନଜ ବସ୍ତ୍ରେ ।
ଦହିବାରୁ ପୂର୍ବେ        ମୀନକେତନକୁ
ପ୍ରଖର ନେତ୍ର ଅନଳେ
ତାର ବିରହରେ        ତାପ ତାପ ଅତି
ଅଷାଢେ ରତି ଝଡଲେ ।
ତୋରକତ କରେ        ପୁଛିଥିଲେ ଯାକୁ
ପାଦପଦ୍ମ ତଳେ ବସି
(ପୁତ୍ରା ପୂଜ ପର        ପଢ଼ୁଥିଲ ଅହା
ଶୀତରୁ କଙ୍କଣ ଖସି)
ପ୍ରଳୟ କାଳରେ        ଅଗ୍ନି ସମ ଯାଙ୍କ
ପିଙ୍ଗଳ ଜଟାମଣ୍ଡଳେ

ବହୁ ଶତବର୍ଷ          ବହୁଥିଲେ ଯେଙ୍କ
    ସ୍ୱର୍ଗୀରଥୀ ଜଳଜଳେ ।
ନକେ ସେ ଶଙ୍କର          ପ୍ରିୟ ବାସସ୍ଥଳୀ
    କୈଳାସ ଧାମକୁ ଗଢ଼
ସେ ମଞ୍ଜୁଳ ପୁରେ          ମହାକାଳ ନାମେ
    ସଦା ରହୁଛନ୍ତି ମାଢ଼ ।
ସର୍ବଶାସ୍ତ୍ରଦର୍ଶୀ          ସର୍ବ ଗୁଣାକର
    ସବୁ ମତରେ ଉତ୍ତମ
ସପାଣ୍ଡ, ନହୁଷ,          ନଳ, ଭଗୀରଥ
    ଶ୍ରୀହର୍ଷ ଭରତ ସମ ।
ପ୍ରବଳ ପ୍ରତାପୀ          ତାରାପୀଡ ନାମେ
    ଥିଲେ ତହିଁ ନରପଣ୍ଡ
ଲଭିଥିଲେ ଯେହୁ          ବାହୁବଳେ ଧରା
    ଖଣ୍ଡର ଯେତେ ସମ୍ପତ୍ତି ।
ଅଭାବରେ ଧନ          ଜଗତ୍ ପ୍ରସିଦ୍ଧ
    ପଣ୍ଡିତମାନଙ୍କୁ ବର
ବିଦ୍ୟା ବାରିଧିରେ          ସନ୍ତରୁ ଥିଲେ ସେ
    ଯେଉଁ ଆଲୋଚନା ତରୀ ।
ପ୍ରତାପେ ସ୍ୱସ୍ତର          ସୌନ୍ଦର୍ଯ୍ୟେ ନୃବର
    ରଜନୀରଞ୍ଜନ ବତ
ନାନା ଉପାୟରେ          ସ୍ୱରାଜ୍ୟର ଦୁଃଖ
    ନାଶୁଥିଲେ ଅବିରତ ।
ଚିର ଅନକୂଳା          ଧବଳଗତ ନବ
    କମଳ-ଦଳ-ବାସିନୀ—
କମଳା ବକ୍ଷକୁ          ଗଢ଼ ହୋଇଥିଲେ
    ତାହାଙ୍କ ଅନୁରାଗିଣୀ ।
କୈଳାସ ଗିରିଙ୍କ          ଦୃଢ଼େ ତୋଳିବାରୁ
    ଲଙ୍କାନାଥଙ୍କ ପୁର୍ବରେ
ବୃଷି ରଖିଥିଲେ          ସେ ଶୈଳକୁ ଯଥା
    ଶଙ୍କର ଅଙ୍ଗୁଳି ବଳେ ।

ତେସନ ତାମସ ଗୁଣରେ ଗରଷ୍ଠ
ବଳଷ୍ଠ ଜଣଜାଳର
ଜଡତ୍ୱ ଧର୍ମକୁ ରକ୍ଷିଥିଲେ ସେହି
ଗୁଣଗ୍ରାହୀ ନରବର ।
ଫେନଳ ଜଳଧି ଲହରୀ ଧୋଉଛି
ସର୍ବଦା ଯାର ଚରଣ
ସୁର ଜଗିବର ଭଷ୍ୟର ଯାହାର
ଶ୍ୟାମଳ ଶଲ୍ଲକୀ (୧) ପର୍ଣ୍ଣ
ଶୈଳ ଅଚଳର ଉଚ୍ଚ ଦ୍ରୁମେ ଘନ—
ରନ୍ଧ୍ରେ ତାରା ନକର
ଭ୍ରମ ଜନମାନ୍ତ ରଜନୀ ସମୟେ
ଫୁଲ୍ଲ ଫୁଲମାନଙ୍କର ।
ସମୁଦିତ ଚନ୍ଦ୍ର ମଣ୍ଡଳ ନିସୃତ
ସୁଧା ବରଷାରେ ଯାର
ଚନ୍ଦନ ଚର୍ଚ୍ଚିତ ଦଶୁଥାଏ ପ୍ରାନ୍ତେ
ଧବଳ ମଣ୍ଡପାକାର ।
ଅରୁଣଙ୍କ ରଥ ତୁରଙ୍ଗମାନଙ୍କ
ଖୁର ଅନାଘ୍ରାତେ ବାଜ
ଛିନ୍ଦୁଏ ଯହିଁ ଲଳିତ ଲବଙ୍ଗ
ଲତାର ପଲ୍ଲବ ରାଜ ।
ପୂର୍ବ ଦିଗୁ ସେହି ଉଜ୍ଜ୍ୱଳ ଉଦୟ
ଅଚଳୁ ଯେତେ ସାମନ୍ତ
ନମୁଥିଲେ ନୃପ ଭାଗୀରଥୀଙ୍କର
କମଳ ପଦେ ନିରତ ।
ଦେବତାଏ ଜଳ ଅଦ୍ୟାପି ଯାହାଙ୍କ
କଳିତ ପୂତ ପୟରେ
ସିନ୍ଧୁଗର୍ଭ ଉଠି ପ୍ରଣମନ୍ତି ଯହିଁ
ଅଙ୍କାଦେ ଭକତ ଭରେ ।

(୧) ଶଲ୍ଲକୀ—ବୃକ୍ଷ ବିଶେଷ, ସାଲେର ଗଛ ।

କ୍ଷିପ୍ର କିଳାମାଳ ଅଘାତରେ ଚୂର୍ଣ୍ଣ
ଶୁଭ୍ର ଶଙ୍ଖ ଖଣ୍ଡମାନ
ସିନ୍ଧୁତଟେ ପଡ଼ି ଦଶ୍ଚନ୍ଦ୍ର ପନ୍ତି
ଏପାଏ ତାର ସମାନ ।
ସ୍ପର୍ଶିଥିଲା ପୂର୍ବେ ଯହିଁ ସେତୁବନ୍ଧ
ନଳଙ୍କ କରସ୍ପର୍ଶରେ
ଅସୀମ ଅକୂଳ ଅନନ୍ତ ଅର୍ଣ୍ଣବ—
ସୁନୀଳ ଲହରୀ ପରେ
ଦକ୍ଷିଣରୁ ସେହୁ ସେତୁବନ୍ଧ ସୀମା
ନିବାସୀ ଯେତେ ସଜନ
ଆସି ପୂଜୁଥିଲେ ଦଗ୍‌ବିଜୟୀ ତାର—
ପୀଢ଼ଙ୍କ ସ୍ପୃରୁ ଚରଣ ।
ଅତି ଉଚ୍ଚ ଯୋଗୁ ଯାହାର ଶିଖର
ନିର୍ଝର ଜଳ ଲବରେ
ଧୌତ ହେଉଥିଲେ ତାରକା ନିକର
ନିତାନ୍ତନେ ନିରନ୍ତରେ ।
ମନ୍ଥନରେ ବାନ୍ତ ବସ୍ତୁଙ୍କ କେୟୂର—
ଘଷିହୋଇ ଘନ ଘନ
ଅଙ୍କପାଏ ଯାର ଭୁଚର ପ୍ରସ୍ତର
ନିକର ଦଶେ ଚକ୍କଣ ।
ମନ୍ଥିଥିଲେ ଯାକୁ ଦେବତା ଅସୁରେ
ପ୍ରବଳ ବେଗେ ଘୂରାଇ
ଉଠିତ ଅମୃତ ବିନ୍ଦୁ ନିବହରେ
ଚରାଚରକୁ ଭିଜାଇ ।।
ସେ ମହାମନ୍ଦର— ଗିରି ନିକଟସ୍ଥ
ଜନପଦ ନୃପଗଣ.
ପଶ୍ଚିମରୁ ଆସି ନମୁଥିଲେ ତାଙ୍କୁ
ଘେନି ନାନା ଉପାୟନ ।
ଯକ୍ଷ ରାଜଧାନୀ ଅଳକା ପୁରର
ରସିକା ରାମାଗଣର

ଅଲଂକାର ନାଦେ        ଯାର ଶୃଙ୍ଗମାନ
ହୁଅଇ ସଦାମୁଖର ।
ଉତ୍କଳ ସପ୍ତର୍ଷି        ମଣ୍ଡଳ ଅକାଶୁ
ଓହ୍ଲାଇ ଭକତଭରେ
ନିତ୍ୟ ନିତ୍ୟ ସନ୍ଧ୍ୟା        ବନ୍ଦନା କରନ୍ତି
ଯହିଁ ମାନସସ୍ରୋବରେ ।
ନବ ନାଗପୁଷ୍ପ        ପବନ୍ଧି ଚରଣ
ଚନ୍ଦନରେ ଚର୍ଚ୍ଚିତ ହୋଇ
ବଦରିକାଶ୍ରମେ        ତୀର୍ଥରୂପେ ଯେହୁ
ପାପୀଙ୍କୁ ପାପୁଁ ତାରଇ ।
ଉତ୍ତର ଦିଗରୁ,        ଯେ ଗନ୍ଧମାଦନ
ମନ୍ମଥର ତଟବାସୀ
ସାମନ୍ତେ, ପ୍ରଣମୁଁ        ଥିଲେ ସଦାବେଳେ
ବିବିଧ ସମ୍ଭାରେ ଆସି !
ପ୍ରବଳ ପ୍ରତାପ        ତେଜରେ ଚୌଦିଗ
ହେଉଥିଲା ଥରହର
ନାନା ଦିଗ୍ ଦେଶର        ସମ୍ପଦ ସମ୍ଭାରେ
ପୂରିଥିଲା ଗନ୍ତାଘର ।
ହେଲେହେଁ ଉଦ୍ଧତ        ସେତେଜରେ ରାଜ-
ଲକ୍ଷ୍ମୀଙ୍କ କୋମଳ କାୟା
ପାରୁନଥିଲେ ସେ        ଛାଡ଼ି ସମ୍ରାଟଙ୍କ
ଛତ୍ର ଛାୟାତଳ ମାୟା ।
ଭୂପଙ୍କ ଅତୁଳ        ବିଭବ ଗଣନା
କରିବେ ପାରିବ କହ
ନିଜେ ସୁନାସୀର        ସୁଦ୍ଧା ହେଉଥିଲେ
ତାଦେଖି ଈର୍ଷାରେ ଦହ ।
କ୍ରୌଞ୍ଚ ଗିରିରନ୍ଧ୍ରୁ        ବାହାରନ୍ତି ଯଥା
ଶରତେ ମରାଳ ଦଳ
ତେସନ ନୃପଙ୍କ        ଗୁଣ ରାଜୁଥିଲା
ଧରାକୁ କରି ଧବଳ ।

ଅଖଣ୍ଡ ସାମ୍ରାଜ୍ୟ ସବୁଙ୍କୁ ସର୍ବଦା
ଆନନ୍ଦ ସୁଧା ବିତର
ଫୁଟି ଉଠୁଥିଲା ତାହାଙ୍କ ସହାର୍ଯ୍ୟ
ନିଶ୍ଚପଥ ଅନୁସର ।
ମନ୍ଦାଚଳ ଘୋର ଘର୍ଷଣେ ଉତ୍ଥିତ
କ୍ଷୀରୋଦର ଫେନ ପରି ।
ତାସୁ କୀର୍ତ୍ତିଙ୍କର ଧବଳ ବରଣ
ଉଜ୍ଜ୍ୱଳ ଯଶ ଲହରୀ ।
ଭୂମଣ୍ଡଳ ଘୂରି ଯାତାଲେ ସୁବେଶି
ଦେବତା ପୁରକୁ ଯାଇ
ଭ୍ରମୁଥିଲା ନିତ୍ୟ ରହିବାକୁ ତାହିଁ
ଟିକିଏ ସ୍ଥାନ ନ ପାଇ ।
ଗୁରୁପ୍ରାପ୍ୟ ମାନ, ହୋଉଥିଲେ ପ୍ରଜେ
ଭୂପଙ୍କ ସ୍ନେହରେ ବଶ
ସାଧୁ ଥିଲେ ଯେତେ କର୍ମ ତାହାଙ୍କର
କାର୍ଯ୍ୟର ନେଇ ଅର୍ପଣ ।
ଇଷ୍ଟମନ୍ତ୍ର ପରି ଜପୁଥିଲେ ଜନେ
ସର୍ବଦା ତାହାଙ୍କ ଗୁଣ
ଶିକ୍ଷା ଦେଉଥିଲେ ପିଲଙ୍କୁ ପ୍ରାଚୀନେ
ସେହିକଥା ପୁଣ ପୁଣ ।
ଶୁକନାସ ନାମେ ଥିଲେ ତାଙ୍କ ମନ୍ତ୍ରୀ
ଶ୍ରୋତ୍ରୀୟ ଏକ ବ୍ରାହ୍ମଣ
ବେଦାନ୍ତ ବିବିଧ ଶାସ୍ତ୍ରେ ପାରଦର୍ଶୀ
ରାଜନୀତି ବିଚକ୍ଷଣ ।
ଧୈର୍ଯ୍ୟର ଆଧାର ସତ୍ୟର ସାଗର
ମର୍ଯ୍ୟାଦା ଆଶ୍ରୟସ୍ଥଳୀ
ଗୁଣର ଶିକ୍ଷକ ଧର୍ମର ରକ୍ଷକ
ମନ୍ତ୍ରଣାରେ ସୁକୌଶଳୀ ।
ବିଶ୍ୱାସୀ ସେବକ ଖଟୁଥିଲେ ରାଜ
କାର୍ଯ୍ୟରେ ସବୁ ଦିବସ

ବାଲ୍ୟକାଳୁଁ ଯେଣୁ ହୋଇଥିଲେ ସେହୁ
ଭୂପଙ୍କ ପ୍ରଣୟୀବର୍ଗ ।
ଦେବରାଜଙ୍କର ମନ୍ତ୍ରୀ ଧଙ୍କବର
ଯେସନ୍ତେ ଦେବବୃହସ୍ପତି
ତେସନ ନରେନ୍ଦ୍ର— ମଣୀଙ୍କର ସେହୁ
ଶୁକନାସ ମହାମତି ।
ପାଦପକୁ ଲତା ଅବଲମ୍ବି ଯଥା
ଜନମାଇ ଫଳଫୁଲ
ନବ ବଣଲକ୍ଷ୍ମ ମାଳେ ମଣ୍ଡି ହୋଇ
ଦିଶଇ ବଡେ ପୁଥୁଲ ।
ତେସନ୍ତେ ନାଢପଠୁ ଶୁକନାସେ ଲଭି
ସୁଚତୁର ନରପତି
ନବ ନବ ରାଜ୍ୟ ସବୁ ଟେକଥିଲେ
ଉଲ୍ଲାସେ ନିଜ ସମ୍ପଦ ।
ସ୍ୱଗୃହେ ସାମାନ୍ୟ ଘଟଣା ଘଟିଲେ
ଅଚିରେ ତାହା ଯେମନ୍ତ
ଦକ୍ଷ୍ୟ ଭଟ୍ଟରେ ପଠୁ ବୃହପତି
ସହଜେ ବୁଝେ ସମସ୍ତ ।
ତେସନ ଜଳଧି ମେଖଳାଧାରିଣୀ
ଧରଣୀ ସ୍ୱରପାଖରେ
ପଠାଇ ବହୁତ ନାନା ବେଶଧାରୀ
ଗୁପ୍ତଚର କୌଶଳରେ ।
ଘରେ ବସି ସେହୁ ଗୁପ୍ତଚରଙ୍କର
ମୁଖରୁ ସବୁ ଆକର୍ଣ୍ଣି
ରିପୁମାନଙ୍କର ଶ୍ୱାସତ୍ୟାଗ ସୁଦ୍ଧା
ଜାଣୁଥିଲେ ଭୂପମଣି ।
ସୁରବାରଣର ଶୁଣ୍ଡଦଣ୍ଡବତ
ବଢୁଥିଲା ଯା ମଞ୍ଜୁଳ
କମଳା ଦେବୀଙ୍କ ଲୀଳା ଉପାଧାନ
ସମ ଯା ଭବେ ଅତୁଳ ।

ଅକାତରେ ଯାହା    ଜଗତଜନଙ୍କୁ
ସଦୟେ ଦିଏ ଅଭୟ
ଦୀପ୍ତକରରାଶି    ତେଜ ଅଲୋକରେ
ସଦା ଯେ ଉଜ୍ଜ୍ୱଳମୟ ।
ଧୂମକେତୁବତ    ରପୁକୁଳକୁ ଯେ
ପ୍ରତାପ ବିକ୍ଷେପକାରୀ
ଯେହ୍ନ ବାହୁଦଣ୍ଡ    ଯୋଗେ ଭୂଖଣ୍ଡର
ବହନ୍ତ ଭୂପ ଓଠାର ।
ସୁହୃଦର ନର    ବଶ୍ୱାସୀ ସଚବ
ଶୁକନାସଙ୍କ ଉପରେ
ସମସ୍ତ ରାଜ୍ୟର    ଭାର ଦେଇ ମନ
ବଳାଇଲେ ଅମୋଦରେ ।
ଜଟିଳ ସାମ୍ରାଜ୍ୟ    ଶାସନକାର୍ଯ୍ୟରେ
ଲପ୍ତ ନୋହି ଅନୁକ୍ଷଣେ
ଅନୁଭବଲେ ସେ    ନତ୍ୟ ନୂଆ ନୂଆ
ସୁଖମାନ ହୃଷ୍ଟମନେ ।
ସଙ୍ଗତରେ ଯେନ    ରହସ୍ୟ ରସିକା
ରୂପସୀ ନାଗରୀଦଳ
ସର୍ବଦା କରଲେ    ଗୀତବାଦ୍ୟମେଳେ
ହେଲେ ଭୂମିପାଳ ଭୋଳ ।
ସୁଗନ୍ଧ ଚନ୍ଦନ—    ଜଳବିନ୍ଦୁ ସମ
ରସିକାଙ୍କ ଦରହାସ
ସୁଧା ସବତରେ    ମଜ୍ଜାଇ ତାହାଙ୍କ
କ୍ଷୁଧା ତୃଷା ଭୟ ନାଶ ।
ଲକ୍ଷ୍ମୀଙ୍କର ସଦା    ଭୂପ ପ୍ରେମବଦ୍ଧ
ଭୂମିଜା ଭୂଷାରେ ଯାଇ
ସ୍ୱଚ୍ଛ ସଲିଳରେ    ପଡ଼ିଥାଏ ଯଥା
ନବ କମଳର ଛବି ।
ସୁନ୍ଦରୀଙ୍କ ଗଣ୍ଡ    ସ୍ପର୍ଶେ ରୋମାଞ୍ଚିତ
ଦେଖି ବହୁ ନରବର

ଲଭୁଥିଲେ ସେଇଁ    ଆନନ୍ଦ ହୃଦୟେ
ନ ଥିଲା ତା ପଠାନ୍ତର ।
ମଉଳେ ମହଲା    ମେନେ କଲେବରେ
ବହଲେ ଲଟି ଚନ୍ଦନ
ଵଳଗ୍ନ ସମ    ଦିଶୁଥିଲେ ସେହ
ଉଜ୍ଜ୍ୱଳ ଶ୍ୱେତବରଣ ।
କୁସୁମ ବେଣୁରେ    ଜରଜର ନଜ
ବଦନଶଣୀ ଦେଖାଇ
ଦେଉଥିଲେ ବାଳା—    କଳାପ କଠାଣେ
ନୂପଚକ୍ଷୁ ଚମକାଇ ।
କାହା ବାହୁପାଶେ    ନବଳ୍ପ ଅଶ୍ଳେଷେ
ରହୁଥିଲେ ରସେ ମଜ୍ଜି
ଚମ୍ପାଫୁଲ ହାରେ    ପ୍ରମଦ ମାତଙ୍ଗ
ବନ୍ଧନ ଉପମା ଭଜି ।
ଅର୍ଦ୍ଧେନ୍ଦୁ ସମାନ    ବକ୍ର ନଖମୁନେ
ଖେଳେ କେଉଁ ଝନୋଜନା
କଷ୍ଟମୂଳେ ହିଂପ    ଦେଉଥିଲା ତାଙ୍କ
ମନ ଝନାମୃଣ୍ଟ୍ୟୁ କଣି ।
ଅର୍ଦ୍ଧସ୍ଫୁଟ ସ୍ୱରେ    ଗୀତ ଗାଇ ଗାଇ
ଗାୟିକାମାନଙ୍କ ସଙ୍ଗ
ସୁରଭିତ ରମ୍ୟ    ଉଦ୍ୟାନେ କେବେ ସେ
ଭ୍ରମୁଥିଲେ ପହ୍ନରଙ୍ଗ ।
କେଉଁ କାମିନୀର    ଶିଥିଳ କୁନ୍ତଳ
ଖୋପାରୁ ଖସିଣ ଫୁଲ
ଚୁଟା ପଡ଼ପରେ    ପଡ଼ କଣୁଥିଲା
ନୀଳ ନଭେ ତାରାକୁଳ ।
କେଉଁ ଚମ୍ପକାଙ୍ଗୀ    ଚମ୍ପାଫୁଲସଙ୍ଗ
ଲଗି ତା କୋମଳ ଡାଳ
ଝୁଲଇ ଝୁଲଇ    ଡକୁଥିଲା ପାଖୁ
ଉଡ୍ଡୀନ ଭ୍ରମର ଜାଲ ।

କୋକିଳର ସଙ୍ଗେ          ସ୍ୱ ସ୍ୱର ମିଶାଇ
ଅଦା କେତେ ମଦାଳସୀ
ଗୁଣୁଗୁଣୁ ସ୍ୱନେ          ମନକୁ ସଙ୍ଗୀତ
ଗାଉଥିଲେ ଚୁପି ଚୁପି ।
ଖଞ୍ଜି ଦେଉଥିଲେ          ଗୁନ୍ଥି କେତେ ସ୍ତୁରୁ
ପ୍ରତୋଷ୍ୟେ ଫୁଲ ବଳୟ
ପ୍ରଭୁ ବଦଳରେ          ଲଭି ନୃପ କଣ୍ଠ
ହାର ମଣିରତ୍ନମୟ ।
କାହା ଦେହସାକ          ମଣ୍ଡି ମଣ୍ଡପରେ
ନାନାବିଧ କୁସୁମରେ
ସ୍ନେହେ ହାତ ଧରି          'ଫୁଲନାରୀ' ବୋଲି
ସମ୍ଭାଷୁଥିଲେ ଅଦରେ ।
ସର୍ବାଙ୍ଗ ମଣ୍ଡିତ          ରତ୍ନଅଳଂକୃତ
ପ୍ରତ୍ୱରେ କେ ଜବାଧରୀ
ବଶୁଥିଲେ ଅହା          ସ୍ତୁକରୁ ସ୍ପର୍ଶିତ
ଚୁମ୍ବୀଅନା ଲତା ପରି ।
ସ୍ୱର୍ଣ୍ଣ ପିଚକାରୀ          ଧରି ଦଣ୍ଡଧାରୀ
କେତେ ସଙ୍ଗିମାଙ୍କ ସଙ୍ଗେ
କୁଙ୍କୁମ କସ୍ତୁରୀ          ଚନ୍ଦନ ଜଳରେ
ଖେଳୁଥିଲେ ନାନାରଙ୍ଗେ ।
ସୁରମ୍ୟ ନଳରୁ          ନର୍ତ୍ତକୀମାନଙ୍କ
ମୃଦୁକର ତାଡ଼ନାରେ
କୁଙ୍କୁମର ଜଳ-          ଧାର ଉଠୁଥିଲେ
ଉସ୍ତପ୍ରାୟ ସବେଗରେ ।
କାମର ସୁବର୍ଣ୍ଣ-          ମୟୂ ଶରଶ୍ରେଣୀ
ସମ ସେ ଅରକ୍ତ ଜଳ
ଛିଡ଼ିକି ବରଷା          ପରି ପ୍ଲାବୁଥିଲେ
ଧରଣୀର ବକ୍ଷସ୍ଥଳ ।
କେଳବୃନ୍ଦ ବକ୍ଷୀ          ଚୁପି ଚୁପି ଯାଇ
କାହିଁ କେଉଁ ନବବାଳୀ

ସୁବର୍ଣ୍ଣ କଳସୀ ଯାର ଦେଉଥିଲା
ତାହାଙ୍କ ମଥାରେ ତାଳ
ମୁଣ୍ଡ ଘୋଡ଼ାଏ ଉଜ୍ଜଳ ଉଜ୍ଜଳ
ସେ ଜଳ ଅପରମିତ
ଚନ୍ଦନେ ଚର୍ଚ୍ଚିତ ନରେନ୍ଦ୍ର କାନ୍ତକୁ
କରୁଥିଲା କର୍ବୁରିତ
କେବେ ସଙ୍ଗେ ସେନ ଶୁଦ୍ଧାନ୍ତ-ବାସିନୀ
ସୁମୁଖୀ ବନ୍ଧୁ ସୁନ୍ଦରୀ
କେଳି ସରୋବରରେ କ୍ରୀଡୁଥିଲେ ସ୍ନେହେ
ମରାଳ ମରାଳୀ ପରି ।
ସନ୍ତରଣ କାଳେ ଉରଜେ-ପୃଥୁଳ
ନତମ୍ବେ ଯେତେ ସ୍ଥୁଳର
ସରସୀର ନୀର ବକ୍ଷ ବଣ୍ଟୁଥିଲା
ହୋଇଲା ପରି ବନ୍ଧୁର
ରହସ୍ୟ ରସିକା ରାମାରାଜିଙ୍କର
ସୁମଧୁର ସ୍ୱନେ ମତ୍ତି
ଲସି ବୁଲୁଥିଲେ ପାଖେ ପାଖେ ମୁଗ୍ଧ
ମରାଳେ ଭସ୍ମ ବରଜ ।
କୁଙ୍କୁମିତ ରକ୍ତ— ପୀତ ଶବଳତ—
ଜଳେ ବୁଡ଼ି ସେ ମରାଳେ
ବଣୁଥିଲେ ଦୁରୁ ବୋଲହେଲା ପରି
ବାଳ ରବିକରମାଳେ ।
କେ ବାଳା ଅକଣ୍ଠ— ଜଳ ମଗ୍ନ ହୋଇ
ଲସନ୍ତେ କଣ୍ଠ ଉପରେ
କର୍ଣ୍ଣଭୂଷା ରୂପେ ନୀଳୋତ୍ପଳ ଦଳ
ଶୋଭୁଥିଲା ତା କର୍ଣ୍ଣରେ ।
ଜଳ ସିଞ୍ଚିବାରୁ ସରେ ଚଞ୍ଚଳ
କରେ କେ ଅନବରତ
ହସ୍ତ ଆସ୍ଫାଳନେ ଘନ ଫେନବିନ୍ଦୁ
ହେଉଥିଲା ସମୁଦ୍ଗତ ।

ସୁବିମଳ ସ୍ୱଚ୍ଛ                ଚନ୍ଦ୍ରିକାର କାନ୍ତି
ସେହୁ ଫେନପୁଞ୍ଜ ଧରି
ସନ୍ଧ୍ୟା ଅନ୍ତରିତ                ମଲ୍ଲୀଫୁଲ ଗନ୍ଧ
ଶୋଷି ନେଉଥିଲା ହର ।
କେବେ ବା ସର୍ବାଙ୍ଗ                ବୁଡ଼ି ଭୂପ ଜଳ
ପଲ୍ଲବରେ ଲୁଡ଼ୁଥିଲେ
ଭ୍ରମୁଥିଲେ ରଙ୍ଗେ                ଭ୍ରମର ପରାଏ
ବ୍ରତତୀ ମଣ୍ଡପ ତଳେ ।
କେବେ ସ୍କନ୍ଧଦେଶେ                ଲମ୍ବାଇ ବକୁଳ
ଫୁଲର ଗୁନ୍ଥର ହାର
ଜଟାଧାରୀ ସିଂହ                ସଜି ଡୀଙ୍ଗୁଥିଲେ
କେଳି ଶୈଳେ ବାରବାର ।
କେବେ ଉନ୍ମୋହିତ                ହୋଇ ଯୋଷିତାଙ୍କ
ମଧୁର ମଞ୍ଜୀର ନାଦେ
ଅନୁସରୁଥିଲେ                ତାଙ୍କ ପଛେ ପଛେ
ସୋପାନ ପଥେ ଆହ୍ଲାଦେ
ନୀଳ ବସନରେ                ଦେହ ଢାଙ୍କି କେବେ
ଅଭିସାରପକ୍ଷ ରହରେ
ସଙ୍କେତ ସ୍ଥଳକୁ                ଯାଉଥିଲେ ଇଷ୍ଟ
ପୂରଣ ଅଭିଳାଷରେ ।
ଅଗୁରୁ ଧୂପର—                ହୋମେ ଆମୋଦିତ
ପୁଷ୍ପମାଳେ ସୁସଜ୍ଜିତ—
ଚୁଆ ଚନ୍ଦନାଦି                ଯେତେ ବିଳାସର
ଦ୍ରବ୍ୟରେ ପରିପୂରିତ—
ପ୍ରାସାଦ ଉପରେ                କେବେ ଚନ୍ଦ୍ରପକ୍ଷେ
ମଉଜେ ମଣ୍ଡପ ବସି
ସୁରଭିତ ମଦ୍ୟ                ପିଇ ପିଇ ସେହୁ
ନାନା ଆମୋଦରେ ରସି
ହାସ୍ୟ ରସେ ମାତୁ—                ଥିଲେ କେଳି ପ୍ରିୟା
ପ୍ରେୟସୀ ସଙ୍ଗ ଗହଳେ

ଲମ୍ଫୁଥିଲ ପୁର କରତାଳ ସ୍ୱଣ
ମୃଦଙ୍ଗ ବଂଶୀ ଚହ୍ଳଲେ ।
ଏମନ୍ତ ବିବିଧ ଅଳୀକ ପ୍ରମୋଦ
ରହସ୍ୟେ ଦେଇ ମାନସ
ବିଳାସ ବାସନା ଅନୁକୂଳେ ଭୂପ
କାଟିଲେ ନଶି ଦିବସ ।
ସୁଯୋଗ୍ୟ ମନ୍ତ୍ରୀର କରରେ ସାମ୍ରାଜ୍ୟ
ଶାସନ ଥିବାରୁ ନ୍ୟସ୍ତ
ପ୍ରଜାପକ୍ଷଙ୍କର ଅନିଷ୍ଟ ଶଙ୍କାରେ
କେବେ ନୋହୁଥିଲେ ବ୍ୟସ୍ତ ।
ସମର୍ପି ସ୍ୱରାଜ୍ୟ ସୁଜନର ଭାର
ସ୍ୱଦକ୍ଷ ସଚିବ କରେ
ଏ ଭାବେ ରାଜାଏ କାଟନ୍ତି ସମସ୍ତ
ଦିନ। ଭୋଗ ବିଳାସରେ ।
ମାତ୍ର ସଭିଙ୍କର ଭାଗ୍ୟରେ କଷ୍ଟସ୍ତ
ସେବକ ଭବେ ବିରଳ
ସ୍ୱଳ୍ପ ସୁଯୋଗରେ ଧରନ୍ତି ସେମାନେ
ମାର୍ଜ୍ଜାର ବୃତ୍ତି କେବଳ ।
ଶାସନ-ଶିଥିଳ ଯୋଗୁ ଗୁପ୍ତେ ଚଳେ
ଅଣ୍ଡାଖୋଷା ପଣପଣ
ପକ୍ଷପାତଶୂନ୍ୟ ବିଗ୍ଭର ନପାଇ
ବାଦୀ ପ୍ରତିବାଦୀଗଣ ।
ଧନର ଲାଳସା ବଢ଼େ, ଏଣୁ ତାହା
ଝିଙ୍କିବାକୁ ବାରବାର
ଅସିବାକୁ ପାଖେ ପକ୍ଷଙ୍କୁ ନ ଦେଇ
କରନ୍ତି ସେ ମାରମାର ।
ଅସନ୍ତୁଷ୍ଟ ପ୍ରଜା— ଭୂଲର ହୃଦୟ
ହୁଏ ଅଶାନ୍ତିରେ ପୂର୍ଣ୍ଣ
କର୍ମଗ୍ଭରୀ ପେଟେ ପଶି ଅଲକ୍ଷିତେ
ଧନବଳ ହୁଏ ଚୂର୍ଣ୍ଣ ।

ପାଖ ଶତ୍ରୁମାନେ ଉତ୍ତମ ସୁଯୋଗ
ଦେଖି ଏହି ଅବସରେ
ଦିଗ୍‌ବିଜୟ ଛଳେ ଆକ୍ରମି ନଥନ୍ତ
ସେ ରାଜ୍ୟକୁ ଅକ୍ଳେଶରେ ।
ମାତ୍ର ତାରାପୀଡ଼ ମନ୍ତ୍ରୀଙ୍କ ଏମନ୍ତ
ନଥିଲା ଟିକିଏ ଦୋଷ
ଅତି ବିଶ୍ୱାସୀ ସେ ନିଜ ବୁଦ୍ଧିବଳେ
ପୂରୁଥିଲେ ରାଜକୋଷ ।
ଦ୍ୱିଗୁଣ ଉତ୍ସାହେ କାର୍ଯ୍ୟ ସାଧୁଥିଲେ
ଦେଇ ନିଜ ପ୍ରାଣମନ
ଅନୁରୂପ ତାଙ୍କୁ ଅଖଣ୍ଡ ବିଶ୍ୱାସ
କରୁଥିଲେ ନରବର ।
ହେଲେ ଏସବେ ମନ୍ତ୍ରୀ କରେ ସିନା
ରାଜକାର୍ଯ୍ୟ ଶୃଙ୍ଖଳାରେ
ମାନବ ଶୃଙ୍ଖଳା ନଆସିଲା ତାଙ୍କ
ପାରିବାରିକ ସଂସାରେ ।
ଠାକୁ ରହେ ନାହିଁ ସମୟ କାହାକୁ
ଚାଲିଯାଏ ସେ ଚପଳେ
କେ ସମର୍ଥ ହେବ ତାର ଗତି ବେଗ
ରୋଧିବା ପାଇଁକି ବଳେ ?
ଆସିବା ସମୟେ ଖଞ୍ଜ ପରି ପାଶେ
ବିଳମ୍ବେ ସମସ୍ତ ଆସେ
ଯିବାବେଳେ ଯାଏ ଡେଣା ଲାଗିଥିବା
ଚଟୁଳ ପକ୍ଷୀ ପରି ସେ ।
ଯୌବନ ସମ୍ଭୋଗ ସୁଖସ୍ୱପ୍ନେ ଭୂପ
ନିରତ ନହିଲେ ମତ
କ୍ରମରେ ସମସ୍ତ ସୁଳକ୍ଷ ଜନମ
ନ ହେଲେ ପୁତ୍ର ସନ୍ତତି ।
ଯେମନ୍ତ ଦେହରୁ ଖସି ଯାଉଥିଲା
ଆଧିପତ୍ୟ ଯୌବନର

ସେହୁପରେ ମନ୍ତ୍ର ପୁତ୍ର ଲାଭ ଆଶା
ହେଉଥିଲା ଦୂରତର ।
ପୁତ୍ର ନୋହିବାରୁ କ୍ରମଶଃ ମନରେ
ଉପୁଜିଲା ଅନୁତାପ
ଅସାର ସଂସାରୁ ମନ ଛୁଟିଗଲା,
ବଢ଼ିଲା ହୃଦ ସନ୍ତାପ ।
ସାମନ୍ତେ ବେଷ୍ଟିତ ଥିଲେହେଁ ମଣିଲେ
ନିଜକୁ ସେ ଅସହାୟ
ଚକ୍ଷୁ ଥାଇ ଅନ୍ଧ ପଦସ୍ତ୍ୱେ ଅଚଳା—
ପାଳ ହେଲେ ନିରୁପାୟ ।
ଫେରାଇ ଆଣିଲେ ଅତୀତରେ ବିଳାସ
ବାସନାରୁ ଦୃଢ଼ମନ
ବୁଝିଲେ ଭୂପତି ଅତୀତରେ ଯୌବନ
ଜନିତ ସୁଖ ସ୍ୱପନ ।
ଅନୁଶୋଚନାରେ କ୍ରମେ କ୍ରମେ ମନ
ଅଥସ୍ତ୍ୱେ ଅତ ଅନ୍ତରେ
ସବୁ ଛାଡ଼ିଦେଇ ଆସି ରହିଲେ
ଯାଇ ରାଣୀହଂସପୁରେ ।
ଥିଲେ ପାଟରାଣୀ ସୁନ୍ଦରୀ ସରଳ
ସୁକୁମାରୀ କଳାବତୀ
ରମଣୀ କୁଳର— ଶିରୋମଣି ନାମ
ତାହାଙ୍କ ବିଳାସବତୀ ।
ସକଳ କଳାସ ଭଗୀର ମହିଷୀ
ଥିଲେତ ଜନନୀ ପରି
ସୁହାସୀ, ସୁକେଶୀ, ସୁମୁଖୀ, ସୁରୂପା,
ସୁକୁମାରୀ ସୁଲୋଚନୀ ।
ଶୁଭ୍ରଚନ୍ଦ୍ରକଳା ଉତ୍କଳର ଯଥା
ଧୂର୍ଜଟୀ ଜଟା ଜାଳକୁ
ଭଗ୍ନସ୍ତମ୍ଭ ମଣି ଅଥବା ସେମନ୍ତ
ହୃଷୀକେଶ ହୃଦୟକୁ ।

ଅଥବା ଉଭତ ବନମାଳେ ଯେସନ୍ତେ
ଜଳଧରଙ୍କ ହୃଦୟ
ଅବା ଦର୍ପଦନ୍ତୀର ଗଣ୍ଡୁ ଯେସନ
ଗଳୁ ମଦ ଜଳଚୟ ।
ତେସନ ମଞ୍ଜରୀ କଳାସଦଣଙ୍କ
ଅତୁଳ ରୂପ କମଳ
ତାପସୀଚନ୍ଦ୍ରର ଗାଢ୍ୟ ସ୍ୱଭବାଣୀ
ଭରିଥିଲା ସମୁଜ୍ଜ୍ୱଳ ।
ବନସ୍ଥଳୀ ଯଥା ବସନ୍ତ କାଳରେ
ପୁଷ୍ପର ସମ୍ଭାର ବହେ
ସେହିପରି ସ୍ୱଣୀ ଶୋଭୁଥିଲେ ଅହା
ମହାର୍ହି ଶୋଭା ପ୍ରବେହେ ।
ଶୁଭ୍ର ଜ୍ୟୋତ୍ସ୍ନାଜାଲ ପଡ଼ିଲେ ଯେସନ
ଚନ୍ଦ୍ରମା ଅମ୍ବୁ ତରଳ
ଅବା ଯାଏ ଯେସନ୍ତେ ଉଜ୍ଜ୍ୱଳ ତାରକା
ପ୍ରସରେ ଆକାଶ ସ୍ଥଳ ।
କି ଅବା ଯେମନ୍ତ ସ୍ୱଚ୍ଛ ସରୋବରା
ସମ୍ଭାରେ ଫଣଇ ସର
ବସୁଥିଲ ତେସନ୍ତେ ଲାବଣ୍ୟ ପ୍ରବାହେ
ମହିଷୀଙ୍କ କଳେବର ।
ଲତା ଯୋଗେ ଯଥା ଶୋଭଇ ପାଦପ,
ଭୂଷଣ ଗୀରେ ସାଗର,
ମସ୍ତକ ମଣ୍ଡଳ ଦଣ୍ଡାଷ୍ଟ ଯେମନ୍ତ
ସୁଷମା ମାନସରର ।
ସୁନ୍ଦର ଚନ୍ଦନ କାନନେ ଯେପର
ଧରଇ ମଳୟଗିରି
ବହୁଥିଲ ତେସନ୍ତେ ରମଣୀ ମଣିଙ୍କ
ଯୋଗେ ରାଜପୁର ଶିରୀ ।
ବନେ ନରମଣି ରାଜ ମହିଷୀଙ୍କୁ
ପୂରେ ନ ଭେଟିଲେ ଯାଇ

ବସିଥିଲେ ଧନୀ ଗାଲେ ହାତ ଦେଇ
ଦୁଃଖରେ ମୁହଁ ଶୁଖାଇ
ଶୂନ୍ୟ ଦିଶୁଥିଲା ଶରୀର ତହିଁରେ
ନଥିଲା ଖଣ୍ଡେ ଭୂଷଣ
ଅଶ୍ରୁ ପ୍ରବାହରେ ତିନ୍ତି ଯାଇଥିଲା
ନବୀନ ଝୀନ ବସନ ।
ବୋଧୁଥିଲେ ଧୀରେ ପ୍ରାଚୀନା ଆଶ୍ରିତା
ମାନେ ନିକଟରେ ରହି
ମହିଷୀଙ୍କ ଖେଦେ ଫାଟୁଥିଲା ତାଙ୍କ
ନୟନୁ ଲୋତକ ବହି ।
ଟୋକା ପରିବାରୀ ଦାସୀ ସହଚରୀ
ସଭିଙ୍କୁ ଶୋକେ ଅଧୀର
ଦେଖି ନୃପ କିଛି ବିସ୍ମୟେ ସହସା
କରି ନପାରିଲେ ସ୍ଥିର
ସ୍ୱାମୀଙ୍କୁ ନିରେଖି ମଉନେ ଖଟରୁ
ଚଞ୍ଚଳ ଉଠିଲେ ରାଣୀ
ନତେ ଭୂପ ବସି ବସାଇଲେ ପାଖେ
ଆଦରେ ତାହାଙ୍କୁ ଟାଣି ।
ବେଦନର ଗୂଢ଼ କାରଣ ନବୁଝି
ଭୟେ ଭୟେ ରାୟେ ଧୀରେ
ଅଶ୍ରୁଜଳ ପୋଛି ସ୍ୱହସ୍ତେ କହିଲେ
ପ୍ରୀତିପୂର୍ଣ୍ଣ ମୃଦୁ ଗୀରେ ।
କିସ ପ୍ରିୟତମେ ? କାହିଁକି କାନ୍ଦୁଛ
ଏକାକେ ମଉନେ ବସି
ସେଫାଳିକା ପ୍ରାୟ ଫିକା ଦିଶେ କିମ୍ପା
ନିର୍ମଳ ବଦନମଣି ।
କିପାଇଁ ପ୍ରେୟସୀ ଫେଇ ଦେଇ ଦେଲୁଁ
ମହାର୍ଘ ଭୂଷଣରାଜି
ତାରାସ୍ଥାନ ଶୂନ୍ୟ ନଭସ୍ଥଳ ସମ
ଦେହକୁ କରୁଛ ତୁଛ ।

ଶତଦଳଦଳେ ବାଳାତପବତ
ଯେ ଚରଣ ଅଲତାରେ
ରଙ୍ଗ ଦିଶୁଥିଲା, କାହିଁ କର ତାହା
ଭୂଷିତ ନେହ ଆସାରେ ।
ପ୍ରେମସରୋବରେ ଖେଳ କଳହଂସ
ଯୁଗଳ ପରାଏ ସହି !
କାହିଁ କଳନାଦୀ ନୂପୁର ଚରଣେ
ମଣ୍ଡନେ ଅଛନ୍ତି ରହି ।
କମନୀୟ କ୍ଷୀଣ— କଟି ପ୍ରଦେଶର
ଅଲିଙ୍ଗନକୁ ନଲଭି
ପଗରେ କେମନ୍ତ ମେଖଳା ମଣ୍ଡନେ
ପଡ଼ିଛି ଦେଖ ବାନ୍ଧବ ।
ପୂର୍ଣ୍ଣଚନ୍ଦ୍ରମାର ଅଙ୍କରେ ହରିଣ
ଲାଞ୍ଛନ ପରାୟେ ଅହା
ଦିଶୁଥିଲା ଗୋଲ ସ୍ତନେ କସ୍ତୁରୀର
ରୁଚିର ଚିହ୍ନାଙ୍କ ଯାହା ।
ଏବେ କାହିଁ ସେହି ସୁଚର୍ଚ୍ଚିତ କୁଚ
ଅଗୁରୁ ଚନ୍ଦନଘଟା
ନ ବଢ଼ାଏ ପ୍ରିୟେ ! ଭ୍ରମର ରୁଚିର
ଉନ୍ନତ ଉରଜ ଛଟା ।
ଜାହ୍ନବୀର ସ୍ରୋତେ, ଶିବ ମୁକୁଟର
କଳାଧର କଳାପରି
ଶୋଭୁନାହିଁ କାହିଁ କମ୍ବୁକଣ୍ଠେ ତବ
ରତନକଣ୍ଠି ସୁନ୍ଦର !
କାହିଁକି ବୃଥାରେ କାନ୍ଦୁଛ ଅଥୟେ
ପ୍ରିୟତମେ କୋହବହି
ଇନ୍ଦୀବର ନେତ୍ରୁ ବିନ୍ଦୁ ବିନ୍ଦୁ ଅଶ୍ରୁ
ପ୍ରବଳ ବେଗରେ ବହି,
ଗଣ୍ଡରେ କୁଙ୍କୁମ ରସରେ ରଞ୍ଜିତ
ମନୋହର ପତ୍ରାବଳୀ

ଲଜ୍ଜ ବହୁଛ, ତା କେଣି ହୃଦୟ
ବସ୍ତାଦେ ଯାଏ ତରଳ ।
ପ୍ରଫୁଲ୍ଲ କମଳ ଦଳର ସମାନ
କୋମଳ କରତଳରେ
କଁପା ଗଣ୍ଡଦେଶ ନବେଣି ସୁନ୍ଦର !
ବସିଛ ବସ୍ତାଦଭରେ ।
ଗୋରୋଚନା ଗୌର ଚନ୍ଦ୍ରାଣୁନ୍ୟ ରମ୍ୟ
ଲଳିତ ଲଲାଟଦେଶ
ଯେଗୋ ଅଦରଶ— ଅନନ୍ତା ଯାତନା
ଦେଉଛି ମୋତେ ଅଶେଷ ।
ଅମାର୍ଜିତ ରୁକ୍ଷ କୁନ୍ତଳ କଲାପ
ଦେଖ କପୋଳରେ ପଡ଼ି
କେତେକ ବେଷ୍ଟରେ ଧୂସର ଭ୍ରମର
କାନ୍ତକୁ ଦେଉଛି ଡଙ୍କ ।
ଚନ୍ଦ୍ରକଳା ମ୍ଳାନ ଅସୁନ୍ଦର କୃଷ୍ଣ—
ପକ୍ଷର ପ୍ରଦୋଷବତ
ପୁଷ୍ପଶୂନ୍ୟ କୁଞ୍ଜ ରୁକ୍ଷ ମୁକ୍ତକେଶ
(ମୋର) ହୃଦୟ ଦହେ ସତତ ।
କମ୍ପଭ ହେମନ୍ତ ବସନ୍ତ ବାତରେ
ନବପତ୍ର ପରଥରେ
ତେସନ ତୁମ୍ଭର ପାର୍ଶ୍ୱରେ ମୋର
ହୃଦୟ କାନ୍ଦେ କାତରେ ।
କଣ ଅପରାଧ କରିଛି କି ପ୍ରିୟେ !
ଅଛିତେ ତୁମ୍ଭ ପାଖରେ ?
ଅଥବା କରିଛି ଯାତନା ମନରେ
ଅପର ସେକ କାର୍ଯ୍ୟରେ ?
କହି ନ ଲୁଚାଅ ଦୟାବନ୍ତ କହ
ଦୁଃଖର ଯେତେକ କାରଣ
କଁପା କେଶମେଘ ଢାକିଛି ତୁମ୍ଭର
ଶରଦଶଶୀ ବଦନ ।

ନରେଶଙ୍କ ପ୍ରଶ୍ନେ    ମଙ୍ଗଳା ନାମେ
ମହିଷୀଙ୍କ ସହଚରୀ
ସବିନୟେ ଧୀରେ    ମସ୍ତକ ନୁଆଁଇ
ନରେଶଙ୍କୁ ଏହୁପରି ।
ଆମ୍ଭଙ୍କ ପାଖରୁ    ଭଲ ବ୍ୟବହାର
ନୁହଇ କେବେ ସମ୍ଭବ
ଆମ୍ଭଙ୍କ ଆଦରେ    ବଢୁଅଛି ସିନା
ମହାରାଣୀଙ୍କ ଗୌରବ ।
ମହାଭୂତଗ୍ରସ୍ତ    ହେଦେବ ! ଏ ଭବେ
ହୋଇଥାଏ ଯେଉଁ ଜନ
ଚକିତ୍ସା ପ୍ରୟୋଗ    ତାହାର ପକ୍ଷରେ
ହୁଅଇ ପଣ୍ଡ ଯେସନ ।
ପୁତ୍ର ନୋହିବାରୁ    ତେସନ ରାଣୀଙ୍କ
ବଢ଼ିଛି ଯେଉଁ ବେଦନା
ଶତ ଉପଦେଶେ    ଲଭିବ କି କେବେ
ହୃଦରୁ ସେହି ଯାତନା ।
ସନ୍ତତି ଜନ୍ମିଲେ    ହୁଅଇ ସିନା ଟି
ଦାମ୍ପତ୍ୟ ପ୍ରୀତି ସଫଳ
ତାର ବ୍ୟତିକ୍ରମେ    ଆହେ ଦେବ ! ବନ୍ଧ୍ୟା
ରଙ୍ଗରସେ କେଉଁ ଫଳ ?
ଶୁଣ ଶୁଣ ତାହା    ମହାରାଣୀଙ୍କର
ଶାନ୍ତି ହେଉଅଛି ମନ
ଉଦାସୀନ ମନେ    ଆଚରନ୍ତି ସିନା
କେବଳ ସ୍ନାନ ଭୋଜନ ।
ଆମ୍ଭଙ୍କର ମନେ    ଦୁଃଖ ହେବବୋଲି
ବ୍ୟାଜ ଆନନ୍ଦର ସୁଖେ
ସ୍ୱଦୁଃଖ ଘୋଡ଼ାଇ    ରହୁଥାନ୍ତି ସଦା
ମହିଷୀ ପ୍ରସନ୍ନ ମୁଖେ ।
ଚତୁର୍ଦ୍ଦଶୀ ତିଥି    ହେତୁ ଆଜ ପୁଣ୍ୟ
ଦେବାପାଇଁ ମହେଶଙ୍କୁ

ଯାଉଥିଲେ ମହା- ଦେଈ ଉପବାସେ
ମହାକାଳ ମନ୍ଦିରକୁ ।
ସୁପବନ୍ଦ ମହା— ଭାରତ ଗ୍ରନ୍ଥରୁ
ଶୁଣିଲେ ଏମନ୍ତ ଶ୍ଳୋକ
ଅପୁତ୍ରିକ ଜନ— ମାନଙ୍କୁ ନମିଳେ
କେବେହେଁ ମଙ୍ଗଳ ଲୋକ ।
ପୁଂନାମ ନରକୁଁ ତାରିବାରୁ ସିନା
ପିତା ମାତା ଉଭୟଙ୍କୁ
ପୁତ୍ର ବୋଲି ଦେବ କହନ୍ତି ସକଳେ
ଜଗତରେ ତନୟଙ୍କୁ ।
ସେ କଥା ଶୁଣିଲୁ ହେଲୁ ଅସମ୍ଭାଳ
ଦୁଃଖରେ ଦେବୀ କାତର
ବାର ବାର ଯେତେ ପଚାରିଲେ ଦେଈ
ନାହାନ୍ତି କିଛି ଉତ୍ତର ।
ଏତେବୋଲି ସଖୀ ରହିଲ ମଉନେ
ବଷାଦେ ଧରାକୁ ଚାହିଁ
ପ୍ରବୋଧି ରାଣୀଙ୍କୁ କହିଲେ ସସ୍ନେହେ
ମୃଦୁସ୍ୱରେ ନରସାଇଁ ।
ଅପତ୍ୟ ଅଭାବ ଦୁଃଖେ ମହାଦେଈ
କପାଁ କାନ୍ଦ ବିକଳରେ
ପୁତ୍ରଲାଭ ଦେବ ! ଦୈବାଧୀନ ତାହା
ନାହିଁଟି କାହା ହାତରେ ।
ସାମାନ୍ୟ ମନୁଷ୍ୟ ହୋଇ ଏହି ତତ୍ତ୍ୱ
ଜଗତେ ବୁଝିବ କଏ ?
ସ୍ୱଭ ସ୍ୱଭ ବଣା ହୁଅନ୍ତି ସେ ଭବ
ନ ବୁଝି ସ୍ୱର୍ଗବାସୀଏ ।
କଣାଯାଏ ଦେବ ! ପୂର୍ବେ ଆମ୍ଭେ ଦୁହେଁ
ସୁକୃତ ଆଚରି ନାହୁଁ
ଲୋଡ଼ିଲେଟି ଏବେ ପୁତ୍ରଲାଭ ସୁଖ
ସଗ୍ୟରେ ମିଳିବ କାହୁଁ ?

ପୂରୁବ ଜନମ          କୃତ ପାପ ପୁଣ୍ୟ
    ନୁହଇ କେବେ ଅନ୍ୟଥା
ଇହ ଜନମରେ          ତାର ଅନୁରୂପ
    ଫଳଇ ଫଳ ସର୍ବଥା ।
ଶୋକ ପରହର          ଏଣୁ ପ୍ରିୟେ ପୁଣ
    ଦୁରିତ ଖଣ୍ଡନ ପାଇଁ
ଦେବ ଅନୁଗ୍ରହ          ଲଭ ଲଗି ନାନା
    ସତ୍କାର୍ଯ୍ୟ ଆଚର ଯାଇ ।
ଗୁରୁଜନ ପ୍ରତି          ଭକ୍ତିମତୀ ହୁଅ
    ଦରିଦ୍ରଙ୍କୁ ଦିଅ ଦାନ
ପଥିକ ବିଶ୍ରାମ          ପାଇଁ ପାନ୍ଥଶାଳା
    ନକର କର ନିର୍ମାଣ ।
ବିପନ୍ନ ଜନର          ଉପକାରେ ଦେବି !
    ସର୍ବଦା ହୁଅ ନିରତ
ଜନମ ଭୂମିର          ସେବାକର ତୁମ୍ଭ
    ଜୀବନର ଦୃଢ଼ବ୍ରତ ।
ସ୍ୱଇବନ୍ଧୁ ଯେତେ          ଆତ୍ମୀୟ ସ୍ୱଜନ
    ସଭିଙ୍କୁ ଅତି ସଦୟେ
ଆଦରି ତାହାଙ୍କ          ସୁଖ ଶାନ୍ତି ଦେବି !
    ମନାସ ସଦା ହୃଦୟେ ।
ଈର୍ଷାମଦେ ମାତି          କେତେ ଅଲକ୍ଷଣୀ
    କୁଟିଳା ରାଜ କାମିନୀ
ଦୁର୍ମତି ବଶରେ          ହୁଅନ୍ତି ଆତ୍ମୀୟ
    ମାନଙ୍କ ଦୁଃଖ ଦାୟିନୀ ।
ବଡ଼ ଭାଗ୍ୟହୀନା          ନାରୀକୁଳେ ସେହି
    ଜଗତରେ କେବେ କାହିଁ
ବିଶ୍ୱାସ କରିବା          ପାଇଁ ଜଣେ ସୁଦ୍ଧା
    ତାହାଙ୍କୁ ମିଳନ୍ତି ନାହିଁ ।
ଅସନ୍ତୁଷ୍ଟ ପର—          ଜନଙ୍କ ଉତ୍ତପ୍ତ
    ଶ୍ୱାସେ ପଡ଼ି ଅସମୟେ

ସ୍ୱାମୀ ପଦ ପ୍ରିୟ— ଜନ ଗୋଟିଗୋଟି
ଯାଆନ୍ତି ଯମ ଆଳୟେ ।
ସୁନ୍ଦର ଭାର୍ଯ୍ୟାର ଦୈବୀଦଣ୍ଡ ବୋଲି
ତାହା ମନେ ନବସ୍ୱର
ଭଗାର ହସିଲେ ଆତ୍ମ ଦୁଃଖେ ବୋଲି
ଈର୍ଷାରେ ହୁଅନ୍ତି ଘାର ।
ଏସନ କଦର୍ଯ୍ୟ ନାରୀ ସଙ୍ଗ ଛାଡ଼ି
ପ୍ରସନ୍ନ ଉଦାର ମନେ
ଆତ୍ମୀୟ ସ୍ୱଜନେ ତୋଷ କରାନ୍ତି !
ଯତ୍ନେ ପ୍ରୀତି ସମ୍ଭାଷଣେ ।
ମୁନି ଋଷିଗଣେ ସବିନୟେ ଭକ୍ତି
ସମ୍ମାନେ ଆଦର କରି
ପରିତୁଷ୍ଟ ହେଲେ ସେବାରେ ସେମାନେ
ଆହ୍ଲାଦେ ଦିଅନ୍ତି ବର ।
ଶୁଣିଛ ପୁରାଣେ ବୃହଦ୍ରଥ ବୀର
ମଗଧଦେଶ ଈଶ୍ୱର
ଲଭିଥିଲେ ପୁତ୍ରେ ଜରାସନ୍ଧ ନାମେ
ତେଜସ୍ୱୀ ଏକ କୁମର ।
ରାଜା ଦଶରଥ ବୃଦ୍ଧ ହୋଇଲେହେଁ
ଋଷ୍ୟଶୃଙ୍ଗଙ୍କୁ ମନାଇ
ମହା ପରାକ୍ରାନ୍ତ ଦାନବ ବିଜୟୀ
ଚାରିପୁତ୍ର ଥିଲେ ପାଇ ।
ଆରାଧି ଏକାନ୍ତ ଭକ୍ତିରେ ଋଷିଙ୍କୁ
ଦିଲୀପ ଆଦି ରାଜନ
ସୁଖୀ ହୋଇଥିଲେ ତାହାଙ୍କ କୃପାରେ
ଦେଖିଣ ସୁତ ବଦନ ।
ତୁମ୍ଭର ସମାନ ଘାରି ହେଉଅଛ
ବିଷାଦରେ ସଦା ମୁହିଁ
ନଦେଖି ନବୀନ ପୁତ୍ର ମୁଖ ତୁମ୍ଭ
କୋଳରେ ଚନ୍ଦ୍ରମାମୁହିଁ !

ଝଲୁଛି ନୟନ    ପୂର୍ଣ୍ଣ ଚନ୍ଦ୍ରମାରେ
ଶରଦ ରଜନୀ ସମ ।
ଦେଖିବି ମୁଁ କେବେ    ଅତ୍ୟଳ୍ପ ପାଣ୍ଡୁର
ତୁମ୍ଭ କାନ୍ତି ମନୋରମ
ଅସନ୍ନ ଗର୍ଭର    ଭରେ ମନ୍ଦ ମନ୍ଦ
ଆସି ଲଜ୍ଜାନମ୍ରମୁଖେ
ଆଦରେ ନିକଟେ    କେବେ ମୃଦୁହାସ୍ୟେ
ବସିବ ପରମ ସୁଖେ ।
ପୁତ୍ର ଜନ୍ମ ହର୍ଷେ    କେବେ ପରିଜନେ
ଭୂଷଣ ବସ୍ତ୍ର ବଳରେ
ହରିନେବେ ଦେହୁଁ    ଏ କଳନା ଦେଖି !
ଭରେ ମୁଁ ସଦାକାଳରେ ।
କେବେ ତୁମ୍ଭେ ପିନ୍ଧି    ହରିଦ୍ରା ଜଳରେ
ରଞ୍ଜିତ ଝୀନ ବସନ
ପୁତ୍ର କୋଳେ ଧରି    ଶୀତଳ କରିବ
ମୋର ଏ ତାପିତ ମନ ।
ଶଯ୍ୟାରେ ଉତ୍ତାନ—    ଶାୟୀ ତନୟର
ଦନ୍ତହୀନ ହାସ୍ୟମୁଖ
ଖଣ୍ଡିବ କେବେ ମୋ    ହୃଦୟରୁ ସେତେ
ଅଶାନ୍ତ ଜନିତ ଦୁଃଖ ।
କଳନାଦୀ ବୀଣା    ବତ କେବେ ସୁତ
ଖାଇ ଖାଇ ଖଣ୍ଡ ଶାଚ
ପୁର ମହିଳାଙ୍କ    ହସ୍ତହସ୍ତେ ସୁଖେ
ଆଦରେ ବୁଲିବ ନାଚ ।
କେବେ ଧନମଣି    ହୋଇ ଧରଣୀର
ଧୂଳିରେ ଧୂସର ବର୍ଣ୍ଣ
ମୋ ମନନୟନ    ସଙ୍ଗ ଉଜ୍ଜ୍ୱଳିବ
ପ୍ରାସାଦ ପୁରପ୍ରାଙ୍ଗଣ ।
ପଡ଼ଉଠି କେବେ    ଆଣୁପରେ ଖସି
ନବେଶି ପ୍ରିୟ ନନ୍ଦନ

ସିଂହ ଶାବକର ପରାଏ ନିର୍ଭୟେ
ଦଉଡ଼ିବ ଘନଘନ ।
ଆଦରେ ଡାକିବା ବେଳେ ଧାଈ କୋଳ
ଆସିବା ପାଇଁ ଚୁମାଇ
ବାରୁଥିବ କେବେ ସୁକୋମଳ କର
ଯୁଗଳ ଟେକି ତାହାର ।
ବାଳଚନ୍ଦ୍ର ପରି ଅର୍ଦ୍ଧବକ୍ର ଧାଈ
ତର୍ଜ୍ଜନୀ ସଙ୍କେତ ପାଇ
ଦାରୁଷ୍ଟ ଭୟେ ନାହିଁ କରୁଥିବ
କେବେ ସେ ଶିର ହଲାଇ ।
ନିର୍ମ୍ମଳ ସ୍ଫଟିକ ଭୂମିରେ ଭ୍ରମର
ଉଲ୍ଲାସେ କାଳର ଛାଇ
ଦେଖି ଦେଖି କେବେ ଧରିବା ପାଇଁକି
ଚଞ୍ଚଳେ ବୁଲିବ ଧାଇଁ ।
ସ୍ୱଜସଭା ସ୍ଥଳେ ଧାଈକର ଧରି
କେବେ ପ୍ରବେଶିବ ଧନ
ସାମନ୍ତ ସ୍ୱଜନେ ଆଦରେ ପାଶେଟି
କରିବେ ଅଭିବାଦନ ।
ଚିନ୍ତି ଚିନ୍ତି ସଦା ଏସକଳ ମୋର
ମାନସ ହେଉଛି ଯାହା
କି କହିବି ଦେବ ! ଅନ୍ତର୍ଯ୍ୟାମୀ ତୁମ୍ଭ
କିଏ ବା ବୁଝିବ ତାହା
ଦୁର୍ଭାବନା ବଶେ ଦୁଃଖରେ ସୁଖାର୍ଦ୍ଧ
ରହିଯାଏ ଅନିଦ୍ରାରେ
କେବଳ ଦୁଃସ୍ୱପ୍ନ ଦେଖଇ ଶୟନେ
ଉଠଇ ଘୋର ତନ୍ଦ୍ରାରେ ।
ପୁତ୍ରଶୂନ୍ୟ ମହା ସନ୍ତାପ ଅନଳ
ଜଳୁଅଛି ରହି ରହି
ନିରନ୍ତେ ହୃଦୟେ, ଘୋରଚିନ୍ତା ଶିଖା
ଶରୀର ମନକୁ ଦହି ।

ସକଳ ଲୋକରେ ପୁଣି ଏହି ବିଶ୍ୱ
ଦିଶୁଅଛି ଶୂନ୍ୟମୟ,
ଶୂନ୍ୟଦିଶେ ଏହି ରାଜପୁର ଶୂନ୍ୟ
ଦିଶୁଛି ନିଜ ହୃଦୟ ।
କିନ୍ତୁ ଦେବ ! କିଏ ବିଧାତାର ପ୍ରତି-
କୂଳରେ କରିବ ଗତି
ମହାବଳୀଠାରୁ ବଳବାନ ଭବେ
ଜାଣିତ ଅଟେ ନିୟତି ।
ମନରୁ ସନ୍ତାପ ଦୂର କର ଏଣୁ
ଦିଅ ଧର୍ମ କର୍ମେ ମତି
କାମନା ପୂରିବ ନିଶ୍ଚେ ଭଗବାନ
କରିବେ ସୁପ୍ରସନ୍ନ ମତି ।
ସ୍ୱହସ୍ତେ ସଲିଳ ସେଚି ପୋଛିଦେଲେ
ଏସନ କହି ରାଜନ
ଅଶ୍ରୁଜଳଯୁକ୍ତ ଜଳାର୍ଦ୍ର କମଳ
ସମାନ ପ୍ରିୟା ଆନନ ।
ସୁହାସେ ଆଦରେ ନାନା ଉପଦେଶେ
ପ୍ରେୟସୀ ମନ ଭୁଲାଇ
ଆସିଲେ ବାହାରେ ଧୈର୍ଯ୍ୟ ଆବରଣେ
ନିଜ ଦୁଃଖକୁ ଘୋଡାଇ ।
ଶୋକ ପରହରି ପୂର୍ବପରି ତଥି
ମହିଷୀ ବିଳାସବତୀ
ବେଶଭୂଷା ରତି ଲୋକହିତକର
କାର୍ଯ୍ୟରେ ନହିଲେ ମତି ।
ଦେବ ଆରାଧନା ସୁଧାର୍ତ୍ତି ଭିକ୍ଷୁକ
ଭୋଜନ ଗୁରୁ ପୂଜାରେ
ରତ ହେଲେ ସେହି ନାନା ଉପଚାରେ
ତନୟ ଲାଭ ଆଶାରେ ।
ଗୁରୁତର କାଯ୍ୟ— କ୍ଲେଶକୁ ନରେନ୍ଦ୍ର—
ସୁନ୍ଦରୀ ଗଲେ ନଗଣି

ଯାପିଲେ କଷ୍ଟରେ  ଉପବାସ ବାର—
ବ୍ରତରେ ଥିବା ରଜନୀ ।
ସୁରଭି ଗୁଗ୍ଗୁଳ  ଧୂପେ ସୁରଭିତ
ପବିତ୍ର ଚଣ୍ଡୀ ମଣ୍ଡପେ
ତଦ୍‌ଗତମନରେ  ପହୁଞ୍ଚିଲେ ଯାଇ
ନବୀନ କୁଶତଳପେ ।
ପଞ୍ଚଫଳଯୁକ୍ତ  କଳଶ ଜଳରେ
ମଜ୍ଜି ଅତି ପ୍ରତ୍ୟୂଷରୁ
ଦେବାର୍ଚ୍ଚନା ସାରି  ପ୍ରସନ୍ନ ମନରେ
ଶୁଦ୍ଧମତୀ କରଯୋଡ଼ୁ ।
ଗୋଷ୍ଠପଷ୍ଠି ଦୂର୍ବା  ଗୋପାଙ୍ଗଣୀଗଣ
ସହିତ ଶୁଦ୍ଧଚନ୍ଦ୍ରରେ
ପୂଜିଲେ ଗୋଧନ  କୁଳକୁ ସିନ୍ଦୂର
ଚନ୍ଦନ ମାଲ୍ୟେ ଆଦରେ ।
ପୂଜାଶେଷେ ଧନୀ  ପ୍ରସନ୍ନ ମନରେ
ବିବିଧ ଧନ ରତନ
ତିଳପାତ୍ରସହ  ବ୍ରାହ୍ମଣମାନଙ୍କୁ
ବାଣ୍ଟିଲେ ପଣ ପଣ ।
କୃଷ୍ଣପକ୍ଷ ଘୋର  ଚତୁର୍ଦ୍ଦଶୀରାତେ
ଚତୁଷ୍ପଥେ ସୀମନ୍ତିନୀ
ଗୁଣିଆଙ୍କ ଯୋଗେ  ଅଙ୍କିତମଣ୍ଡଳ—
ମଧ୍ୟେ ବସି ଏକାକିନୀ ।
ନାନାଉପହାର  ଦାନରେ ଦିକ୍‌ପାଳ
ଗଣଙ୍କ ମନ ମନାଇ
କେତେ ମାନସିକ  କଲେ ମନେ ମନେ
ତନୁଜ ଲଭିବା ପାଇଁ ।
ପ୍ରଦକ୍ଷିଣ ଅନ୍ତେ  ପୂଜିଲେ ମହିଷୀ
ମହାମସ୍ତରୁଦ୍ରଗଣେ
ତୋଷିଲେ ବାନ୍ଧବ  ମାନଙ୍କୁ ପାୟସ
ପୂରିତ ସୁପକ୍ୱ ଅନ୍ନେ ।

ଦୁର୍ଗାଙ୍କ ମଣ୍ଡପେ ଦେଲେ ନିତ୍ୟ ନିତ୍ୟ
ନାନାଭୋଗ ଉପହାର
ଦୈବଜ୍ଞମାନଙ୍କୁ ପୁଚ୍ଛିଲେ ନିଜର
ଭବିତବ୍ୟ ସମାଚାର ।
ପ୍ରାଚୀନ କାଳର ଗୁପ୍ତତନ୍ତ୍ରମନ୍ତ୍ର
ଯେତେକ ସାଧି କଲ୍ୟାଣୀ
କଥକ ବୃଦ୍ଧର ମୁଖରୁ ଶୁଣିଲେ
ସବନ୍ଧ କେତେ କାହାଣୀ ।
ଭୂର୍ଜପତ୍ରଯୁକ୍ତ ଚଣ୍ଡୀଙ୍କ କବଚ
ବାହୁରେ ହସ୍ତରେ ଧରି
ବାନ୍ଧିଲେ କରରେ କଙ୍କଣ ସହିତ
ମନ୍ତ୍ରସୂତ୍ର ଖମାଗୋଟି ।
କୃଷ୍ଣ ଯାମିନୀରେ ଶିବାଙ୍କୁ ସାଦରେ
ବଳିର ମାଂସ ଭୋଜନ
ଏକମନସ୍କ ହୋଇ ପୁତ୍ରାର୍ଥେ ଏ ସବେ
କଲେ ସେ ଦିନଯାପନ ।
ଦିନେ ଅଳ୍ପମାତ୍ର ଅବଶିଷ୍ଟ ଥିଲା
ହେବାକୁ ଶେଷ ଯାମିନୀ
ଶୋଭୁଥିଲା ନଭ ବୃଦ୍ଧ ପାରାବତ
ପକ୍ଷ ସୁଷମାକୁ ଜିଣି ।
ତାରାଏ ପାଣ୍ଡୁର କାନ୍ତି ପରିହରି
କ୍ରମଶଃ ହୋଇ ମଳିନ
ଗୋଟି ଗୋଟି ଖସି ନୀଳ ଗଗନର
କ୍ରମେ ହେଉଥିଲେ ଲୀନ ।
ଏକାଳେ ଶୟନେ ସ୍ୱପନ ଦେଖିଲେ
ଭୂତହୁଲେ ନରମଣି
ଧରଣୀକୁ ଧୋଇ ପ୍ରଭରେ ଆକାଶେ
ଉଦେ ହେଲେ ନିଶାମଣି ।
ସେ ଚନ୍ଦ୍ରମା କମ୍ପ, ହୃଷ୍ଟିନୀ ବଦନେ
ମୃଣାଳ ବଳୟବତ

ଉତ୍ତନଶାୟିନୀ ରାଣୀଙ୍କ ଉଦରେ
ଚଳନହେଲ ତ୍ୱରତ ।
ଏଶୁଭ ସ୍ୱପନେ ଅନନ୍ଦ ଅଧୀରେ
ଶଯ୍ୟା ତେଜି ନରନାଥ
ମନ୍ତ୍ରୀଙ୍କୁ ଅହ୍ୱାନ ବବରଲେ ଅଶୁ
ସକଳ ସ୍ୱପ୍ନ ବୃତ୍ତାନ୍ତ
ଶୁଣି ମହାଜ୍ଞାଦେ ନବେଦଲେ ସ୍ୱପ୍ନ
ତତ୍ତ୍ୱବତ ମନ୍ତ୍ରୀବର
ବହୁଦନ ବାଞ୍ଛା ପୂର୍ଣ୍ଣହେବ ଏବେ
ଭକତ ପ୍ରଜାବୃନ୍ଦର ।
ଅଲ୍ପଦନେ ନଷ୍ଟେ ଘୁଞ୍ଚିବ ଯେତେ
ବଂଶରକ୍ଷା ଲାଗି ଦୁଃଖ
ଲଭବେ ଶୀଘ୍ରମୁ ତନୟ ବଦନ
କମଳ ଦର୍ଶନ ସୁଖ ।
ଏହୁକ୍ଷଣି ମୁହିଁ ଦେଖିଲି ନଦ୍ରା—
ବସ୍ଥାରେ ଶୁଭ ସ୍ୱପନ
ପ୍ରଶାନ୍ତ ମୂରତ ସୁନ୍ଦର ଆକୃତ
ବର୍ଷିଷ୍ଠ ଏକ ବ୍ରାହ୍ମଣ ।
ମଧୁ ବନ୍ଦୁବର୍ଷୀ ବକସିତ ରମ୍ୟ
କମଳ ଘେନ ଅଦରେ
ଥୋଇଦେଲେ ନେଇ ମନୋରମାଙ୍କର
କୋଡ଼ଦେଶେ ଯତନରେ ।
ଛମୁଙ୍କର ଯେତେ ବାଞ୍ଛା ପୁରବାକୁ
ଅଉତ ବଳମ୍ବ ନାହିଁ
ଶୁଭ ଚନ୍ଦ୍ର ସିନା ଭବଷ୍ୟତ ସବୁ
ମଙ୍ଗଳ ଦଏ ସୂଚଇ ।
ହସାଏ କାସାରେ ମରାଳମାନଙ୍କୁ
ଯେସନ ନବ ନଳନୀ
ସୁନ୍ଦର ଶରତ କାଳେ ହୋଇ ନବ
କମଳ କଳ ଦାୟିନୀ ।

ତେସନ ମହିଷୀ ସୁତ ଜନ୍ମ ଦେଇ
ଛାମୁଙ୍କ ସନ୍ତାପ ଖଣ୍ଡି
ପୂର୍ବାଶାକୁ ଊଷା ପ୍ରାଏ କଣାଲ
ଧରଣୀକୁ ଦେବେ ମଣ୍ଡି ।
କଥା ହୋଇ ହୋଇ ଏରୂପେ ମନ୍ତ୍ରୀଙ୍କ
ସହିତରେ ନରବଣ
ଅନ୍ତଃପୁରେ ଯାଇ ବର୍ଣ୍ଣିଲେ ସକଳ
ସ୍ୱପନ ବୃତ୍ତାନ୍ତମାନ ।

# ଚତୁର୍ଥ ସର୍ଗ

ଶୁକ ମୁଖୁଁ ଶୁଣି      ମନମୁଗ୍ଧକାରୀ
ଉପାଖ୍ୟାନ ମନୋହର
କହିଲେ ଆନନ୍ଦେ      ଶୂଦ୍ରକ ଭୂପତି
ଜୟ ଜୟ ପକ୍ଷୀବର !
ସଫଳ ହେଲା କି      ଉଜ୍ଜୟିନୀ ନର—
ନାହାଙ୍କ ସୁଖ ସ୍ୱପନ ?
ରାଜା ରାଣୀ କେବେ      ଦେଖିଲେ କି ନବ
ତନୟ ବରବଦନ ।
କହିଲା ଶକୁନ୍ତ      ଏଥୁ ଅନନ୍ତରେ
ରହସ୍ୟ ଶୁଣ ରାଜନ
ମହିଷୀ ଉଦରେ      ପ୍ରକାଶ ପାଇଲା
ସକଳ ଗର୍ଭ ଲକ୍ଷଣ ।
ପାରିଜାତ ଦ୍ରୁମେ      ଯେସନ ଶୋଭଇ
ନନ୍ଦନବନ ସ୍ଥଳ
କିଅବା କୌସ୍ତୁଭ      ମଣିରେ ଯେପରି
ଶ୍ରୀପତିଙ୍କ ବକ୍ଷସ୍ଥଳ ।
ଅବା ରୂଚକର      ନିର୍ମଳ ଚନ୍ଦ୍ରମା
ଛାୟାରେ ଯଥା ଦର୍ପଣ
ନୃପ ପ୍ରଣୟମ୍      ବହୁ ଅଭୂଷିଲା
ରାଣୀଙ୍କ କୁକ୍ଷି ତେସନ ।
ନବ ଜଳଧରେ      ମନ୍ଦେ ମନ୍ଦେ ଯଥା
ଯାଆନ୍ତି ନଭେ ଘନାଳୀ
ଅଳସେ ଗମିଲେ      ତେମନ୍ତେ ମଞ୍ଜୁମତୀ
ସଧୀରେ ଚରଣ ଥୁଲ ।
ଘନ ଘନ ହାଇ      ମାରି ନେତ୍ର ମୁଦି
ଆସ୍ଥାନ ମଣ୍ଡପ ପରେ
ମୃଦୁ ମୃଦୁ ଶ୍ୱାସ      ପକାଇ ବସିଲେ
ବମ୍ବୋଷ୍ଠି ଅଳସଭରେ ।

ଅରୁଚ ହୋଇଲା     ଏନ୍ତୁ ଏନ୍ତୁ ତାଙ୍କୁ
ସକଳ ପାନ ଭୋଜନ
କେତକୀ କୁସୁମ—     ନବ ଦବ୍ୟକନ୍ତୁ
ବହିଲା ପାଣ୍ଡୁ ବରଣ ।
ନଖାଗ୍ର ଶିଖରେ     ଧଉତ ଚମକ
ସୁଷମାକୁ ପରାଭବ
କନକଅଙ୍ଗୀର     ଶ୍ୟାଙ୍ଗ ବହିଲ
ଅପୂର୍ବ ନୂତନ ଛବ ।
ସ୍ଥୂଳ ଉରଜର     ଅଗ୍ରଭଗ ବେନ
ଦଶିଲ ଘନଶ୍ୟାମଳ
ଜଳବନ୍ଦୁ କି ସେ     ନାଶିବାକୁ ଅବା
ପୁତ୍ରାଭାବ ଦୁଃଖାନଳ ।
ଅଥବା ନବଢ଼     କୁନ୍ତଳାର ଶିଖା
ଉଠୁଥିଲା କାମାନଳ
ମଧୁ ଲୁଟୁଥିଲେ     କବା ଭୃଙ୍ଗେ ବସି
ଦଅସ୍ଫୁଟ ଶତଦଳ ।
ଧରଥିଲେ ଅବା     ଚକବାକେ ମୁଖେ
ନୀଳ ପଦ୍ମକୁ ପ୍ରୀତରେ
ତମାଳ ପଲ୍ଲବ     ବେନି ସ୍ୱର୍ଣ୍ଣକୁମ୍ଭେ
ଢଙ୍କା ହୋଇଥିଲା କରେ ।
ଛଡ଼ିଲା ଏନକୁ     ଦନ କୁଶତାକୁ
କୁଚର ଉଦରସ୍ଥଳୀ
ବଲୁପ୍ତ ହୋଇଲା     ଧୀରେ ଧୀରେ ତାର
ଉପର ଭୃଙ୍ଗୁଁ ନିବଳୀ ।
ମୃଦୁନାଭୀରନ୍ଧ୍ର     ମେଖଳା ସ୍ୱସ୍ଥାନେ
ଆଉ ତ ରହିଲା ନାହିଁ
ଠେଲି ତାକୁ ଦେଲା     ସ୍ଥୂଳ କଟୀଦେଶ
ତଳକୁ କ୍ରମେ ଘୁଞ୍ଚାଇ ।
ବଗଦ ବସନ     ସୁମୁଖୀର ଗୌର
ଶୀଅଙ୍ଗ ଦେଶରେ ଜଡ଼ି

ଦିଶିଲା ଯେସନ    ପୁଷ୍ପିତ ବଲ୍ଲୀରେ
ଚନ୍ଦ୍ରାଲୋକ ଗଲା ପଡ଼ି ।
ଗୁରୁ ଗର୍ଭଭରେ    କ୍ରମେ ଅବସନ୍ନ
ହୋଇ ସେ ରାଜପ୍ରମଦା
ପଲଙ୍କର ଅଙ୍କ    ଅବଲମ୍ବି ପୁର
ଭିତରେ ରହିଲା ସଦା ।
ହେଉଥିଲା *ମଣି,    ମନ୍ତ୍ର, ମହୌଷଧି
ଯୋଗେ ରକ୍ଷା ସେ ଭୁବନ
ଦିଶୁଥିଲା ସଦ୍ୟ    ସୁଧାରେ ମାର୍ଜିତ
ହୋଇଣ ଶୁକ୍ଳବରଣ ।
ମଧ୍ୟରେ ମଙ୍ଗଳ    ଦୀପ ଦ୍ୱାରପାଖେ
ପୂର୍ଣ୍ଣକୁମ୍ଭ ସଂସ୍ଥାପିତ
ମାଙ୍ଗଳିକ ନାନା    ଚିହ୍ନରେ ସଦନ
ହୋଇଥିଲା ସୁଚିହ୍ନିତ ।
ଝୁଲୁଥିଲା ଶ୍ୱେତ    ଚନ୍ଦ୍ରାତପ ସହ
ମୁକ୍ତା ମାଣିକ୍ୟ ଝାଲର
ଗର୍ଭରକ୍ଷା ଲାଗି    ପୂଜା ହେଉଥିଲା
ଅସଂଖ୍ୟ ଦେବତାଙ୍କର ।
ବହୁଥିଲେ ଗର୍ଭ    ଗୌରବରେ ନବ
ସୁଷମା ବରବର୍ଣ୍ଣିନୀ
କୁଳାଚଳକୁଳ    ହୃଦୟରେ ଧରି
ଯେସନ ରାଜେ ମେଦିନୀ ।
ଅବା ନୀରମଗ୍ନ    ସୁରକରୀ ଯୋଗେ
ସେହ୍ନେ ସୁରଧୁନୀ ଜଳ
କିବା ଯଥା ଫୁଲ୍ଲ    କମଳ କଳିତ
ବିଷ୍ଣୁଙ୍କ ନାଭିମଣ୍ଡଳ ।
ମନ୍ଥନେ ଉତ୍ଥିତ    ସୁଧାଲିବ ବକ୍ଷ
ଅବା ଯଥା କ୍ଷୀରସିନ୍ଧୁ

* ରକ୍ଷା ତ୍ରିବିଧ—ମଣି, ମନ୍ତ୍ର, ମହୌଷଧ ।

ଉଦୟ ପୂର୍ବରୁ ହବା ଯେସନ୍ତେ ଜ୍ୟୋସ୍ନା
ପୁରିତ ପୂର୍ଣ୍ଣିମା ଇନ୍ଦୁ ।
ଘନ ଆବରଣେ ଦିନନାଥ ଯୋଗେ
ହବା ଯଥା ଏହ ମଧ୍ୟ
ଦିଶୁଥିଲେ ତଥା ରମଣୀରତନ
ସୁରୁଗର୍ଭସ୍ୱର ବନ୍ଧୁ ।
ଅନନ୍ତ ଉଦ୍‌ବେଗେ ସଦାବେଳେ ପୁରେ
ଅମୂଥିଲେ ନୃପମଣି
ହବୀ ପୁତ୍ର ସ୍ନେହେ ଉଠୁଥିଲା ତାଙ୍କ
ବିଶୁଷ୍କ ହୃଦ ଉଲ୍ଲସି ।
ତୋଷୁଥିଲେ ନାନା ମତେ ପ୍ରିୟାକୁ ସେ
ମଧୁର ହାସ୍ୟ ରସରେ
କୋକିଳ ଯେମନ୍ତ ବସନ୍ତେ ରସାଳ
ବଲ୍ଲୀର ପ୍ରଶଂସା କରେ ।
ଉଦେ ହେଉଥିଲା ବିଳାସବତୀଙ୍କ
ମାନସେ ଯେଉଁ ବାସନା
ପୂରୁଥିଲେ ତା ଅଚରେ ଅହର
ତାରାପୀଡ଼ ମହାମନା ।
ଉପସ୍ଥିତ ହେଲ ଆସି ମହିଷୀଙ୍କ
ଦମରେ ପ୍ରସବକାଳ
ଜଳବିନ୍ଦୁ ସ୍ୱାମୀ ଘଟିକା ଯନ୍ତ୍ରକୁ
ପ୍ରବୀଣ ଜ୍ୟୋତିଷମାଳ ।
ଜନ୍ମ ଶୁଭଲଗ୍ନ ନିରୂପଣ ପାଇଁ
ଏକାଗ୍ରେ ରହିଲେ ଗୁହିଁ
କେବା ପାଦେ ଛାଇ ମାପିଲେ ସେ ଜନ୍ମ
ଲଗ୍ନ ନିରୂପଣ ପାଇଁ ।
ଶୁଭ ସମୟରେ ପ୍ରସବିଲେ ରାଣୀ
ଏକ ଦିବ୍ୟ ପୁତ୍ରବର
ଉଜ୍ଜ୍ୱଳ ଦିଶିଲା ତନୟର ରୂପ
ପ୍ରଭାରେ ସୂତିକା ଘର ।

ପୌରଜନମାନେ ଆନନ୍ଦେ ଉଲ୍ଲାସେ
ଚୌଦିଗେ ଚଞ୍ଚଳେ ଧାଇଁ
ସେମାନଙ୍କ ଚଳ ଚରଣ ତାଡ଼ନେ
ନଗର ଦେଲେ କମ୍ପାଇ ।
ବୃକ୍ଷ, ଖଗ, କୃଶ, ମାନବେ ଆନନ୍ଦେ
ପଶି ସେହି ଗହଳରେ
ନିଷ୍ପେଷିତ ହୋଇ ଗଡ଼ିଲେ ମଞ୍ଚରେ
ଲୋକଙ୍କ ପଦ୍ମାପତ୍ରରେ
ରାଜପୁର ହେଲା ପୁର ମହିଳାଙ୍କ
ଭୂଷଣନାଦେ ମୁଖର
ବଳେ ବସ୍ତ୍ର ଭୂଷା ଏକର ଦେହରୁ
ଓଟାରି ନେଲେ ଅପର ।
ନବ କୁମାରର ଶୁଭ ଜନ୍ମୋତ୍ସବ
କୋଳାହଳ ମନୋରମ
ବଢ଼ିଲା କ୍ରମଶଃ ଚନ୍ଦ୍ରମା ଉଦୟେ
ଉଦ୍ୱେଳିତ ସିନ୍ଧୁ ସମ ।
ମନ୍ଦର ଗିରିରେ ମନ୍ଥିତ ପ୍ରବଳ
ସାଗର ନାଦରୁ ବଳି
ଅସଂଖ୍ୟ ଦୁନ୍ଦୁଭି ଧ୍ୱନି ଘନ ଘନ
ନଭରେ ହେଲା କନ୍ଦଳୀ ।
ମୃଦଙ୍ଗ ମର୍ଦ୍ଦଳ ଶଙ୍ଖ ଘଣ୍ଟା ବୀଣା
ସିତାର ସଙ୍ଗୀତ ଧ୍ୱନି
ପୃଥୁଳତା ଭଜି କ୍ରମଶଃ ବଢ଼ିଲା
କମ୍ପାଇ ଖରେ ଅବନୀ ।
ସାନ ଠାରୁ ବଡ଼— ଯାଏ ସେ ବିଶାଳ
ରାଜ୍ୟର ବାସିନ୍ଦା ସୁଖେ
ଅଧୀରେ ନାଚିଲେ ଏ ନବ କୁମାର
ଜନ୍ମୋତ୍ସବେ କଉତୁକେ ।
ଯଥାକାଳେ ନୃପ ସୂତିକା ସଦନ
ଦ୍ୱାରେ ବିଜେ ହେଲେ ଯାଇ

ଏକାନ୍ତେ ଚନ୍ଦ୍ରକ    ମୁଖ ସରସିଜ
ଦେଖିଲେ ନେତ୍ର ପୂରାଇ ।
ସୁଚିରବାଞ୍ଛିତ    ଆତ୍ମଅନୁରୂପ
ରୂପ ବିଲୋକି ଉଭୟେ
ଭିଜଗଲା ତାଙ୍କ    ସରସ ହୃଦୟ
ଆନନ୍ଦ ଅମୃତ ରସେ ।
କଣ୍ଟକିତ ହେଲା    ପାଦୁଁ ଶିର ଯାଏ
ଅଙ୍କାଦେ ହେଲେ ବହଳ
ବିସ୍ଫାରିତ ହେଲା    ଦରହାସେ ମୃଦୁ
ମାଂସଳ ଗଣ୍ଡଯୁଗଳ
ରୁଚିର ଧବଳ    ଦଶନ ସୁଷମା
କିବା ସେ ପ୍ରକାଶ ଛଳେ
ହର୍ଷପୂର୍ଣ୍ଣ ହୃଦୁ    ଉଦ୍‌ବୃତ୍ତ ସୁଖ କି
ଅଗରୁ ଫିଙ୍ଗିଲେ ବଳେ ।
ଚଳଅଳସମ    ନେତ୍ର ତାମ୍ରେବଣ
ଚହିଲେ ରୁଲସ ସ୍ଥଳ
ଭିଜଗଲା ନବ    ଆନନ୍ଦାଶ୍ରୁ ନୀର
ପ୍ରବାହେ ନେତ୍ରତଟମାଳୀ ।
ଅନିମେଷ ହୋଇ    ଦେଖିଲେ ନରେଶ
ପୁତ୍ରକୁ ନୟନଭରି
ଯେତେ ଦେଖୁଥିଲେ    ବଢୁଥିଲା ତାଙ୍କ
ଚକ୍ଷୁରେ ନୂତନ ପରି ।
ପଞ୍ଚ ପୁତ୍ରବତୀ    ଯୁବତୀଏ ମିଳି
ଏକତ୍ର ସ୍ନେହ ସଦନେ
କାଳ ଉପଯୋଗୀ    ଯେ ଯାହାର କାର୍ଯ୍ୟ
ସାଧୁଥିଲେ ଏକମନେ ।
କଏ ବା ନିର୍ମାଣି    ଅଭିନବ ରମ୍ୟ
ପ୍ରତିମା ଷଠୀ ଦେବୀର
ହଳଦିଆ ବସ୍ତ୍ରେ    ମଣ୍ଡି ଦେଉଥିଲେ
ଆଦରେ ତାର ଶରୀର ।

କେବା କାର୍ତ୍ତିକଙ୍କୁ ଚନ୍ଦ୍ର ବଦନାଙ୍କ
ମୟୂର ପୃଷ୍ଠେ ବସାଇ
ଦେଉଥିଲେ ମୋଦେ ଲୋହିତ କେତନ
ତାହାଙ୍କ ଶିରେ ଉଡ଼ାଇ ।
କ୍ଷଏବା ଅଳତା ଓଗ୍ଭଏ ପାଟଳ
ନବଳ ସିନ୍ଦୂର ରସେ
ଚନ୍ଦ୍ର ସୂର୍ଯ୍ୟଙ୍କର ମନୋହର ମୂର୍ତ୍ତି
କରୁଥିଲେ ହରଷେ
ପାପ ଗୋଲପର ହବ ମେଷ ଶୃଙ୍ଗ
ଚୂର୍ଣ୍ଣ କରେ ଘେନ କେହି
ଭୂତ ପ୍ରେତ ନାଶେ ଦହୁଥିଲେ ସଦା
ମନ୍ଦ ମନ୍ଦ ଧୂତ ଦେଇ ।
ଏରୂପେ ବାଳାଏ ଅନ୍ତସର ବନ୍ଧୁ
ପ୍ରାଚୀନ ଲୌକିକ ଗତ
ଅଚରଲେ ନାନା କର୍ମମାନ ମାତା
ପୁତ୍ରଙ୍କ ମଙ୍ଗଳ ଚନ୍ତ ।
କୃଶ କଳେବର ଗଣୀଙ୍କ କୋଳରେ
ଜନ୍ମେନେ ଶୋଇ କୁମର
ମ୍ଳାନ କରୁଥିଲ ସ୍ୱକାନ୍ତିରେ ଦୀପ
ପ୍ରଭାକୁ ଷଠୀ ଘରର ।
ସୁଲକ୍ଷଣ ଦେହେ ସଦ୍ୟ ଜାତ ସୁତ
ଗର୍ଭର ରକ୍ତିମା ଧର
ହୋଇଥିଲ ବ୍ୟକ୍ତ ନବୋଦତ ଭକ୍ତ
ମିହିର ମଣ୍ଡଳ ପର ।
ଠାଣ ହେବା ପୁଟେ ଜମିଥିଲ ଅବା
କଲତରୁ ନବଦଳ
କ ଅବା ଉତ୍ତୁର— ଥିଲେ ଭୂତଳକୁ
ପ୍ରଧାନ ଗ୍ରହ ମଙ୍ଗଳ ।
ମନେ ହେଉଥିଲ ଦେଖି ତା ଲଳତ
ଲବଣୀ ଅଙ୍ଗର ପ୍ରଭା

ଊଷା ଅଲୋକରେ ପଡ଼ିଥିଲେ ବନ୍ଧୁ
ସେ କୋମଳକାନ୍ତ ଅବା ।
ଅଥବା ପ୍ରବାଳ ଲତାର ନବଢ଼
ପାଠଳମୟୂ ମୟୂଖେ
ଅଥବା ନିର୍ମାଣି ଥିଲେ ପଦ୍ମରାଗ
ମଣି ପଞ୍ଜରରେ ସୁଖେ ।
ପ୍ରକାଶ ହୋଇବା ପୂର୍ବରୁ ନଜର
ସ୍କନ୍ଧରେ ଷଡ଼ଆନନ
ଏକମୁଖ ବନ୍ଧୁ ଦିଶୁଥିଲେ ଯଥା
ସୁନ୍ଦର ଶିଖୀବାହାନ ।
ସୁମାର୍ଜିତ ସ୍ୱର୍ଣ୍ଣ ପ୍ରତିମା ସମାନ
ଶୀର ବନ୍ଧ ସ୍ୱର୍ଣସୂତ୍ରରେ
ଶୋଭୁଥିଲା ତେଣେ ସୂତିକା ସଦନେ
ଶିଶୁ ତା ଦେହକାନ୍ତିରେ ।
ଜନନୀ ଜଠର ଯାତନାରେ ଏହୁ
ନବବାକୃତ ଶଯ୍ୟାରେ
ପରିସ୍ଫୁଟ ହୋଇ ନଥିଲେହେଁ ସର୍ବ
ଶୋଭାସମ୍ପି ସବଧିରେ ।
ପ୍ରବଳପ୍ରତାପି ଚକ୍ରବର୍ତ୍ତୀଙ୍କର
ଥାଏ ଯେତେ ନିଦର୍ଶନ
ପୂର୍ଣ୍ଣ ହୋଇଥିଲା ସେ ସକଳ ଶୁଭ
ଚିହ୍ନେ ତାର ଅପଘନ
ଉଚ୍ଚ ସ୍ଥାନେ ରହି ଭବିଷ୍ୟତ ଶୁଭ
ସୂଚିଥିଲେ ଗ୍ରହଗଣ
ସେ ଗ୍ରହନିକରେ ପୂରିଥିଲା ପୁଣି
କୋଷ୍ଠୀର କେନ୍ଦ୍ର ନବକୋଣ ।
ସନ୍ଧ୍ୟାରାଗ ରକ୍ତ ଅର୍ଦ୍ଧଚନ୍ଦ୍ରାକାର
ମସୃଣଲଲାଟେ ତାର
ଗୋଟି ଗୋଟି ସୂକ୍ଷ୍ମ ରୋମ ରାଜୁଥିଲା
ମୃଣାଳ ତନ୍ତୁ ଆକାର ।

ସେ ଶ୍ୟାମଲତିକା ଭ୍ରୂଲତା ଉପରେ
କି ରଙ୍ଗରେ ଧାଡ଼ି ଧରି
ଦର୍ପଣ ସଦୃଶ ପିପୀଲିକା ଶ୍ରେଣୀ
ଛବି ନେଉଥିଲା ହରି ।
ପ୍ରସ୍ଫୁଟିତ ନବ କଗଦ କମଳ
ପାଖୁଡ଼ା ସମ ଧବଳ
ଶୋଭା ପାଉଥିଲା ଆକର୍ଣ୍ଣ ବିସ୍ତୃତ
ଉତ୍ଫୁଲ୍ଲ ନେତ୍ରଯୁଗଳ ।
ନବଜାତ ସୂତ ଉଦିତ ମୁଦିତ
କରି ତାହା ଧୀରେ ଧୀରେ
ସୂତିକା ଗୃହକୁ ବୋଲି ଦେଉଥିଲା
ସତେ କି ଚନ୍ଦ୍ର ଭୁଟରେ ।
ସ୍ୱର୍ଣ୍ଣରେଖାସମ ରମ୍ୟ ନାସା ଦେଖି
ମନେ ହେଉଥିଲା ପ୍ରତେ
ଧରିଥିଲା ପୀତ— ପଦ୍ମକେଶରକୁ
ଥଣ୍ଟେ ଶୁକପକ୍ଷୀ ସତେ ।
ମୃଣାଳ ଲତାକୁ ତୁଚ୍ଛ କରୁଥିଲା
ଭୁଜ ବେନ କାନ୍ତତର
ଲାଜୁଥିଲା ରୂପ ଜଳେ କୋକନଦ
ସମାନ ରଙ୍ଗଅଧର ।
ନବୀନ ପଲ୍ଲବ ପରସ୍ୱେ ପାଟଳ
ହସ୍ତପଦ ବେନ କ୍ଷୀଣ
ପରିଷ୍କାରରୂପେ ଶୋଭୁଥିଲା ତହିଁ
ବସ୍ତୁ ଅସ୍ଥୁଧର ଚନ୍ଦ୍ର ।
ଏସବେ ପୁତ୍ରକୁ ଯେବେ ଯେଉଁକାଳେ
ସବେଁ ହୋଉଥିଲେ ମଗ୍ନ
ସେକାଳେ ଚଞ୍ଚଳେ ପରସ୍ପରକାଏ
ଭୁଷିଲା ଆସି ଏମନ୍ତ ।
ବୀରେନ୍ଦ୍ରନନ୍ଦନ ପରଶୁରାମଙ୍କ
ପରସ୍ୱେ ଉତ୍ଫୁଲ ଅଙ୍ଗ

ମନ୍ତ୍ରୀଜାୟା ଗର୍ଭେ ଏକ ଅଭିନବ
ପୁତ୍ରରତ୍ନ ଜନ୍ମିଛନ୍ତି ।
ଦାବଦାହବନେ ଅମୃତ ବରଷା
ପରି ସୁପ୍ରସନ୍ନ ମନେ
କହିଲେ ଅହ୍ଲାଦେ ଉଦ୍ଭାସିନୀ ମସ୍ତ-
ମଣ୍ଡଳ ସ୍ମିତ ଆନନେ ।
ଦୁଃଖର ପଶ୍ଚାତେ ଅନୁସରେ ଯଥା
ଏ ଭବେ ସର୍ବଦା ଦୁଃଖ
ଛାଡ଼ି ନ ପାରଇ ତେସନ ସୁଖର
ପାଖରୁ କଦାପି ସୁଖ ।
ସୁତବତ୍ସଳ ଭୂପ ଢେଜେ ହୋଇ
ନିଜେ ସଚିବ ନବରେ
ନାନାରୂପେ ଦାନ ଉତ୍ସବ କହିଲେ
ସୁତ ଜାତ ଉଦ୍ଦେଶ୍ୟରେ ।
ଷାନମିତ ସନ୍ଧ ଉଠିଅର ସାର
ଶାସ୍ତ୍ରଜ୍ଞାନୀ ତାରାପୀଡ଼
ଆଦରେ ନିଜର ପ୍ରିୟ ତନୟର
ନାମ ଦେଲେ ଚନ୍ଦ୍ରାପୀଡ଼ ।
ବ୍ରାହ୍ମଣ ଉଚିତ କାର୍ଯ୍ୟମାନ କରି
ସମାଦରେ ସମାପନ
ବର୍ଣ୍ଣ ଅନୁରୂପେ ମନ୍ତ୍ରୀସୁତ ନାମ
ରଖିଲେ ବୈଶମ୍ପାୟନ ।
କ୍ରମେ ଦେନିସୁତେ ବଢ଼ିଲେ ଯେସନ
ଶୁକ୍ଳପକ୍ଷେ ସୁଧାକର
ଦେଖୁ ଦେଖୁ ମୃଦୁ ଶୈଶବ ସମୟ
ଶ୍ରୀଅଙ୍ଗୁ ହେଲା ଅନ୍ତର ।
କୁସଙ୍ଗୁ ଛଡ଼ାଇ ବାଲ୍ୟ ଶିକ୍ଷା ପ୍ରତି
ଝୁଙ୍କିବାକୁ ତାଙ୍କ ମନ
ପୁର ଉପକଣ୍ଠେ ନିର୍ମାଣିଲେ ଭୂପ
ସୁନ୍ଦର ବିଦ୍ୟାଭବନ ।

ଅର୍ଦ୍ଧକୋଶବ୍ୟାପୀ ସୁଦୀର୍ଘ ସେ ବିଦ୍ୟା-
ମନ୍ଦିର ଚତ୍ୱରରେ
ଭୁଜଙ୍ଗ ଅକୃତ ଦୁସ୍ତର ପ୍ରାଚୀର
ବେଢ଼ିଦେଲେ ଯତନରେ ।
ଏକମାତ୍ର ଦ୍ୱାର ଉନ୍ମୁକ୍ତ ରହିଲା
ପ୍ରବେଶିବା ଲାଗି ତହିଁ
ସଜ୍ଜା ହେଲା ଯେତେ ଶିକ୍ଷଣୀୟ ଦ୍ରବ୍ୟ
ନାନାସ୍ଥାନୁ ଅଣା ହୋଇ ।
ଖାଇବା, ଶୋଇବା, ଖେଳିବା, ପଢ଼ିବା
ବ୍ୟାୟାମ ପାଇଁ ସର୍ବଥା
ଭିନ୍ନ ଭିନ୍ନ ଘର ଭିନ୍ନ ଭିନ୍ନ ସ୍ଥାନ
ସକଳ ହେଲା ବ୍ୟବସ୍ଥା ।
ମୁନୀନ୍ଦ୍ରସମାନ ଚରିତ୍ର ଉଚ୍ଚ
ଶିକ୍ଷିତ ବହୁ ଶିକ୍ଷକେ
ନାନା ସ୍ଥାନୁ ଆସି ଶିଖାଇଲେ ବିଦ୍ୟା
ବିଦ୍ୟାର୍ଥୀ ନୃପ ବାଳକେ ।
ମହର୍ଷୀ ସହିତ ପ୍ରଭଞ୍ଜନ ଆସି
ସଙ୍ଗାତ୍ମ ରାଜନ ଥରେ
ଶିକ୍ଷା ଆଳୟରେ ଦେଖୁଥିଲେ ପ୍ରିୟ
ତନୟଙ୍କୁ ସ୍ନେହଭରେ ।
ଜନକ ଜନନୀ ଗୁରୁଙ୍କର ଯୋଗେ
ଏସ୍ତବେ ପରସ୍ଫୁଳିତ
ହୋଇ ସେ ନରେନ୍ଦ୍ର କୁମାର ସକଳ
ବିଦ୍ୟାରେ ହେଲେ ଦୀକ୍ଷିତ ।
ଶ୍ଲାଘ୍ୟନୀୟ ତାର ଯୋଗ୍ୟତା ଦର୍ଶନେ
ଗୁରୁମାନେ ଉତ୍ସାହରେ
ଯଥାଯଥଭାବେ ଶିକ୍ଷା ବିତରିଲେ
ସକଳେ ସାଧ୍ୟମତରେ ।
ମଣିମୟ ସ୍ୱଚ୍ଛ ଦର୍ପଣ ଫଳକେ
ରମ୍ୟ ପ୍ରତିବିମ୍ବ ପଡ଼ି

ଯାଉଥିଲା ଯେତେ ଗୁରୁଦକ୍ଷ ସନ୍ତ
ଶିଷ୍ୟର ହୃଦେ ପ୍ରସର ।
ବ୍ୟାକରଣ, ଅଙ୍କ, ନ୍ୟାୟ ମାଡଶାସ୍ତ୍ର
ପୁରାଣ ସ୍ମୃତି ଦର୍ଶନ
ଧନୁ, ବର୍ମ, ଶକ୍ତି, ଗଦା, ତରବାର
ଚାଳନ ରଥାରୋହଣ ।
ଅଶ୍ୱ ଗଜକ୍ରୀଡ଼ା ଜ୍ୟୋତିଷ ବିଜ୍ଞାନ
ସଙ୍ଗୀତ କାବ୍ୟ ସାହିତ୍ୟ
ଆଉ ବିଦ୍ୟାରେ ସେ କ୍ରମଶଃ ଲଭିଲା
ଅପରିମିତ ପାଣ୍ଡିତ୍ୟ ।
ଶୈଶବ କାଳରେ ବୀର ବୃକୋଦର
ପରାଏ ଅତି ପ୍ରବଳ
ସ୍ଫୁରୁଥିଲା ତାର ଦେହରେ ବିସ୍ମୟ
ଜନକ ଅସୀମ ବଳ ।
କେବେ ସେ ବ୍ୟାୟାମ କ୍ରୀଡ଼ା କରୁ କରୁ
ଦମ୍ଭେ ବାଳସ୍ୱପଳ୍ପରେ
ବେନ ହସ୍ତେ ଧରି କରୀ ଶିଶୁକର୍ଣ୍ଣ
ଟାଣିବାରୁ ସବଳରେ ।
ଅବନତ ଦେହେ ବସି ପଡୁଥିଲେ
ସେମାନେ ତଳେ ଆଣ୍ଠୋଇ
ବହନ୍ତି ଯେମନ୍ତ କେଶରୀ ଶାବକ
ଯୋଗରେ ଅକାନ୍ତ ହୋଇ ।
କେବେ ଚନ୍ଦ୍ରାପୀଡ଼ ଷିପ୍ରହସ୍ତେ ବୃତେ
ପ୍ରଚଣ୍ଡ ଅସି ଅଘାତି
ମୃଣାଳ ନାଡର ପରି ଦେଉଥିଲା
ତାଳ ତରୁମାନ କାଟି ।
ଯଦିକୁଳ ଭର୍ଗ୍ୟ ବନ ଦାବାନଳ
ପରଶୁରାମ ସମାନ
କେବେ ବା କଠିନ ଶୈଳ ବିଦାରଣ
କରୁଥିଲା ତାର ବାଣ ।

ବଶ ଦେଣ୍ଡା ଯେଉଁ ଗୁରୁ ମୁଦ୍‌ଗରକୁ
ପାରୁ ନ ଥିଲେ ଉଠାଇ
ସହଜେ ବ୍ୟାୟାମ ସାଧୁଥିଲା ଯୁବା
ସେ ଲୌହଦଣ୍ଡ ଘୁରାଇ
ସକଳ ବଦ୍ୟାରେ ତାର ଅନୁରୂପ
ଥିବାରୁ ମନ୍ତ୍ରୀ ନନ୍ଦନ
ବାଲ୍ୟ ମଣ୍ଡିଥିଲା ବେନଙ୍କ ଉପରେ
ବେନଙ୍କ ହୃଦୟ ମନ ।
କ୍ରମେ ଯଥାକାଳେ ଦୁହିଁଙ୍କ ଶରୀର
ନବୀନ ଯୌବନ ଆସି
ଜଳଧି ଜୀବନ୍ତୁ ଫୁଟି ଉଠିଲା କି
ମନ୍ଥନେ ଅମୃତ ରାଶି ।
ପଦ୍ମଚୀ କଣକୁ ରଞ୍ଜିଲା କି ନବ
ଚନ୍ଦ୍ରମା ମୂର୍ତ୍ତି ବାହାର
ଇନ୍ଦ୍ରଧନୁ ଅବା ଆକାଶ ମଣ୍ଡିଲା
ବେଣୁଅ ଦୃଙ୍କା ବଦାର ।
ଫଟିଲା କି ଅବା କୋମଳ କୁସୁମ
କଳକା କଳନ୍ଦ୍ର ମରେ
ପଞ୍ଚ ଶର ଅବା ଭଅଇଲା ମାର
ହରଙ୍କୁ ତୋଷି ତପରେ ।
କମଳ କାନନେ ଶୋଭିଲା କି ଅବା
ନବୀନ ସୂର୍ଯ୍ୟ କିରଣ
ଅଥବା ଲଭିଲା ନବ ବନସ୍ଥଳୀ
ବସନ୍ତର ଆଲିଙ୍ଗନ ।
ମନୋମୁଗ୍ଧକର ସୁରଞ୍ଜିତ ପୁଚ୍ଛ
ଗୁଚ୍ଛ ଛନ୍ଦ ପର ତୋଳ
ବଳାସ ଭଙ୍ଗୀରେ ନାଚଇ ଯେମନ୍ତ
ବନାନ୍ତେ କେକୀ ଦୋହଲ ।
ତେସନ ନବୀନ ଯୌବନ ଯୁବାର
କମନୀୟ କାନ୍ତ ଲଭି

ସୃଜନ୍ତି ବିବିଧ      ସେ କାଳ ସୁଲଭ
    ନାରୀ ମନଲୋଭା ଛବି ।
ସ୍ୱଭାବେ ମଧୁର      ସୁନ୍ଦର ଆକୃତି
    ତାରାପୀଡ଼ଙ୍କ ସନ୍ତାନ
ତ୍ରିଗୁଣରେ କାନ୍ତି      ବଢ଼ାଇଲା ତହିଁ
    ଯୌବନ ଦେଇ ରସାଣ ।
ଏକାଳେ ନିପୁଣ      ସେବା ପରାୟଣ
    ଅଙ୍ଗବନ୍ଧୁ ଦାସବତ
ଅବସର ଲଭି      ପାଖପାଖ ହେଲେ
    ଧୀରେ ଆସି ମନମଥ ।
ସୌନ୍ଦର୍ଯ୍ୟ ଲଳିତ      ସୁକୁମାର ତନୁ
    ସୁଷମା ସତ୍ତ୍ୱ ସୁଧାର
ସୁପ୍ରଶସ୍ତ ବକ୍ଷ      ଦିନୁ ଦିନୁ ବଢି
    କ୍ରମରେ ହେଲା ଓସାର ।
ଦେଖୁ ଦେଖୁ ତାର      ପ୍ରତାପେ ଯେସନ
    ଶତ୍ରୁଏ ଭଜିଲେ ଲୀନ
କୃଶ କଟୀଦେଶ      ତେସନ ତାର
    ନ ବଢି ହୋଇଲା କ୍ଷୀଣ ।
ଉଚ୍ଚ ହେଲା ସ୍କନ୍ଧ      ସୁବଳିତ ଉରୁ
    ଗଳ ହେଲା ବର୍ତ୍ତୁଳ
ଉଦର କରିଲା      ପିପୀଲିକା ସମ
    ରୋମରାଜିରେ ମଞ୍ଜୁଳ ।
ନିର୍ମଳ ହୋଇଲା      ନେହବେକ ଶ୍ରୀଯୁ
    ସୁସ୍ଥରୁ ଚରନ ପ୍ରାନ୍ତେ
ଶୀତରଶ୍ମି ପର      ବଢ଼ି ବାହୁଦ୍ୱୟ
    ଲମ୍ବ ହେଲା ଜାନୁଯାଏ ।
ଏସ୍ତେବେ ଯୌବନ      ସମସ୍ତ ପ୍ରବେଶି
    ପ୍ରଦାନଲା ନବଦୀକ୍ଷା
କ୍ରମରେ ସରିଲା      ରାଜକୁମାରର
    ଗୁରୁଦତ୍ତ ବିଦ୍ୟାଶିକ୍ଷା ।

ଶିକ୍ଷକମଣ୍ଡଳୀ ଅଦେଖିଲେ ତାଙ୍କୁ
ସନ୍ତୋଷେ ପିବାକୁ ଘରେ
ଅଶେଷ ହରଷ ଜନ୍ମାଇ ନରେଶ
ଭାଗ୍ୟପୀଡ଼ଙ୍କ ମନରେ ।
ଏନେ ଶୁଭବେଳେ ସଟସୈନ୍ୟରେ ଆସି
ବିଦ୍ୟାଳୟେ ସେନାପତି
ରାଜକୁମରଙ୍କୁ ଜଣାଇଲେ ତାର
ଜନକର ଅନୁମତି ।
କହିଲେ କୁମାର ! ସଫଳ ହୋଇଛ
ସକଳ ଶାସ୍ତ୍ର ପରୀକ୍ଷା
ସରିଛି କଠିନ ନାନାବିଧ ଶିଳ୍ପ
ସାହିତ୍ୟକଳାର ଶିକ୍ଷା ।
ଲଭିଅଛ ତୁମ୍ଭେ ଧନୁର୍ବେଦେ ଯେଉଁ
ପ୍ରତିଷ୍ଠା ନର ଲୋକରେ
ତାହା ବିଦଳିତ ଆଜ ହେଉଁ ସଣ
ଲେଖା ସହିଯୁ ପଟରେ ।
ଗୃହେ ପିବା ପାଇଁ ସ୍ୱେଚ୍ଛାରେ ବିଦାୟ
ଦେଲେଣି ଶିକ୍ଷକମାନେ
ତପସ୍ୟା ସିଦ୍ଧିରେ ବାପୁଖ ଲୋକେକ
ଇଷ୍ଟଦେବ ବରଦାନେ ।
ବନ୍ଧନ ଆଳୟୁଁ ଏଣୁ ସୁଶିକ୍ଷିତ
ନବଧୃତ କବଚତ
ବିଦ୍ୟାଳୟ ଛାଡ଼ି ହୃଅ ପୂର୍ବପର
ରାଜପୁରେ ପ୍ରତ୍ୟାବୃତ୍ତ ।
ଆନନ୍ଦ ଲଭନ୍ତି ବିଶ୍ୱଜନ ଯଥା
ପୂର୍ଣ୍ଣ ଚନ୍ଦ୍ରମାକୁ ଦେଖି
ଅଥବା ଯେସନ ଗ୍ରୀଷ୍ମଶେଷେ ନବ
ନୀରଦକୁ ବୃହୁଁ କେକୀ ।
ତେସନ ତୁମ୍ଭଙ୍କୁ . ଦେଖିବାକୁ ବ୍ୟଗ୍ର
ଉତ୍କଳ ପ୍ରଜାମଣ୍ଡଳ

ଏ ବଧୂବଦନ ବିଲୋକ କରିବେ
ଅତୃପ୍ତ ନେତ୍ର ସଫଳ ।
ଦଶବର୍ଷ ହେଲା ସଦାବେଳେ ମନ
ପାଠରେ ରହୁଛି ଲାଗି
ନ ଦେଖି ଏ ମୂର୍ତ୍ତି ନଗରବାସୀଙ୍କ
ଫୁଟି ଯାଉଅଛି ଆଖି
ରାଜପୁରେ ଫେରି ପ୍ରିୟତମଗଣେ
ସମ୍ପ୍ରତି ଯଥାବିଧିରେ
ସମୂହଙ୍କ ଗୁରୁ ଜନଙ୍କୁ ପ୍ରଣମି,
ତୋଷପ୍ରୀତ ଭକ୍ତିଭରେ ।
ପବନ, ଗରୁଡ଼ ଠାରୁ ବେଗବାନ
ଏକ ଅଶ୍ୱ ଚମତ୍କାର
ଆରୋହିବା ପାଇଁ ପ୍ରେରିଛନ୍ତି ଭୂପ
ଇନ୍ଦ୍ରାୟୁଧ ନାମ ତାର
ରତ୍ନାକର ଗର୍ଭୁଁ ଉତ୍ଥିତ ଏ ରମ୍ୟ
ଅଶ୍ୱଟି ସ୍ୱଦେଶେ ପାଇ
ଉପହାର ସ୍ୱ ପାରସ୍ୟ ଦେଶର
ନରେଶ ଥିଲେ ପଠାଇ ।
କହୁଛନ୍ତି ଅଶ୍ୱ— କୋବିଦେ ତାହାର
ଦେହର ଲକ୍ଷଣ ଭଲ
ଉଚ୍ଚୈଃଶ୍ରବାଠାରୁ ଉତ୍କୃଷ୍ଟ ଗୁଣେ ସେ
ଊଣେ ନ୍ୟୂନ ନୁହେଁ ବୋଲି ।
ଶାଳିହୋତ୍ର (୧) ମତେ ସର୍ବ ସୁଲକ୍ଷଣ
ସେ ତୁରଙ୍ଗବରେ ବସି
ବାହୁଡ଼ ଗୃହକୁ ଉଜ୍ଜ୍ୱଳିମାପୁର
ଗଗନ ପୂର୍ଣ୍ଣିମା ଶଶି ।
ନିଜ ନିଜ ଅଶ୍ୱେ ଆରୋହି ଅଦ୍ଭୁତ
ବହୁତ ରାଜକୁମାରେ

(୧) ଶାଳିହୋତ୍ର—ଅଶ୍ୱଶାସ୍ତ୍ର

ତୁମ୍ଭ ଅପେକ୍ଷାରେ ଗହଣେ ଯିବାକୁ
ରହିଛନ୍ତି ପୁରଦ୍ୱାରେ ।
ଭକ୍ତବତ୍ସଳ ପିତାଙ୍କ ଏରୂପ
ଆଜ୍ଞା ଲଭି ମନସୁଖେ
ଅଶ୍ୱ ଆଣିବାକୁ ଇଙ୍ଗିତେ କହିଲେ
ନୃପସୁତ ସ୍ମିତମୁଖେ ।
ବେନି ଅନୁଚର ଦୁଇପାଖେ ଧରି
ଲଗାମ ଟାଣି ଦୃଢ଼ରେ
ଆଣିଲେ ଯତନେ ନାଚୁଥିଲା ଅଶ୍ୱ
ପ୍ରତ୍ୟେକ ପଦକ୍ଷେପରେ ।
ବିଶାଳ ଶରୀର ଉନ୍ନତ ମସ୍ତକ
କମନୀୟ କର୍ଣ୍ଣ ଦୁଇ
ତେଙ୍ଗାଲେକ ଠାଣେ ଉଦ୍ଧକିଲେ ଅଣ୍ଟେ
ତା ପିଠି ପାରିବ ଚୁଇଁ ।
ଲଗାମ ସଂଯୋଗେ ବଦନବ୍ୟାଦାନ
କରିବା ସେ ନେତ୍ରପଲକେ
ଯିଇ ଦେବାଲାଗି ମାର୍ଗ ଦୂରତାକୁ
ଲଙ୍ଘୁଥିଲା ନିମିଷକେ ।
ତୀବ୍ର ହ୍ରେଷାରବେ କମ୍ପାଇ ସବେଗେ
ପୃଥୁଳ ଉଦର ତାର
ମଟୁଆ ବୋଲି ସେ ଝଞ୍ଜା ପବନକୁ
ଦେଉଥିଲା କି ଧିକ୍କାର ।
ଲଗାମକୁ ଚାବି ସବଳେ ମସ୍ତକ
ଲମ୍ବାଇଁ ପୁଣି ଉଠାଇ
ଫୁଲାଉ ଥିଲକି ବେଗରୋଧ ହେତୁ
ଅଧୀରେ ଘୋଣା କମ୍ପାଇ ।
ଶ୍ୱେତ ପୀତ ରକ୍ତ ହୀରକେ ଖଚିତ
ବହୁମୂଲ୍ୟ ସୁରଜାମା (୧)

(୧) ସୁରଜାମା—ଘୋଡ଼ାର ପିଠି ଉପର ଚଦର

ପୃଷ୍ଠଦେଶେ ତାର          ତର ନେଉଥିଲା
ସୁରେନ୍ଦ୍ର ସ୍ତୂପ ସୁଷମା ।
ଜଣା ଯାଉଥିଲା          ଜଳଦ ମଣ୍ଡିତ
ହୋଇଥିଲା କି ଝୂଲରେ
ଅବା ଶିବ ବୃଷ          ଲାଲ ବସୁଥିଲା
ଗୈରିକ ମାଟି ଖେଳରେ ।
କି ଅବା ଅସୁର-          ରୁଧିରେ ଲୋହିତ
ଜଟାଜାଳ ସ୍ତବେ ଧରି
ଶୋଭା ପାଉଥିଲା          ବଦନ ରୁଚିରେ
ଭବାନୀଙ୍କର କେଶରୀ ।
ଆସୁଥିଲା ଡେଇଁ—          ଡେଇଁ ସେ ଘୋଟକ
ମୂର୍ତ୍ତିମନ୍ତ ବେଗବତ
ଗ୍ରୀବା ସହିତରେ          ନାଚୁଥିଲା ସ୍ତବେ
କେଶରମାଳ ସଜ୍ଜିତ ।
ପିଇଥିଲା ସେହି          ଦଉଡ଼ି ଦଉଡ଼ି
ଆଗରେ ଯେତେ ପବନ
ଉଦ୍‌ଗାରୁ ଥିଲା କି          ଫୁତ୍କାର ଫୁତ୍କାର
ନାସା ରନ୍ଧ୍ରେ ଘନଘନ ।
ବନ୍ଦୁ ବନ୍ଦୁ ଝାଳ          ସ୍ରବୁଥିଲା ତାର
ପ୍ରତ୍ୟେକ ଲୋମକୂପରେ
ଅବଶ ହେବାରୁ          ଫୁଟି ଉଠୁଥିଲା
ରୌଦ୍ରରଶ୍ମିକ ପ୍ରଖରେ ।
ସ୍ୱେଦ ବିନ୍ଦୁ ଦେଖି          ମନେ ହେଉଥିଲା
ମନ୍ଥିବାରୁ ସିନ୍ଧୁ ନୀରେ
ଲାଗି ରହିଥିଲା          ଗୋଟି ଗୋଟି ମୁକ୍ତା
କି ଅବା ତାର ଶରୀରେ ।
କଜ୍ଜଳ ସମାନ          ଅସିତ ବରଣ
ଚିକ୍କଣ ଶିଳାରେ କିହ
ଦୃଢ଼ତର ତାର          କିବା ମନୋହର
ଖୁର ଠାପୁ ଥିଲେ କିହ ।

ଉଠାଇ ପକାଇ        ଖୁରକୁ ତହିଁରୁ
ଜନ୍ମାଇ ଝଙ୍କଠ ସ୍ୱର
ଶୁଣାଉଥିଲା ଯେ        ମୃଦଙ୍ଗ ବାଦନ
କିମ୍ବାକୁ ଥରକୁ ଥର ।
ମନଠାରୁ ବଳ        ଚଞ୍ଚଳତା ଅଛି
ଜଗତରେ କେହି ନାହିଁ
ବେଗ ଶିଖିବାକୁ        ଧୂଳି ବ୍ୟାଜେ ପଦେ
ଅଶ୍ରିଥିଲା ସେହି ଯାଇ ।
ଅଶୋକ କୁସୁମ        ନିନ୍ଦ ଅନୁପମ
ଅବୟବ କି ସୁନ୍ଦର
କମଳ କେଶର        ପ୍ରାୟ ସଜୁଥିଲା
ଗ୍ରୀବାରେ ପୀତ କେଶର ।
ଲେମଶୂନ୍ୟ ରମ୍ୟ        ଚକ୍କୁଣ ବଦନ
ବକ୍ଷସ୍ଥଳ ସୁବିସ୍ତାର
ଇନ୍ଦ୍ର କୋଦଣ୍ଡର        ଶୋଭା ବହୁଥିଲା
ବଙ୍କିମ ଗ୍ରୀବା ତାହାର ।
ତୁଷାର ପଲଙ୍କ        ଅଙ୍ଗ ଶୋଭା ରଙ୍ଗ
ବିସ୍ତୀର୍ଣ୍ଣ ପୃଷ୍ଠ ଆସନ
ଦେଖି ହୃଷ୍ଟ ଚିତ୍ତେ        ମନେ ମନେ ଭଣେ
ଭାବିଲେ ନୃପନନ୍ଦନ ।
ଅମୂଲ୍ୟ ଏ ଅଶ୍ୱ        ନ ପାଇ ମନ୍ଥନ୍ତୁ
ଦେବତା ଅସୁରଗଣ
ଏତେ ପରିଶ୍ରମେ        ଲଭ କଲେ ଅଛ
ଦୁର୍ଲ୍ଲଭ କେଉଁ ରତନ ?
ସୁମେରୁ ଶୈଳର        ତୁଷାର ଉପଳ
ସମ ମନ ମୁଗ୍ଧକର
ଏଧବ୍ୟ ତୁରଙ୍ଗ        ପୃଷ୍ଠରେ ନ ବସି
ସୁରପତି ପୁରନ୍ଦର
ତିନି ଭୁବନର        ଆଧିପତ୍ୟ ସୁଖ
ସ୍ୱାଦୁ ଭୁଞ୍ଜୁଛନ୍ତି ଯାହା

ଏହା ତୁଳନାରେ ଧାରସ ସଙ୍ଗେ
ଘୋଳ ଦଧି ସିନା ତାହା ।
ଉଚ୍ଚୈଃଶ୍ରବା ନାମେ ଘୋଡ଼ାଟିଏ ସିନା
ପ୍ରଦାନ ସରତ ଯାଇଁ
ଦେଇଥିଲେ ସିନ୍ଧୁ ମନ୍ଥନ ସମୟେ
ଦେବରାଜଙ୍କୁ ଭଣ୍ଡାର ।
ପଡ଼ନାହିଁ ଏହୁ ଦିବ୍ୟ ତୁରଙ୍ଗମ
ଲକ୍ଷ୍ମୀପତିଙ୍କ ନୟନେ
ନୋହିଲେ ଲୋଡ଼ନ୍ତେ ଧରିବାକୁ କିପାଁ
ସେ ବୃକ୍ଷ ପକ୍ଷୀଆସନେ ।
ଯେମନ୍ତ ପ୍ରଚଣ୍ଡ ତେଜସ୍ୱୀ ଅଟଇ
ତେମନ୍ତ ଅତ୍ୟନ୍ତ ଧୀର
ବହୁଛନ୍ତି କେଉଁ ମହାତ୍ମା ଅଥବା
ଖାପେ ଏ ଅଶ୍ୱ ଶରୀର ।
ଏହିରୂପେ ଭାଳି ନରେନ୍ଦ୍ର ନନ୍ଦନ
ତାର ସନ୍ନିକଟେ ଆସି
ପ୍ରଣମି ଭାଷିଲେ ମର୍ତ୍ତ୍ୟର ଅଥବା
ହୁଅ ତୁମ୍ଭେ ସ୍ୱର୍ଗବାସୀ ।
ସବିନୟେ କର— ଯୋଡ଼ି ଜଣାଉଛି
ନିଜଗୁଣେ କ୍ଷମା କର
ଆରୋହଣ ରୂପ ମର୍ଯ୍ୟାଦା ଲଙ୍ଘନ
ସକଳ ଦୋଷ ମୋହର ।
ଇନ୍ଦ୍ରାୟୁଧ ବୁଝି ଅଟରେ ସକଳ
ବାସନା କୁମାରଙ୍କର
ନୁଆଇଁ ମସ୍ତକ ହସଇ ସଧୀରେ
ଦେକର ଶୁଭ୍ର କେଶର ।
ଦୁଲାଇ କୁଞ୍ଚିତ କୁଟିଳ ନୟନ
ତାରକା ବେନି ତଡ଼ିତ
ତା ଅତେ ଜନାଇ କଅବା ଇଙ୍ଗିତେ
ପ୍ରଦାନଇ ଅନୁମତି ।

ଦକ୍ଷିଣ ଚରଣ ଭୂତଳେ ସଘନେ
କଷୁଢ଼ ଥରକୁଥର
ସମୁତ୍ଥିତ ରେଣୁ ମଣ୍ଡଳେ ମଣ୍ଡିଲ
ଧୂସର ବର୍ଣ୍ଣେ ଉଦର ।
ଘୋର ଘୋଣା ଘାତେ ପୁନଃ ପୁନଃ ମୁଖେ
ଜନାଇ ମଧୁର ସ୍ୱନ
ତୀବ୍ର ହ୍ରେଷାନାଦେ କଅବା ତାହାଙ୍କୁ
କରଇ ଅଭିବାଦନ ।
ଏକାଲଙ୍ଫେ ଯୁବା ଆରୋହି ତାହାର
ପୃଥୁଳ ପୃଷ୍ଠରେ ରଙ୍ଗେ
ଶିକ୍ଷା ସଦନରୁ ବାହାରି ପଡ଼ିଲେ
ସଚିବ ତନୁଜ ସଙ୍ଗେ ।
ଅମ୍ବୁନିଧି ତୀର ଅଶ୍ୱାରୋହୀ ସୈନ୍ୟ
ଦେଖିଲେ ଦ୍ୱାର ସମ୍ମୁଖେ
ଠାକ ରହିଥିଲେ ଧାଇଁ ଧରି ତାଙ୍କ
ଆଗମନକୁ ଉତ୍ସୁକେ ।
ଚନ୍ଦ୍ରମା ଉଦୟେ ଯେସନ ଅସ୍ଥିର
ହୁଅଇ ଜଳଧିଜଳ
କୁମାରଙ୍କୁ ଦେଖି ଉତ୍କଣ୍ଠ ବାହିନୀ
ତେସନ ହୋଇଲା ଚଞ୍ଚଳ ।
ନିଜ ନିଜ ଅଶ୍ୱ ଏକ ଏକ ହୋଇ
ଓହ୍ଲାଇ ରାଜକୁମାରେ
ନୁଆଁଇଲେ ବୀର— ବୀର ଶିର ତାଙ୍କ
ସ୍ୱରୁ ପଦ୍ମ ଚରଣରେ ।
ଯଥାବିଧି ସେହି ସାମନ୍ତ ସୁତଙ୍କୁ
ଆଦରେ ସ୍ନେହେ ସଙ୍ଖୋଳି
ପୁର ଅଭିମୁଖେ ମହା ସମାରୋହେ
ଗମିଲେ ଯୁବା ମଣ୍ଡଳ ।
ଯିବାବେଳେ ଶିରେ ରଜତ ଧବଳ
ହେମଦଣ୍ଡ ଛତ୍ର ଘେନ

ନାଶୁଥିଲେ ଖର    ସୌର କର ତାପ
ସତେ ଅନୁଚର ଶ୍ରେଣୀ ।
ଶୋଭୁଥିଲା ଛତ୍ର    ଲକ୍ଷ୍ମୀଦେବୀଙ୍କର
ଲୀଳା ଶତଦଳ ପର
ଅବା ଖେଳୁଥିଲା    ବାତେ ତରଙ୍ଗିତ
କ୍ଷୀରାବ୍ଧି ଫେନ ଲହରୀ ।
କିବା ରସାତଳୁ    ଉଠିତ ଅନନ୍ତ
ଭୁଜଙ୍ଗର ଫଣାମଣି
ପ୍ରଫୁଲ୍ଲ କୁମୁଦ    କାନନେ ଅଥବା
ସମୁଦିତ ନିଶାମଣି ।
ଅଶ୍ୱ ସେନାରୂପ    ତଟିନୀର ଅବା
ବିସ୍ତୃତ ସିକତା କୂଳ
ସେ ସେନା ସମୁଦ୍ରେ    ଫିଟି ଦଶୁଥିଲା
କିଅବା ଶଙ୍ଖ ସମୂହ ।
ଖଟୁଥିଲେ ମୋଦେ    ବେନ ପାର୍ଶ୍ୱେ ରହି
ଚ୍ଛକରେ ଚ୍ଛରୁ ଚ୍ଛମରେ
ଦୋଳୁଥିଲା କର୍ଣ୍ଣ—    ଭୂଷଣ ଯୁବାଙ୍କ
ସମୀରଣର ବେଗରେ
ଗାଉଥିଲେ ବନ୍ଦେ    ଉଚ୍ଚାର ଉଚ୍ଚରେ
ଅଗ୍ରତେ ମଙ୍ଗଳ ପାଠ
କନକ ଚକ୍ରାବେ    ସ୍ତବ ପଢି ପଢି
ଡର୍ଦ୍ଧ୍ୱ ଚାଲୁଥିଲେ ଭାଟ
ଅଗ୍ରସର କ୍ରମେ—    କ୍ରମେ ଯୁବାମଣି
ପଶିଲେ ପୁର ତୋରଣେ
ସୁବିମଳ ବଧୂ    କମ୍ପ ଉଠିଲା କି
ପ୍ରଫୁଲ୍ଲ କୁମୁଦବନେ ।
ମୂର୍ତ୍ତିମନ୍ତ ମାର    ସମାନ କିଶୋର
ରୂପେ ନେତ୍ର ଗଲା ଲାଖି
ଥରେ ଦେଖି ଆଉ    ପାରିଲେ ନାହିଁତ
ଦର୍ଶନେ ଫେରାଇ ଆଖି ।

କୁହାକୁହି ହେଲେ   ପରସ୍ପର ସେହି
  ଦୁର୍ଗବାସିଏ ଏମନ୍ତ
ଅମ୍ଭେମାନେ ଷୁଇ   ମେଦିନୀ ମଣ୍ଡଳେ
  ଅତ୍ୟନ୍ତ ସୌଭାଗ୍ୟବନ୍ତ ।
ପୂର୍ବ ଜନମରେ   ଅରଜି ଥିବାରୁ
  ସିନା ବହୁତ ସୁକୃତ
ପିଇଲୁଁ ନୟନେ   ଶଶାଙ୍କ ଗଞ୍ଜନ
  ଏତବ୍ୟ ରୂପ ଅମୃତ ।
ଫିଟିଲା ବାମାଙ୍କ   କର ତାଡ଼ନାରେ
  ସୌଧ ବାତାୟନ ଜାଲ
ଦେଖିବାକୁ ଏହି   ଉତ୍ସବ ନଗରୀ
  ଫେଡ଼ିଲେ କି ନେତ୍ରମାଳ ।
ବିଦ୍ୟାଭ୍ୟାସ ଯାଗ   ଫେରୁଛନ୍ତି ପୁରେ
  କୁମାର ରାଜସମ୍ଭାରେ
ଏ ବାରତା ଲଭି   ଧାଇଁଲେ ଧମ୍ମିଲ୍ଲ *
  କୁନ୍ତଳାଏ ଧରି କରେ ।
ବେଉଥିଲେ ବେଣୀ   କେଉଁ ଶର୍ବାଣୀ—
  ବନ୍ଧନୀ ତାହା ନସାରି
ପ୍ରାସାଦ ସୋପାନେ   ଉଠିଲେ ପ୍ରମୋଦେ
  ଦ୍ରୁତ ପଦେ ସୁକୁମାରୀ ।
କିଏ ବା ଅଧରେ   ଦରପଣ କରେ
  ରଜ ବୋଳୁଥିଲେ ମୁଖେ
ଦଉଡ଼ିଲେ ଧନୀ   ଦରପଣ ଘେନି
  କରରେ ଅତି ଉତ୍ସୁକେ ।
ପ୍ରସାଧିକା କରେ   କିଏ ଅଳତାରେ
  ଚରଣ ଯୁଗଳ ରଞ୍ଜି
ପ୍ରାତଃସୂର୍ଯ୍ୟ କରେ   ଦେଉଥିଲେ ସରେ
  ନଳିନୀ ଦଳକୁ ଗଞ୍ଜି ।

* ଧମ୍ମିଲ୍ଲ—କେଶପାଶ

ଧାଇଁଲ ଲଳତା ପାଠଳ ଅଳତା
ରସରେ ପ୍ଲାବି ପଦବୀ
ପ୍ରତି ପଦକ୍ଷେପେ ଅଙ୍କିଲ ଯିନା ସେ
ରକ୍ତ ଶତଦଳ ଛବି ।
ଯୁବା ଦରଶନେ ଚଞ୍ଚଳ ଚରଣେ
ଧାଇଁବାରୁ କେ ଅବଳା
କଟୀଦେଶୁଁ ଖସି ଗଲା ଅନାୟସେ
ତଳକୁ ତାର ମେଖଳା ।
ପାଦ ବେଢ଼ି ଛନ୍ଦ ହେବାରୁ ଅଧୀରେ
ମନ୍ଥରେ ସେ ମଦାଳସୀ
ଶୃଙ୍ଖଳତା ନବ ହସ୍ତିନୀ ପରାୟେ
ସ୍ଖଳୁଥିଲା ହସି ହସି ।
ବଡ ବଡ ସ୍ଥୂଳ ମୁକୁତାର ହାର
ସରାଗେ ହସ୍ତରେ ଧରି
ଗଳାଇ ଗଳାଇ ଗୁନ୍ଥୁଥିଲା ତାହା
ସୂତାରେ କେଉଁ ସୁନ୍ଦରୀ ।
ସେ ସ୍ତବେ ଦଉଡ଼ି ପିବାରୁ ମଦନ
ବିୟୋଗରେ ବଶାଦନୀ
ରୁଦ୍ରାକ୍ଷ ମାଳିନୀ ରଢ ମୂରଛଙ୍କ
ଅନାୟାସେ ଗଲା ଛିଣ୍ଡି ।
କାହା ରତ୍ନହାର ଉରେ ଦୋଳିବାରୁ
ଏ ସ୍ତବ ହେଲା ମନରେ
ତଟିନୀରୁ ଧାରେ ବହୁଛି କି ଧୀରେ
କୋକ ଦମ୍ପତି ମଧ୍ୟରେ ।
ନୀଳ ବସ୍ତ୍ରାଞ୍ଚଳ ଗଣ୍ଡବକ୍ଷେ ତଳେ
ଘୁଷୁରୁଥିଲା କାହାର
ପାଳିତ ମୟୂରୀ ଅନୁସରୁଥିଲା
ପଛରେ କରେ ତାହାର ।
ଅଧେ ପିଇ ଅଧେ ଚଷକରେ ରଖି
କେ ଯାରୁ ଗମନ କରୁଁ

ଝୋପି ପଡୁଥିଲା     ମନ୍ଦର ମାର୍ଜିତ
ରକ୍ତିମା ଗଣ୍ଡ ସ୍ଥଳରୁ ।
ମାଣିକ୍ୟ ଗବାକ୍ଷେ     ବଦନ କଟାକ୍ଷେ
ନନ୍ଦ ରସବତୀ ପନ୍ତି
ସ୍ଫୁରଉଥିଲେ ସେ     ଚନ୍ଦ୍ର ମଣ୍ଡଳରେ
ପୂର୍ଣ୍ଣିମା ଚନ୍ଦ୍ର ମୂରତି ।
ବେଗେ ଧାଇଁବାରୁ     ଉଠି ପୁନଃ ପୁନଃ
ଖୁରୁଙ୍କ ଭୂଷା ଶିଞ୍ଜିତ
ବୀଣା କରତାଳ     ବଇଁଶୀ ସିତାର
ସ୍ୱରରେ ହେଲା ମିଳିତ ।
ପୁଣି ସୁଲଳିତ     ସଙ୍ଗୀତ ମିଶ୍ରିତ
ଶଙ୍ଖ ଘଣ୍ଟା ହୁଳହୁଳି
ସୋପାନେ ସ୍ଖଳିତ—     ଚରଣା ଯୋଷାଙ୍କ
ନୂପୁର ନାଦେଉଚ୍ଛଳ ।
ପ୍ରତିଧ୍ୱନି ବକ୍ଷେ     କମ୍ପାଇ ରଭସେ
ବିଶାଳ ରାଜମାର୍ଗକୁ
ଉପହାସ ଛଳେ     କାମର ଉଲ୍ଲାସ
ବିଜୟ ଡଙ୍କା ନାଦକୁ ।
ମୁହୂର୍ତ୍ତେ ମହଲା     ମଣ୍ଡଳେ ମଣ୍ଡିତ
ହେଲା ଅଟ୍ଟାଳିକାଚୟ
ଦୂରରୁ ଦିଶିଲା     ତଳୁ ଉପରକୁ
କେବଳ ରମଣୀମୟ ।
ବୃଷିଲା ଲାବଣ୍ୟ—     ମଧୁ ରାଜଧାନୀ
ରୂପସୀ ରୂପରାଶିରେ
ଚନ୍ଦ୍ରବିମ୍ବମୟ     ଆଭାସିଲା ତାଙ୍କ
ଶ୍ରୀମୁଖ ଚନ୍ଦ୍ରକାନ୍ତିରେ
ଇନ୍ଦ୍ରଧନୁମୟ     ହେଲା ମଞ୍ଜୁମୟ
ଉଜ୍ଜ୍ୱଳ ଭୂଷା କିରଣେ
ନବ ପଦ୍ମମୟ     ପରାଗେ ସ୍ୱଚ୍ଛଳ
ଅଳତା ବୋଳା ଚରଣେ ।

ରୌଦ୍ର ନାଶିବାକୁ ଉପ୍ରନତ କର
ଶିରେ ଦେଇଁ ବାମାଚୟ
ଚଉପାଖ ଯାକ ଦଶିଗଲ ସିନା
ସଜ ସରୋଜବନମୟ ।
ଚତୁରୀଙ୍କ ସ୍ଥଳୁ ଚଞ୍ଚଳ ଚରଣ
ଛଟାରେ ସେହୁ ବନଟି
ରକ୍ତୋତ୍ପଳମୟ ସ୍ୱଚ୍ଛ ସରସୀର
ସୁଷମା ଲୋଟିଲ ହୁଟି ।
ସୌଧ ବାତାୟନ୍ତୁ କୌତୁକେ ଅଯୁତ—
ନେହା କୁହୁକମୀଗଣ
ଅନିମିଷେ ବ୍ୟଗ୍ରେ ପିଇଲେ କିଶୋର
ମଣିଙ୍କ ମୂର୍ତ୍ତିମୋହନ ।
ନିର୍ମ୍ମଳ ଥିବାରୁ ସାରୁଙ୍କର ସ୍ଥଳୁ
ହ୍ରଦ ଦର୍ପଣ ସ୍ୱରୂପ
ସୁବିମ୍ବିତ ହେଲ ସହସ୍ରରେ ତହିଁ
ରାଜକୁମାରଙ୍କ ରୂପ ।
ନାନାବିଧ ହାସ୍ୟ ରସ କଉତୁକେ
ମତ୍ତି ସେ ବାମା କଳାପ
ଏକକୁ ଆରେକ ଉଦ୍ଦେଶି ଏକ୍ସବେ
ଆନନ୍ଦେ କଲେ ଆଲାପ ।
ଅଣ୍ଟା ଭଙ୍ଗି ରଙ୍ଗି କର୍ପା ଚଳାପାଙ୍ଗି
ଗୁଳ୍ମରୁ ଟିକିଏ ଅନା
ଅସମ୍ଭାଳେ ଖସି ପଡ଼ୁଛି ଅଞ୍ଚଳ
ଅଣ୍ଟାରୁ ଥରେ ଧରନା ।
ପଙ୍କଜ ପାଖୁଡ଼ା ପଡ଼ିଛି ପ୍ରାଙ୍ଗଣେ
ଯିବଟି ପାଦ ଖସଡ଼ି
ଉଷ୍ଣେ ଅବନୀ ଉପରେ କଜ୍ଜଳ
କୁନ୍ତଳା ଯିବୁଟି ପଡ଼ି ।
ବଧୂ ବଦନକୁ ଢାଙ୍କିଲଣି ଦୋର
ଚିକୁର ମଥାରୁ ଖସି

ସମ୍ଭାଳ ଗନ୍ଧର ବଦନେ ଯିବନ୍ତି
ପୌର୍ଣ୍ଣମାସୀ ଶଶି ଓଷ୍ଠ ।
ବାନ୍ଧରେ ବାନ୍ଧବୀ ଫିଟି ଲୋଟୁଅଛି
ନିତମ୍ବେ କୁନ୍ତଳ ଭାର
ପଡ଼ ଥିବ ଟିକି ସର୍ବଦା ନିକଟ
ପଠାରେ ହାଟକ ଗାର ।
ସ୍ୱର୍ଣ୍ଣହାର ସହ ଉନ୍ମୁକ୍ତ ଉରଜ
କମ୍ପାଉ କମ୍ପାଁ ରୁ ଧାଇଁ
ଲୋକେ କି କହିବେ କନକାଚଳରେ
ହରତାଳ ସ୍ରୋତ ଗୁହିଁ ।
କରଦେ ଟିକିଏ ସ୍ଥାନ ଦେଖିବାକୁ
ପାଶରେ ମୋତେ ମୀନାକ୍ଷି !
ତୃପ୍ତ ନୋହୁଛୁ କି, କେତେକାଳ ଯାଏ
ଦେଖିବୁ ରୁହ ଏକାକ୍ଷୀ ।
କିସ ଦେଖୁଅଛୁ ମିଛରେ ସଜନି !
ବୁଜିଅଛୁ କି ନୟନ ?
ଦୃଷ୍ଟିପଥ ଲଙ୍ଘି ଅଗରୁ ଏସ୍ଥାନୁ
ଗଲେଣି ନୃପନନ୍ଦନ ।
ଖଡ୍ଗ ଲଗି କର ଉଷ୍ଣେନ ମସ୍ତକେ
ରଖିଛୁ କରି କି ମନ୍ଥା
ବସ୍ତୁଛି କନକ ଲତାରେ କୋମଳ
ପଦ୍ମ ହେଲ ପରି ଗଜା ।
କଲସ୍ୱେ ଦେଖି— ଥାଅ ଏ ମୂରତି
ଅପସରୀଙ୍କ ବାଞ୍ଛିତ
ଦେଖିବା ପଦାର୍ଥ ନ ଦେଖିଲେ ସଖି
ନୟନ ହେବ ବଞ୍ଚିତ ।
ଦେଖ ଗୋ କପଟ ଯଉବନ ଶିଖ
ଦେହରୁ ଉଠୁଛି ଫୁଟି
ଏ ରୂପ ବିଲୋକି କେଉଁ ଅପ୍ସରୀର
ଧୈର୍ଯ୍ୟ ନ ଯିବ ତୁଟି ।

ସମାଗତ ଏଥୁ          ଧତ୍ର ରାଣୀଙ୍କର
     ନୂତନ ସଖୀ ସହ
ଶୋଭାମୟୀ ରାଜ—          ଲକ୍ଷ୍ମୀଙ୍କ ସମାନ
     ଏ ଭବେ ସେହି ସୁନ୍ଦରୀ ।
ଧୀରବ ନାଗର !          ମନଙ୍ଗେର ଏଥୁ
     ନବ ଯୁବକର କର
ଭବେ ଭାଗ୍ୟବତୀ          ହେବ ସବୃମତେ
     ସିନା ସେହୁ ରାମାବର ।
କେତେ ଭାଗ୍ୟବତୀ          ନୁହନ୍ତି ଅମ୍ବର
     ମହର୍ଷୀ ବିଳାସବତୀ
ବହୁଥିଲେ ଗର୍ବେ          ଯାହା ଏ କଞ୍ଜନ (୧)
     ଗଞ୍ଜନ ମଞ୍ଜୁ ମୂରତି ।
ଏରୂପେ ରୂପସୀ—          ମାନେ ପରସ୍ପର
     ଅଳପି ଉଲ୍ଲାସମନେ
ପିଉଥିଲେ ଏକ          ଲକ୍ଷ୍ୟେ ଚନ୍ଦ୍ରାପୀଡ଼—
     ରୂପସୁଧା ବିଲୋଚନେ ।
ଭୂଷାସ୍ୱନ ବ୍ୟାଜେ          ବାଳାଏ ଯତ୍ନାଙ୍କୁ
     କରୁଥିଲେ କି ଇଙ୍ଗିତ
ପଛେ ପଛେ ହେନେ          ଦଉଡାଇ ତାଙ୍କ
     ସୌନ୍ଦର୍ଯ୍ୟ ବିମୁଗ୍ଧଚିତ୍ତ ।
ଅବା ଅଙ୍ଗକାର          କାରଣ ଶରକୁ
     ମାର ମନ୍ତ୍ରପୂତ କରି
କଟାକ୍ଷ ସହିତ          ଛାଡୁଥିଲେ ତାଙ୍କୁ
     ଭ୍ରୂଧନୁ ଯୋଗେ ସୁନ୍ଦରୀ ।
ଏଭାବେ ଖାରୁଏ          ମନେ ମନେ ନିଜ
     ଦୁର୍ଲ୍ଲଭ ନବ ଯୌବନ
ଅନୁରାଗଭରେ          ଦେଇ କୁମାରଙ୍କ
     ଉଦ୍ଦେଶ୍ୟେ ଉପଢୌକନ ।

(୧) କଞ୍ଜନ—ମଦନ ।

ପ୍ରାସାଦ ଉପରୁ କରପଦ୍ମ ତୋଳ
ତାହାଙ୍କ ମସ୍ତକପରେ
ନବପୁଷ୍ପଯୁକ୍ତ ଶ୍ୱେତବର୍ଣ୍ଣ ଖଇ
ଫିଙ୍ଗୁଥିଲେ ମହାଦରେ ।
ଅଣ୍ଡନମି ନମେ ଏସବୁ କୁମାର
ପ୍ରବେଶି ପୁରସଦନେ
ଲମ୍ବାୟୁଧ ପୃଷ୍ଠୁ ଅବତରି ତଳେ
ଅବସ୍ଥିତ ହେଲେ କ୍ଷଣେ ।



# ପଞ୍ଚମ ସର୍ଗ

ଜାବାଳଙ୍କ ମୁଖୁଁ            ଏରୂପ ମଧୁର
ଅଦ୍ଭୁତ ରହସ୍ୟ ଶୁଣି
ହରିତଙ୍କ ସହ            ସାନନ୍ଦେ ତପସ୍ୱୀ
ସୁତେ ନିବେଶିଲେ ପୁଣି ।
ପାଠାଭ୍ୟାସ ସାରି            ଗୃହରେ ପ୍ରବେଶି
ଉତ୍ସାହୀ ରାଜକୁମାର
ସ୍ୱ ସ୍ୱ କାର୍ଯ୍ୟ କଲେ            ସନ୍ଧ୍ୟା ବନ୍ଦ ପରେ
ଶୁଣ ହେ ବଦାନ୍ୟବର ।
ମୁନିସୁତଙ୍କର            ଆଗ୍ରହ ନିରେଖି
ସ୍ମିତହାସ୍ୟେ ତପୋଧନ
ଏମନ୍ତ ବର୍ଣ୍ଣିଲେ            ସେ ପାର୍ଥି ସୁବୃତ
ବୃତ୍ତାନ୍ତ ମନମୋହନ ।
ଅଶ୍ୱୁଁ ଅବତରି            ମତ୍ତ ଗଜକୁଳ
ଦେଖିଲେ ଆଗେ କୁମାର
ସେମାନଙ୍କ ଗଣ୍ଡୁଁ            ଝରୁଥିଲା ଖର
ବେଗେ ମଦଜଳ ଧାର ।
ବନ୍ଧା ହୋଇ ଶାଳେ            ଘନ କୃଷ୍ଣବର୍ଣ୍ଣ
ପୃଥୁଳ ବାରଣ ଘଟା
ବହୁଥିଲେ ଅବା            ସଦ୍ୟ ପ୍ରକ୍ଷାଳିତ
ଅଞ୍ଜନ ଗିରିର ଛଟା ।
ସେମାନଙ୍କ କୃଷ୍ଣ            କାନ୍ତିର ଛାୟାରେ
ଛନ୍ନ ଧବଳିମା ତାର
ମେଘାଚ୍ଛନ୍ନ ଦିନ            ସମାନ ଶୋଭନ୍ତ
ହେଉଥିଲା ରାଜଦ୍ୱାର ।
ମେଘନାଦନିଭ            ଗମ୍ଭୀର ମୃଦଙ୍ଗ
ବଇଁଶୀ ବୀଣା ଶବଦେ
ରହିଥିଲେ ସେହି            ପ୍ରମତ୍ତ ମାତଙ୍ଗେ
ନେଇ ମୁଣ୍ଡ ନସ୍ତବଦେ ।

ସୁବୃତର ନଳ ଶୁଣ୍ଡ ଦଣ୍ଡ ଶୋଭ
ଉଚ୍ଛ୍ୱାସରେ ଦନ୍ତପରେ
ଠିଆ ହୋଇଥିଲେ ଆଲେଖ୍ୟ ଖଚିତ
ଚନ୍ଦ୍ର ପରି ନଭସ୍ତଳରେ ।
ପୃଷ୍ଠ ଦେଶେ ବନ୍ଧ ଜରି ଜର୍ବତ
ବନ୍ଦନ ସୁବର୍ଣ୍ଣ ଝୁଲ
ଦିଶୁଥିଲେ ମଦ ପ୍ରବାହେ ମଞ୍ଜୁଳ
ସେ ବିଶାଳ କରିକୁଳ ।
ଗୈରିକ ରାଗରେ ରଞ୍ଜିତ ସୁପାର୍ଶ୍ୱ
ଯୁଗଳ ପକ୍ଷ ମେଲାଇ
ଗଣ୍ଡ ଶୈଳକୁଳ ହେଉଥିଲେ କିବା
ଉଦ୍ୟତ ଉଡ଼ିବା ପାଇଁ ?
ସୁବର୍ଣ୍ଣ ଗଠିତ ସୁତୀକ୍ଷ୍ଣ ଅଙ୍କୁଶ
ଝୁଲୁଥିଲା ଶ୍ରବଣରେ
ବିମଣ୍ଡିତ ଯହିଁ କର୍ଣ୍ଣ ଯୁଗଳ କି
ମନୋହର ଭୂଷଣରେ ।
ଅଗ୍ରଭାଗ ଉଚେ ପତାକା ପଶ୍ଚାତ
ନାଚେ ରଙ୍ଗି ସେ କୁଞ୍ଜରେ
ଉଠୁଥିଲେ କିବା ଧଳ ମାଇ ମାର
ପାତାଳୁ ମଞ୍ଚ ଉପରେ ।
ରଶାଳରେ ପାଶେ ବନ୍ଧା ହୋଇଥିଲେ
ଉତ୍କୃଷ୍ଟ ଘୋଟକଗଣ
ଢଙ୍କା ହୋଇଥିଲା ଶିରୁଁ ଲମ୍ବମାନ
ସୁରମ୍ୟ ସ୍ଥୂଳ ବସନ ।
ଶୋଭୁଥିଲା ତାଙ୍କ କଣ୍ଠଦେଶ ମୃଦୁ—
ନାଦମୀ ଘାଗୁଡ଼ି ମାଳେ
ଲାଲ ଦିଶୁଥିଲା କୁଙ୍କୁମ ରଞ୍ଜିତ
କେଶରେ ଗ୍ରୀବାରୁ ଝାଳେ ।
ସୁଢ଼ରେ ଗଠିତ ସ୍ୱାଦୁ ଜଳ ପୂର୍ଣ୍ଣ
ବିରାଜୁଥିଲା କୁଣ୍ଡରେ

ଝରୁଥିଲା ଜଳ ତହୁଁ ଦୁଇବେଗେ
ସବେଗେ ଦୁଇଧାରରେ ।
ସେମାନଙ୍କୁ ଛଡ଼ି ପାତ୍ର ମିତ୍ର ସହ
ନରେନ୍ଦ୍ର ପୁତ୍ର ଅହ୍ଲାଦେ
ବୈଶମ୍ପାୟନର କର କରେ ଧରି
ପଶିଲେ ରାଜପ୍ରାସାଦେ ।
ବସୁଥିଲା ତାହା ଅନ୍ତଃପୁର ତୁଲ
ହେଲା ପର ଏକସ୍ଥାନେ
ଭ୍ରମୁଥିଲେ ଅଗେ ନିର୍ଭୟେ ନିର୍ଦ୍ଦୟ
ମୂର୍ତ୍ତି ଦ୍ୱାରପାଳମାନେ ।
ଶିରେ ଶ୍ୱେତ ପାଗ ସ୍କନ୍ଧୁ ଅଣ୍ଟୁ ଯାଏ
ଶ୍ୱେତ ଅଙ୍ଗରଖା ଭରି
ଜଣା ଯାଉଥିଲେ ସକଳେ ଦୂରରୁ
ଶ୍ୱେତ ଦ୍ୱୀପବାସୀ ପରି ।
ଉଚତାରେ ତହିଁ କୈଳାସ ଶଇଳ
ସହିତ କରଣ ବାଦ
ରାଜୁଥିଲା ବନ୍ଧୁ ସୁଧାରେ ଧଉତ
ଗଗନଚୁମ୍ବି ପ୍ରାସାଦ ।
ସେ ଅଟ୍ଟାଳିମାଳା ଶିରେ ବହୁଥିଲା
ମଞ୍ଜୁଳ ଗୋଲ ଗୁମ୍ବଜ
ଗୌର ଗୁରୁଙ୍କର ମସ୍ତକେ ଯେମନ୍ତ
ହେମୋଜ୍ଜ୍ୱଳ ଶୃଙ୍ଗବ୍ରଜ ।
ଗବାକ୍ଷ ନିର୍ଗତ ପୁରବାଳାଙ୍କର
ଭୂଷଣ ରଶ୍ମିମାଳାରେ—
ଝଲ, ବାତାୟନ ମାଳ ଶୋଭୁଥିଲା
ପୀତବର୍ଣ୍ଣ ପରଦାରେ ।
ଶ୍ୟାମ ଭୁଜଙ୍ଗମ ସଙ୍କୁଳ ପାତାଳ
ବିବର ସମ ଭୀଷଣ ।
ଅପୂର୍ବେ ପୁଣ୍ଡିତ ସ୍ଥାନେ ସ୍ଥାନେ ଥିଲା
ଅସଂଖ୍ୟ ଅସ୍ତ୍ରଭବନ ।

ଅସ୍ତ୍ରଶସ୍ତ୍ରଧାରୀ ସାହସୀ ପ୍ରହରୀ-
ମାନଙ୍କରେ ସୁରକ୍ଷିତ
ରାଜକୋଷେ ଜାହିଁ ଭରିଥିଲା ନାନା
ଧନ ରତ୍ନ ଅପ୍ରମିତ ।
ବାଦୀ ପ୍ରତିବାଦୀ ସାକ୍ଷୀ ପିଆଦାରେ
ସଙ୍କୁଳ ବିଚାରାଳୟ
ଦ୍ୱେଷଶୂନ୍ୟ ଚିତ୍ତେ ଲଭୁଥିଲେ ଯହିଁ
ଚତୁର ଓକିଲଚୟ ।
ଧର୍ମାସନରେ ସେ ଆଳୟେ ବସି
ବଡ଼ ବିଚାରକ ଗଣ
ସାଧାରଣ ବେଶେ ବିଚାର କାର୍ଯ୍ୟରେ
ହୋଇଥିଲେ ନିମଗନ ।
ଜାନୁ ଉପରରେ ଭୂର୍ଜପତ୍ର ଥୋଇ
ସନ୍ତତ କରଣିଦଳ
ଲେଖୁଥିଲେ କ୍ଷିପ୍ର— କରରେ ସେତେକ
ବିଚାରର ଫଳାଫଳ ।
ରାଜ୍ୟର ଯାବତ ଘଟଣା ସେମାନେ
ଅଙ୍କୁଥିଲେ ଗଣି ଗଣି
ଶିଶୁ ଚନ୍ଦ୍ରଗୁପ୍ତ ପରିଏ ସର୍ବଦା
ଅଭ୍ରାନ୍ତ ତାଙ୍କ ଲେଖନୀ ।
ତାରପୀଢ଼ଙ୍କର ମନତୁଷ୍ଟି ପାଇଁ
ଗହଣେ ଅନୁସରଣେ
ରହୁଥିଲେ ବନ୍ଧୁ— ସମର୍ଥ ପାଖରେ
ନାନା ଦେଶର ରାଜନେ ।
ସେମାନେ ସମ୍ରାଟ ପାଖୁଁ କାର୍ଯ୍ୟ ସାରି
ବାହୁଡ଼ିବା ବେଳ ରହି
ଶରୀରରକ୍ଷୀଏ ଆଳସ୍ୟରେ ବସି
କାହିଁ ମାରୁଥିଲେ ହାଇ ।
ମଣିମୟ ରମ୍ୟ ସୋପାନେ ବାଳାଏ
କାହିଁ ଯାଉଥିଲେ ଉଠି

ପ୍ରତି ପଦକ୍ଷେପେ — ତାହାଙ୍କ କମଳ
ପଦ୍ମ ଉଠୁଥିଲା ଫୁଟି ।
ଶିକୁଳୀରେ କାହିଁ — ବନ୍ଧା ହୋଇଥିଲେ
ବଜଠ କୁକୁ ରମାଳ
କଏ ଖୋଇଥିଲା — କାହାର ବଦନ୍ତୁ
ଖସି ପଡ଼ୁଥିଲା ଲାଳ ।
ବୁଲୁଥିଲେ କାହିଁ — ଯୂଥ ଯୂଥ ହୋଇ
କସ୍ତୁରୀ କୁରଙ୍ଗେ ବୁଲି
ଯାଉଥିଲା ତାଙ୍କ — ମନୋହର ନାଭି
ଗନ୍ଧରେ ପୁର ଉଛୁଳି ।
* ଭୂଜା, ଭୂଗଦେହ, — ଖର୍ବ, ନପୁଂସକ,
ଅଥର୍ବ, ଅନ୍ଧ ବଧିର
ମାନବ ନକରେ — ପୁରୁଥିଲା କାହିଁ
ପ୍ରଶସ୍ତ ରାଜମନ୍ଦିର ।
ଚମ୍ପାପକ୍ଷୀ, ଭେଡ଼ା — ପାଳିତ କୁକୁଡ଼ା
କାହିଁ ଅନ୍ୟାନ୍ୟକୁ ପାଇ
ଲଢୁଥିଲେ ଖରେ — ପ୍ରାଣଆଶା ଛାଡ଼ି
କୋଧରେ ଖନ ହସଇ ।
କାହିଁ ହଂସଖଳ — କୋକିଳ ମୟୂନା
ଉଚ୍ଚେ ଡାକୁଥିଲେ ସ୍ୱର
ଅନ୍ତରତ କାହିଁ — ଶୁଭୁଥିଲା ମୃଦୁ
ଆଳାପ ସାରୀ ଶୁକର ।
ଗିରଗୁହା ଛାଡ଼ି — କେଶରୀଏ କାହିଁ
ଆବଦ୍ଧ ହୋଇ ପିଞ୍ଜରେ
ବାହାର ନ ପାରି — ଗଜ ମଦଗନ୍ଧେ
ଗରଜୁଥିଲେ ରୋଷରେ ।
ସ୍ୱର୍ଣ୍ଣମୟ ଗୃହ — କାନ୍ତି ଫଟକକୁ
ଦେଖି ଦାବାନଳ ଭ୍ରମେ

* ସଜଦ୍ୱାରେ ସର୍ବଦା ନରୂପାଦ୍‌ମାନଙ୍କୁ ପର୍ଥ ବଚରଚ ହୁଏ, ଏହୁସ୍ୱବ ।

ଚଞ୍ଚଳ ନୟନେ ଧାଇଁ ବୁଲୁଥିଲେ
ଯାହିଁ ପୋଷା ମୃଗମାନେ ।
ମରକତ ମଣି ମଣ୍ଡିତ ମସୃଣ
ଭୂମିରେ ବସି କେଶବ
ମିଶି ଯାଉଥିଲେ, ଧାର ନୋହୁଥିଲା
ପ୍ରଭେଦ ଯାହିଁ ଟିକଏ ।
ବରକନ୍ୟା ସାଜି ପିଲା ମାନଙ୍କୁ
ହରଷେ ବାଳକାଏ ଯାହିଁ
ବାହା ଦେଉଥିଲେ କୀଡ଼ା କଉତୁକେ
ନନ୍ଦନନ୍ଦର କୁଣ୍ଡାଇ ।
ଯାହିଁ ଯୁବତୀଏ ଝୁଲୁଥିଲେ ବସି
ଦୋଳିରେ ମହାଆନନ୍ଦେ
ପୂରାଇ ପ୍ରଶସ୍ତ ଅଙ୍ଗଣାକୁ କେଏଁ —
କେଏଁ ଉତ୍କଣ୍ଠ ଶବଦେ ।
ଗଜଗମନାଙ୍କ ଗଳାରୁ ଗଳିତ
ମୁକୁତା ମାଳକୁ ଦେଖି
ସାପର ଖୋଳସ ଭ୍ରବ ଅଣ୍ଡେ ଯେନ
ଯାହିଁ ଧାଇଁଥିଲା କେକୀ ।
ବହୁମୂଲ୍ୟ ଦ୍ରବ୍ୟ ଯେନ ଲୁଚେ ଯାହିଁ
ପଳାଉଥିଲେ କପିଏ
ଫେରାଇ ଦେବାକୁ ଯାହିଁ ବା ଆହାର
ତାଙ୍କୁ ଯାଚୁଥିଲେ କଏ ।
ଧୂପ ଧୂମ ଯାହିଁ ଉଠୁଥିଲା ନଭେ
ନବୀନ ନୀରଦ ପରି
ଘ୍ରାଣ ତୃପ୍ତିକର ମଧୁର ସୌରଭେ
ସଜନବରକୁ ଭରି ।
କେଶୀନୃତ୍ୟ ପାଇଁ ଗଠିତ ସୁନ୍ଦର
ସୁବର୍ଣ୍ଣ ଯଷ୍ଟିରେ ଯାହିଁ
ବସି କେକୀକୁଳ ସବ ଦେଉଥିଲେ
ଉଲ୍ଲାସେ ପୁର ଜମାଇ ।

ଅନ୍ତେ ଋଷିସୁତେ ଏମନ୍ତ ସମୟରେ
ପରିପୂର୍ଣ୍ଣ ସେ ପ୍ରାସାଦେ
ମନ୍ତ୍ରୀସୁତ ସହ ନରେନ୍ଦ୍ର ନନ୍ଦନ
ପ୍ରବେଶିଲେ ସହ୍ଲାଦେ ।
କ୍ରମେ କ୍ରମେ ସାତ ମହଲ ଯୁବକ
ଅତିକ୍ରମି ଉଲ୍ଲସରେ
ମଞ୍ଚରେ ମସ୍ତକ ଥୋଇ ପ୍ରଣମିଲେ
ପିତାଙ୍କ ପୁତ ପଦ୍ମରେ ।
ଆସ ବାପଧନ ବୋଲି ସହ୍ଲାଦରେ
ନରେନ୍ଦ୍ର ପୁତ୍ରବତ୍ସଳ
ପ୍ରସାରିଲେ ଧୀରେ ଉପରକୁ ଟେକି
ସୁଦୀର୍ଘ ବାହୁଯୁଗଳ ।
ଉଦ୍‌ବେଗେ ସୁବର୍ଣ୍ଣ ଆସନରୁ ଉଠି
ଆଗକୁ ସେ ଅଗ୍ରସରି
ଆଲିଙ୍ଗିଲେ ସ୍ନେହେ ବିନୟାବନତ
କୁମାରକୁ ହୃଦେ ଧରି ।
ପୁରିଗଲା ନେତ୍ର- ଯୁଗଳ ତାହାଙ୍କ
ଆନନ୍ଦାଶ୍ରୁ ପୁଞ୍ଜମାଳେ
ତନୟର ତନୁ ସ୍ପର୍ଶରେ ପୁଲକ
ଭରିଲା ସର୍ବ ଶରୀରେ ।
ଗାଢ଼ ଆଲିଙ୍ଗନ କରଣ ରୋମାଞ୍ଚ
ବ୍ୟାଜେ କିବା ନରସାଇଁ
ସିଏଁ ଦେଉଥିଲେ ସ୍ୱୀୟ ତନୁ ସହ
ତନୟ ତନୁ ମିଶାଇ ।
ନିଜ ପ୍ରିୟତମ ତନୁଜର ପରି
ତହୁଁ ସେ ମନ୍ତ୍ରୀ ନନ୍ଦନେ
ସମାଦରେ ସ୍ନେହେ ମଧୁରେ ତୋଷିଲେ
ନାନାବିଧ ସମ୍ଭାଷଣେ ।
ଏଣିକେ ଜନକ ପାଶ୍ୱୁଁ ଯୁବରାଜ
ବିନୟେ ନେଲେଣି ବିଦେନ

ପ୍ରବେଶି ପୁଚ୍ଛଲେ ସ୍ନେହମୟୀ ମାତା
ଚରଣ କମଳ ବେନ ।
ତନୟବତ୍ସଳା ଜନନୀ ସସ୍ନେହେ
ଚୁମ୍ବି ଶିର ତନୟର
ମଙ୍ଗଳାଚରଣ କହିଲେ ତାହାର
ନବୀନ ଆଗମନର ।
ପୁତ୍ର ସ୍ନେହୋଚ୍ଛ୍ୱାସେ ସ୍ତନ ଯୁଗଳରୁ
ଦୁଗ୍ଧଧାର ଛଳେ ଧୀରେ
ମହାରାଣୀଙ୍କର କୋମଳ ହୃଦୟ
ତରଳ ସ୍ରବଣ କରେ ?
ବସୁଥିଲେ ମାତା ଆଗରେ ବନ୍ଦେ
ତନୟମଣି ଭୂତଳେ
ସସ୍ନେହରେ ହସି ଓଠାଇ ତାହାଙ୍କୁ
ରାଣୀ ବସାଇଲେ କୋଳେ ।
ବାରବାର ମାତା ଅଇଁସି ପୁତ୍ରର
କପୋଳେ ବକ୍ଷେ ସ୍କନ୍ଧରେ
ଆନନ୍ଦ ଉତ୍ସାହେ କହିଲେ ଏମନ୍ତ
ସୁମଧୁର ମୃଦୁସ୍ୱରେ ।
ଅରେ ଗୁଣିଧନ ! ଅତ୍ୟନ୍ତ କଠିନ
ପିତାର ହୃଦୟ ତୋର
ଏତେ କଷ୍ଟ ଦେଲ ପିତା ସେ ପୁତ୍ରର
ଏ ବପୁଟିକୁ ମୋହର ।
ଏତେ ଦୀର୍ଘକାଳ ଯାଏ କହ କହ
କେମନ୍ତ ମୋ ଗୁଣିଧନ
ସହିଲୁ ସର୍ବଦା ଗୁରୁମାନଙ୍କର
କଠିଣତର ତାଡ଼ନ ।
ପିଲ ହୋଇଲେହେଁ ବୟସ୍କ ବ୍ୟକ୍ତିଙ୍କ
ଓସ୍ତେୟ ସଙ୍ଖାଳ ମୋର
ଶରୀର ଗାମ୍ଭୀର୍ଯ୍ୟ ଗୁଣରେ ପ୍ରସନ୍ନ
ଏଣୁକୁ ବଦନ ତୋର

ଶିଶୁ ଜନୋଚିତ ଚପଳତା ଅଜ୍ଞ
ଟିକିଏ ନାହିଁ ମନରେ
ପୁରଯାଏ କାଳୁ ଉଦର ତୋହର
ବଧୂମୁଖ ଲୋକନରେ ।
ଅମ୍ଭ କୁଳଦେବୀ ବରେ ଷାର୍ଢିକାବୀ
ହ୍ୱଷରେ ପ୍ରାଣଭ୍ରମର
ଅନୁରୂପ ବଧୂ ସହିତ ମୋର ଏ
ଘରକୁ ଉଜ୍ଜ୍ୱଳ କର ।
ଏତେ ବୋଲି ପୁତ୍ର ବତ୍ସଳା ବାତ୍ସଲ୍ୟେ
ଗଣ୍ଡରେ ଦେଲେ ଚୁମ୍ବନ
ସୁତ ସ୍ନେହଜଳେ ପୁରିଗଲା ତାଙ୍କ
ଇନ୍ଦୀବର ବିଲୋଚନ ।
ଯୁହାର ମେଲାଣି ନେଇ ମାତା ପାଖୁଁ
ବସି ଇନ୍ଦ୍ରାୟୁଧେ ସୁଖେ
ଗମିଲେ କୁମାର ଶୁକନାସଙ୍କର
ନିକେତନ ଅଭିମୁଖେ ।
ଅଭିମାନ ଶୂନ୍ୟ ହୃଦୟେ ପ୍ରବେଶି
ବିନୟେ ତାଙ୍କ ଆଗରେ
ପ୍ରଣମିଲେ ଯୁବା ବୃଦ୍ଧ ସଚିବଙ୍କୁ
ପାଦରେ ଭକତିଭରେ ।
ଆସନରୁ ଉଠି ଖଣ୍ଡେଦୂର ଯାଇ
ହରଷ ଉତ୍ଫୁଲ୍ଲ ମନେ
ଅଙ୍କାଦେ ପାଗ୍ଲେଟି ତୋଷିଲେ ତାହାଙ୍କୁ
ମନ୍ତ୍ରୀବର ଆଲିଙ୍ଗନେ ।
କହିଲେ ସଚିବ ହେ ବତ୍ସ ! କରିଛ
ସର୍ବ ବିଦ୍ୟାପାଠ ଶେଷ
ସୁଚରିତ୍ର ସହ ଲଭିଛ ପଣ୍ଡିତ
କୁଳରେ ଖ୍ୟାତି ଅଶେଷ ।
ତୁମ୍ଭଙ୍କୁ ଏ ଭାବେ ସମାଗତ ଅଛି
ଦେଖି ଉତ୍ସୟେମାପତ

ଏବିଶାଳ ଧରା ରାଜନ୍ୟରୁ ବଳୀ
ନିଜକୁ ଶ୍ରେଷ୍ଠ ମଣନ୍ତି ।
ହୋଇଅଛି ଗୁରୁ— ଜନଙ୍କ କଲ୍ୟାଣ
ଏତେ ଦିନରେ ସଫଳ ।
ସଫଳ ନୃପଙ୍କ ଜନ୍ମାନ୍ତର ଗତ
ଧରମ କାର୍ଯ୍ୟ ସକଳ ।
ଯେମନ୍ତ ନବୀନ ବୟସ ତୁମ୍ଭର
ତେମନ୍ତ ନବୀନ ଶକ୍ତି
ଯେମନ୍ତ ଅସୀମ କ୍ଷମତା ତେମନ୍ତ
ଗୁରୁଜନ ପଦେ ଭକ୍ତି ।
ଚିରଜୀବୀ ହୋଇ ପ୍ରତାପୀ ପିତାଙ୍କ
ସହିତ ଯୁବକବର
ଆଶୀର୍ବାଦ ଦେଇ ସର୍ବ ବିଘ୍ନନାଶି
ମନ୍ତ୍ରୀ ମହାତ୍ମାର ଧର ।
ଏରୂପ ବଖାଣି ବିବିଧ ଭୂଷଣ
ବସନ ପୁଷ୍ପ ଚନ୍ଦନେ
ଅଭିନନ୍ଦିଲେ ସେ ମନ୍ତ୍ରୀ ଚୂଡ଼ାମଣି
ସସମ୍ମାନେ ପ୍ରୀତ ମନେ
ଅନ୍ତଃପୁରେ ମିଳି ମନୋରମା ମନ
ତୋଷିଣ ପୂର୍ବ ବିଧାନେ
ପୁଣି ଅଶ୍ବେ ବସି ଫେରିଲେ ଯୁବକ
ଆପଣାର ବାସସ୍ଥାନେ ।
ରହିବାର ପାଇଁ ସଜ୍ଜା ହୋଇଥିଲା
ଆଗରୁ ସେହି ମନ୍ଦିର
ଦ୍ୱାରେ ଶୋଭୁଥିଲା ଜଳପୂର୍ଣ୍ଣ ବେନି
ସୁବର୍ଣ୍ଣ କୁମ୍ଭ ରୁଚିର ।
ପଡ଼ିଥିଲା ପୁତ ମାଙ୍ଗଳିକ ପୁଷ୍ପ
ମାଳ ତୋରଣେ ଓହଳି
ଡାକୁଥିଲା ଯେ ବା ସାଦରେ ସଖୋଳି
ମନ୍ଦବାତେ ହଲି ହଲି ।

ଉଡୁଥିଲା ସ୍ୱର    ପାଖରେ ସଧୀରେ
ନାନାବର୍ଣ୍ଣର କେତନ
ଉହୁଳାଉଥିଲା    ଦିଗନ୍ତକୁ ମୃଦୁ
ମନୋହର ତୂର୍ଯ୍ୟ ସ୍ୱନ ।
ସେ ସୁନ୍ଦର ନବ    ଗଠିତ ପ୍ରାସାଦେ
ପ୍ରବେଶି ରାଜକୁମାର
ହସ କଉତୁକେ    ସଙ୍ଗୀଗଣ ସହ
ସାରିଲେ ସ୍ନାନ ଆହାର ।
ନାନା ଆମୋଦରେ    ସେ ଦିନ ଏସ୍ତ୍ରବେ
ଦେଖୁଁ ଦେଖୁଁ ହେଲା ଶେଷ
ବଜେ ହେଲେ ରବି    ପଶ୍ଚିମ ଗଗନେ
ବହୁ ରଙ୍ଗବର୍ଣ୍ଣ ବେଶ ।
ଉର୍ଦ୍ଧ୍ୱ ମୁଖେ ରହି    କିରଣକୁ ବନ୍ଧି
ଆରକ୍ତ ସୂର୍ଯ୍ୟମଣ୍ଡଳ
ଆକାଶ ଉପରୁ    ଭୂତଳକୁ ଲକ୍ଷ
ପଡ଼ିଲା ଖସି ଚଞ୍ଚଳ ।
ରଥ ଚକ ଘାରେ    ଗଡ଼ଗଡ଼ ପଥେ
ନବସଲିଳର ସ୍ରୋତ
ଗମଇ ଯେମନ୍ତ    ନିମ୍ନ ଅଭିମୁଖେ
ବରଷା କାଳେ ନିରତ ।
ଦିବସ ଅଶେଷ    ତେସନ ଦିବସ—
ନାଥଙ୍କ ରଥ ଚକର
ପଥ ଅନୁସରି    ପଶ୍ଚିମ ଦିଗକୁ
ଚଳିଲା ଅନ୍ଧ ସତ୍ୱର ।
ନବ କିଶଳୟ    ପ୍ରାୟ ରକ୍ତମୟ
ଦିନଶ୍ରୀ ନିତାନ୍ତ ଦୁଃଖେ
ଆକାଶ ପଟରୁ    ଧରଣୀ ତଳକୁ
ଅବତରି ନମ୍ରମୁଖେ ।
ମିହିର ମଣ୍ଡଳ    ସହିତ ରଞ୍ଜିତ
ପଶ୍ଚିମ ଅଚଳେ ଲୁଚି

ଜମଳ ଅନନ୍ତ ସ୍ୱଗ ପାଟଳମା
ଏତାବେଳେ ଦେଇ ପୋଛି ।
ଧାଇଁଥିଲେ ବେଗେ ମଧୁ ଲୁଟିବାକୁ
ମଧୁପେ ପଦ୍ମ ନିକଟେ
ତାହାକୁ ମୁଦ୍ରିତ ଢଳେଇ ବସିଲେ
ରଥାଙ୍ଗ ଦମ୍ପତି ଜଣେ ।
ଦେଖି ମନେ ହେଲ କୃଷ୍ଣବର୍ଣ୍ଣ ସୂତେ
ଅଦୃଷ୍ଟ ହୋଇ ନିର୍ଦ୍ଦୟେ
ଦୋହ ଜାୟାପତି ସାଆନ୍ତକ ଛନ୍ଦ
ବେନଙ୍କୁ ବେନ ପଥେ ।
ସନ୍ଧ୍ୟାରାଗ ବୋଲା କିରଣ ମାନସେ
ଜନ୍ମାଇଲ ଏଥି ଭ୍ରାନ୍ତ
ପଦ୍ମ ମଧୁ ଯେତେ ପିଇଥିଲେ ସୂର୍ଯ୍ୟ
ଏବେ ଜଳେ କି ତା ବାନ୍ତ ?
ଲଜ୍ଜାରକ୍ତ ମୁଖେ ପ୍ରତୀଚୀ ବାଳାର
ଶ୍ରୀଅଙ୍ଗ ଅଗ୍ରସ୍ତ ପାଇ
କ୍ରମେ କ୍ରମେ ଖସି ଏଣୁକି ସେ ଗିର
ଉଡ଼ାଳେ ଲୁଚିଲେ ଯାଇ ।
ବନଲକ୍ଷ୍ମୀଙ୍କର ଗଣ୍ଡରେ ଚହିତ
ଅଗୁରୁ ରସର ସାର—
ସମାନ ଧରଣୀ ଗାହକୁ ଢାଙ୍କିଲ
ଧୀରେ ଧୀରେ ଅନ୍ଧକାର ।
ଫୁଲ୍ଲନୀଳୋତ୍ପଳ କାନନ ଯେସନ
ଉଡ୍ଡୀନ ଭୃଙ୍ଗ ଛଇରେ
ଶୋଭାଇ ପକାଏ ରକ୍ତ ପଦ୍ମାକର
ବକ୍ଷସ୍ଥଳକୁ ଅଚିରେ
ଦେଖୁଁ ଦେଖୁଁ ତେଣେ କ୍ଷଣକେ ବହୁତ
ବହଳ ଅନ୍ଧାର ଆସି
ନବୀନ ସନ୍ଧ୍ୟାର ସାନ୍ଦ୍ର ରକ୍ତିମାକୁ
ଦଣ୍ଡେ ପକାଇଲା ଗ୍ରାସି ।

ଊର୍ଦ୍ଧ୍ୱ ମୁଖେ ଚଞ୍ଚୁ ଚିରଥିଲ ଯେତେ
ଦିବସରେ ସୂର୍ଯ୍ୟକର
ଚାଡ଼ିବା ନିମନ୍ତେ ସେ ଜଳ ସ୍ୱଚ୍ଛର
ଅଥବା ଅଳ ନଜର ।
ନୂତନ ଅଗତ ଓଁକାରର ପାଞ୍ଚି
ପ୍ରସାରିତ ହସ୍ତଛଳେ
ପକ୍ଷିଭେ କି ବ୍ୟସ୍ତେ ରକ୍ତ ଶତଦଳ
ଗରଭ ଭିତରେ ଦଳେ ।
କୁଙ୍କୁମର ରଜ ସ୍ୱରୂପ ସନ୍ଧ୍ୟାର
ଗାଢ଼ ଅରୁଣିମା ଯାହା
ରଜନୀ ଯାମିନୀ ମୁଖେ ଶୋଭୁଥିଲ
କ୍ଷଣେ ଦୂର ହେଲ ତାହା ।
ବସି ନ ଥିଲେହେଁ ଦେଖାଏ ତାହାଙ୍କ
ଆବାସ ଯଷ୍ଟି ଉପରେ
ଅନ୍ଧକାର ତହୁଁ ପଡ଼ ଜନ୍ମାଇଲ
ମୟୂର ଭ୍ରମ ମନରେ ।
ସଜ ପ୍ରାସାଦର ଦଣ୍ଡୋପୃଳ ସମ
ପାରାଏ ବସି ସୁଖରେ
କମ୍ପାଇ କଣ୍ଠକୁ ଗବାକ୍ଷ ବିବରୁ
ରାବିଲେ ଲଳିତ ସ୍ୱରେ ।
ନିଦ୍ରା ଅଳସରେ ସୁବୃତ ପିଞ୍ଜରା
ଗର୍ଭେ ପଶୁରାଜଗଣ
ବେଜନଚଞ୍ଚୁ ମୁଣ୍ଡ ହାଇ ମାରୁଥିଲେ
ପାଟି ମେଲି ଘନଘନ ।
ପୁର ଉଦ୍ୟାନର ଶାଖାରେ ଲମ୍ବିତ
ସ୍ୱର୍ଣ୍ଣମୟ ପିଞ୍ଜରାରେ
ଶୁକ ସାରିକାଏ ଚାତକୀ ଦରଜ
ମହିଲେ ସୁଖ ନିଦ୍ରାରେ
ମଦ ଚାରଧାର ନ ଦୋହିବା ଯୋଗୁଁ
ରାହେ ଦଶିମାନଙ୍କର

ଗଣ୍ଡସ୍ଥଳଁ ଉଡ଼ ପୁଷ୍ପିତ ପାଦପେ
ବସିଲେ ଯାଇ ଭ୍ରମର ।
ମାର୍ଜନା ପାଇଁ ପ୍ରକାଶ ନହୁଲେ
ଅନ୍ତରରେ ଅସ୍ତାଚଳେ
ସବତ୍ସରେ ଦାନା ଖୁଆଇ ଗୋପାଳେ
ଗୋଧନ ଦୋହନ କଲେ ।
ପ୍ରଦୋଷେ ପବନ ପୂଜା ଉପହାର
ସମ୍ଭାରମାନ ନେଇ
ସାଜଲେ ସାଧକେ ସତ୍ୱରେ ସ୍ୱ ଇଷ୍ଟ
ଦେବତାଙ୍କ ପୂଜା ପାଇଁ ।
ସ୍ୱର୍ଣ୍ଣସ୍ଥନ ସାର ରାଜ ନବରଙ୍କୁ
ଗମିଲେ ପୁରୋଧାଗଣ
ବଜେ କଲେ ନିଜ— ଶିବରେ ମେଲାଣି
ସେନା ସାମନ୍ତ ରାଜନ ।
ଲୋକସଂଖ୍ୟା କମେ ନ୍ୟୂନ ହୋଇବାରୁ
ବିଶାଳ ରାଜପୁରର
ବଣିଲ ବସ୍ତାର ହେଲପର ଗୃହ—
ମାନଙ୍କର ଅଭ୍ୟନ୍ତର ।
ପ୍ରାଙ୍ଗଣ ଉଦ୍ୟାନ ଗନ୍ଧ ଫୁଲ୍ଲ ଫୁଲ
ସୌରଭରେ ମହକ
ଉଠିଲ ବଳାସ ପାଳିଙ୍କ ପାପର
ଆଲୋକମାଳେ ଝଟକ ।
ମନେ ହେଉଥିଲ ନବ ବିରହିଣୀ
ନଳନୀ କାମିନୀ ଦୁଃଖ
ନାଶିବାକୁ ଅବା ସରେ ବସୁଥିଲ
ସଗରେ ସୂର୍ଯ୍ୟମୟୂଖ ।
ଧନୁରେ ଚଢାଇ ଗୁଣ ବାଣ ଧରି
ଏକାଳେ କେଳକା ନାହା
ସୁମଧର ରଣେ ନବ ଦମ୍ପତ୍ତିଙ୍କ
ଅଲକ୍ଷିତେ ହେଲେ ସାହା ।

ଅନ୍ତ୍ରସ୍ୱର୍ଗଣିଏ ବୃଦ୍ଧମାନଙ୍କର
ସଙ୍କେତ ହାସ୍ୟ ବଚନେ
ବେଶ ବଦଳାଇ ଖେଳିଲେ ଉଲ୍ଲାସେ
ନୂତନ କ୍ରୀଡ଼ା ସଦନେ ।
ବଦ୍ଧତର ମଣି ପ୍ରଭାରେ ଉଜ୍ଜ୍ୱଳ
ଯେସନ ଶେଷନାଗର
ଫଣା ମଣ୍ଡଳରେ ପଦ୍ମଚନ୍ଦ୍ର ସୁଖେ
ନିରୁଦ୍ବେଗ ଚକ୍ରଧର ।
ପରବୃତ୍ତ ହୋଇ ଯେସନ୍ତେ ପ୍ରଜ୍ୱଳିତ
ସୁନ୍ଦର ପ୍ରଦୀପମାଳେ
ଶତଦ ଶଯ୍ୟାରେ ଶୋଇଲେ ଆନନ୍ଦେ
ନରେନ୍ଦ୍ରସୁତ ଏ କାଳେ ।
ମୃଗୟା ନିମନ୍ତେ କୁହୁଡ଼ା ତାଙ୍କରୁ
ଉଠି ସମୁତ୍ସୁକ ମନେ
ସୂର୍ଯ୍ୟ ନ ଉଦ୍ଧିଂଶୁ ଇନ୍ଦ୍ରାୟୁଧ ଚଢ଼ି
ପଶିଲେ ଗହନବନେ ।
ଶିକ୍ଷିତ ବାରଣ— ଅଶ୍ୱ ପଦାତିକ
ସେନାଗଣ ଘେନ ସଙ୍ଗେ
ମୁଖରିତ ବନ ଜମାଇ ଅତଙ୍କେ
ପଶୁକୁଳକୁ ସନ୍ଦମ୍ଭେ ।
କୁକୁର ପାଳକ ଶ୍ୱାନପଲ ଧରି
ଆଗେ ଆଗେ ବେଗେ ଧାଇଁ
ଦେଉଥିଲେ ଯୁବା ମୃଗୟା ଉତ୍ସାହ
ଶତଗୁଣରେ ବଢାଇ ।
ସେ ଦେଶୀ କୁକୁରେ ବନପଶୁଙ୍କର
ଗନ୍ଧକୁ ମାର୍ଗେ ଅଘ୍ରାଣି
ଦୁଇ ଗୋଡ଼ ଟେକି ହେଉଥିଲେ ବଳେ
ସହଜେ ଅଗକୁ ଠାଣି ।
ବୁଲି ବ୍ୟାଘ୍ରଚର୍ମେ କର୍ମିତ କବଚ
ଲାଙ୍କି ଦୃଢ଼େ ଅପଖନେ

କୁକୁରରକ୍ଷକେ ରଖୁଥିଲେ ବନେ
ତାହାଙ୍କୁ ଟାଣି ସତନେ ।
ଭୀମ ଧନୁ ଧରି ନୀଳୋତ୍ପଳ ଦଳ
ସମାନ ସୁତୀକ୍ଷ୍ଣ ଭଲ୍ଲେ
କାନନ ଜୀବଙ୍କୁ ଲକ୍ଷି ଯୁବରାଜ
ମାରୁଥିଲେ କଉଶଳେ ।
ଦେଉଥିଲେ କେତେ- ବେଳେ ଝପଟାଇ
ହରିଣ ପଛେ ତୁରଙ୍ଗ
ବଚନ ଭଙ୍ଗୀରେ ଡେଇଁ ଡେଇଁ ଆଗେ
ପଳାଉଥିଲା କୁରଙ୍ଗ ।
ପ୍ରବେଶି ନିକଟେ ମାରିବାକୁ ଯୁବା
ବର୍ଚ୍ଛା ଉଠାଇଲା ବେଳେ
ବଦଗ୍ରବେ ମୃଗ ପଳାଇ ସ୍ୱଗଣ
ପାଲଟାଉଥିଲା ହେଳେ ।
ଝଙ୍କାଳିଆ ଲତା ମୂଳରେ ଶାର୍ଦ୍ଦୂଳ
କାହିଁ ଗୁପ୍ତଭାବେ ରହି
ଚେଇଁଥିଲା ସୁଖେ ନିକଟସ୍ଥ ଅଶ୍ୱ
ଅଡ଼କୁ ସବୋଧ ହୋଇ ।
କ୍ଷିପ୍ରହସ୍ତେ ଯୁବା କସିଲା କୃପାଣ
ଶ୍ରେଷ୍ଠେ ଏହୁ ଅବସରେ
ଫିଙ୍ଗି ଦେଉଥିଲେ କେବଳ ଖଣ୍ଡେ କାଟି
ବ୍ୟାଘ୍ରକୁ ମଞ୍ଚ ଉପରେ ।
ଥୋଡ଼ପାର ଟେକି ତରୁଲତା ଦଳ
କମ୍ପାଇ ନାଦେ କାନନ
ଭଞ୍ଜିନ ପରାଏ ଧାଇଁଥିଲା କେବେ
ସବେଗେ ମତ୍ତବାରଣ ।
ଅଣ୍ଟୁଳରେ ଅଶ୍ରୁ ଦେଉଥିଲେ ବୀର
କପୋଳ ତାର ଉଦାର
ଚନ୍ଦନ ପାଇଁ କରି ସେ କଣ୍ଠକୁ
ପଶୁ ଜନମରୁ ପାର ।

ଏ ଭାବେ ତପସ　　ବଢ଼ିଲା ଶୋଭଲେ
ମଧ୍ୟମ ନଭେ ତରଣି
ଇନ୍ଦ୍ରାୟୁଧେ ବସି　　ଆନନ୍ଦେ ଅଳସ୍ୟେ
ବାହୁଡ଼ଲେ ଯୁବାମଣି ।
ପରିଶ୍ରମ ବଶେ　　ଇନ୍ଦ୍ରାୟୁଧ ଦେହୁଁ
ଝାଳ ବିନ୍ଦୁ ଝର ଝର
ପ୍ରବଳ ବେଗରେ　　ପଡ଼ଇ ଭୂତଳେ
ନିଶାନ୍ତ ଶିଶିର ସର ।
ଝାଳେ ଜରଜର　　କଳେବର ତାର
ଦେଖି ମନେ ହେଲା ପ୍ରତେ
ସେହିକ୍ଷଣି ସ୍ନାନ　　ସାରି ସରସୀରୁ
ଉଠିଥିଲା ସେ କି ସତେ ।
ଲଗାମର ରଜ୍ଜୁ　　ଘଷି ହୋଇ ହୋଇ
ଶିଳରେ ପିଠାଉ ପର
କଣ୍ଠ ସ୍କନ୍ଧପାଏ　　ଗ୍ରୀବା ଯାଉଥିଲା
ଶୁକ୍ଳ ଫେନପୁଞ୍ଜେ ଭରି ।
ହେବାରୁ ତାହାର　　ପୁନଃ ପୁନଃ ଦୃଢ଼
ଦନ୍ତରେ ଦନ୍ତ ଘର୍ଷଣ
ବଦନ ବିବରେ　　ସୁଖଣ୍ଡ ଲଗାମ
ବାଜୁଥିଲା ଖଣଖଣ ।
ବିଷମ ଶ୍ରମରେ　　ବିକୃତ ବଦନ
ଧବଳ ଫେନ ନିବିଡ଼
ଲଗାମ କ୍ଷତରୁ　　ରକ୍ତବିନ୍ଦୁ ସବୁ
ଝରୁଥିଲା ଅବିରତ ।
କଣ୍ଠେ ଶ୍ୱାସ ଘଡ଼　　ଠାଣି ପୁଣି ପୁଣି
ହେଉଥିଲା ସେ ଧକାଇ
ପିଟୁଥିଲା ଲାଞ୍ଜ　　ଉଦରେ ଶରୀର
ବାର ବାର ଚମକାଇ ।
ନରେନ୍ଦ୍ର ସୁତଙ୍କ　　ଦେହ ସୁଦ୍ଧା ଝାଳେ
ହୋଇଥିଲା ସମାଚ୍ଛନ୍ନ

ଛନ୍ନ ଯାଇଥିଲା ତାହାଙ୍କ ସୁନ୍ଦର
ଶିକାରୀ ବେଶ ଭୂଷଣ ।
ଘୋଟକ ଝପଟେ ଉଡ଼ିତ ଧୂଳିରେ
ଦିଶୁଥିଲ ସ୍ଲଲମ୍ଳାନ
ବହୁଥିଲା ତହିଁ ଧାର ଧାର ହୋଇ
ସ୍ୱେଦବିନ୍ଦୁ ମାଳ ମାଳ ।
ଘାଉଲ ଜନ୍ତୁର ଗାତ୍ରରୁ ଶୋଣିତ
ବିନ୍ଦୁ ପଡ଼ି ତା ଉପର
ରକ୍ତ ଚନ୍ଦନରେ ଚର୍ଚ୍ଚିତ ହେଲାଙ୍କ
ଶୋଭା ନେଇଥିଲା ହର ।
ଲେଉଟିବା ବେଳେ ଜଉହୁଜେ ଶିରେ
ନବ ପତ୍ର ଛତ୍ର ଧରି
ଦିଶୁଥିଲେ ଯୁବା ପ୍ରବାଳ—ପାଟଳ—
ନବୀନ—ବସନ୍ତ ପରି ।
ସଦନେ ପ୍ରବେଶି ବେଶ ବଦଳାଇ
ଶ୍ରାନ୍ତ ହର ଅବହେଳେ
ପୁଙ୍ଗବର ବୀର ସୁଖେ ବନ ନେଲ
ପ୍ରିୟ ସଙ୍ଗୀଙ୍କର ମେଳେ ।
ପ୍ରବେଶିଲା ବନେ ଯୁବାମଣି ପାଶେ
ବିଶ୍ବସ୍ତ ଭୃତ୍ୟ କଞ୍ଚୁକୀ
ତାର ପଛେ ପଛେ ଅନୁସରୁଥିଲା
ଏକ ପୂର୍ଣ୍ଣଚନ୍ଦ୍ରମୁଖୀ ।
ଏ ଭାବ ମନରେ ଜନ୍ମିଲା ପ୍ରାଚୀନ
ପଛେ କଞ୍ଚୁକୀକୁ ଗୁହିଁ
ଚଳ—ତାଳତରୁ ପତ୍ରରେ ପୂଜିତା
ଲଜ୍ଜା ଅଛିକ ଧାଇଁ ।
ନବ ଯୌବନରେ ପାଦ ଦେଇଥିଲା
ସେ ବାଳାମଣି କେବଳ
ସ୍ଥାନ ସ୍ଥିର ପାଇଁ ବଶୋର ଯୌବନ
ମଧ୍ୟେ ହେଉଥିଲା ଗୋଳ ।

ବାଲ୍ୟ ରାଜଗୃହେ ଥିବାରୁ ପ୍ରଗଲ୍‌ଭ
ହେଲେହେଁ ସେ ସରଳତା
ଗମ୍ଭୀରତା ସହ ଅର୍ପିଥିଲା ତାକୁ
ସମ୍ପୂର୍ଣ୍ଣଭାବେ ନମ୍ରତା ।
ଇନ୍ଦ୍ରଗୋପ ପାଟ— କାନ୍ତ ରକ୍ତବର୍ଣ୍ଣ
ବସ୍ତ୍ରେ ଶିରଦେଶ ମଣ୍ଡି
ବାଳାତପ ପ୍ରାପ୍ତ ପୂର୍ବାଶାର ଶୋଭା
ଦେଉଥିଲା ସେହି ଖଣ୍ଡି ।
ସଦ୍ୟ ବିଦଳିତ ମନଶିଳା ସମ
ନିଜ ଲାବଣ୍ୟ କାନ୍ତିରେ
ମୁଗ୍ଧ କରୁଥିଲା ଦର୍ଶକ ହୃଦକୁ
ମୁଗ୍ଧାଙ୍ଗନା କି ରୂପରେ ।
ସନ୍ଧ୍ୟାରାଗ ଭସ୍ମେ ଆକାଶରେ ପୂର୍ଣ୍ଣ—
ଚନ୍ଦ୍ରବିମ୍ବ ପରିହରି
ଧବଳ ଅମୃତ ଜ୍ୟୋତ୍ସ୍ନା ପ୍ରତିମୂର୍ତ୍ତି
ପରି ଦିଶୁଥିଲା ଗୋରୀ ।
ଅତ୍ୟନ୍ତ ଉନ୍ନତ ନୋହି ସ୍ତନ ଦେନି
ଉରେ ଦିଶୁଥିଲା ଫୁଟି,
ରହିଥିଲା ନବ— ପଦ୍ମ କଳି ଅବା
ଲାବଣ୍ୟ ଜଳରେ ଉଠି ।
ନୟନ ପ୍ରଫୁଲ୍ଲ କମଳ ସମାନ
ଲଭିଥିଲା ଦିବ୍ୟବର୍ଣ୍ଣ ।
ନେତ୍ର ପ୍ରାନ୍ତୁ ଟାଣି ଅପାଙ୍ଗ ଯୁଗକୁ
ବରସାଉଥିଲା କର୍ଣ୍ଣ ।
ପୁଷ୍ପ ଉବସର ଧୂସର ଚରଣ
ଚନ୍ଦନ ସ୍ଥିରୁ ଶଳକ
ଲଳିତା ଲଳିତ ଲଲାଟ ଫଳକେ
ଦିଶୁଥିଲା ଜକଜକ
ଯୁବରାଜ ଅଗ୍ରେ ପ୍ରଣମି କଞ୍ଚୁକୀ
କର ଯୋଡ଼କରି କହେ

ମହାରାଣୀଙ୍କର ଆଦେଶ ବଚନେ
ନରେନ୍ଦ୍ରଙ୍କ ଏହିପରି ।
ଯୁଦ୍ଧେ ଜିଣି ନୃପ ପୂର୍ବରେ କୁଳୂପ
ଦେଶର ରାଜଧାନୀକୁ
ବନ୍ଦୀଗଣ ସହ ଧରି ଆଣିଥିଲେ
ଏହି କନ୍ୟାରତ୍ନଟିକୁ ।
ନାମ 'ପତ୍ରଲେଖା' ପାଳିଥିଲେ ରାଣୀ
ସ୍ନେହେ ସ୍ୱକନ୍ୟାର ପରି
ପ୍ରେରିଛନ୍ତି ଏବେ ତାମ୍ବୁଲ କରଙ୍କ
ବହିବା ପାଇଁ ତୁମ୍ଭର ।
ସାଧାରଣ ଭୃତ୍ୟ ପରି ନମଣିବ
ବରେଷ୍ଟବ ଶିଷ୍ୟାବତ
ପୋଷିବ ଏହାଙ୍କୁ ନିଃସନ୍ଦେହେ ସେତେ
ଗୁପତ କାର୍ଯ୍ୟେ ସମ୍ମତ ।
ଅତ୍ୟନ୍ତ ବିନୀତା ସରଳା ସୁଶୀଳା
କଦାପି ନୁହଇ ଦୁଷ୍ଟା
ବ୍ୟବହାର ଦେଖି ଅଳ୍ପଦିନେ ତୁମ୍ଭେ
ନିଶ୍ଚୟ ହେବ ସନ୍ତୁଷ୍ଟ ।
ପତ୍ରଲେଖା ପଦେ ନମିଲା ସେକାଳେ,
ଫେରାଇ ଯୁବା ଚାହାଣି
ମାତାଙ୍କ ଆଦେଶ ଶିରୋଧାର୍ଯ୍ୟ ବୋଲି
ବୃନ୍ଦକୁ ଦେଲେ ମେଲାଣି ।
ଶୟନେ ଭ୍ରମଣେ ଆହାରେ ବିହାରେ
ସେ ଦିନରୁ ଅନୁସରି
ଅନୁଗାମୀ ହେଲା ସକଳ କାର୍ଯ୍ୟରେ
ପତ୍ରଲେଖା ଛାୟା ପରି ।
ଯୁବାମଣିଙ୍କର ଏରୂପେ ମଧୁର
ସମୟ ହେଲା ଅତୀତ
ଯୌବରାଜ୍ୟେ ତାଙ୍କ ଅଭିଷେକ ପାଇଁ
ଚଳାଇଲେ ଭୂପ ଚିନ୍ତା ।

ଲଗିଲା ସମସ୍ତ ସାମଗ୍ରୀ ସଂଗ୍ରହ
ପାଇଁ ମହା ଆୟୋଜନ
କୁମାରଙ୍କୁ ସଙ୍ଗେ ହୃଦୟ ଫିଟାଇ
କଲେ ଅଭିନନ୍ଦନ ।
ତେବେ ଶୁକନାସ ନରେନ୍ଦ୍ର ନନ୍ଦନେ
ବସାଇ ସ୍ନେହ ଆଦରେ
ଉପଦେଶାବଳୀ ଜଡଗର୍ବା ଛଳେ
କହିଲେ ମଧୁର ସ୍ୱରେ ।
ନିର୍ମଳ ଦର୍ପଣେ ହେ ବତ୍ସ ଯେସନ
ପଶଇ ଚନ୍ଦ୍ର କିରଣ
ତେତେ ସୁବିମଳ ସରଳ ହୃଦୟ
ଉପଦେଶର ଗ୍ରହଣ ।
ସର୍ବଦା ମଙ୍ଗଳ— ପ୍ରଦ ହେଲେହେଁ ତା
ଅସ୍ୱଜନଙ୍କ କର୍ଣ୍ଣରେ
ତାତ୍ରଗାମୀ ସୂକ୍ଷ୍ମ ଜଳବିନ୍ଦୁ ପରି
ଯାତନା ଦିଏ ପ୍ରଖରେ ।
ପଢ଼ିଲେହେଁ ବହୁ ଉଚ୍ଚ ବିଦ୍ୟା, ଜନ୍ମ—
ହେଲେହେଁ ଉଚ୍ଚବଂଶରେ
ଉପଦେଶ ବିନା ମାନବ ପ୍ରବେଶି
ନପାରେ ସତ ପଥରେ ।
ସାଧୁ ଉପଦେଶେ ମନରୁ ସକଳ
କଳୁଷ ହୁଏ ଧଉତ
କାଳେ କାଳେ ତାହା ଜଳସ୍ନାନ ସ୍ନାନ
ସ୍ୱରୂପ ସଂସାରେ ସୁତ ।
ବୃଦ୍ଧ ନୋହି ଲୋକ ଉପଦେଶ ଯୋଗେ
ବାର୍ଦ୍ଧକ୍ୟ ଲାଭ କରଇ,
ଯେଉଁ ବାର୍ଦ୍ଧକ୍ୟରେ କେଶ ପାଚେ ନାହିଁ
ଶରୀର ଶୀର୍ଣ୍ଣ ନୁହଇ ।
ଭୂପମାନଙ୍କର ପକ୍ଷେ ବତ୍ସ ! ବଡ଼
ଉପଦେଶ ଉପକାରୀ

ଯେହେତୁ ଅତ୍ୟଳ୍ପ    ଲୋକ ଏ ସଂସାରେ
ଉପଦେଶକ ତାଙ୍କର ।
ପ୍ରତିଧ୍ୱନି ପର    ସ୍ତବ କର କର
ସବୁଏ ସବୁ ସମୟେ
ତାହାଙ୍କ କଥାକୁ    ଅନୁସରଥାନ୍ତି
ସକଳ କାର୍ଯ୍ୟେ ସଭୟେ ।
ଅହଙ୍କାର ରୂପ    ଶୋଥ ରୋଗେ ରୁଦ୍ଧ
ହେବାରୁ କର୍ଣ୍ଣ କୁହର
ହିତ ଉପଦେଶ    ନୋହେ ସେମାନଙ୍କ
କଦାପି କର୍ଣ୍ଣଗୋଚର ।
ଶୁଣିଥିଲେହେଁ କେବେ    କେହେ ଉପଦେଶ
ପ୍ରମତ୍ତ ଚେତେ ନରେନ୍ଦ୍ର
ଅଜ୍ଞତା ଦୋଷରୁ    ସେ ଉପଦେଷ୍ଟାକୁ
ଦେଉଥାନ୍ତି ଅର୍ଦ୍ଧଚନ୍ଦ୍ର ।
ହିତାକାଙ୍କ୍ଷୀ ମନ୍ତ୍ରୀ—    ମାନେ ମନଜାଣି
ଏଣୁ ବିନା ନାନା ଛଳେ ।
ନିଜର ଅହିତ    ନସ୍ୱଦ କତର
ସଦୁପଦେଶ କୌଶଳେ
ଅସତ ପଥରୁ    ଫେରାଇ ଅଣନ୍ତି
ସ୍ୱପ୍ରଭୁଙ୍କୁ ସୁମାର୍ଗରେ ।
କହୁଛି ସେକଥା    ସକଳ ସୁଧୀର
ମନଦେଇ ଶୁଣ ଥରେ :—
ଅଦ୍ୟାପି ତୁମ୍ଭେ    ଅନୁଭବ ନାହିଁ
କିଛି ଂ ରୋଗ୍ୟ ବୟସୁ
ତୁମ୍ଭ ପ୍ରତି ବସ    ଉପଦେଶ ପାଇଁ
ବିନା ଯୋଗ୍ୟ ଏ ସମୟୁ ।
ହେ ରାଜକୁମାର !    ମାନବ ଜୀବନ
ଏହି ସଂସାରରେ ସାର ।
ତାକୁ ଯେ ସୁବାଟେ    ନେଇପାରେ ତାର
ସୁଖର ହୁଏ ସଂସାର ।

ହିଂସ୍ର ପଶୁଠାରୁ ଭୀଷଣ ଜୀବରେ
ସେ ପଥ ସଦା ସଙ୍କୁଳ
ତାହାଙ୍କ ହାବୋଡ଼େ ଅବ୍ୟହତ ପଡ଼
ହୁଅନ୍ତି ସର୍ବେ ଆକୁଳ ।
ସେ ଦୁର୍ଗମ ପଥେ ଯିବାକୁ ଯୌବନ
ସର୍ବଶ୍ରେଷ୍ଠ ଅନ୍ତରାୟ
ସଂଯମ ବ୍ୟତୀତ ତାକୁ ଲଙ୍ଘିବାକୁ
ନାହିଁଟି ଆଉ ଉପାୟ ।
ମାନବ ହୃଦୟେ ଯଉବନ କାଳ
ଜନ୍ମାଏ ଯେ ଅନ୍ଧକାର
ଶତସୂର୍ଯ୍ୟ କରେ ସୁଦ୍ଧା ନ ଘୁଞ୍ଚଇ
ନିବିଡ଼ ତମସ ତାର ।
ଚନ୍ଦନ ବୃକ୍ଷର ଘର୍ଷଣରୁ ଯେସନ୍ତି
ଅନଳ ହୁଏ ଉତ୍ପନ୍ନ
ପୋଡ଼ାଏ ଯେସନ ସେ ଘୋର ଅନଳ
ସକଳ ଗିରି କାନନ ।
ଅଥବା ଶୀତଳ ସମୁଦ୍ର ସଲିଳେ
ଜନ୍ମେ ଯେ ବାଡ଼ବାନଳ
ଭୀଷଣ ତେଜରେ ଦହେ ଯଥା ସେହି
ଜଳଧିର ବକ୍ଷସ୍ଥଳ ।
ଯୌବନରୁ ଜାତ ସମ୍ଭୋଗ ତେସନ
ଦୁର୍ନିବାର ବେଗେ ଧାଇଁ
ଅକାଳେ ଯୌବନ ସ୍ୱାସ୍ଥ୍ୟ ତନ୍ତ୍ର ନାଶେ
ଇନ୍ଦ୍ରିୟର ସୁଖ ପାଇଁ ।
ସମ୍ଭୋଗର ସୁଖ— ନିଦ୍ରାରେ ମଜ୍ଜିଲେ
ନ ହୁଏ କେବେ ଚୈତନ୍ୟ,
ଯେ ନିଦ୍ରାରେ ଜଡ଼ ହୋଇଥାନ୍ତି ନରେ
ପଶୁ ସହିତରେ ଗଣ୍ୟ ।
ଝରଣା, ସରିତ, ସରସୀ, କୂପର
ସାଧାରଣ ଜଳକଣା

କଷା ରସଯୁକ୍ତ  ରସନାରେ ପଥ୍ୟ
ପଣା ପରି ଯାଏ ଜଣା ।
ତେମନ୍ତେ ଯୁବାକାଳ  ଉଷ୍ମ ହୃଦୟରେ
କାଞ୍ଚନ କାନ୍ତା ବିନୋଦ
ହେୟ ହୋଇଲେହେଁ  ଆପାତତଃ ବସ୍ତୁ
ଅଟଇ ବଡ଼ ସୁଖଦ ।
ଦିଗ୍‌ଭ୍ରମ ଯେମନ୍ତ  କୁପଥେ ଚଳାଇ
ବିପଦ କରେ ପାନ୍ଥକୁ
ଅନର୍ଥ ସାଗରେ  ଯୌବନ ତେସନ
ବୁଡାଏ ସଦା ମନକୁ ।
ଯୌବନ ବାଞ୍ଛିତ  ବିଳାସ ସମ୍ଭୋଗେ
ଉପୁଜଇ ଯେଉଁ ମୋହ
କେବେହେଁ ନ ଯାଏ  କନ୍ଦଳ କନ୍ଦଳ
ହୃଦେ ଜାତ କରେ କୋହ ।
ଯୌବନର ଚର—  ସଖା ବୋଲି ଭବେ
ସମ୍ପତ୍ତି ହୁଅଇ ଗଣା
ଯେ ସମ୍ପତ୍ତି ଜାତ  ମତ୍ତତା କୁମାର !
ବିବେକକୁ କରେ ବଣା ।
ଚକ୍ଷୁ ନ ଜାଣିଲେ  ଘଟେ ନାହିଁ କେବେ
ସେହି ମତ୍ତତା ଦୁର୍ବାର
କରିଦିଏ ଯେତେ  ଗୌରବ ଗରିମା
ମନୁଷ୍ୟତା ଛାରଖାର ।
ଧନ-ଅଭିମାନ—  ଦାହ ଜ୍ୱରେ ଯେଉଁ
ଘୋରତାପ ଉପୁଜଇ
ସହସ୍ର ଚନ୍ଦନ  ଲେପନ କଲେହେଁ
କେବେ ତାହା ନ ଘୁଞ୍ଚଇ ।
ନିରୂପମ ରୂପ  ପ୍ରବଳ ପ୍ରଭୁତ୍ୱ
ସମ୍ପତ୍ତି ନବଯୌବନ
ଏମାନେ ସଂସାରେ  ସକଳ ସମୟେ
ବିପଦର ପରିଜନ ।

ଏକେ ଏକେ ମହା— ସମ୍ପଦ ଗଃଟାଣ
ଅଯନ୍ତ ପ୍ରାଣିବୁ ଦଳ,
ସ୍ୱରବେଁ ମିଳିଲେ କେଉଁ କଥା ଅବା
ତାଙ୍କଠାରୁ ଯିବ ବଳି ।
ଭଣ୍ଟ ବନ୍ଦନୀସ୍ଥା ଏହୁ ସେ କମଳ—
ବାସିନୀ ରମାସୁନ୍ଦରୀ
ଜଗତେ ଯେତେକ ସୁଖ ଦୁଃଖ ତାର
ନିରତ ଏ ସହଚରୀ ।
ସେଉଁ କ୍ଷଣଜନ୍ମା ସ୍ୱୀୟସ୍ୱତ୍ୱେ ତାଙ୍କୁ
ଚଳାଏ ଲଭେ ସେ [illegible]ଖ
ମାତ୍ର ସୁଖଠାରୁ ଏହାଙ୍କ ସଂସର୍ଗେ
ଉପୁଜେ ଅଧିକ ଦୁଃଖ ।
କେବେ ବୀରଙ୍କର ଶୌର୍ଯ୍ୟ ପଦ୍ମବନେ
ଭ୍ରମନ୍ତ ଭ୍ରମରୀ ବତ
କେବେ ବା ଦୁଷ୍ଟଅନ୍ତ ଦୁର୍ବୃତ୍ତ ଦସ୍ୟୁର
ସଦନେ ସେ ଉପଗତ ।
ଦଢ଼ ଦଗାଦାର କମଳା ତାହାଙ୍କୁ
ନାହିଁଟି ଛଳେ ବିଶ୍ୱାସ
ସାମାନ୍ୟ ଛଳନା ଧରି ସେ ଚପଳେ
ଛାଡ଼ିଯାନ୍ତି ଅନ୍ୟ ବାସ ।
ପୁଙ୍ଗରେ ଏକାନ୍ତ ନିବାସ ହେତୁରୁ
ବନ୍ଧୁ ସ୍ନେହ ସ୍ମରି ସ୍ମରି
ସେମାନଙ୍କ ମନ ତୋଷିବା ପାଇଁକି
କୁଅବା ସିନ୍ଧୁସୁନ୍ଦରୀ ।
ପାରିଜାତ ପନ୍ଥୁଁ ବତ୍ସଳା, ନବୀନ—
ଚନ୍ଦ୍ରଖଣ୍ଡରୁ ବକ୍ରତା
ଉଚ୍ଚୈଃଶ୍ରବା ପାଶୁଁ ଗୃହଲକ୍ଷ୍ମୀ ସୁରେନ୍ଦ୍ର
କୁଞ୍ଜରଠାରୁ ମୂର୍ଖତା ।
କାଳକୂଟ ବିଷୁଁ ମୋହିବା ଶକତ
କଠିନତା କୌସ୍ତୁଭରୁ

ମଦ୍ୟ ମାଦକତା ଯେଣ ଉଠିଥିଲେ
ସିନା ସିନ୍ଧୁ ମନ୍ଥନରୁ ।
ନୋହିଲେ କାହିଁକି ବଡ଼ ଘରେ ଜନ୍ମି
ହୁଅନ୍ତେ ଏମନ୍ତ ନୀଚ
ସ୍ୱଭାବ ସୁନ୍ଦର ବାସ ତାହାର କି
ଛାଡ଼ିପାରେ ଅଳାଉଚ ।
ଯେତେ ଯତ୍ନେ ଗୃହେ ରଖିଲେହେଁ ଲକ୍ଷ୍ମୀ
ନ ରହନ୍ତି ଏକ ସ୍ଥାନେ
ଏକ ରାଜଘରୁ ପଳାଇ ପଶନ୍ତି
ଅନ୍ୟ ରାଜ ସନ୍ନିଧାନେ ।
ପ୍ରେମ, ରୂପ, କୁଳ, ଧର୍ମ ପ୍ରତି ଧନୀ
ନ କରନ୍ତି ସମାଦର
କଳା ଧଳା ଉଚ୍ଚ— ନୀଚେ ଜ୍ଞାନୀମୂର୍ଖେ
ସମାନ ଭାବ ତାଙ୍କର ।
ପୁରୁଷ କରରେ ଧ୍ୱଜ, ବଜ୍ରଚକ୍ର
ଦେଖି ସେ ଭସନ୍ତି ନାହିଁ
ଗଗନ କୁସୁମ ସମ ଦେଖୁଁ ଦେଖୁଁ
ଉଭେଇ ଯାଆନ୍ତି କାହିଁ ।
ସମୁଦ୍ର ମନ୍ଥନେ ଘୂରି ଘୂରି ଲକ୍ଷ୍ମୀ
ମନ୍ଦର ପର୍ବତ ସଙ୍ଗ
ସେ ସଂସ୍କାର ବଶୁଁ ଆଜଯାଏ ଅବା
ଘୂରୁଛନ୍ତି ଅହରହ ।
ଅଥବା କମଳା କମଳ କାନନେ
ଆଦରେ ଭ୍ରମିବାକାଳେ
କଣ୍ଟାରେ ଚରଣ କ୍ଷତ ହୋଇଅଛି
ବାଜିଣ କମଳନାଳେ ।
ତେଣୁ ଏକ ସ୍ଥାନେ ଦୃଢ଼ଭାବେ କେବେ
ଚରଣ ରଖନ୍ତି ନାହିଁ
ପୀଡ଼ା ଯନ୍ତ୍ରଣାରେ ଏଣେତେଣେ ଅବା
ହାସେ ବୁଲୁଛନ୍ତି ଧାଇଁ ।

ସମର କ୍ଷେତ୍ରରେ ତରବାରି ଧାରେ
ରହିରହି ମହାନନ୍ଦେ
ନମ୍ରତା ଶିଖି ସେ ଶିକ୍ଷା ଜଡରୁ—
ଛନ୍ତି ତାଙ୍କ ଭକ୍ତବୃନ୍ଦେ ।
ନ ଯାନ୍ତି ଈର୍ଷାରେ ସପତ୍ନୀ ତନୟ
ଶୁଣ ବିଦ୍ୱାନଙ୍କ ପ୍ରାଣ
ମନସ୍ୱୀ ବ୍ୟକ୍ତିଙ୍କ କରନ୍ତି ଉନ୍ମତ୍ତ
ଶୁଣ ଲକ୍ଷ୍ମୀ ଉପହାସ ।
ଦାତାଙ୍କୁ କଣ୍ଟକ ସମ ସେ ମଣନ୍ତି
ଭଜନ୍ତି କୃପଣଗଣେ
ସତ୍ୟବାଦୀ ଦେଖି ଦୂରରୁ ନମନ୍ତି
ଯୋଡ଼ହାତେ ଅନୁକ୍ଷଣେ ।
ଚପଳା କମଳା ରହନ୍ତି ହେ ବତ୍ସ !
ଅହ୍ଲାଦରେ ସହି ସହି
କେତେ ମହାପାପ ତହିଁ ହେଉଅଛି
ବାକ୍ୟେ କେ ପାରିବ କହି ।
ଇନ୍ଦ୍ରିୟ ମୃଗକୁ ମୋହିବା ପାଇଁକି
ଲକ୍ଷ୍ମୀବ୍ୟାଧ ଗୀତସ୍ୱର
ବଢ଼ାଇବା ପାଇଁ ବିଷୟ ଲାଳସା
ବିଷଲତାକୁ ସେ ନୀର ।
ପାନଭୂମି ଲକ୍ଷ୍ମୀ ଚରିତାର୍ଥପାଇଁ
ଭୋଗ ବିଳାସର ସ୍ପୃହା
ଷଡ଼ରିପୁ ଭୁଜଙ୍ଗ ମାନଙ୍କ ନିବାସ
ଲାଗି ସେ ନିଭୃତଗୁହା ।
ଅନଙ୍ଗଦେବଙ୍କ ରହସ୍ୟ ଅଙ୍କିତ
ନାଟକର ପ୍ରସ୍ତାବନା
ସୁକୋମଳ ଧର୍ମ ଚନ୍ଦ୍ର ଗ୍ରାସିବାକୁ
ସେ ସିନା ରାହୁରସନା ।
ପଡ଼ନାହିଁ କେବେ ଏମନ୍ତ ମାନବ
ମୋର ନୟନ ପଥରେ

କ୍ଷୀରବ୍ଧି ତନୟା     କେବେ ଆଲିଙ୍ଗନ
କରନାହିଁ ଯାରେ ଥରେ ।
ଅବା ଯେ ତାହାଙ୍କ     ଆଲିଙ୍ଗନ ଲଭି
ହୋଇନାହିଁ ପ୍ରତାରିତ
କିବା ପ୍ରତାରିତ     ହୋଇ ତାଙ୍କପାଇଁ
ନୋହୁଛି ଯେ ବ୍ୟାକୁଳିତ ।
ଏରୂପ ଅନର୍ଥ     କାରଣୀ କମଳା
ଯେବେ ବସ ଦୟାବନ୍ତ
ଆଶ୍ରୟ ନଅନ୍ତି     କିଛିକାଳପାଇଁ
ତାହାର ଭଣ୍ଡାରେ ଯାଇ ।
ତେବେ ଏକାବେଳେ     ଉଦ୍ଭ୍ରାନ୍ତ ଲକ୍ଷଣ
ଅଶିକ୍ଷିତ ଭୂପଗଣ
ହତାହତ ହୁଡ଼     ହୁଅନ୍ତି ବଞ୍ଚମ
ଦୁରାତ୍ମର ପରାମ୍ଭଣ ।
ଧନ ଲାଳସାର     ମଦେ ଭ୍ରାନ୍ତ ହୋଇ
ଜଗତକୁ ଧନମୟ
ଦେଖନ୍ତି ସେ ଧନ     ବଢ଼ାଇବା ଲାଗି
ହୁଅନ୍ତି ସଦା ତନ୍ମୟ ।
ଗନ୍ତାଘର ପୁରି     ଥିଲେହେଁ ଆତ୍ମୀୟ—
ମାନଙ୍କ ଦାନା ଲୁଟନ୍ତି
ନୀଚଙ୍କ ବୋଲଇ     ପ୍ରାଣନାଶି କେତେ
କୁଟିଳ ନୀତି ରଚନ୍ତି ।
ଯେତେ ଯେତେ କାର୍ଯ୍ୟ     ଆଚରନ୍ତି ସବୁ
ସ୍ୱ ଇଚ୍ଛା ପୂରଣ ଆଶେ
ଅନ୍ୟର ଉନ୍ନତି     ଲାଗି ଭଲ କାର୍ଯ୍ୟ
କେବେହେଁ ମନେ ନ ଆସେ ।
ରାଜମଦେ ମାତି     ନିଜ ନିଜ ଜନ
ପାଶୋରି ଯିବା ସେମାନେ
କାହୁଁ ଆସିଛନ୍ତି     କାହିଁ ଯିବେ ଥରେ
ନ ଆଣନ୍ତି ମନେ ଧ୍ୟାନେ ।

ଅଭିଷେକ କାଳେ ଢାଳିଥିଲୁ ଜଳ
ଶିରେ ପଡ଼ି ଘନ ଘନ
ପୁଣି ଉଦାରତା— ଥିଲା ସେମାନଙ୍କ
ପଖାଏ ଧୋଇ ତକ୍ଷଣ ।
ହୃଦ ପ୍ରସନ୍ନତା ଯେତେକ ସୁନ୍ଦର
ହୋମଧୂମେ ଯାଏ ଲୁଚି
ଭଲ ଗୁଣଯାକ ପୁରୋହିତଙ୍କର
ଭୂଷଣରେ ଦିଅଇ ପୋଛି ।
ସ୍ମୃତିର ପବନ ହୃଦୟରୁ ଦିଏ
ସତ୍ୟବାଣିକୁ ଉଡ଼ାଇ
ସୌଜନ୍ୟତା ବସ୍ତ୍ର ଶଙ୍ଖବାଦ୍ୟ ନାଦେ
ସେକାଳେ ଦିଏ ଘୁଞ୍ଚାଇ ।
ପ୍ରସାରିତ ଛତ୍ର ରାଜ ଚନ୍ଦ୍ରପର
ଶୋଭଇ ଯା ମସ୍ତକରେ
ପରକାଳ ପ୍ରତି ଦୃଷ୍ଟି ସେମାନଙ୍କ
ରୋଧଇ ଏକାବେଳରେ ।
ଏଣୁ ଇହକାଳ ସର୍ବସ୍ୱ ବସ୍ତୁର
ଆନନ୍ଦ ଆଶ୍ଚର୍ଯ୍ୟେ ମାତି
ଅଳୀକ ଆମୋଦ ନର୍ତ୍ତନ କର୍ତ୍ତନେ
ଗଡ଼ୁଥାନ୍ତି ଦିନରାତି ।
ମହାର୍ଘ ମୁକୁଟ ନିରତ ତାହାଙ୍କ
ଶିରକୁ ରଖେ ଘୋଡ଼ାଇ
ବାର୍ଦ୍ଧକ୍ୟ ଆସିଲେ ଧୂଷ୍ରା ଶୁକ୍ଳ କେଶ
ଆଉ ତ ଦିଶଇ ନାହିଁ ।
ମରଣର ଭୟ ନ ରଖି ନିଜକୁ
ଭାବନ୍ତି ସଦା ଅମର
ଚେତନ୍ତ ଲାଳସା ବଢ଼ଇ ଯେତିକି
ବୟସ ହୁଏ ଅନ୍ତର ।
ଅଭିଷେକ ଶେଷେ ଏ ଭାବେ ଉପେକ୍ଷି
ସକଳ ଗୁଣ ସୁନ୍ଦର

ନିଜକୁ ପାଶୋରି ଏକାବେଳେ ଭୂପେ
ହୋଇଯାନ୍ତି ରୂପାନ୍ତର ।
ସିଂହାସନେ ବସି ସ୍ୱ ମୂର୍ତ୍ତି ଦେଖନ୍ତି
ଅଭିମାନ ଚଷମାରେ
ସ୍ୱ ନେତ୍ରେ ସ୍ୱ ମୂର୍ତ୍ତି ଦିଶଇ ବିଶାଳ
ହିମାଦ୍ରି ଶୃଙ୍ଗ ପ୍ରକାରେ ।
ଏଣୁ ସିନା ସେହି ମିଥ୍ୟା ମହାତ୍ମ୍ୟର
ମଞ୍ଚାଗ୍ରେ ଗର୍ବେ ବସି
ମାନ୍ୟ ଗୁରୁଜନେ ଆଦରେ ନ ତୋଷି
କଥାରେ ଉଦ୍ଭ୍ରାନ୍ତ ହସି ।
ସୁପଥେ ଚଳିବା ଶକ୍ତି ଧୀରେ ଧୀରେ
ମନରୁ ହୁଅଇ ଧ୍ୱଂସ
ପାରିଷଦ ଯୋଗେ ପଙ୍ଗୁ ପରିଏ ସେ
ହେଉଥାନ୍ତି ଉଠବସ ।
ନିଜର ଗୁମାନେ ରହିଥାନ୍ତି ମତ୍ତା
ଆଡ଼ମ୍ବରେ ଟେକି ମଥା
ବିଦ୍ୟା ବୁଦ୍ଧି ଧର— ପଢ଼ିବା ଉପରେ
ନ କହନ୍ତି ବନ୍ଧୁ କଥା ।
କପଟେ ତାଡ଼ନେ ସୁଦ୍ଧା ନ ଭଞ୍ଜଇ
କେବେହେଁ ମୋହ ପହଳ
ମୌନେ ରହି ରହି ଅଭ୍ୟାସ ବଶରେ
ଶେଷରେ ହୁଅନ୍ତି ଜଡ଼ ।
ମୁମୂର୍ଷୁ ନ ଖାଏ ତାର ବ୍ୟାଧି ହର
ଔଷଧିମାନ ଯେସନ
ତେସନ ସଜ୍ଜନ ମିତ୍ର କଥାକୁ ସେ
ନ ଶୁଣନ୍ତି କଦାଚନ ।
ଲକ୍ଷ୍ମୀ ଅଳଙ୍କାର ପରିଏ ମଞ୍ଚପେ
କେବେ ନ ପାରନ୍ତି ସହି
ଆତ୍ମୀୟ ଉନ୍ନତି ଦେଖି ଈର୍ଷାନଳେ
ନିରନ୍ତେ ହୁଅନ୍ତି ଦହି ।

ଖଳବୁଦ୍ଧି ମନ୍ତ୍ରୀ    ମନ୍ତ୍ରଣାରେ କାଢ଼ି
ସ୍ୱଜନାଢ଼ ପଣପଣ
ଜାଲରେ ଶଫରୀ    ପ୍ରାୟ ପ୍ରଜାବୃନ୍ଦେ
ଛନ୍ଦୁଥାନ୍ତି ଅନୁକ୍ଷଣ ।
ପାଷାଣରେ ଘଷା    ଶାୟକ ଯେସନ
ଧନୁଯୋଗେ କ୍ଷିପ୍ତ ହୋଇ
ପ୍ରବଳ ବେଗରେ    ଲକ୍ଷ୍ୟ ପଦାର୍ଥକୁ
ସମୂଳେ ଅଗେ ନାଶଇ ।
ତେଜେ ଉଗ୍ରସ୍ୱବ    ବନ୍ଧୁ ସେ ସ୍ୱବଳୁ
ବଢ଼ାଇ ମତ୍ସର ପାନେ
ପ୍ରରୋଚନା ବଶେ    ପର ଶାନ୍ତି ସୁଖ
ନାଶନ୍ତି ଭୂପାଳମାନେ ।
ଉଚିତ ବକ୍ତାକୁ    ଅପମାନ ଦେଇ
ନକାଳି ଭୃତ୍ୟ ହସ୍ତରେ
ଖୋସାମଦ ପଟୁ    ମିଥ୍ୟାବାଦୀ ଜନେ
ରଖନ୍ତି ଘରେ ଆଦରେ ।
ଏପର ବଦ୍ଧୁତ    ନୃପଙ୍କ ଅଛନ୍ତି
ନିଯୁକ୍ତ ଯାଙ୍କ ସଙ୍ଗରେ
ବସ୍ତ୍ରଜନ୍ତ ବନ୍ଧୁ    ପର ପୀଡ଼ାଦାୟୀ
ସ୍ୱାର୍ଥପର ଦୁଷ୍ଟକାରେ ।
ଶକୁନି ସ୍ୱରୂପ    ରହନ୍ତି ସେମାନେ
ଧନ–ମଢ଼ି ଗ୍ରାସପାଇଁ
ତାହାଙ୍କ ଅସାର    କଥା ଶୁଣିବାକୁ
ନୃପେ ହୋଇଥାନ୍ତି ବାଇ ।
ଅସ୍ଥାନ ନଳନୀ    ଘେଉଁର ବସିଥାନ୍ତି
ପଣପଣ ଠକବକ
ପୂର୍ଣ୍ଣ ହୋଇଥାଏ    ଗଣ୍ଡା ଗଣ୍ଡା ଭଣ୍ଡ
ମଣ୍ଡଳେ ତାଙ୍କ ବୈଠକ ।
ସେ ଧୂର୍ତ୍ତମାନଙ୍କ    ମନରୋଚନା ମିଥ୍ୟା
ପ୍ରଶଂସାରେ ହୋଇ ଛଳି

ପଶା ଖେଳ ଭୁଲେ ଭାବନ୍ତି ମନରେ
ବ୍ୟାୟାମ କରୁଛୁଁ ବୋଲି ।
ଅନୁଚିତ କଥା ସମ ସମଝନ୍ତି
ଟିକଏ ଦର୍ଶନ ଦେଇ
କଥା ପଦେ କହି ବର ଦେଲପରି
ମନରେ ମଣନ୍ତି ସେହି ।
ବେଶ୍ୟା ଦରସ୍ତାର ସ୍ୱର୍ଗ ମଣୁଥାନ୍ତି
ନିଜକୁ ସନ୍ତୁଷ୍ଟ କରି
କୁସଙ୍ଗୀତେ ମଜ୍ଜି ଗାଉଥାନ୍ତି କାବ୍ୟ
ଚର୍ଚ୍ଚାରେ ସେ ଧୁରନ୍ଧର ।
କୁକାର୍ଯ୍ୟରେ ଧନ ଉଡ଼ାଇ ଦୁଅନ୍ତି
ଆପଣାକୁ ମହାଦାତା
ବବର୍ଚ୍ଚି ଖାନ୍‌ସମା ପୋଷି ମଣୁଥାନ୍ତି
ଦୀନଦୁଃଖୀ ପରିତ୍ରାତା ।
ମଦ ଖାଇ ଯେବେ ନାଚନ୍ତି ପ୍ରଭୃଏ
ତାକୁ ନବ୍ୟରୁଚି କହି
ଖୁଣ୍ଟୁକାର ଦଳ ପୁଣି ସେମାନଙ୍କ
ମନ ନେଉଥାନ୍ତି ମୋହି ।
ସେ ଖୁଣ୍ଟୁକାରଙ୍କ ଗୃହରେ କୁମାର
ସ୍ୱେଚ୍ଛାଚାରିତା ପ୍ରବୃତ୍ତି
ପରସ୍ତ୍ରୀ ଆସକ୍ତି ରସିକତା ପୁଣି
ବାହାପିଆ ମନୁଷ୍ୟତ୍ୱ ।
ଚପଳତା ତାଙ୍କ ଢଙ୍ଗରେ ଉତ୍ସାହ
ଲୁଟନ୍ତି ପ୍ରଶଂସା ଯଶ
ବାରାଙ୍ଗନାଙ୍କର ଉଲ୍ଲାସ ଚହାର
ଦୁର୍ଲ୍ଲଭ ସଙ୍ଗୀତ ରସ ।
ପ୍ରତାରଣା ପଟୁ ଦୁର୍ବୃତ୍ତେ ଏରୂପେ
ଦୋଷକୁ ମହା ଗୁଣରେ
ଗଣନ୍ତି ନାନାଭାବେ ଭୁଲନ୍ତି ଅବୋଧ
ଭୂପକୁଳକୁ ସ୍ତବରେ ।

ଶୁଣି ଶୁଣି ସଦା ସେ ସ୍ତୁତିଭାଷକ
ଅଳୀକ ପ୍ରଶଂସାତ୍ପର
ପ୍ରଭୁତା ପଣରେ ପଣ୍ଡିତଙ୍କୁ ତୁଚ୍ଛି
କରୁଥାନ୍ତି ବାହାଦୁର ।
ଦଣ୍ଡ ଚନ୍ଦ୍ରମାସ୍ପ ସ୍ୱରଟୀଙ୍କ ନାମ
ଶୁଣିଲେ ଅସଭ ଜ୍ୱର
ମହାକୋଳାହଳେ ତାସ ପଶାଖେଳେ
ମତ୍ତନ୍ତି ସେ ନିରନ୍ତର ।
ବରଷରେ ବାର— ମାସରୁ ନ'ମାସ
ଯାଏ ତାଙ୍କ ପଦ୍ମଙ୍କରେ
ତାଙ୍କ ସମସ୍ତଙ୍କୁ କାଟନ୍ତି ହେ ବସ !
ସ୍ଥାନ ଷ୍ଟେଗବଲାଘରେ ।
ରୂପବତୀ ପୁରେ ଘର ଥାଉଁ ଥାଉଁ
ଅନ୍ୟ ନାରୀଙ୍କ ବଲେକ
ସହଜେ ସ୍ୱପନ ଶୂନ୍ୟ ହୃଦ ତହିଁ
ଅଥଚ୍ଛେ ରହେ ଅଠକ ।
ନାନା କୂଟ ବାଟ ଅବଲମ୍ବି ଦୁଷ୍ଟ
ଅନୁଚର ସାହାଯ୍ୟରେ
ସ୍ୱାମୀ ପାଖୁଁ ଟାଣି ବଳାତ୍କାରେ ଆଣି
ରଖନ୍ତି ନିଜ ବଶରେ ।
ସ୍ୱଜନମଦେ ଧନ- ମଦେ ବସ ! ଏହି
ଭବେ କେତେ ନରସାଇଁ
ବିଳାସ ବିଷୟେ ସ୍ଥାନାସ୍ଥାନ କିଛି
ମନରେ ଗଣନ୍ତି ନାହିଁ ।
ଅସଂଖ୍ୟ ରମଣୀ ରଖି ସଂସାରର
ଅଶାନ୍ତି ବଢ଼ାନ୍ତି ନିତି
ନ ସ୍ୱବନ୍ତି କାଳେ କୁଳକୁ ଦହବ
ତାହାଙ୍କ ବିଷାକ୍ତ ପ୍ରୀତି ।
ସୁଶିକ୍ଷା ନ ଦେଇ ସ୍ୱାର୍ଥାନ୍ଧ ହଂସ୍ରକ
ଦାୟାଦଙ୍କୁ ନରକରେ

ଅକ୍ଷମ ଭଣ୍ଡକ      ପସ୍ୱେ ରକ୍ଷନ୍ତି
ନିରତ ନିଜ ବଂଶରେ ।
ଲକ୍ଷ୍ମୀ ପରାଙ୍ମୁଖା      ଅଶିକ୍ଷିତା ପ୍ରିୟ—
ତମାଙ୍କ ବନ୍ଧୁର ଲୋଡ଼
ସଦା ସନ୍ତ୍ରବାସେ      ଇଡ଼ ଘଡ଼ଘଡ଼
ତାଙ୍କ ପରାମର୍ଶେ ପଡ଼ ।
ସେ ଦୁଷ୍ଟ ଦାସ୍ୟାଦେ      ଠାକ ରହିଥାନ୍ତି
ଆଗୁରେ ପିତୃନାଶକୁ
ସିଂହାସନେ ବସି      ଅଗ କାର୍ଯ୍ୟ ତାଙ୍କ
ଧରଷିବା ସ୍ୱଜନଙ୍କୁ ।
ସମାଜ ରକ୍ଷକ      ବୋଲନ୍ତି ମାନବ
ହୋଇ ସମାଜ କୁଠାର
ସ୍ୱ ସ୍ୱାର୍ଥ ସାଧନ      ଲାଗି କରନ୍ତି ସେ
ସମାଜକୁ ଛାରଖାର ।
ସାଧାରଣ ସଙ୍ଘ      ଅରକ୍ଷିତାଟିଏ
ସମାଜୁ ତଡ଼ିବା ପାଇଁ
କେତେ ସଭାମାନ      ରଚନ୍ତି ସେ ମୂର୍ଖେ
ଜାତୀୟ ଧନ ଠୁଳାଇ ।
ସମାଜର ନେତା      ରୂପେ ସେହି ସ୍ଥାନ
ଅନୁଚରବୃନ୍ଦ ବର
ସେମାନଙ୍କ ଯୋଗେ      ବିପକ୍ଷ ଡଙ୍କିରେ
ଯେତେକ ଦୁର୍ନାଷ୍ଟ ଧର ।
ଧନୀଲୋକଙ୍କ ମୁଣ୍ଡେ      ଦୋଷ ଆଣିବାକୁ
ଠାଙ୍କିଥାନ୍ତି ଅନୁକ୍ଷଣ
ବିପଦେ ପକାଇ      ନେବାକୁ ଝିଙ୍କେ ସେ
ତାର ଶ୍ରମାର୍ଜିତ ଧନ ।
ହେ ବତ୍ସ ! ଜଗତେ      ଅଛନ୍ତି ଏମନ୍ତ
ଅନେକ କୁତ୍ସିତ ରାଜା
ଶୁଣିଲେଲକୁ ଗଲ      ବେଲକୁ ତାହାଙ୍କ
ବାଜଇ ବିବଧ ବାଜା ।

ଧନୀ ସନ୍ନିଧିରେ    ତୁଷି କଥାପଦେ
କାହାକୁ ଡରନ୍ତି ନାହିଁ
ମନୁଷ୍ୟ ବ୍ୟତୀତ    ଅନ୍ୟକୁ ଖଟାନ୍ତି
ଧମକାଇ ଚମକାଇ ।
ପୂର୍ବୁ ଯାହା ଚଳି    ଆସୁଛି ସେ ସୂତ୍ର
ଧରିଥାନ୍ତି ଶକ୍ତକର
ଶତ ଅପକାରୀ    ହେଲେହେଁ ଅଳୀକ
କୁଳ ମର୍ଯ୍ୟାଦାକୁ ଡର ।
କୁକୁଡ଼ା ପକ୍ଷିଏ    ପାଖେ ସ୍ପର୍ଶିଗଲେ
ଶରୀର ଧୁଅଇ ମାରି
ମାତ୍ର ବାଧା ନାହିଁ    ସ୍ୱାର୍ଥପାଇଁ ମିଥ୍ୟା
କହିବାକୁ ଦିନସାରି ।
ଧର୍ମ ଚର୍ଚ୍ଚା ତାଙ୍କ    ଧୂନିଆ ବାହାର
ଦେଖି ମନେ ମାନେ ଡର
ସେ ଚର୍ଚ୍ଚାରେ ବସ    ଗନ୍ଧ ସୁଦ୍ଧା ନାହିଁ
ଦୟା, କ୍ଷମା, ଆର୍ଜ୍ଜବର ।
କାଶୀ ଗୟା କ୍ଷେତ୍ର    ମୂର୍ତ୍ତିକୁ ଦେଖିଲେ
ହୃଦେ ଉପୁଜଇ ହାସ୍ୟ
ତୋଳି ତକ୍ତା ପିଠି    ଦେବାର୍ଚ୍ଚନ ଲାଗି
କେବଳ ତାଙ୍କ ପ୍ରୟାସ ।
ଜ୍ଞାନ ଉପଦେଶ    ପୂର୍ଣ୍ଣ ଗ୍ରନ୍ଥ ଯାଙ୍କ
ନୀତ ଶାସ୍ତ୍ର ମଧ୍ୟେ ଗଣ୍ୟ
ଯାହାଙ୍କ ଅଧ୍ୟକ୍ଷ    ମାର ଉପାସକ
କୁତ୍ସିତ ପୁରୋଧାଗଣ ।
ଶତ ଶତ ନୃପେ    ବେଶ୍ୟା ପରିତ୍ୟକ୍ତ୍ୟା
ଲକ୍ଷ୍ମୀ ଯା ଇଷ୍ଟଦେବତା
ପର ପୀଡ଼ା ଦାୟୀ    ମନ୍ତ୍ରୀମାନେ ସଦା
ଯାହାଙ୍କ କାର୍ଯ୍ୟକରତା ।
ବିଶ୍ୱାସ ଘାତକ    ଛିଦ୍ରାନ୍ୱେଷୀ ଜ୍ଞାନ
ମାନବେ ଯାଙ୍କ ବିଶ୍ୱାସୀ

ହୃତକାସ ଭ୍ରାତ୍ର ବନ୍ଧୁ ଯାହାଙ୍କର
ଉଚ୍ଛେଦର ଅଭିଳାଷୀ ।
ଏମନ୍ତ ନୃପଙ୍କ ରାଜନୀତ ବସ୍ତ
ସର୍ବଦା ହୁଏ ବିଫଳ
କଦାପି ମଧୁର ରସ ନ ଦଅଇ
ଚପୁଡ଼ିଲେ ଲିମ୍ବଦଳ ।
ଏ ସ୍ଥାନ କୁତ୍ସିତ ଛାଡ଼ି ଅହରହ
ରହିବ ସୁଧୀର ! ଦୂରେ
ସତ୍‌କର୍ମ୍ମ ଆଚର ପ୍ରତପଳ୍ପ ଭୂମ
ପ୍ରଶଂସା ଯଶ ମୁକୁରେ ।
ଏସ୍ତବେ ବହୁତ ଉପଦେଶ ଦେଲେ
ବୃଦ୍ଧ ମନ୍ତ୍ରୀ ସସ୍ନେହରେ
ହୃଷ୍ଟଚିତ୍ତେ ଯୁବା ଶୁଣି ସେ ସକଳ
ଆସିଲେ ଫେରି ନଗରେ ।

---

# ଷଷ୍ଠ ସର୍ଗ

କହନ୍ତି ଜାବାଲି ମୁନିଏ ! ବଚନ—
ରସ ଶୁଣ ଏକମନେ
ଅଭିଷେକ ବାଦ୍ୟ— ନାଦରେ କମ୍ପିଲା
ନରେଶପୁର ସଘନେ ।
ବିଚିତ୍ର ପତାକା— ମାଲେ ପରିଷ୍କୃତ
ପଥ ହୋଇଲା ସୁଶୋଭିତ
ପ୍ରତି ଦ୍ୱାରେ ନବ ରୁଚିର ତୋରଣ
ସ୍ୱକ ହରନେଲା ଚକ୍ଷୁ ।
ଉତ୍ସବ ଆମୋଦେ ବିଚିତ୍ର ବସନ
ପିନ୍ଧି ପୁରବାସୀମାନେ
ଘୋଷିଲେ ଯୁବାଙ୍କ ଅଭିଷେକୋତ୍ସବ
ସଙ୍ଗୀତ ମଧୁର ତାନେ ।
ଶୁଭ ଲଗନରେ ଶ୍ରୋତ୍ରିୟ ମଣ୍ଡଳୀ
ଗୁରୁପୁରୋହିତ ସହ
ଆରମ୍ଭିଲେ ନବ— ଅଭିଷେକ ଲାଗି
ମଙ୍ଗଳକର୍ମ୍ମ ନିବହ ।
ବେଢ଼ି ଠିଆ ହେଇଁ ବେଦି ଚଉପାଶେ
ସମ୍ଭ୍ରାନ୍ତ ସାମନ୍ତମାଳ
ପ୍ରବେଶି ସେ ସ୍ଥାନେ ଶୁକନାସ ସଙ୍ଗେ
ସୁତସ୍ନେହୀ ମହୀପାଳ ।
ନାନାତୀର୍ଥ, ନଦୀ, ସିନ୍ଧୁରୁ ଆନୀତ
ସର୍ବୌଷଧି ଜଳଭରା
ଶୀକରେ ଧରଣ ଚାମୀକରମୟ
ପବିତ୍ର ମଙ୍ଗଳଘଟ ।
ମୁକୁତା, ରତନ ମିଶାଇ ନିକର
ଆନନ୍ଦ ଅଶ୍ରୁ ପ୍ରବାହେ
ମନ୍ତ୍ରପୂତପୟଃ ଚନ୍ଦ୍ରାପୀଡ଼ ଶିରେ
ଅଜାଡ଼ି ଅତି ଆଗ୍ରହେ ।

ଯୌବରାଜ୍ୟେ ଯୁବା ଅଭିଷେକବିଧି
ବଢ଼ାଇଲେ ନିର୍ବିବାଦେ
ସାଦଷ ବରଷ ପୁଷ୍ପୋଦ୍‌ଗମଶିରୀ
ବସନ୍ତ ଯଥା ସମାଦେ ।
ନନ୍ଦର ଅଶ୍ରୁ ଗଡ଼ନ୍ତୁ ନ ଛଡ଼
ଅଗକୁ ଯେମନ୍ତ ଲଭିଁ
ନଜଠସ୍ଥ ଅନ୍ୟ ଦ୍ରୁମକୁ ସହଜେ
ଲଜ୍ଜା ଅବଲମ୍ବଇ ।
ମହାରାଜ ତାର— ପୀଡ଼କୁ ନ ଛଡ଼
ରାଜଲକ୍ଷ୍ମୀ ସେହିପରି
ଅଭିଷେକ ଜଳେ ଅର୍ଦ୍ର କୁମାରଙ୍କୁ
ଆଲିଙ୍ଗିଲେ ଧୀରେ ଧରି ।
ରାଣୀହଂସପୁର ମହିଳାମଣ୍ଡଳୀ
ସହ ସତୀଶିରୋମଣି
ପ୍ରବେଶି ସାନନ୍ଦେ ସଦୟ ହୃଦୟା
ଚନ୍ଦ୍ରପୀଡ଼ଙ୍କ ଜନନୀ ।
ଚନ୍ଦ୍ରରଶ୍ମି ସମ ଧବଳ ବରଣ
ସୁଗନ୍ଧ ସ୍ୱରୁଚନ୍ଦନ
ନେଇ ସ୍ନେହଭରେ ପ୍ରିୟ ତନୟର
ମଣ୍ଡିଦେଲେ ଅଙ୍ଗଘନ ।
ନବ ପ୍ରସ୍ଫୁଟିତ— ପୁଷ୍ପମାଳା ମୋଦେ
ମସ୍ତକେ ଗୁଡ଼ାଇଦେଇ
ଗୋରଚନା ରସେ ଆଦରେ ସର୍ବାଙ୍ଗ
ବୋଳିଦେଲେ ମହାଦେଇ ।
କୁମାର ଯେସନ ବସନ୍ତ ରମ୍ୟ
ନୀଳକଣ୍ଠର ପୃଷ୍ଠରେ
କୁମାର ତେସନ ବସିଲେ ନବୀନ
କୁଟର—ସିଂହାସନରେ ।
ଅଭିଷେକୋତ୍ସବ ଯଥାବିଧି ଶେଷ
କରନ୍ତେ ଶ୍ରୋତ୍ରିୟଗଣେ

ଦିଗ୍‌ବିଜୟ ଯାତ୍ରା ସୂଚକ ଦୁନ୍ଦୁଭି
ଉଠିଲା ନାଦ ସଘନେ ।
ସେ ପ୍ରଚଣ୍ଡ ଧ୍ୱନି ଅବଲମ୍ବେ ହେଲା
ଧରା ଅଭ୍ୟନ୍ତର ଗତ
ସକଳ ନଗର ସନ୍ଧିସ୍ଥଳମାନ
ହୋଇଗଲା କରେ ଶ୍ଳଥ ।
ମନ୍ଦର ଗିରିର ଆଘାତେ କି ଅବା
କମ୍ପିଲା କ୍ଷୀରସାଗର
ଅଥବା ପ୍ରଳୟ କାଳୀନ ନିର୍ଘାତ
ବାତରେ ଧରଣୀଧର
କି ଅବା ଚପଳା ଚମକେ ଉତ୍ଥିତ
ବଜ୍ରନାଦରେ ଅଚଳ
ଅଥବା ବରାହ ରୂପୀ ବିଷ୍ଣୁଙ୍କର
କ୍ଷୋଣୀଘାତେ ରସାତଳ ।
ସେ ଭୀଷଣ ସ୍ୱର ସମ୍ଭାଳି ନ ପାରି
ଅନନ୍ତ ନାଗ ଅଥୟେ
ଅତଳ ପାତାଳେ ସବେଗେ କମ୍ପିଲା
ଫଣାଶ୍ରେଣୀସହ ଭୟେ ।
ଦିଗ୍‌ବାରଣଗଣ ପର୍ବତ ପୃଷ୍ଠରେ
ତାଡ଼ିଣ ଦୃଢ଼ ଦଶନ
ବିପକ୍ଷ କରୀର— ସ୍ୱର ମଣି ତାକୁ
ଆହ୍ୱାନିଲେ ଘନଘନ ।
କୈଳାସ ଶିଖରେ ଶିବଙ୍କ ବୃଷଭ
ମହାନନ୍ଦେ ସ୍ୱର ତୋଳି
ସମ୍ବର୍ଦ୍ଧନା କଲା ଉତ୍ସାହେ ହରଙ୍କ
ଉଚ୍ଚହାସ୍ୟ ଧ୍ୱନି ବୋଲି ।
ଯମାଳୟେ ଯମ ମହିଷ ସେ ମହା—
ଶବ୍ଦ ଶୁଣି ବାରବାର
ସିଂହନାଦ ମଣି ସଭୟେ କରିଲା
ସେ ଶବ୍ଦକୁ ନମସ୍କାର ।

ଯୁକ୍ତ ଯାଗାକାଳ ଦୁନ୍ଦୁଭି ଅବନ୍ତି
ଗଜେନ୍ଦ୍ର ତନସ୍ୱ ଧୀରେ
ବୈରି-ରାଜ-ଲକ୍ଷ୍ମୀ ସହ ସିଂହାସନ୍
ଉତ୍ତରିଲ ଭୂମିପରେ ।
ସେକାଳେ ସକଳ ସୈନକେ ଉସ୍ତୁକ
କଣ୍ଠରେ ପୂରି ଅବନୀ
ମହା କୋଳାହଳେ ଘୋଷିଲେ ଉଲ୍ଲାସେ
ଚନ୍ଦ୍ରାପୀଡ଼ ଜୟଧ୍ୱନି ।
ସାନ୍ଧ୍ୟକରେ ଧୌତ ଗଙ୍ଗା ସ୍ୱେତସ୍ରୋତ
ପଡ଼ିଲେ ନମ୍ରମୁଖରେ
ପାଷାଣ ବନ୍ଧୁର ହିମାଦ୍ରି କନ୍ଦର
ଯେମନ୍ତ ସୁଷମା ଧରେ ।
ତେସନ ବସ୍ତାଡ ବାହିନୀ ସଙ୍ଗତେ
ଯଶସ୍ୱୀ ଯୁବକବର
ସିନ୍ଦୂରେ ଚର୍ଚ୍ଚିତ କରଣୀ ପୃଷ୍ଟରେ
ଆଗେ ହେଲେ ଅଗ୍ରସର ।
ଯେଣ୍ଟା ଯାନେ ବସି ଗମିଲେ ସାମନ୍ତ
ଭୂସ୍ୱାମୀଏ ପଛେ ତାର
ପଦାତିକ ଦଳ ଘୋଡ଼ାନ୍ତ ଯେମନ୍ତ
ପଛେ ପଛେ ବରଷାର ।
ଯାଉଥିଲ ଧ୍ୱଜା ସ୍ୱଦର ମଣ୍ଡିତ
ଇନ୍ଦ୍ରାୟୁଧ ଆଗେ ଆଗେ
ବୋଲା ହୋଇଥିଲ କିବା ସେ ସୁରମ୍ୟ
କୁଙ୍କୁମର ରସରାଗେ ।
ଧ୍ୱଜା ପଛେ ପଛେ ଅନୁସରୁଥିଲେ
ସୈନ୍ୟଗଣ କୋଳାହଳେ
ଶ୍ୱେତବର୍ଣ୍ଣ ଛତ୍ର କମ୍ପାଇ ପୃଷ୍ଟରେ
ଝୁଲୁଥିଲେ ଦନ୍ତାବଳେ ।
ସମୁଦିତ ନବ ଚନ୍ଦ୍ରମଣ୍ଡଳର
ପ୍ରତିବିମ୍ବ ହ୍ରଦେ ଧର

ଧାଉଁଥିଲା କିବା          ପବନ ସ୍ୱନନେ
ପ୍ରଖର ସିନ୍ଧୁ ଲହରୀ ?
ନୀଳ ଗଗନକୁ          ଅଚ୍ଛାଦି ଉଡ଼ର
ଧବଳ ଧ୍ୱଜ ଲହରୀ ।
ପର୍ବତ ଚୂଳରେ          ମୃଦୁଳ ଅନଳେ
ଅଧୀରେ ଶଙ୍କର ପର
ଗଣ୍ଡଶୀଳ ସେହୁ          ବିପୁଳ ବାହିନୀ
ଦେଖି ମନେ ହେଲା ପ୍ରତେ
ଘୋର କଲେବର          ଅଚଳ କୂଳ କି
ଭାସିଲେ ସାଗର ସ୍ରୋତେ ?
ଚରୁଥିଲା କାହିଁ          ବାହିନୀ ଅସଂଖ୍ୟ
ଶିଖିପୁଚ୍ଛ ସୁଷମାକୁ
କାହିଁ ଚୁମ୍ବୁଥିଲା          ଏକନ୍ତ ଉନ୍ନତ
ନବଘନ ଚପଳାକୁ ।
କାହିଁ ଦଶୁଥିଲା          ପତ୍ରପନ୍ଥେ ବନ
ସୁଚିହ୍ନିତ ହେଲାପର
ଶୋଭୁଥିଲା କାହିଁ          ଶତ ଶତସ୍ତୂପ
ଚୂଲିଲାପର ପର୍ବତ ।
ହସ୍ତି ଅଶ୍ୱମୟ          କେଉଁ ସ୍ଥାନେ ଅବା
ବିଶୁଥିଲା ସେ ବାହିନୀ
ଛନ୍ଦ ଧ୍ୱଜମୟ          ନଭସ୍ଥଳ, ଶୋଭା
କାହୁଁ ନେଉଥିଲା କିଣି ।
ଗଜ ସେନା ଦେଖି          ମନେ ହେଉଥିଲା
ବୋଲହୋଇ କରିମଦେ
ଗାଦ ପ୍ରକ୍ଷାଳନ          କରୁଥିଲେ ଅବା
ଧରଣୀ ଯମୁନା ହ୍ରଦେ ?
କରିମଦ ଜଳେ          ସୁରଭିତ ବାତ
ବହୁଥିଲା କାହିଁ ଖରେ
ପଡ଼ୁଥିଲା ନେତ୍ର          ଠିକର କାହିଁବା
ଅମ୍ବୁଧର କିରଣରେ ।

ଦେଖି ଜଣାଗଲ ମୁକୁଟେ ମଣ୍ଡିତ
ହେଲ କିବା ସୂର୍ଯ୍ୟୋଦୟ
ଲୁଟିଲ ଘୁମର ନଚସ୍ତ୍ରେ ଅଥବା
ସେବକ ହେଲ ଅମ୍ବର ।
ଭୂଷଣ କାନ୍ତିରେ ଚଉଦିଗ ହେଲେ
ହୋଇଗଲ ଜ୍ୟୋତିର୍ମୟ
ଶୁଭିଲ ଉଚ୍ଚରେ ସୁଗମ୍ଭୀର ସ୍ୱରେ
"ଜୟ ଯୁବରାଜ ଜୟ"
ରଣଜୟ ଡଙ୍କା ନାଦିଲ ସଘନେ
ମେଘଧ୍ୱନିକୁ ଧିକାର
ବରଷା ସମୟେ ପଡ଼ିଲ ରସାରେ
କଣ୍ଟି କରେଚ୍ଛୁ ବାରୁ ।
ଧୂମକେତୁ ବତ ଉଡ଼ିଲ ଧୂସର
ବରଣ ଧୂଳି ପଟଳ
ନିର୍ଘାତ ପବନ ପଗ୍ରଏ ଶୁଭିଲ
ଅଗାକ୍ଷମା କୋଳାହଳ ।
ପଡ଼ିଲ ରୁଧିର ବୃଷ୍ଟିବତ ଭୂମି—
କୁମ୍ଭରୁ ସିନ୍ଦୂର ରଜ
ଚଳିଲେ ସାଗର ବୀଚି ପରି ହଲି
ହଲି ତୁରଙ୍ଗମ ବ୍ରଜ ।
ସୈନ୍ୟପଦେ ଅଶ୍ୱ ଖୁରେ ରଥଚକ୍ରେ
ଗଜରେ ହୋଇ ମର୍ଦ୍ଦିତ
ଧସିପୃଷ୍ଠ ହେଲ କାହିଁ କର୍ଦ୍ଦମିତ,
କାହିଁ ଧୂଳି ଧୂସରିତ ।
ସୈନ୍ୟ କୋଳାହଳ ଜୟ ଡାକ ନାଦ
ଅଶ୍ୱଙ୍କର ହ୍ରେଷାରୋଳ
ବାରଣମାନଙ୍କ କର୍ଣ୍ଣତାଳ ପୁଣି
ବୃଂହିତ ଘୋର ଚହଳ ।
କଣ୍ଠର ଝଙ୍କଣୀ ଘନ ଘଣ୍ଟାସ୍ୱନ
ରଥର ଘର୍ଘର ସ୍ୱର

ମଙ୍ଗଳ ଶଙ୍ଖର ଶବଦେ ସ୍ତବଧ
ହେଲା ଦଶ ଦିଗନ୍ତର ।
ସେ ଭୀଷଣ ସ୍ୱନେ ହାସେ ଛଡ଼ିଗଲା
ଧବ ଦେବୀଙ୍କର ନାରୀ
ଜଣାଗଲା ସତେ ପ୍ରଳୟ କାଳକୁ
ଆସିଲା ଚଣ୍ଡୀକୁ ମାଡ଼ି ?
ଉଠିଲା ପ୍ରକାଣ୍ଡ ଅଶ୍ୱ ଗଜ ରଥେ
ପ୍ରବଳ ଧୂଳିପଟଳ
ନବୀନ ଘନରେ ଢାଙ୍କି ହେଲା ପରି
ଦେଖାଗଲା ଭୂମଣ୍ଡଳ ।
ଉଡ୍ଡୀନ ପତାକା ପଟଳରେ ଅଶ୍ୱ
ଦ୍ୱିଗୁଣିତ ହେଲା ଛବି
ଶ୍ୱେତବର୍ଣ୍ଣ ଧ୍ୱଜ ନଭର ଅଗ୍ରତ
ଆକାଶେ ଦିଶିଲା ନାହିଁ
ରେଣୁରାଜି କାହିଁ ବହିଲା କେସଣି
ମାତ୍ର ଫେଣ ସମ ଛଟା
ଓଠ ଖୋଲକଠା ପସ୍ୱେ ଦିଶିଲା
କାହିଁ ସେ ପତାକା ଘଟା ।
ସେ ଧୂଳିରେ ଧବ କାହିଁ ଆଚ୍ଛାଦିଲା
ବୃଦ୍ଧ ଭଳି କେଶପର
କାହିଁ ଅବା ନେଲା ହେମନ୍ତ କାଳର
ଫେନପୁଞ୍ଜ ଶୋଭା ହର ।
ଭଗ୍ନ ତରଙ୍ଗୋତ୍‌ଥିତ ଶୀକରକୁ ଶୋଷି
ବୀରଙ୍କ ନେତ୍ର ଆହ୍ଲାଦ
ଚନ୍ଦ୍ରମା ଢାଙ୍କି ସଚେତ ଜଳଦ
ସଙ୍ଗତେ ହେବାକୁ ବାଧ ?
ଘନ ରଜରାଜି ପତଙ୍ଗ ପରାଏ
ଗଗନ ମାର୍ଗକୁ ଉଠ
ସରସୀ ସଲିଳ ଗଜଗଣ୍ଡେ ଲାଗି
ମଦଜଳ ଜଳା ଲୁଚି ।

ବାର୍ଦ୍ଧକ୍ୟ ପରାଏ           କେବେ ଅବା କୃଷ୍ଣ
କେଶେ ଧବଳିମା ବୋଳ
ନେଜ ଲୋମେ ଲଗି           ସଢୋଚର କାହିଁ
ଦୃଷ୍ଟିକି ରେଣୁ ମଣ୍ଡଳୀ ।
କେବେ ଅବା କରି—           ମାନଙ୍କ ବିଶାଳ
କର୍ଣ୍ଣ ବେନ ତାଡ଼ନରେ
ପଶି ଯାଉଥିଲା           ପ୍ରବଳ ବେଗରେ
ତାହାଙ୍କ କର୍ଣ୍ଣ ବିବରେ ।
ତୁରଙ୍ଗମାନଙ୍କ           ମୁଖରୁ ନିଃସୃତ
ଉଚ୍ଛ୍ରିତ ସଞ୍ଚାରିତ
ଶୁଭ୍ର ଫେନପୁଞ୍ଜ           ହେଲା ପୁଣି କାହିଁ
ସେ ଧୂଳିରେ ଧୂସରିତ ।
କରତେ କଳ୍ପିତ           ଚନ୍ଦନ କାଷ୍ଠର
ଗୁଣ୍ଡି ସମାନ ଧୂସର
ବର୍ଣ୍ଣ ଧରି ସେହୁ           ରଜୋରାଶି ହେଲା
ସମ୍ମୁଖରୁ ଅଗ୍ରସର ।
କ୍ରମେ କ୍ରମେ ବଢ଼ି           ପ୍ରତିକୂଳ ବାତେ
ବିପୁଳ ଧୂଳି ଲହରୀ
ଢଙ୍କିଲା ଯୁଦ୍ଧାଙ୍କ           ଜମ୍ବୁ ମାଙ୍ଗଳିକ
ଉଡ୍ଡୀନ କେତନ ପଟ୍ଟ ।
ଅଶ୍ୱ ବସ୍ତ୍ରଙ୍କ           କେଶର ପରାଏ
ଘନ ପଶମ ପଟଳ
ବଢ଼ିଲା କ୍ରମଶଃ           ପ୍ରଳୟ ଅଗ୍ନିର
ଧୂମ ସମ ଅବିରଳ ।
ସେ ରଜସ୍ତରରେ           ଧୂସର ବରଣ
ଧରି ଆକାଶରେ (୧) ଘନ
ଧୂମରେ ଆବୃତ           ଅନଳ ପରାଏ
କ୍ରମରେ ହେଲେ ମଳିନ ।

(୧)—ସୂର୍ଯ୍ୟ ।

ଦେଖି ମନେ ହେଲା          ସହ୍ୟ ନ ପାରଣ
ସୈନ୍ୟଙ୍କ ବିଷମ ଭର
ଧଳଛନେ ଅବା          ଭୂତଳକୁ ଗଢ଼
ଶୂନ୍ୟକୁ ଉଠିଲେ ଧର ?
ଏରୂପେ ଧୂଳିରେ          ଆକାଶ ଭୂତଳ
ହୋଇଗଲା ଅନ୍ଧକାର
ବୁଡ଼ିଗଲା କିରେ          ପ୍ରଳୟ କାଳୀନ
ସାଗର ଜଳେ ସଂସାର ?
ଅଲକ୍ଷଣ ପରେ          ଶାନ୍ତ ଗଜଙ୍କର
ଶୁଣ୍ଡଦଣ୍ଡ ଅନର୍ଗଳ
ଫଏରି ପରିଏ          ଫେନପୁଞ୍ଜ ଉଠି
ବ୍ୟାପିଲା ଧରଣୀ ତଳ ।
କର୍ଣ୍ଣ ଯୁଗଳର          ତାଡ଼ନେ ତରଳ
ମଦଜଳ ରେଖାଝର
ଟୌଦିଗେ ପଡ଼ିଲା          ଛୁଞ୍ଚିଡ଼ି ସବେଗେ
ବୃଷ୍ଟି ବାରି ଧାରି ପରି ।
ତୁରଙ୍ଗକୁଳର          ମୁଖରୁ ନିର୍ଗତ
ଝାଲସହ ସାନ୍ଦ୍ର ଲାଳ
ନିବାରିଲା ଯେଣେ          ମେଦିନୀ ବକ୍ଷରୁ
ଉତ୍ଥିତ ପରାଗମାଳ ।
ଧୀରେ ଧୀରେ ନଭୁଁ          ଘନ ରଜୋରାଶି
ନିମ୍ନକୁ ଆସିଲା ଖସି
ଜଳଧିରେ ଅବା          ତରଳ ଜଳଦ
ମାଳା ତଳେ ଗଲା ବସି ?
ଅବା ଭରମାଳୀ          ଭର ପିଇ ପିଇ
ଉଦରେ ଗୁରୁତା ପାଇ
କ୍ରମେ କ୍ରମେ ଖସି          ପଡ଼ୁଥିଲେ ସେହୁ
ପରିଗେ ଭୂତଳେ ଯାଇଁ ?
ପୁବପର ପୁଣି          ସକଳ ଦିଗରେ
ଆଲୋକ ହେଲା ପ୍ରକାଶ

ଜଣାଗଲ ଯେନ୍ତେ ସିନ୍ଧୁଜଙ୍କୁଁ ସଦ୍ୟ
ଉଠିଲ ସେନା ନିବାସ ।
ସଦ୍ଧି ଦେଖୁଥିଲେ ସେ ଦିଗ ଡମାଇ
ଚଲୁଥିଲେ ବୀରଗଣ
କରୁଥିଲେ କବା ଅବନୀ, ବୀରଙ୍କ
ଭୟରେ ସୈନ୍ୟ ଗମନ ?
ହେ ମୁନି ତନୟେ ! ଏସ୍ୱବେ ବାହିନୀ
ଚଳାଇ ସାନନ୍ଦ ମନେ
ସନ୍ଧ୍ୟାକାଳେ ଯୁବା ପ୍ରବେଶିଲେ ପୂର୍ବ
ନିର୍ଦ୍ଦିଷ୍ଟ ବାସଭବନେ ।
ସଜ୍ଜା ହୋଇଥିଲା ଗଜେନ୍ଦ୍ର କଟକ
ପରଏ ସେହି ଶିଖର
ବେଢ଼ିଥିଲା ତାର ଚୌଦିଗେ ସୁନ୍ଦର
ନବଡ଼ ଢ଼ାଲ ପ୍ରାଚୀର ।
ରମ୍ଭାତରୁ ସହ ଦ୍ୱାରେ ରାଜୁଥିଲା
ରସାଲ-ପତ୍ର-ତୋରଣ
ଛତରେ ବେଦକା ପୂର୍ଣ୍ଣି ଶୋଭୁଥିଲା
ବସ୍ତୁ ପଞ୍ଚ ନୈବେଦନ ।
ସେ ରମ୍ୟ ଶିବିରେ ସେନାଗଣ-ସହ
ରହି ଯାପି ଯୁବା ସୁଖେ
ପ୍ରଭାତରୁ ଉଠି ଗମିଲେ ଉଲ୍ଲାସେ
ଗନ୍ତବ୍ୟ ସରଣୀ ମୁଖେ ।
ନବ ସୈନ୍ୟେ ଅସି ଦକ୍ଷିଣ ରାଜ୍ୟରୁ
ଯିବା ମାର୍ଗେ ନିରନ୍ତରେ
ବଢ଼ାଉ ଥିଲେ ସେ ବିଶାଳ ବାହିନୀ
ସଂଖ୍ୟାକୁ ବହୁଗୁଣରେ ।
ଧରାକୁ ଧର୍ଷି ଏସ୍ୱବେ ଅଜସ୍ର
ସଇନ୍ୟଚୟ ଚଳାଇ
କାନନ କେଦାର ନଦ ନଦୀ ଗ୍ରାମ
ପର୍ବତ ସିନ୍ଧୁ ଡମାଇ ।

ସୈନ୍ୟ ବ୍ୟବହାରେ ଜଳାଶୟମାନ
ଶୁଖାଇ ନାନା ସ୍ଥାନରେ
ପରିଣତ କରି ମାର୍ଗେ ଉଚ୍ଚ ନୀଚ
ଭୂମିକୁ ସମତଳରେ ।
ଦୁର୍ଗମ ପର୍ବତ ମଧ୍ୟେ ବାଟ କାଟି,
ଗମ୍ଭୀର ହ୍ରଦକୁ ପୋତି
ଦ୍ରୁମରାଜି ଛେଦି ଅବାରିତ ପନ୍ଥ
ନୃପସୁତ କଲେ ଗଢ଼ ।
ଇଚ୍ଛା ଅନୁକୂଳେ ଏରୂପେ ସର୍ବତ୍ର
ବାହିନୀ ଚାଳି କୌଶଳେ
ସ୍ୱବଶେ ଆଣିଲେ ବଳ ଗର୍ବେ ମତ୍ତ
ଭୂପତିଙ୍କୁ ଧର୍ଷି ବଳେ ।
ଅବନତ ଶିର ଭୂପତିମାନଙ୍କୁ
ଅଭୟ ଦେଲେ ସଦୟେ
ଆଶ୍ୱାସି ଆଦରେ ପିତୃନାଶେ ଖିନ୍ନ
ନାବାଳକ ନୃପଚୟେ ।
କରୁଣା ପ୍ରକାଶି ରକ୍ଷିଲେ ଶରଣା—
ଗତକୁ ମୁକ୍ତ କରି
ଉପାଡ଼ିଲେ ଖଳ କୁଟିଳ ସ୍ୱଭାବ
ଭୂପାଳଙ୍କୁ ମୂଳୁଁ ଧରି ।
ଦୁଷ୍ଟ ଉତ୍ପୀଡ଼ନେ ସିଂହାସନ ଭ୍ରଷ୍ଟ
କେତେ ଭୂପଙ୍କୁ କଶୋର
ଅଭିଷିକ୍ତ କଲେ ପିତୃ ଉପାର୍ଜିତ
ପୂରୁବ ରାଜ୍ୟେ ତାଙ୍କର ।
ବିଜିତ ଦେଶରେ ଅସଂଖ୍ୟ ବିଜୟ
ସ୍ତମ୍ଭମାନ ଅନୁଷ୍ଠାନ
ଦୁଷ୍ଟରାଜାଙ୍କର ରାଜ୍ୟ ପ୍ରବନ୍ଧ
ଯୋଗେ ସ୍ୱ ଶାସନେ ଆଣି ।
ନୀଳ ଜଳଧର ବପୁକୁ ଘୋଡ଼ାଇ
ସୈନ୍ୟ ପଦରେଣୁ ଭରେ

ସମଗ୍ର ପୃଥିବୀ ଅଚିରେ କୁମାର
ବିଚରିଲେ ଦମ୍ଭ ଭରେ ।
ଅରୁଣଙ୍କ ବାଲ୍ୟ- ଲୀଳାସ୍ଥଳୀ ଆଗେ
ପୂରୁବ ଦିଗକୁ ଦମି
ତା ପରେ ନିଶଙ୍କୁ ଶୋଭୀ ଦକ୍ଷିଣକୁ
ଜିଣିଲେ ସେ ପରାକ୍ରମୀ ।
ବରୁଣ ଚିହ୍ନରେ ଚିହ୍ନିତ ପ୍ରସିଦ୍ଧ
ପଶ୍ଚିମାଶା ଭୂପେ ଦଳି
ସପ୍ତର୍ଷି ମଣ୍ଡିତ ଉତ୍ତର ଦିଗକୁ
ସ୍ୱବଶେ ଆଣିଲେ ବଳୀ ।
ଛନ ବରଷରେ ଏସବେ ଜୟକୁ
ଧର୍ଷି ଦୁଷ୍ଟ ମନୋରଥେ
ପୟୋଧି ପରିଖା ଧାରିଣୀ ଧରାକୁ
ରଖିଲେ ନିଜ ଆୟତ୍ତେ ।
କୈଳାସ ନିକଟେ ହେମକୂଟବାସୀ
ମ୍ଲେଚ୍ଛ ସୈନ୍ୟଗଣ ସହ
ସ୍ୱର୍ଣ୍ଣପୁରରେ ସେମାନଙ୍କୁ ଜିଣି
ଯୁଝି ଯୁଦ୍ଧ ଅହରହ ।
ବହୁଯୋଜନବ୍ୟାପୀ ରଣଶ୍ରମେ କ୍ଲାନ୍ତ
ସେନାଙ୍କ ବିଶ୍ରାମ ପାଇଁ
ବାମଣି ସେତୁ ଶୈଳ ପଦତଳେ
ଶିବିର ସ୍ଥାପିଲେ ସାଇଁ ।
ସେଥି ବାସ କାଳେ ଦିନେ ସେ ପ୍ରତ୍ୟୁଷୁଁ
ଆରୋହି ଇନ୍ଦ୍ରାୟୁଧରେ
ମୃଗୟା କୌତୁକେ ପଶୁ ଖୋଜି ଖୋଜି
ବୁଲୁଥିଲେ କାନନରେ ।
ସହସା ଦେଖିଲେ ଦୁଇଟି କିନ୍ନର
ଶୈଳଶିଖୁଁ ଅବତରି
ଇଚ୍ଛା ଅନୁସାରେ ଖେଳୁଥିଲେ ସୁଖେ
ବନସ୍ଥଳୀରେ ବିଚରି ।

ଦେଖିନାହୁଁ କେବେ    କିନ୍ନର, କୁମାର
ଏଣୁ ଧରିବାର ଆଶେ
ସଘନେ ତୁରଙ୍ଗ    ଚଳାଇ କୌତୁକେ
ଗଲେ ସେମାନଙ୍କ ପାଶେ ।
ଅଶ୍ୱାରୋହୀ ରାଜ—    ପୁତ୍ରଙ୍କୁ ସହସା
କିନ୍ନରେ ସମ୍ମୁଖେ ଦେଖି
ପଛକୁ ଲେଉଟି    ଦ୍ରୁତେ ପଳାଇଲେ
ସେ ସ୍ଥାନ ଭୟେ ଉପେକ୍ଷି ।
କୁତୂହଳେ ଯୁବା    କିନ୍ନର ବେନଙ୍କୁ
ଅନୁସରିଲେ ଚଞ୍ଚଳ
ଅଶ୍ୱ ପଦଭରେ    ଚମକାଇ ସେହୁ
ବିସ୍ତୀର୍ଣ୍ଣ ବିଜନ ସ୍ଥଳ ।
ପ୍ରଖର ବେଗରେ    ଘୋଟକ କିନ୍ନର
ପାଶେ ପ୍ରବେଶିଲେ ତାହିଁ
ଭୟେ ଅନ୍ୟ ଦିଗେ    ପଳାଉଥିଲେ ସେ
ଗତିବେଗ ପାଲଟାଇ ।
ତାହୁଁ ଯୁବାମଣି    ମଣୁଥିଲେ ତାଙ୍କୁ
ଧରିବ ଉପାଏ କରେ
ତାହିଁ ଦେଖୁଥିଲେ    ପଳାଉଥିଲେ ସେ
ଦୂରରେ ମହାବେଗରେ ।
ଠାଣେ ଘଠ ପିଟି    ବେଗବାନ ଇନ୍ଦ୍ରା—
ୟୁଧକୁ ଖରେ ଚଳାଇ
ଏକାକୀ ନିର୍ଜନେ    ସୈନ୍ୟ ବହୁଦୂରେ
ଉପସ୍ଥିତ ହେଲେ ଯାଇ ।
ଏଣବେ ତାହାଙ୍କ    ପଛରେ ଗୋଡ଼ାଇ
ଚନ୍ଦ୍ରାପୀଡ଼ ବହୂଦ୍ୟମ
ଷଣ୍ଢେ ମୁବଣ୍ଡ—    ପୁତ୍ରରୁ ପାଠିଏ
କୋଶ କଲେ ଅତିକ୍ରମ ।
ନ ପାରିଲେ ଧରି    ସମ୍ମୁଖ ଶିଖରେ
ଉଠିଲେ କିନ୍ନରେ ଯାଇ

ଦୂରରେହ ଗିର ଆଉ ଯିବା ପାଇଁ
ଘୋଟକର ସାଧ୍ୟ ନାହିଁ ।
ଦେଖୁଁ ଦେଖୁଁ ଦୁହେଁ ଅଗ୍ରେସ୍ୱ ଅକ୍ଲେଶେ
ସମ୍ମୁଖର ସାନୁମାନ
ଦୃଷ୍ଟିସୀମା ଲଙ୍ଘି ବୃକ୍ଷ ଅନ୍ତରାଳେ
ହେଲେ ତାହି ଅନ୍ତର୍ଦ୍ଧାନ ।
ସେ ବଗୁଁ ନୟନ ଫେରାଇ ହତାଶେ
ଯୁବକ ବିଷାଦଭରେ
ହେମ ବଲ୍‌ଗା ଧରି କ୍ଷଣେ ଅଶ୍ୱପୃଷ୍ଠେ
ରହିଲେ ନତ ମୁଖରେ ।
ପରିଶ୍ରମ ବଶେ ବହିଲା ସର୍ବାଙ୍ଗୁ
ସ୍ରୋତ ବେଗେ ଘର୍ମ ଜଳ
ଭିଜିଗଲା ତାଙ୍କ ଅଙ୍ଗ ଆଚ୍ଛାଦନ
ଉଷ୍ଣୀଷ ବସ୍ତ୍ର ସକଳ ।
ଭର୍ତ୍ସୁଥେ ପୁଣି ନିଜକୁ କରେଣି
ଚିନ୍ତିଲେ ରାଜକୁମାର
ପିଲାପରି କପାଁ କଲେ ସେ ଏମନ୍ତ
ଅନର୍ଥକ ବ୍ୟବହାର ।
କିଲର ଯୁଗଳ ଧରି ସେହୁ ଅବା
ଲଭିଥାନ୍ତେ କି ସମ୍ପତ୍ତି
ନ ପାରିଲେ ଧରି ଏଥିରେ ବା ତାଙ୍କ
ହେଲା କେଉଁ ମହାକ୍ଷତି ?
ଭାବିଲେ କପାଁ ମୁଁ ଭୂତାବିଷ୍ଟ ପରି
ଆଚରିଲି ଏହି କର୍ମ୍ମ
ଏ ମୂର୍ଖ ରସରେ କପାଁଇ ମଜ୍ଜିଲି
ବୁଝି ହେଉ ନାହିଁ ମର୍ମ୍ମ ?
କାହିଁ ମୋ ଶିବିର କାହିଁ ପରିଜନ
କାହିଁବା ବାହିନୀ ସବି
ନଜେ ସେହି କଥା ଭାବିଲେ ନିଜକୁ
ହସ ମାଡୁଅଛି ଅତି ।

ଚଳ ହେଉନାହିଁ  ଶିବିରର ଦେଟେ
ଦୂରେ ଅଛି ମୁହିଁ ରହି
ବେଗବାନ ଅଶ୍ୱ  ନିମିଷେ ବହୁତ
ପଥ ଅଣିଅଛି ବହି ।
ଅସିବା ସମୟେ  କିନରଙ୍କୁ ସ୍ୱୁହିଁ
ଧାଇଁଥିଲି ଏକଧ୍ୟାନେ
ପଥ ଲକ୍ଷି ନାହିଁ  ଫେରିଯିବା କଥା
ଆସି ନଥିଲା ମୋ ଜ୍ଞାନେ ।
ଘନ ତରୁଲତା  ଗୁଳ୍ମ ଗହଳରେ
ଏବନ ଅତି ସଙ୍କୁଳ
ପଥ ନ ଦିଶଇ  ଘୋଡ଼ାଇ ରଖିଛି
ଗାଢ଼ ଶୁଷ୍କ ପତ୍ରକୂଳ ।
ବହୁତ ସତନେ  ଖୋଜିଲେହେଁ ଏଥି
ଜଣେ ନ ମିଳିବେ କାହିଁ
ଏ ମହାବନର  ନିର୍ଗମନ ବାଟ
ପାରିବେ ସେହୁ ଦେଖାଇ ।
ଶୁଣିଛି ପୂରୁବେ  ପ୍ରାଚୀନମାନଙ୍କ
ମୁଖରୁ ଏମନ୍ତ ଗୀର
ସୁବର୍ଣ୍ଣପୁରର  ଉତ୍ତର ଅଟଇ
ଶେଷସୀମା ପୃଥ୍ୱୀର ।
ତା ପରେ ମନୁଷ୍ୟ  ନାହିଁ, ଏକା ବନ—
ପଶୁଙ୍କ ରହିବା ସ୍ଥାନ
ବହୁଦୂର ବ୍ୟାପି  ଦିଶଇ କେବଳ
କଇଲାସ ସାନୁମାନ ।
ଏହୁ ସେ କୈଳାସ  ଆଗେ ଦିଶୁଅଛି
ଟିକିଏ ନାହିଁ ସଂଶୟ
ନବସନ୍ତ ଏଥି  ସଦା ସଦାଶିବ
ଭୂତଗଣଙ୍କ ଆଶ୍ରୟ ।
ଦକ୍ଷିଣ ମୁଖରେ  ବୁଝିବଲେ ପଥ
ଖୋଜି ଖୋଜି ଏ କାନ୍ତାରେ

ଅଷ୍ଟୁର ଅସ୍ପୃଷ୍ଟ ପଦ ଲଭି ଏକା
ଲେଉଟିବ ସ୍ୱଜାବାରେ ।
ସ୍ୱଜଲେ କି ହେବ କର୍ମାର୍ଜିତ ଫଳ
ଦୈବ ଯୋଗାଇଲ ଆଣି
ଲଲାଟ ଲିଖନ ମେଣ୍ଟାଇବା ପାଇଁ
ସମର୍ଥ ଭବେ କେ ପ୍ରାଣୀ ?
ତୁରଙ୍ଗ ଫେରାଇ ପୁଣି ମନେ ମନେ
ଚିନ୍ତିଲେ ଯୁବାରତନ,
ଖର ଦୌରବରେ ଜ୍ୱଳନ୍ତ ତପଏ
ଝଳଇ ଏବେ ଗଗନ,
ଦୀପ୍ତ କରଜାଲେ ଅଷ୍ଟ ଦୀପ୍ତିମନ୍ତ
ଅକାଶ କେନ୍ଦ୍ରରେ ହର
ବସିଲେଣି ଦନ— ଲକ୍ଷ୍ମୀଙ୍କ ମେଖଳା
ମାଳେ ମଧ୍ୟମଣି ସର ।
ଗାଢ଼ ପରିଶ୍ରମେ ପ୍ରିୟ ଉଦ୍ରାସ୍ଥଧ
ହୋଇଛି କ୍ଲାନ୍ତ ପୀଡ଼ିତ
ଘାସ ପାଣି ଦେଇ ତାହାକୁ କିଞ୍ଚିତ
ବିଶ୍ରାମ ଦେବା ଉଚିତ ।
ନିଜେ ମଧ୍ୟ ଖାଇ ଜଳପିଇ କ୍ଷଣେ
ସୁସ୍ଥ ହୋଇ ଶ୍ରମ ନାଶି
ଶିବରେ ଫେରିବ ବାଟ ଦେଖାଇବେ
ସଦୟେ କୈଳାସବାସୀ ।
ଏହା ଭାବି ଯୁବା ନୀର ଅନ୍ୱେଷଣେ
ବୁଲି ବୁଲି ଇତସ୍ତତଃ
ଦେଖିଲେ ଉଲ୍ଲାସେ ସମ୍ମୁଖରେ ଏକ
ଅସ୍ପୃଷ୍ଟ ଅଟବୀ ପଥ ।
ଶୈରବ୍ଲସି ଗଜେ ସରୋବର ଜଳେ
ସଦ୍ୟ ନିମଜ୍ଜିତ ହୋଇ
ବୁଲି ଯାଉଥିଲେ ଶରୀରରୁ ଝର
ପାଣି ଚାଲୁ ଥିଲା ବହି ।

ଦିଶୁଥିଲା ମାର୍ଗେ        ସେ ଭଗ୍ନ କୂଳର
ପାଦ କର୍ଦ୍ଦମେ ପିଚ୍ଛିଳ
ପଡ଼ିଥିଲା ପାଖେ        ଶୁଣ୍ଡଣ୍ ଉତ୍ପାଟିତ
ସନାଳ କେତେ କମଳ ।
କାଦୁଅ ଜର୍ଜ୍ଜର        ବିକ୍ଷିପ୍ତ କହ୍ଲାର
ଗଜୁଥିଲା ଠାବେ ଠାବେ
ବନଲତା ସହ        ଛିଣ୍ଡି ଫଳ ପୁଷ୍ପ
ରହିଥିଲା ନାନାଭାବେ ।
ମଳ ମୂତ୍ରେ ପଥ        ପୂରି ଯାଇଥିଲା
ନଣ୍ଡ ନଣ୍ଡ ଯାଇ ଆସି
ଓଡ଼ିଦଗ ତାହାଙ୍କ        ମଦର ଉତ୍କଟ
ଗନ୍ଧେ ଯାଉଥିଲା ଭାସି ।
ସେ ବାଟ ଢଳେକି        ପାଖେ ଜଳାଶୟ
ଅଛି ବୋଲି ମନେ କରି
ଗମିଲେ ଚଳିଲେ        କୈଳାସ ଗିରିର
ପଦେ ପଥ ଅନୁସରି ।
ଯିବା ବେଳେ ତାଙ୍କୁ        ସବଳ ସୁଢ଼ାଳ
ତୁଙ୍ଗ ଶାଳ ତରୁଗଣ
ପ୍ରଦାନଲେ ଛାୟା        ଶାଖା ବାହୁ ଯୋଗେ
ଆଚ୍ଛାଦି ସୂର୍ଯ୍ୟ କିରଣ ।
ବଉଳ ପଲ୍ଲବ        ସରଳ ସାଲେହ
ପାଦପରାଜି କାନ୍ତାରେ
ଦିଶୁଥିଲା ଶୁଭ୍ର        ସ୍ତମ୍ଭଶ୍ରେଣୀ ପରି
ବନଦେବୀ ବରନ୍ଦାରେ ।
ତୃଣଲତା ଶୂନ୍ୟ        କାହିଁ ବା କବର—
ଭୂମି ଯାଉଥିଲା ଦେଖା
କାହିଁ ପଡ଼ିଥିଲା        *ପୁଳିନ୍ଦମାନଙ୍କ
ଅସ୍ପଷ୍ଟ ସରଣୀ ରେଖା ।

---

* ବନ୍ୟଜାତି ବିଶେଷ ।

ଶୋଭୁଥିଲା କାହିଁ ଦାରଣ ଦନ୍ତରେ
ଚୂର୍ଣ୍ଣ ମନଃଶିଳା ଧୂଳି
ତରୁ ଦେହ ଛନ୍ଦ ଲତା ତୋର କାହିଁ
ତଳେ ପଡ଼ିଥିଲା ଝୁଲି ।
ଓଦା ଜରଜର ଗଳିତ ଗୁଗ୍‌ଗୁଳି
ନିର୍ଯ୍ୟାସେ ପଥ ସକଳ
ହୋଇଥିଲା ପୁଣି ଶିଳାଜତୁ ଗାଢ଼
ରସରେ ତାହା ପିଚ୍ଛିଳ ।
ବଣୁଥିଲା ଭୂମି ମୃଗଖୁରେ ଚୂର୍ଣ୍ଣ
ହରିତାଳ ଗୁଣ୍ଡିମୟ
ମାଟି ସଙ୍ଗେ ମୂଷା ଗାତୁଁ ଉଠିଥିଲା
କାହିଁ ସ୍ୱର୍ଣ୍ଣରେଣୁଚୟ ।
ଛନ୍ଦିପର୍ଣ୍ଣ ବୃକ୍ଷୁଁ ପର୍ଣ୍ଣ ଭଳି ଭଳି
ଝୁଲି ଝୁଲି ଶ୍ରମାକୁଳେ
ଚମରୀ ମୃଗିଏ ହୁଷ୍କଚର୍ଚ୍ଚେ କାହିଁ
ଶୋଇଥିଲେ ତାର ମୂଳେ ।
ଚକୋର ଚକୋରୀ ସ୍ୱର ତୋଳୁଥିଲେ
ଶିଳାରେ ବସି ଆନନ୍ଦେ
ଯାଉଥିଲା ବଗ— ମଣ୍ଡଳ ମଣ୍ଡଳ
ଗନ୍ଧକର କଣ୍ଠଗନ୍ଧେ ।
ଏ ସବୁ ବହୁତ ଦୂର ଅତିକ୍ରମି
ନୃପସୁତ ଅନୁରାଗେ
ଦେଖିଲେ ଦୂରରୁ ଉନ୍ନତ କୈଳାସ—
ପର୍ବତର ଅଗଭାଗେ ।
ନବ ନୀର ଭରେ ମନ୍ଥର ନୀରଦ
ନୀରଦ ନିକର ସମ
ବହୁ ସ୍ଥାନ ବ୍ୟାପି ଦଶଇ ଶ୍ୟାମଳ
ଦ୍ରୁମରାଜି ମନୋରମ ।
ନବ ପ୍ରସ୍ଫୁଟିତ ପୁଷ୍ପରେଣୁ ବାହି
ଜଳଶୀକରେ ଶୀତଳ

ଚନ୍ଦନ ରସର      ସମ ସୁଖକର
ମୃଦୁଳ ବାୟୁ ହିଲ୍ଲୋଳ ।
ମଧୁପାନେ ମତ୍ତ      ମରାଳମାନଙ୍କ
ସୁମଧୁର ରାବଛଳେ
ସମାଦରେ ତାଙ୍କୁ      ଅଭ୍ୟର୍ଥନା କରି
ଡାକୁଥିଲା କୁତୂହଳେ ।
ତ୍ରୈଲୋକ୍ୟ ଲକ୍ଷ୍ମୀଙ୍କ      ମଣିମୟ ସ୍ୱଚ୍ଛ
ଦରପଣ କାନ୍ତି ଜିଣି
ଶୋଭୁଥିଲା ତହିଁ      ଅଚ୍ଛୋଦ ନାମରେ
ଏକ ଦୀର୍ଘ ପୁଷ୍କରିଣୀ ।
ଜଳଦେବତାଙ୍କ      କାଚର ଅଟ୍ଟାଳି
ସମ ଦିଶୁଥିଲା ତାହା
ସମୁଦ୍ରମାନଙ୍କ      ପାତାଳ ମଧ୍ୟରୁ
ଉଠିବାର କି ସେ ସିଢ଼ି ।
ଶିବ ଶିର ଅବା      ଜଗଗଙ୍ଗା ହ୍ରଦେ
ହୋଇଥିଲେ ପରିଣତ
କିବା ଭୂତଳକୁ      ଖସି ରହିଥିଲା
ଏକସ୍ଥାନରେ ସଞ୍ଚିତ ।
ବସି ଯାଇଥିଲା      ଜମାଟ ବାନ୍ଧି କି
କୁମୁଦ ବନର ଶିରୀ
କିବା ଦ୍ରବୀଭୂତ      ହୋଇ ମରରୂପେ
ରାଜୁଥିଲା ହିମଗିରି ।
ସରୋବର ରୂପେ      ଶୋଭୁଥିଲା କିରେ
ତ୍ରିଭୁବନ ପୁଣ୍ୟରାଶି
ଥୋଇଥିଲା ଅବା      ଏକତ୍ରେ ସ୍ୱକାନ୍ତ
ଶରତର ପୌର୍ଣ୍ଣମାସୀ ।
ସ୍ଫଟିକ ସମାନ      ସ୍ୱଚ୍ଛ ସେ ଉଦକ
ଦେଖି ହେଉଥିଲା ମନେ
ମୁନିଙ୍କର ମନୋ—      ବୃତ୍ତିରେ ଧାତା କି
ଗଢ଼ିଥିଲେ ତା ସଦନେ ।

ତୀର ସୀମାଯାଏ ପୁରିଥିଲେ ସୁଧା
ତାହାର ଗଭୀର ଜଳ
ବାହାରରୁ ସ୍ପଷ୍ଟ ଦେଖାଯାଉଥିଲା
ଭିତର ଦ୍ରବ୍ୟ ସକଳ ।
ପ୍ରଭାକର ଭରେ, ପବନେ ଉତ୍ଥିତ
ସଲିଳ ଶୀକର ଜାଲ
ଜଳ ନୀଳବକ୍ଷେ ସୃଜୁଥିଲେ ସଦା
ଶକ୍ରଚାପ ମାଳ ମାଳ ।
ସ୍ୱର୍ଣ୍ଣକରେ ଦୀପ୍ତ ଅସଂଖ୍ୟ କମଳ—
କଳ୍ପ ଫୁଟିଥିଲା ତହିଁ
ଦିଶୁଥିଲା ଜଳ ତାହିଁ ବା ଶ୍ୟାମଳ
ପର୍ବତର ଛବି ବହି ।
ଗଭୀର ନୀରରେ ପଡ଼ି ରମ୍ୟ ତୀର
ତମାଳ ବନର କାନ୍ତି
ଜନମାଉଥିଲା ରଥାଙ୍ଗ ଦମ୍ପତି
ମନେ ତାହିଁ ଘନ ଭ୍ରାନ୍ତି ।
ଧନପତିଙ୍କର ଶୁଦ୍ଧାନ୍ତବାସିନୀ
ବନିତାଏ ଥରେ ଥରେ
ଜଳକେଳି ଆଶେ ଆସି ତାହିଁ ସୁଖେ
କ୍ରୀଡୁଥିଲେ ଆନନ୍ଦରେ ।
ଅନଙ୍ଗ ନଳୀରେ ସୁବର୍ଣ୍ଣର ଠୋଠା (୧)
ସମାନ ବର୍ତ୍ତୁଳାକାର
ତାଙ୍କ ସୁଗଭୀର ନାଭି ଗର୍ଭେ ନୀର
ଖେଳୁଥିଲା ବାରବାର ।
ଭଙ୍ଗୁଥିଲେ ତାହିଁ ଛିନ୍ନଭିନ୍ନ କରି
ମୃଣାଳନାଳ କୁଞ୍ଜରେ
ବନ୍ୟଜୀବେ ତାହିଁ ଜଳ ପିଉଥିଲେ
ପ୍ରବେଶି ତୃଷା କାତରେ ।

(1) Cartridge.

ଯାହୁଁ ବିଦ୍ୟାଧରେ ସ୍ୱର୍ଣ୍ଣ ଅର୍ଘ୍ୟସହ
ଦେଉଥିଲେ ଜଳାଞ୍ଜଳି
ଠାବେ ଠାବେ ତଟଳ ପଡ଼ିଥିଲ ସଦ୍ୟ
ରକ୍ତ କମଳର ଦଳ ।
ଜଳ ଦେବତାଏ ଯୋଡ଼ ଯୋଡ଼ ବସି
ତୋଳଣ ସ୍ୱର ଲଳତ
ସାନନ୍ଦ ମନରେ ଗାଉଥିଲେ ଯାହୁଁ
ବରୁଣଙ୍କ ଯଶୋଗୀତ ।
କୈଳାସୁଁ ଓହ୍ଲାଇ ଜଳପାନ ପାଇଁ
ପ୍ରମଥ ନିକର ଯାହୁଁ
ଶଳକ ମୃତ୍ତିକା ଲେଟ ଘଷିଥିଲେ
ଶିଳାରେ ଶିଳା ନଠାଇ ।
ମତ୍ତଗଜଙ୍କର ସନ୍ତରଣ କାଳେ
ଗଣ୍ଡରୁ ମଦ ବାହାରି
ଚନ୍ଦ୍ରାଙ୍କିତ କରି— ଥିଲା ସ୍ଥାନେ ସ୍ଥାନେ
ଯାହୁଁ ସର ସ୍ୱଚ୍ଛ ବାରି ।
ବନ ମୟୂରଙ୍କ ମେଳେ ମିଶି ଯାହୁଁ
ସ୍କନ୍ଦଙ୍କ ବାହନ କେକୀ
ନୀର ପାନ ଶେଷେ ହର୍ଷେ ନାଚୁଥିଲା
ମନୋହର ପୁଚ୍ଛ ଟେକି ।
ଜଳାର୍ଥୀ ଗଜଙ୍କୁ ଅନୁସରି ଯାହୁଁ
ଭବାନୀଙ୍କର କେଶରୀ
ନଖଶୂନ୍ୟ ବଢ଼ି ବଢ଼ ପଦ ଚିହ୍ନେ
ବର୍ମ୍ମ ଦେଇଥିଲା ଭରି ।
ଏ ନୀର ନିରେଖି କୁମାର ମାନସ
ତୃଷାରେ ହେଲା ତରଳ
ଜଳିଲେ କନ୍ଦର ପଛେ ଦାଉଡ଼ିବା
ଶ୍ରମ ମୋ ହେଲା ସଫଳ ।
ଏଥି ଅପି ମୁହିଁ ସୁନ୍ଦର ଦ୍ରବ୍ୟର
ଶେଷ ସୀମା ବଲୋକିଲି

ଚକ୍ଷୁ ଲଭି ସେହୁ      ଚକ୍ଷୁଫଳ ସିନା
ଏବେ ବନେ ଅରଜିଲ ।
ସୁଧାସମ ଏହୁ      ସଲିଳକୁ ସୃଜ
ଅମୃତ ପୁଣି ବରଚ
ପୁନରୁକ୍ତ ଦୋଷେ      ସ୍ୱ ସୃଷ୍ଟିକି ସିନା
ଦୂଷିତ କଲେ ବରଞ୍ଚି ।
ଦେବତା ବାଞ୍ଛିତ      ଏମାର ନରତ
ନିକଟେ ଲଭିବା ପାଇଁ
ଛାଡ଼ି ନ ପାରନ୍ତି      ସିନା କଇଲାସ
ନିବାସ ଗଉରୀ ସାଇଁ ।
ଏମନ୍ତ ସୁପେୟ      ସୁରଭିତ ଜଳ
ଉପେକ୍ଷି କମଳା ପତି
ତାହିଁକି କେଜାଣି      ଲବଣାମ୍ବୁଯୁକ୍ତ
ସମୁଦ୍ରେ କଲେ ବସତି ।
ପ୍ରଳୟ କାଳରେ      ସହାସେ ପଳାଇ
ପୃଥିବୀ ସିନ୍ଧୁ ସଲିଳେ
ଯକ୍ଷ କସ୍ୱହର      ଘୋଷା ଭୟେ ପକ୍ଷି
ପୁଣି ଧର ପଡ଼ିଥିଲେ ।
ପକ୍ଷିପାନ୍ତେ ସେବେ      ଏ ବସ୍ତୀର୍ଣ୍ଣ ସରେ
ସେକାଳେ ନାସିତା ଧର
ପଡ଼ି ନ ଥାନ୍ତେ ସେ      ସହସ୍ର ସହସ୍ର
ବର୍ଷେ କଦାପି ଧର ।
ଏହା ଶୁଣି ଅଶ୍ୱ      ଓଟ୍ଟାଳି ପଲ୍ୟାଣ (୧)
ଖୋଲି ତାକୁ ଦେଲେ ଛାଡ଼ି
କ୍ଷଣେ ଭୂତଳରେ      ଲୋଟି ଉଦ୍ୱେଳି
ସଘନେ ସେ ଦେଲା ଝାଡ଼ି ।
ମୁଖରୁ ଖଲୀନ (୨)      ଫେଇ ଅଶ୍ୱେ ନେଇ
ସରରେ ପିଆଇ ପାଣି

(୧) ଜିନ । (୨) ଲଗାମ ।

ପଦ୍ମ ପଦ ଛନ୍ଦ ଖାଇବାକୁ ଦେଲେ
ଶୈବାଳ ସଲକ୍ତଁ ଅଣି ।
ତହୁଁ ନଜେ ଜଳେ ପ୍ରବେଶି ଯୁବକ
ପଖାଳ ତନୁ ତ୍ୱରତେ
ଜଳଜାତ ଫଳ ମୂଳ ଅହରଣ
ଭକ୍ଷିଲେ ସନ୍ତୁଷ୍ଟ ଚତ୍ତେ ।
କ୍ଷୁଧାତୃଷା ନାଶି ଗୁଳ୍ମାପ୍ରତ ଲତା
ତଳରେ ବାଁଧି ଉପଲେ
ଅସ୍ତରଣ ରଚି ସ୍ୱହସ୍ତେ, ଶୋଇଲେ
ଜଳାର୍ଦ୍ର କମଳ ଦଳେ
ଅଳ୍ପକାଳ ପରେ ଶୁଣିଲେ ସେ ଶ୍ରାନ୍ତ
ଚକିତେ ନୃପନନ୍ଦନ
ବୀଣାନାଦ ସହ କର୍ଣ୍ଣରସାୟନ
ମଧୁର ସଙ୍ଗୀତ ସ୍ୱନ ।
ଘାସ ଗ୍ରାସ ଛାଡ଼ି ଇନ୍ଦ୍ରାୟୁଧ ଟେକି
ଶ୍ରବଣ ଯୁଗଳ ତାର
ଉଦ୍‌ଗ୍ରୀବେ ଉଲ୍ଲାସେ ଉତ୍ତର ଦିଗକୁ
ଅନାଇଲା ବାରବାର ।
ସଙ୍ଗୀତ ସ୍ୱରକୁ ଲୋକ ବାସସ୍ଥାନ
ଅନୁମାନ ନୃପସୁତ
ତୁରଙ୍ଗେ ଅରୋହି ଗଲେ ସେ ଦିଗକୁ
ଉପତେ ଅଶ୍ୱ ତ୍ୱରିତ ।
ଗାନପ୍ରିୟ ମୃଗେ ଅପାଟକ ସ୍ୱଭେ
ଅଶ୍ୱ ଆଗେ ଆଗେ ଧାଇଁ
ଗୀତସ୍ୱର ଲକ୍ଷି ଦେଉଥିଲେ ତାଙ୍କ
ଗନ୍ତବ୍ୟ ପଥ ଦେଖାଇ ।
ପୁଷ୍ପରେଣୁବାହୀ ସେବାଲେ ଶୀତଳ
ସଜଳ ଶୀକରସହ
କୈଳାସ ଶଇଳ ସ୍ପର୍ଶେ ସୁକୋମଳ
ବହୁଥିଲା ଗନ୍ଧବହ ।

ଶିବକୋଳେ ସୁପ୍ତ ଶିବାଙ୍କ ସୁନ୍ଦର
କର୍ଣ୍ଣପଲ୍ଲବ କମ୍ପାଇ
ଶିଖୀଧ୍ୱଜଙ୍କର ବାହାନ ଶିଖୀର
ଶିଖାମାଳ ଦୋହଲାଇ ।
ହର ବୃଷଭର ରୋମନ୍ଥନଜାତ
ଘନ ଫେଣବନ୍ଧ ହର
ଷଷ୍ଠବାଳାଙ୍କର କୁଞ୍ଚିତ କୁନ୍ତଳ
କଳାପେ ଥରେ ବହର ।
ଶିଥିଳ କରଣ କଣ୍ଠ କର୍ଣ୍ଣ ନତ
ସୁଚିରନିତ୍ତ ଦୂର୍ବାଦଳେ
ପବନ ରୁଦ୍ରାକ୍ଷ ପୁଷ୍ପର ପରାଗ—
ଗନ୍ଧ ବର୍ଷି ଦେଇ ଚଳେ
ଭବଙ୍କ ବଶାଳ— ଜଟା-ସ୍ତରେ-ବ୍ୟସ୍ତ—
ଶ୍ୟାମ ଭୁଜଙ୍ଗମେ ପିତ (୧)
ପାଂଗଶପୁ ବାତ କିଶୋରମଣିଙ୍କ
ହର ଲେଉଥିଲା ଚିତ୍ତ ।
କର୍ପୂର ଅଗୁରୁ ବୃକ୍ଷେ ମହମହ
ବାସୁଥିଲା ସେ ସରଣୀ
ଅନୁଭବ ସେହି ସୌରଭ ସାଗରେ
ବଲେକିଲେ ଯୁବାମଣି
ସୁଲଳିତ ଶ୍ୱେତ- ଶିଳା ସ୍ତମ୍ଭ ପରେ
ସୁନ୍ଦର ଦିବ୍ୟ ମଣ୍ଡପ
ତଳେ ଶିବମୂର୍ତ୍ତି କୁଣ୍ଡଳୀଭୂତ କିବା
ତ୍ରିଭୁବନର ତପ ?
ଗଢ଼ା ହୋଇଥିଲା ସେ ପ୍ରତିମା ରମ୍ୟ
ଧବଳମଣିଶିଳାରେ
ଜଟାଜୁଟସହ ଜଡ଼ି ଯାଇଥିଲା
ମସ୍ତକ ଫଣୀ ଫଣାରେ ।

(୧)—ପିତ-ପାନକ ।

ଶୋଭୁଥିଲା ତହିଁ ସୁରଧୂନୀ ଜଳେ
ପୁଷ୍ପିତ ଶ୍ୱେତ କମଳ
ସଦ୍ୟ ନହ୍ଲାତ ସେ କମଳ ଦଳରୁ
ଝରି ପଡୁଥିଲା ଜଳ ।
ଧବଳ କମଳ ପାଖୁଡ଼ା ସେ ମୂର୍ତ୍ତି
ମସ୍ତକରେ ମନୋରମ
ଉପୁଜାଉଥିଲା ମୁକ୍ତାମୟ ମଞ୍ଜୁ
ମଣି ମୁକୁଟର ଭ୍ରମ ।
ପ୍ରତିମା ସମ୍ମୁଖେ ଧ୍ୟାନମଗ୍ନ ପରି
ଅନନ୍ୟ ଏକ ରୂପସୀ
ଉତ୍ତର ଦିଗକୁ ବଦନ କରେଇ
ପଦ୍ମାସନେ ଥିଲା ବସି ।
ଲଳିତା ଲଳିତ ଶରୀରୁ ଅଦ୍ଭୁତ
ସୌନ୍ଦର୍ଯ୍ୟ ପ୍ରବାହ ବହି
ମନ ନେତ୍ରରଞ୍ଜି ଦେଉଥିଲା ସେହି
କାନନ ସ୍ଥଳୀକୁ ଧୋଇ ।
ପ୍ରଚଣ୍ଡ ପବନେ ଉଦ୍‌ବେଳିତ କ୍ଷୀର—
ସାଗରର ସ୍ରୋତଶ୍ରେଣୀ
ଶାରଦ ପୂର୍ଣ୍ଣିମା— ଚନ୍ଦ୍ର ଜ୍ୟୋସ୍ନାପରି
ଶୋଭୁଥିଲା ବନୋଦନୀ ।
କଣୋଗ୍ରକୋମଳ କାନ୍ତିରୁ ଲାବଣ୍ୟ
ପଡୁ ଉଠି ଅହର୍ନିଶି
ଝଲସାଇ ଦଶ ଯାଉଥିଲା ଶୁଭ୍ର
କୈଳାସଗିରିରେ ମିଶି ।
ଶ୍ୱେତପ୍ରଭାପୁଞ୍ଜେ ବେଷ୍ଟିତ ଥିବାରୁ
କୃଶାଙ୍ଗୀ କୃଶଶରୀର
ସ୍ପଷ୍ଟଭାବେ ଦେଖା ଯାଉ ନଥିଲାତ
ପ୍ରତ୍ୟେକ ଅଂଶ ତହିଁର ।
ଏଣୁ ମହୋଜ୍ଜ୍ୱଳ ଚନ୍ଦ୍ରରଶ୍ମି ସମ—
ପ୍ରଭାରେ ସେ ସ୍ଥୂଳଶୀଳା

ଗୋରସ ମିଶ୍ରିତ  ନୀରରେ ନିମଗ୍ନ
ହେଲପର ଦିଶୁଥିଲ ।
ଗୌରବାସ ପିନ୍ଧି  ବସି ଗଙ୍ଗସଙ୍ଗୀ
ଧବଳ ଶିଳାସଦନେ
ଶୋଭାପାଉଥିଲ  ଆଚ୍ଛାଦିତ ହେଲ
ପଗ୍ରଏ ଶାରଦ ଘନେ ।
ମନେ ହେଉଥିଲ  ଶରୀର ନିର୍ମାଣ
ଉପଯୋଗୀ ଦ୍ରବ୍ୟ ଯହିଁ
ବିଧାତା କେବଳ  ଶୁଭ୍ର ଉପାଦାନେ
ତା ଦେହ ଥିଲେକି ଗଢ଼ି ?
ମୂର୍ତ୍ତିମତୀ ଦକ୍ଷ—  ଯଜ୍ଞ-ବିଘ୍ନମାନ
କିବା ପ୍ରମଥଙ୍କ ଭୟେ
ଅସ୍ତ୍ରରକ୍ଷାପାଇଁ  ପଡ଼ିଥିଲେ ଆସି
ଶିବଙ୍କ ପଦ ଆଶୟେ ।
କିବା ମନ୍ମଥର  ଦେହଲାଭ ଲାଗି
ତାହାଙ୍କ ପ୍ରସନ୍ନ ଆଶେ
ଭସ୍ମାବୃତ ହୋଇ  ତପ ସାଧୁଥିଲେ
ରୁଦ୍ରଦେବୀ ପଦ ପାଶେ ?
ମିଳିବାକୁ ଅବା  ପରିଚିତ ଭବ—
ଭାଲ-ଚନ୍ଦ୍ରମା ସହିତ
କ୍ଷୀର-ସାଗରର  ଅଧିଦେବୀ ତହିଁ
ହୋଇଥିଲେ ଉପନୀତ ?
ରହିଥିଲେ କିବା  ନାରୀମୂର୍ତ୍ତି ଧରି
ହରଅଙ୍ଗ ଭସ୍ମକୁଳ ?
ନଗେନ୍ଦ୍ର ବାଳାଙ୍କ  ହୃଦ ପବିତ୍ରତା
ଅବା ହୋଇଥିଲ ମୂଳ ?
ଧଳପୁର ଭୁଲି  ଅବା ଥିଲ ତହିଁ
ଶଙ୍କରଙ୍କ କୀର୍ତ୍ତିରାଶି
ରାବଣ ଭୟେ କି  ଲୁଚିଥିଲ ତହିଁ
କୈଳାସର ଶୋଭା ଆସି ?

ଅଥବା ନବୀନ　　　ମୂର୍ତ୍ତି ଶଙ୍କରଙ୍କ
　ସାଧନାରୁ ସମୁଦ୍‌ଭୂତ
ଅନ୍ଧକାର ଭସ୍ମେ　　　ଅବା ଏକଠାବେ
　ଶୁକ୍ଳପକ୍ଷ ପୁଞ୍ଜୀଭୂତ ।
ମନେ ହେଉଥିଲା　　　ଦେଖି ସୁଶୀଳାର
　ଶରୀର ଲାବଣ୍ୟ ଠାଣି
ଗଜଦନ୍ତ ଘଟେ　　　ଶଙ୍ଖ ଉପାଦାନେ
　ଗଢ଼ି କି ଦେବ ବଜାଣି ।
ମୁକୁତା ରଜର　　　ପୁଟେଦେଇ ମୃଦୁ
　ଚନ୍ଦ୍ରମା କର ତୂଳୀରେ
ଉଜ୍ଜ୍ୱଳ କରଲ　　　ରଜତ ରସରେ
　ଧୋଇ ଅଛ ସବଗରେ ।
ପୂର୍ଣ୍ଣି ଅମୃତର　　　ମୃଦୁଳ ମଞ୍ଜୁଳ
　ଫେନରେ ମାଜି ତାହାକୁ
ତୁଚ୍ଛ କରଥିଲେ　　　ସିନା ସେ ନିଜର
　ସୃଜିତ ସେତେ ଶୋଭାକୁ ।
ଉଦ୍ଭାସିତ ତଳ　　　ବିଦ୍ୟୁତ-କମଳ—
　ତେଜୋମୟ ରେଖାସମ
ତାମ୍ରବର୍ଣ୍ଣ ଜଟା　　　ଶିରେ ଧରି ଧନୀ
　ଦିଶୁଥିଲା ମନୋରମ ।
ଅନୁମାନ ହୁଏ　　　ନବୋଦିତ ରବି
　କିରଣୁଁ ଛାଣି ସୁଷମା
ରଚିଥିଲେ କିବା　　　ବାଳାର ରୁଚିର
　ଶିରେରୁହ ବିଶ୍ୱକର୍ମା ।
ଶୃଙ୍ଗାର ଧବଳ　　　ପ୍ରସ୍ତର ଫଳକେ
　ସ୍ଥିରୁ ଚନ୍ଦ୍ରକଳା ବନ୍ଧି
ତୁଷାରମଣ୍ଡିତ　　　ହିମ ମହୀଧର
　ମେଖଳା ଯଥା ଦିଶଇ ।
ତେଜେ ଢଳ ଢଳ　　　ବିକଚ ପଦ୍ମର
　କେଶର ଗୁଣ୍ଡର ପରି

ସ୍ଥଳପଟେ ଭଲ ଭସ୍ମର ତିଳକ
ଶୋଭୁଥିଲା ବିମ୍ବାଧରୀ ।
ସ୍ମିତ ପଡ଼ି ପଡ଼ି ସ୍ପନ୍ଦିତ ଓଷ୍ଠରେ
ଏକବୃନ୍ତେ ଧମା ବୃନ୍ଧି
ଦେଖିଥିଲ କିବା ଦନ୍ତ ରଶ୍ମି ଯୋଗେ
ଶିବଙ୍କୁ ଧ୍ୟାନ କରଇ ?
ପାଟଳ ଅଇଁଳା ଫଳପରି ସ୍ଥୂଳ
ସୁନ୍ଦର ମୁକୁତା ହାର
ଜପାମାଳ ରୂପେ ଶୋଭୁଥିଲା ଆହା
କମ୍ବୁକଣ୍ଠୀ କଣ୍ଠେ ତାର ।
ମଣ୍ଡଳେ ମଣ୍ଡିତ ଚନ୍ଦ୍ରବିମ୍ବେ ଯଥା
ଶରଦ ପୂର୍ଣ୍ଣିମା ରାତି
ତେସନ ମଞ୍ଜୁଳ ମୁକୁତା ମାଳରେ
ଶୋଭୁଥିଲା ଚମ୍ପାଗୋରୀ ।
ଗୋଲକ ଧାମର ଦ୍ୱାର କଳସର
ସମାନ କାନ୍ତି ସମ୍ପନ୍ନ
ହର ଶିର ଗଙ୍ଗା ପଦ୍ମକଳି ପରି
ମଞ୍ଜୁଳ ଯୁଗଳ ସ୍ତନ ।
ଶୋଭା ପାଉଥିଲା ବଚନ ଭୂତରେ
ଚନ୍ଦ୍ରମୁଖୀ ବକ୍ଷସ୍ଥଳେ
ଭାସୁଥିଲେ କିବା ରଥାଙ୍ଗ ମିଥୁନ
ସୁପବନ ଗଙ୍ଗାଜଳେ ?
ଭ୍ରମର ସନ୍ନିଭ ସୁନ୍ଦର ଅଳକ
ଦେବଦାରୁର ବଲ୍କଳେ ।
ଲମ୍ବା ହୋଇଥିଲା ଘନକେଶୀ ଖୋଷ
ଉରସିଜ ବେନ ବଳେ ।
ଉଦ୍‌ଗ୍ରୀବ ବସ୍ତ୍ର ଉଚ୍ଚ କରୁଥିଲା
ତାହାର ଉପରେ ରହୁ
ଉଚ୍ଚ ପଦାର୍ଥକୁ ଢାଙ୍କିଲେ ଅଧିକ
ଉଚ୍ଚତା ଦିଶା ବଢ଼ଇ ।

ଶଙ୍ଖ ବଳୟରେ ଶୋଭା ପାଉଥିଲା
ତା'ର ରମ୍ୟ ମଣିବନ୍ଧ
ପ୍ରମତ୍ତ ମାତଙ୍ଗ ଦନ୍ତରେ ଯେମନ୍ତ
ରଜତ ଚୂଡ଼ି ପିନ୍ଧ ।
ପଡ଼ୁଥିଲା ବାଲା ନିତମ୍ବ ବସନ
ଚରଣ ତଳେ ଓହ୍ଲଇ
କୁମୁଦ ଦଳରେ ରହୁଥିଲା ସୁଧା
କିବା ଚନ୍ଦ୍ରରୁଁ ଗଳି ।
ବହାର ବନ୍ଧନ ସୁଶିକ୍ଷିତ ବାଘ
ଶିଷ୍ୟ ସମ ସଦାଶୟ
ଅବସରକ୍ରମେ ପାଖରେ ପ୍ରବେଶି
ନବ ଯୌବନ ସମୟ ।
ବସ୍ତ୍ର ଶୋଭସାର ମହୁଲାମଣିର
ଶ୍ରୀଅଙ୍ଗ ଦେଶକୁ ଧରି
ଦେଉଥିଲା ନାନା ଗୀର୍ବାଣ ଗୌରବ
ସୌନ୍ଦର୍ଯ୍ୟ ସମ୍ଭାରେ ଭରି ।
ପୁଣ୍ୟରେ ବର୍ଦ୍ଧିତ ଲାବଣ୍ୟ ଲତାରେ
ଫୁଟିଥାନ୍ତା ଯେବେ ଫୁଲ
ହୋଇଥାନ୍ତା ସିନା ମଞ୍ଜୁବାଣୀଙ୍କର
କାନ୍ତି ସହିତରେ ତୁଲ ।
ଗଜଦନ୍ତେ ଗଢ଼ା ବୀଣାଖଣ୍ଡ ନିଜ
କନ୍ୟା ପରି କୋଳେ ଧରି
ଦକ୍ଷିଣ କରରେ ତା'ର ତାର ସ୍ୱନ
ବଜାଉଥିଲା ସୁନ୍ଦରୀ ।
ତପସ୍ୱୀ ଧାରଣେ ଧନ୍ୟା ଧବଳାଙ୍ଗୀ
ସୁରମ୍ୟ କାନ୍ତିର ସ୍ଫୂର୍ତ୍ତି
ଜଣା ଯାଉଥିଲା ଗନ୍ଧର୍ବ ବଦ୍ୟାର
ସଚେତନ ସଜୀବ ମୂର୍ତ୍ତି ।
ମଣିମୟ ସ୍ତମ୍ଭ— ମାଳେ ମହଲାର
ମଞ୍ଜୁ ପ୍ରତବମ୍ବ ରେଖା

ସଙ୍ଗୀତ ପ୍ରବୀଣା ସହଚରୀବୃନ୍ଦ
ପର ଯାଉଥିଲି ଦେଖା ।
ହରଙ୍କ ବିଶାଳ ବକ୍ଷେ ପଡ଼ୁଥିଲି
ସୁନ୍ଦରୀର ପ୍ରତିଛବି
ଭକ୍ତିଭରେ ସେ କି ପଶୁଥିଲି ତାଙ୍କ
ହୃଦୟ ଭିତରେ ଯାଇ ?
ବୀଣାଧ୍ୱନି ସହ ଗାଉଥିଲି ଧନୀ
ମହେଶ ସ୍ତବ ସୁସ୍ୱରେ
କି ସାଧନା କରୁ— ଥିଲି କେ କହିବ
ଏକାକୀ ଏକଧ୍ୟାନରେ ।
ନ ଥିଲି ମମତା ଅହଙ୍କାର କାହିଁ
ନ ଥିଲି ତଳେ ବିଦ୍ୱେଷ.
ଥିଲି ଅମାନୁଷୀ ଅଦ୍ଭୁତ କେବଳ
ଥିଲି ଅମାନୁଷୀ ବେଶ ।
ହୋଇ ନଥିଲେହେଁ ସ୍ୱର୍ଗବାସୀ ହେତୁ
ସମ୍ପୂର୍ଣ୍ଣ ବୟଃ କଳନା
ଅଷ୍ଟାଦଶ ବର୍ଷ କିନ୍ତୁ ଊଣା ବୋଲି
ସ୍ପଷ୍ଟ ଯାଉଥିଲି ଜଣା ।
ସରେ ସରୋଜିନୀ ଧ୍ୟାନକରେ ଯଥା
ରବି ବିମ୍ବକୁ ସତତ
ନିବିଷ୍ଟ ମନରେ ସାଧୁଥିଲି ବାଳା
ଶିବ ଉପାସନା ବ୍ରତ ।

# ସପ୍ତମ ସର୍ଗ

କହିଲେ ଜାବାଲି                    ଶୁଣ ଏ ବଚନ
ଚରିତ ତପସ୍ୱୀଗଣ
ତୁରଙ୍ଗୁ ଓହ୍ଲାଇ                    ତରୁତଳେ ତାକୁ
ବାନ୍ଧିଲେ ନୃପନନ୍ଦନ ।
ଯଥାବିଧି ସେହୁ                    ଦେଉଳ ଭିତରେ
ପଶି ଭକ୍ତ ପଦପଦେ
ସାଷ୍ଟାଙ୍ଗେ ପ୍ରଣମି                    ପ୍ରଥମେ ପ୍ରମଥ—
ନାଥଙ୍କ ପବିତ୍ରପଦେ ।
ବିଲୋକିଲେ ତହୁଁ                    ତରୁଣୀର ଦିବ୍ୟ
ସୁଷମା ସ୍ଥିର ଦୃଷ୍ଟିରେ
ନପଡ଼ିଲା ନେତ୍ର                    ପଲକ ରହିଲା
ଲାଗି ସେ ଦିବ୍ୟମୂର୍ତ୍ତିରେ ।
ନବୀନ ବୟସ,                    ଅଲୌକିକ ରୂପ
ସହ ଶାନ୍ତର ଆଶ୍ରୟ
ହେରି ରମଣୀର,                    କୁମାରଙ୍କ ମନେ
ଜନ୍ମିଲା ମହା ବିସ୍ମୟ ।
ଭାବିଲେ ସୃଷ୍ଟିର                    ବିଚିତ୍ର ରହସ୍ୟ
ବୁଝିବା ବଡ଼ କଠିନ
କେତେ ନୂଆକଥା                    ପ୍ରାଣୀଗଣେ ଛଳ
ଘଟୁଅଛି ଅନୁଦିନ ।
କାଳର ଦୁହିଙ୍କୁ                    କୌତୁକେ ଗୋଡ଼ାଇ
ଅନାୟତ୍ତେ ଏଥି ପଶି
ବିଲୋକିଲି ସିନା                    ଅନାହୂତ ଭାବେ
ଏ ସ୍ୱର୍ଗୀୟ ରୂପରାଶି ।
ନାରୀ ନୁହଇ ଏ                    ଅମର ସୁନ୍ଦରୀ
ଏଥିରେ ନାହିଁ ସଂଶୟ
ତ୍ରିଦଶ ସରଣୀ                    ଛାଡ଼ ନଗାମଣି
ହେବେ କି ମର୍ତ୍ତ୍ୟେ ଉଦୟ ?

ସେକାଳେ ମନ୍ଦର ଭିତରେ ପଢନ୍ତ
ଶିବ ସ୍ତବ ପାଠ ସାର
ମଧୁର ନାଦିନୀ ବୀଣାଧ୍ୱନି ସଙ୍ଗ
ମୌନବ୍ରେଇ ସୁକୁମାରୀ
ଭ୍ରମର ଝଙ୍କାର ଶୂନ୍ୟ ଜ୍ୟୋସ୍ନାଲୋକେ
ବନେ ଯଥା କୁମୁଦିନୀ
ତେସନ ଶୋଭିଲ ମଣିଶିଳା ସଦ୍ମେ
ଶୁଭ୍ରାଙ୍ଗୀ ଶୋଭଶାଳିନୀ ।
ପ୍ରଦକ୍ଷିଣ ସାରି ଉଠି, ମହେଶଙ୍କୁ
ପ୍ରଣମି ଭକ୍ତିରେ ବାଳା
ଫେରି ପକାଇଲ ଯୁବକ ଉପରେ
ସୁକୋମଳ ଦୃଷ୍ଟିମାଳା ।
ସେ ଚାହାଣି ନୀର ଜଳେ ଧୋଇଲା କି
ରାଜପୁତ୍ର କଳେବର
ଅଥବା ଦେଲା କି ସେ ଦୃଷ୍ଟି ପ୍ରସ୍ତରେ
ତାହାଙ୍କୁ ଅଖଣ୍ଡବର ।
ଶିଷ୍ଟାଚାରେ ତୋଷ କୁଶଳ କହାଇ
ମଧୁରସ୍ୱରେ ସୁଶୀଳା
ଅତିଥି ସତ୍କାର ପାଇଁ ସଦନକୁ
କୁଟୀରକୁ ଆମନ୍ତ୍ରିଲା ।
ସମ ଶିଷ୍ଟାଚାରେ ପ୍ରଣମି ତାହାଙ୍କୁ
ସୁଶୀଳ ସଦନକୁ ଚଳେ
ପଛେ ପଛେ ଗଲ ପ୍ରବେଶିଲେ ଏକ
ରୁଚିର ଗୁହା ମୁଖରେ ।
ନବଢ଼ ତମାଲ ତରୁରେ ଶ୍ୟାମଳ
ଦିଶୁଥିଲା ଦ୍ୱାର ତାର
ଗମ୍ଭୀର ଓଁକାର ସମ ଶୁଭୁଥିଲା
ଅଳିକୁଳର ଝଙ୍କାର ।
ତପସ୍ୱୀ ବାଳାକୁ କଥବା ପଲ୍ଲବ
ପୁଷ୍ପ ଉପହାର ଦେଇ

ସୁଦୂର ବାହିନୀ ଗୈରନଦୀ ପାଖେ
ବହୁଥିଲା ଢେଉଁ ଢେଉଁ ।
ଅନଳେ ଚଞ୍ଚଳ ଅଚ୍ଛୁଦ୍ର ତାର
ଜଳୀୟ ବାଷ୍ପ ପଟଳ
ମନ୍ଦାର ପରାଏ ପଶି ଯାଉଥିଲା
ଗୁହା ଭିତରେ ଚଞ୍ଚଳ ।
ଦ୍ୱାର ସମ୍ମୁଖରେ ସାନ୍ଦ୍ର ହିମକଣା
ଉଡ଼ି ବୁଲୁଥିଲା ସଦା
ଜଣାଯାଉଥିଲା ଝୁଲୁଛି କି ତହିଁ
ମୁକ୍ତାମାଳର ପରଦା ।
ଶୁଣିଲା ନଡ଼ଆ ଛାଲର କଟାଉ
ଭିକ୍ଷାପାତ୍ର ସହିତରେ
ଥୁଆ ହୋଇଥିଲା କମଣ୍ଡଳୁ ଗେରୁ
ବସନ ଶିଳା ଉପରେ ।
ପଡ଼ିଥିଲା ତହିଁ ପନାଦି ପଟରେ
ଗ୍ରଥିତ ଏକ ପଲଙ୍କ
ଦିଶୁଥିଲା ଗାଢ ଭସ୍ମରେ ଧୂସର
ସେହି ପଲଙ୍କର ଅଙ୍କ ।
ଚନ୍ଦ୍ରାନନୀ ଚନ୍ଦ୍ରା— ପୀଡ଼ଙ୍କୁ ବସାଇ
ଗୁହାଦ୍ୱାର ଶିଳାସନେ
ବାରଣ ନମାନ ଅର୍ଘ୍ୟଜଳ ଦେଇ
ସତ୍କାର କଲା ଯତନେ ।
ପାଷାଣ ଉପରେ ବସି କିଛି କାଳ
ମଉନ ମୁଖେ ମହିଳା
ଗୋଟି ଗୋଟି କରି କୁମାରଙ୍କୁ ତହିଁ
ସବୁକଥା ଜିଜ୍ଞାସିଲା ।
ଅନୁରୋଧେ ତାର ତାରାପୀଡ଼ ସୁତ
ମୂଳରୁ ଆରମ୍ଭ କରି
ଘଟିଥିଲା ପୂର୍ବ— ଚରିତ ସେତେକ
କହିଲେ ସବୁ ଖବର ।

ଅକଣ୍ଠି କାମିନୀ ଫଳ ମୂଳ ଆଣି
କୁଟୀର ଭିତରୁ ତାର
ଦୁଃଖିନୀ ସତ୍କାର ସଦୟେ ନେବାକୁ
ନିବେଦିଲ ବାରବାର ।
ସୁନ୍ଦରୀ ଆଗ୍ରହେ ଯଥାବିଧି ନୀତ
ବଢ଼ାଇ ପାଖକୁ ଯାଇ
ଅଭ୍ୟର୍ଥନା ଲଭି ବସି ଯୁବା ତାର
ସସଂତ ଇଙ୍ଗିତ ପାଇ
କହିଲେ ବିନୟେ କ୍ଷମିବ ସେବେଳି
ଦେବି ! ମୋର ଚପଳତା
ସଂଶୟ ମୋଚନ ଲଗି ଶୁଭଗିନୀ
ପଚ୍ଛରିବ କିଛି କଥା ।
ତୁମ୍ଭର ଅପାର ଅନୁଗ୍ରହ ମୋର
ହୃଦେ ଶୋକ ଉପୁଜାଇ
ସବଳେ ପ୍ରେରଇ ବିଳମ୍ବ ନସହି
ପ୍ରଶ୍ନ କରିବାର ପାଇଁ ।
ଏକତ୍ର ରହିଲେ ଅଳ୍ପ ସମୟରେ
ହୋଇଯାଏ ପରିଚୟ
ପରସ୍ପର ବ୍ୟବ— ହାରରେ ଅଚିରେ
ଜନ୍ମଇ ତହିଁ ପ୍ରଣୟ ।
ସେ ପ୍ରଣୟ ପୁଣି କ୍ଷଣକେ ମନରେ
ଜନମାଇ ବାତ୍ସଲତା
ଇଚ୍ଛଇ ଶୁଣିବା ତାଇଁଙ୍କ ପ୍ରିୟର
ହୃଦୟ ବେଦନା କଥା ।
କହିବାକୁ ଏଣୁ ବାଧା ନାହିଁ ସେବେ
ହୃଦୟ କ୍ରନ୍ଦଇ କ୍ଳାନ୍ତ
ଅନୁକମ୍ପା ବହି କହେ ଶୋକମୟୀ
ନିଜର ପୂର୍ବ ବୃତ୍ତାନ୍ତ ।
ଜନ୍ମ ଲଭି ତୁମ୍ଭେ କେଉଁଦେଶ ସାଧ୍ୱୀ !
କରିଅଛ ପବିତ୍ରିତ

କପାଇଁ କୁସୁମ କୋମଳ ବୟସେ
ତପେ ବଳାଇଛ ଚିତ୍ତ ?
ଦାସଦାସୀପୂର୍ଣ୍ଣ ସୁଖର ସଦନ
ଛାଡ଼ି କପାଁ ଶୈଳବନେ ?
ରହୁଛ ଏକାକୀ ହିଁସ୍ର ଜନ୍ତୁପୂର୍ଣ୍ଣ
ଏହି ଜନଶୂନ୍ୟ ବନେ ?
କାହିଁ ଏ ଅପ୍‌ସରୀ ନନ୍ଦିତ ଅନିନ୍ଦ୍ୟ
ଦେବତା ସ୍ୱର୍ଗୀୟ ଆକୃତି
କାହିଁ ଦୁର୍ନିବାର ଇନ୍ଦ୍ରିୟମାନଙ୍କ
ବିଷମ ବେଗ ନିବୃତ୍ତି ।
କାହିଁ ଏ ନବୀନ କୋମଳ ବୟସ
କାହିଁ ବା ତପ କଠୋର ।
କହ, ନବନୀତ ପିଣ୍ଡୁଳାକୁ କିପାଁ
ଅନଳେ ପରୀକ୍ଷା କର ?
ଏ ବଡ଼ ଆଶ୍ଚର୍ଯ୍ୟ ଜଗତ ମନକୁ
ସ୍ୱର୍ଗସ୍ପୃହା ପରିହରି
କପାଁ ଭସ୍ମବୋଳ ଦେହେ ଧବଳିମା
ଧରିଅଛ ବିମ୍ବାଧର !
ଚନ୍ଦ୍ରାପୀଡ଼ ଗୀରେ ବିଷାଦେ କାତରେ
ଝଲକୁ ଆନନ ପୋଛି
ଦୀର୍ଘଶ୍ୱାସ ତେଜି ମୁଦ୍ରିତ ନୟନେ
କାନ୍ଦିଲ କ୍ଷଣେ ଯୁବତୀ ।
ମଲ୍ଲିକଢି ନିଭ ବିନ୍ଦୁ ବଡ଼ ବଡ଼
ଅଶ୍ରୁବିନ୍ଦୁ ଅବିରଳ
ଝରାଇଲ କ୍ଷଣେ ମହିଳା ମଣିର
ପାଟଳ ଗଣ୍ଡମଣ୍ଡଳ ।
ଯେ ଶ୍ୱେତକବିନ୍ଦୁ ବିଚ୍ଛିନ୍ନ ହାରରୁ
ଗଳିତ ମୁକୁତା ବତ
ଖସି ଲକ୍ଷୀଗଲ୍ଲ ପୟୋଜ ଆବୃତ
ବଲ୍କଲ ପରେ ସନ୍ତତ ।

ଝୁଲିଲେ କୁମାର  ଧନୁଷ୍ଠରୁ ବଳି
କିଏ ଅଛ ବଳୀୟାର
ଏଭଳି ମଧୁର  ମୂରତିରେ ସୁଦ୍ଧା
, ତାହାର କ୍ରୂର ବେଭାର ।
ଜଗତରେ ଯେତେ  ପ୍ରାଣୀ ଦୁଃଖଠାରୁ
କେବେ ତାଙ୍କ ମୁକ୍ତି ନାହିଁ
ସୁଖ ଦୁଃଖ ବେନି  ଅବିରଳ କ୍ରମେ
ବସ୍ତ୍ରେ ବୁଲୁଛନ୍ତି ଧାଇଁ ।
ଅଗ୍ରତ ଥିଲେହେଁ  ଜାଣିବାକୁ ଏହି
ରହସ୍ୟମୟ ଘଟଣ
ଦେଖିଲେ ନିଜକୁ  ହେଲେ ବୋଲି ବାମା
ଶୋକ ସ୍ୱ ଖର କାରଣ ।
ନିବେଦିଲେ ଖେଦେ  କହିବାକୁ ଯେବେ
ମନ ହେଉଅଛି ଦହି
ଦୁନିହ ସେ କଥା  ଶୁଣିବାକୁ ମନ
ବଳୁ ନାହିଁ ଦୟାମୟି !
ଅଞ୍ଜଳୀରେ ଭରି  ନିକଟ ନିର୍ଝରୁ
ଆଣି ସୁଶୀତଳ ଜଳ
ପ୍ରଦାନିଲେ ତାକୁ  ପ୍ରକ୍ଷାଳନ ପାଇଁ
ମଳିନ ମୁଖମଣ୍ଡଳ ।
ନୟନ ପଖାଳି  ମୁଖପଦ୍ମ ପୋଛି
ପିନ୍ଧିଲି ବାସ କାନରେ
ଦୀର୍ଘଶ୍ୱାସ ଡେଜି  ଉକ୍ତିଲି ରମଣୀ
ବଚନ ମଧୁର ଗୀରେ ।
ରାଜପୁତ୍ର ! ମୁହିଁ  ଅତ୍ୟନ୍ତ ପାପିନୀ
ଅକଥ୍ୟ କ୍ରୂର ହୃଦୟ
ଶୁଣିବା ଅଯୋଗ୍ୟ  ମୋର ଏ ଅଜନ୍ମ
ବୈରାଗ୍ୟ ବାର୍ତ୍ତାନିଚୟ ।
କିଛି ଫଳ ନାହିଁ  ଜାଣି ସେ କାହାଣୀ
ବଢ଼ିବ କଷ୍ଟ କେବଳ

ତଥାପି ଅସ୍ଥହ ଜନମିଛ ଯେଣୁ
କହୁଛି ଶୁଣ ସକଳ ।
ପଢ଼ିଛ ପୁରାଣେ ସ୍ୱର୍ଗରେ ଅଛନ୍ତି
ଅପ୍ସରୀ ନାମେ କୁମାରୀ
ତାହାଙ୍କ ବଂଶରେ ଜନ୍ମିଥିଲେ ପୂର୍ବେ
ଚିତ୍ରରଥ ଧନୁର୍ଦ୍ଧାରୀ ।
ଖଡ୍‌ଗର ବରଣେ ଶ୍ୟାମବର୍ଣ୍ଣ ସ୍ୱୀୟ
ହସ୍ତେ ଶତ୍ରୁ ପରାଭବ
ଭୁଜବଳେ ସେହୁ ଗନ୍ଧର୍ବମାନଙ୍କ
ଆଧିପତ୍ୟ ଥିଲେ ଲଭି ।
କିଂପୁରୁଷ ନାମେ ଏକ ବର୍ଷ ଅଛି
ଭାରତବର୍ଷ ଉତ୍ତରେ
ରାଜଧାନୀ ତାଙ୍କ ରାଜୁଥିଲା ତହିଁ
ହେମକୂଟ ଗିରିପରେ ।
ଚୈତ୍ରରଥ ବନ ଧରଚ ପୂର୍ବରେ
ଚିତ୍ରରଥ ଖଚରବର
ବହୁ ପରିଶ୍ରମେ ଖୋଳିଥିଲେ ଏହୁ
ବିଶାଳ ଅଚ୍ଛୋଦ ସର
ତାହାଙ୍କ ଅନୁଜ ହଂସ ନାନାବିଧ
କଳାବିଦ୍ୟାରେ ମଣ୍ଡିତ
ବରିଥିଲେ ସେହୁ ହଂସକୁ ଗଉରୀ
ନାମରେ ଏକ ଜୋଷିତ ।
ମହାରାଜ ହଂସ ଗୌରୀସହ ସୁଖେ
ଦିନ ନେଉଥିଲେ ହରି
ମଦନକୁ ରତି ଶରତ କାଳକୁ
ନଳିନୀ ଲଭି ଯେପରି ।
ସେ ବେନି ଦମ୍ପତି ଶୋକପାଇଁ ପିନା
ଅଶୁଭ ଲକ୍ଷଣଯୁତା
ମହାଶ୍ୱେତା ନାମେ ଜନ୍ମିଥିଲି ମୁହିଁ
ତାଙ୍କ ଏକମାତ୍ର ସୁତା ।

ସନ୍ତାନବଞ୍ଚନ ଥିବାରୁ ଜନକ
ଜନନୀ ଅତି ଆଗ୍ରହେ
ପୂର୍ବଜନ୍ମ ବଳ ମୋର ଜନ୍ମୋତ୍ସବ
ସମ୍ପାଦିଲେ ସମାରୋହେ ।
ପିତୃ ଆଳୟରେ ଶୈଶବ କାଳରେ
କଳନାଦୀ ବୀଣାବତ
ଗନ୍ଧର୍ବଗଣଙ୍କ କୋଳୁ କୋଳେ ସୁଖେ
ଭ୍ରମୁଥିଲି ଅବିରତ ।
ଦୁଃଖକଥା ଯାହା ସେକାଳେ ସାମାନ୍ୟ
ଆଘାତ ପାଇଲେ ମନ
କ୍ଷଣକ ସ୍ଥଳରେ ଦଶଜଣ ଆସି
ବୋଧୁଥିଲେ ସଯତନେ ।
ଜାଣିନଥିଲି ମୁଁ କାହାକୁ କହନ୍ତି
ଶୋକ ବୋଲି ଜଗତରେ
ଯାପିଲି ଏରୂପେ ମଧୁର ଶୈଶବ—
କାଳ ମୋ ମାତୃ କୋଳରେ ।
ବସନ୍ତେ ଯେମନ୍ତ ଆସେ ମଧୁମାସ
ମଧୁମାସେ କଳିକାୟ
କଳିକାୟେ ପୁଷ୍ପ ପୁଷ୍ପରେ ଯୁଟନ୍ତି
ନଟୁଳ ଭ୍ରମରଚୟ ।
ପ୍ରବେଶିଲା ଦେହେ ନବୀନ ଯୌବନ
କୁମାର ମୋ କଳେବରେ
ଚଞ୍ଚଳ ଗମନ ସ୍ଥିର ବଳସିଲେ
ଚରଣ ବେନି ମନ୍ଥରେ ।
ଜନନୀ ସହିତେ ଦିନେ ମୁଁ ପ୍ରତ୍ୟୁଷୁ
ମଧୁର ମଧୁ ମାସରେ
ଗାଧୋଇବା ଲାଗି ଆସିଥିଲି ଏଠି
ରୁଚିର ଅଚ୍ଛୋଦ ସରେ ।
ସେ କାଳେ ନୂତନ କମଳ କୁସୁମେ
ଶୋଭୁଥିଲା ସର ଜଳ

କେଳ କଳସ୍ୱରେ ମଧୁ ପିଉଥିଲେ
ଉଲ୍ଲାସେ କାଦମ୍ବଦଳ ।
ଚୂତ ପାଦପର ନବ ମୁକୁଳିତ
କୋମଳ କଳିକା ଖଣ୍ଡ ।
ଜନମାଉଥିଲା କାମୁକମାନଙ୍କ
ମନରେ ଅତି ଉତ୍କଣ୍ଠା ।
ମୃଦୁମୃଦୁ ଶୀତ ବାତ ସଞ୍ଚାଳନେ
ମଦନ ଧ୍ୱଜର ପର
ଆନ୍ଦୋଳିତ ହେଉ— ଥିଲା ଧୀରେ ଧୀରେ
ପୁଷ୍ପିତା ନବ ବଲ୍ଲରୀ ।
ମହିଳାଙ୍କ ମୁଖ ମଦିରା ଫୁତ୍କାରେ
ବକୁଳ କୁସୁମ ଫୁଟି
ଗନ୍ଧାମୋଦେ ଅନ୍ଧ ମିଳିନ୍ଦର ସ୍ୱରେ
ତଳେ ପଡୁଥିଲା ଲୋଟି ।
କାଠିକର ପରି ଶୂନ୍ୟ ଉଡ଼ ପଡ଼
ମଧୁକରେ ଧାଇଁବାରେ
ଦାରୁହରଦ୍ୱାର ସ୍ତରୁ କଣ୍ଟକାରୁ
ରକ୍ଷୁଥିଲେ ମାଳିମାରେ ।
ଅଶୋକ ବୃକ୍ଷରେ ପୁଷ୍ପ ଜନମାଇ
କାମାଏ ପାଦ ପ୍ରହାରେ
କାନନ ସ୍ଥଳୀକୁ ଚମକାଉଥିଲେ
ମଞ୍ଜୀର ମଞ୍ଜୁ ଝଙ୍କାରେ
ବକଚ କଳିକା ସୁବାସେ ଆକୃଷ୍ଟ
କୋକିଳମାନଙ୍କ ସ୍ୱନେ
ଅଭିନନ୍ଦୁଥିଲା ରସାଳ ବହୁସ
ବସନ୍ତକୁ ପ୍ରୀତମନେ ।
ଅବିରତ ଗଳ ଘନ ପୁଷ୍ପରେଣୁ
ପାଦପ ଶାଖାରୁ ଝର
ଭୂତଳକୁ ରଞ୍ଜି ନେଉଥିଲା ପଗା—
ପୂଜନର ଶିରୀହର ।

ପୁଷ୍ପ ମଧୁପାନେ ପ୍ରମତ୍ତ ଚଟକ
କାନ୍ତ ପ୍ରଜାପତିବୃନ୍ଦ
ଖେଳୁଥିଲେ ସୁଖେ ମନ୍ଦମନ୍ଦ ବାତେ
ନବ ଲତାଦୋଳି ସାଙ୍ଗ ।
ତେଲିଁ ଏଣେ ତେଣେ ଫୁଲ ଚୁମ୍ବିମାନେ
ପଲ୍ଲବର ଅନ୍ତରାଳେ
ଚାଣି ଅଣୁଥିଲେ ବକଚ ପୁଷ୍ପର
ମଧୁବିନ୍ଦୁ ଏକକାଳେ ।
ବିରହଣୀଙ୍କର ପ୍ରାଣ ଉପହାର
ଲଭି ହୃଷ୍ଟଚିତ୍ତେ ମାର
ସଗଟେଂ ଠିକାରୁ— ଥିଲ୍ଲ ନଳଫୁଲ—
କୋଦଣ୍ଡକୁ ବାରବାର ।
ସେ ତୀକ୍ଷ୍ଣ ଶାୟକ କାମୁକ ଉପରେ
ପଡୁଥିଲେ ଅନୁକ୍ଷଣେ
ଚୌଦିଗେ ଚମକ ପକାଇ ମୁଖର
ଚଳ କଙ୍କପକ୍ଷ ସ୍ୱନେ ।
ବିଷମେଷୁ ବଶ ବିଶିଖ ପ୍ରହାରେ
ବିହ୍ୱଳା ବିଯୋଗୀମାନେ
ଉଜାଗରେ ଦୁଃଖେ ଝୁରି ହେଉଥିଲେ
ପ୍ରବାସୀ ପତିଙ୍କ ଧ୍ୟାନେ ।
ଲତା ମଣ୍ଡପରୁ ଗାଢଲ ପତର—
ମାନ ପଡୁଥିଲ ଖସି
ଚନ୍ଦ୍ର ଦେଖୁଥିଲ ଗଣି ଗଣି ଫୁଲେ
ମତ୍ତ ମଧୁବ୍ରତ ବସି ।
ରସାଳ ଗଛର ଡସ୍ତବ ଗହ୍ୱରେ
ଲୁଚି କ୍ଷୀରଖାଇ ବଧୂ
ନଖାଗ୍ରେ ମୂହ୍ଳ ନାଳ ଖଣ୍ଡିବାରୁ
କ୍ଷୋଭି ପଡୁଥିଲ ମଧୁ ।
କାନନର ପ୍ରାଣୀ— ଭୁଲି ହୋଇ ନବ
ବସନ୍ତ ବାତେ ଉନ୍ମନା

କଳେସ୍ଥଳେ ତଲ୍— ଧଗେ କରୁଥିଲେ
ଅନଙ୍ଗର ଉପାସନା ।
ଦେଖି ଦେଖି ନବ ବସନ୍ତ ଶାସନେ
ଜୀବକୁଳ ବ୍ୟବହାର
ଫୁଲ ତୋଳୁଥିଲ୍ କ୍ରୁଅଇଁ କ୍ରୁଅଇଁ
ବାହୁକୁ ତରୁ ଲତାର ।
ସହସା ସ୍ବତନ୍ତ ଫୁଲବାସେ ମୋର
ନାସାରନ୍ଧ୍ର ଗଲା ଭରି
ବୃତଗାମୀ ବନ ବାୟୁ ସେ ସୌରଭ
ତୁରୁ ଅଣୁଥିଲା ହରି ।
ଅନ୍ତ୍ୟସର ସେହୁ ଫୁଲ ସୁଷମାକୁ
ଭ୍ରମନ୍ତି ପର ଉତ୍ସୁକେ
ଦେଖିଲି ଚମକ୍କି ଏକ ଦିବ୍ୟରୂପ
ମୁନିଙ୍କୁ ମୋର ସମ୍ମୁଖେ
ଘୃତେ ହୋଇ ମନେ ହର ନେତ୍ରାଗ୍ନିରେ
ହେବାରୁ ଦଗ୍ଧ ମନ୍ମଥ
ତା ଶୋକ ନ ସହି ତପ ସାଧୁଛି କି
ଏବନେ ପଶି ବସନ୍ତ ।
ଅଥବା ଶିବଙ୍କ ଶିର ଚନ୍ଦ୍ରକଳା
ସ୍ପମଣ୍ଡଳ ପୂର୍ଣ୍ଣ ଆଶେ
ବ୍ରତ ଅଚରୁଛି ନବାଗତ ଏଥି
ଅଚ୍ଛୋଦ ସରସୀ ପାଶେ ।
ନାସ୍ତି ମନରେ ସେ ଋଷିକୁମାର
ଅଲୌକିକ ତେଜ ଧର
ବସୁଥିଲେ ଗ୍ରୀଷ୍ମ କାଳୀନ ମିହିର
ମଣ୍ଡଳେ ପଶିଲା ପର ।
ସଜୁଥିଲା ଶିରେ ଗୋରଚନା ଭସେ
ରଞ୍ଜିତ ପିଙ୍ଗଳ ଜଟା
ଧର୍ମଧ୍ୱଜ ବତ ସ୍ଥଳେ ହୋଇଥିଲା
ଭସ୍ମର ଧଳକ ଛଟା ।

ଘର୍ଘନେତ୍ର ବେନ ଲୁଚି ଦେଉଥିଲ
ମିଳନ୍ଦ ମାଳର ଶୋଭା
ଶସ୍ପଶୂନ୍ୟ ମୁଖ ହୃଷ୍ଟଥିଲ ଦେହଲେ
ସଜ ସରୋଜର ପ୍ରଭା ।
ବାମେ ଶୋଭୁଥିଲ ରମ୍ୟ କମଣ୍ଡଳୁ
ଅଗସ୍ତି ଫୁଲ ଅକୃତ
ଦକ୍ଷିଣ କରରେ ଦିବ୍ୟ ଜପାମାଳା
ଧରିଥିଲେ ସେହୁ ଯତୀ ।
ଧବଳ କାନ୍ତିରେ ହସୁଥିଲ ତାହା
ମର୍ମ୍ମର ଶିଳାକୁ ବଳେ
ଗଢ଼ା ହୋଇଥିଲ କବା ଦଣ୍ଡାବନୀ
ରନ୍ଧଙ୍କର ଅଶ୍ରୁଜଳେ ।
ବଦ୍ୟା ସରିତର ଭଉଁରୀ ପରାଏ
ନମ୍ର ନାଭି କୃଶୋଦରେ
ନବଢ଼ କବ୍ଲଜ ଗାର ସମ ସରୁ
ଲୋମ ରାଜେ ତା ଉପରେ ।
ଜଣାପାଏ ତଳେ ନାଭି କୂପ ସ୍ୱର୍ଗ
ସରଳ ତୋଳିବା ପାଇଁ
ଦୁନ୍ଦସନ୍ଧି ବାସୀ ମନୋଜ ନମ୍ରକୁ
ରହୁ ଥିଲ କି ଲମ୍ବାଇ ।
ଗଙ୍ଗାଜଳେ ଧୌତ ବଲ୍କଲ ଖଣ୍ଡେ ସେ
କଟୀରେ ଥିଲେ ବେଢ଼ାଇ
ତା ସଙ୍ଗେ ଚକୋର ନେତ୍ର ପାଟଳମା
ତୁଳନା ହୋଇବ କାହିଁ ।
ଆଭରଣ ରୂପେ ବହୁଥିଲେ ଏକ
ମଞ୍ଜରୀ ସେ ଶ୍ରବଣରେ
କୃତ୍ତିକା ତାରକା ଜଳୁଥିଲ ନଭେ
ଚନ୍ଦ୍ରମା ବିମ୍ବ ପାଖରେ ।
ଦିଶୁ ଥିଲ ସେହୁ କୁସୁମିତା ଲତା
କରଙ୍ଗେ କମଳ ପ୍ରଭା

ଶୋଭନାବସନ୍ତ ଲକ୍ଷ୍ମୀଦେବୀଙ୍କର
ସ୍ମିତହାସ୍ୟ ତାହା ଅବା ।
ଅଥବା ମୃଦୁଳ ମଳୟାନିଳର
ଅସ୍ପଧନା ଲଜ୍ଜାଞ୍ଜଳି
ଅଥବା ସେ ପୁଷ୍ପ ଲକ୍ଷ୍ମୀଙ୍କ କୈଶୋର-
କାଳର କ୍ରୀଡ଼ା ପୁତ୍ତଳୀ ।
ରତିଶ୍ରମେ ଜାତ ସ୍ୱେଦ ବିନ୍ଦୁମାଳ
ଅବା ରତିଦେବୀଙ୍କର
କିବା ତାହା ଅଙ୍ଗ— ସାରବା ନାୟିକା
ମଧୁକର ନାୟକର ।
ମନ୍ଦ ଗନ୍ଧବହ ପ୍ରବାହେ ଚୌଦିଗେ
ବହୁଛି ସେହି ସୌରଭ
ଲାଗି ଦେଉଥିଲା ତହିଁ ବିକଶିତ
ପ୍ରସୂନକୂଳ ଗରବ ।
ଲକ୍ଷ୍ମୀଙ୍କୁ ଦେଖି ସ୍ୱବଳ ଧନ୍ୟରେ
ଧାତାର ଶିଳ୍ପ କଳାପୁ
ସୌନ୍ଦର୍ଯ୍ୟ ନିର୍ମାଣ ଉପାଦାନ ତହିଁ
କେବେ ହୁଏ ନାହିଁ କ୍ଷୟ ।
ନୋହିଲେ କି ସୃଜି ଅତୁଳନ ରୂପ
ମାରକୁ ଚତୁରାନନ
ପୁଣି ଗଢିଥାନ୍ତେ ତହିଁ ବଳି ରୂପି
ଦେଖି ଏ ନବମଦନ ।
ଅନୁମାନେ ଅହେ ଅଗେ ବିଧି ଗଢି
କମଳ ବିଧୁମଣ୍ଡଳ
ନିର୍ମାଣି ସେ ପୁଣି ଲକ୍ଷ୍ମୀ ଲୀଳାସ୍ଥଳ
ନେତ୍ରାନନ୍ଦ ଶତଦଳ ।
ସୁନ୍ଦର ପ୍ରତିମା ଗଢ଼ିବା କୌଶଳ
କ୍ରମରେ ଅଭ୍ୟାସ କରି
ସୃଜିଥିଲେ ଏହି ନିରୁପମ ଶୋଭ—
ପାଥୋଧି କ୍ଷୋଭ ଲହରୀ ।

ତାହଁକ ନୋହଲେ ଏକରୂପ ବସ୍ତୁ
ଦ୍ରବ୍ୟ ସେ କରନ୍ତେ ସୃଷ୍ଟି
ମୂର୍ତ୍ତି ଗଢ଼ି ଗଢ଼ି ସିନା କଳାଣୀର
ପାଠକ ଲଭନ୍ତ ପୁଷ୍ଟି ।
ଏକାଳେ ଅଳସେ ଅସି ମୋ ଓଷ୍ଠେ
ଟେକିଲେ ବାରୁଣୀ ପାତ୍ର
ଧରିବାକୁ ମୋର ମନ ଦର୍ପଣକୁ
ଛପିଲେ ହର ଅସ୍ତ୍ର ।
କଳାପିମାଙ୍କର ଉପାସ୍ୟ ଦେବତା
ସଦା ଶନ୍ତୁ ମିଶ୍ର ଲାଗି ।
ସୁକୁମାର ଯୁବା— ତାଳର ସୁହୃଦ
ସୌନ୍ଦର୍ଯ୍ୟର ପକ୍ଷପାତୀ ।
ସଦାବେଳେ ଗୁଣ ଦୋଷ ବୈଷମ୍ୟର
ବସ୍ତୁରେ ପାର୍ଥକ୍ୟ ଜ୍ଞାନ
ଦେବ ମନୋଭବ କଳାହାରେ ବଶେ
କରିଲେ ନିଜ ଅଧୀନ ।
ପୁଷ୍ପ ମକରନ୍ଦ ସତତ ଯେମନ୍ତ
ମଧୁପକୁ ରଖେ ଟାଣି
ତେମନ୍ତେ ମୋତେ ସେହୁ ପାଖକୁ ଝିଙ୍କିଲେ
ଫୁଲଶରେ ହାଣିହାଣି ।
ଅବଶେ ସ୍ତମ୍ଭିତ ହେଲା ହୃଦସ୍ଥଳ
ନଚହଲା ଅଉ ଶ୍ୱାସ ।
ବଢ଼ିଲା କେବଳ ତପସ୍ୱୀ ସୁତଙ୍କୁ
ଦେଖିବାକୁ ଅଭିଳାଷ ।
ଯେତେ ଦେଖୁଥିଲି ଅଧିକ ଦେଖିବା
ପାଉଁଛ ବୃଦ୍ଧିଲା ତୃଷ୍ଣା
ଅପାଙ୍ଗ ପାଖକୁ ନେତ୍ର ତାର ବେନି
ନିରତ ହେଲା ଧାବିତ ।
ଶାଣ ସୁବଳିତ ନିର୍ଜୀବ ପ୍ରତିମା
ସର୍ବେ ତାଙ୍କ ଅଗରେ

ମାଉବେ ନୟନେ ବହୁକ୍ଷଣ ଯାଏ
ରହିଲ୍ ଏହିରୂପରେ ।
ଅହେ ଯୁବରାଜ କ୍ରମେ କ୍ରମେ ଦେହେ
ଜନ୍ମିଲ ଘୋର ବିକାର ।
ଲଜ୍ଜା ଧୈର୍ଯ୍ୟ ସବୁ ହୁତାହୃତ ଜ୍ଞାନ
ହେଲକ୍ଷଣେ ଛାରଖାର ।
ସେହି ବିକାରର ସ୍ୱଭାବ ସ୍ୱରୂପ
ବର୍ଣ୍ଣିବା ବଡ଼ କଠିଣ
ଏବା ମନ ବୁଝେ ଷବୁଝାଳେ ତାହା
ପ୍ରାଚୀନ ପୁଣି ନବୀନ ।
ସେ ଘୋର ବିକାର ପ୍ରଭାବେ ଅସ୍ତବେ
ଦେଖୁଥିଲ୍ ତାଙ୍କ ଛବି
କହି ନ ପାରବ କି ଲାଗି ହୃଦୟ
ଏକାବେଳେ ଗଲ ଦ୍ରବି ।
ସୌନ୍ଦର୍ଯ୍ୟ, ମଦନ, ପ୍ରେମ, ଅନୁରାଗ
କି ଅବା ନବଯୌବନ
ଅବା ଅନ୍ୟ କିଛି ଅନିର୍ବଚନୀୟ
ଖଳନ୍ତ, କ୍ଷବା ମୋ ମନ ।
କାହା ଉପଦେଶେ ଏକଧ୍ୟାନେ ତାଙ୍କୁ
ଚିନ୍ତୁଥିଲ୍ ହୋଇ ବାଇ
କିଲାଗି କାହିଁକି ଦେଖୁଥିଲ ମୂର୍ତ୍ତି
ତାହା ସୁଦ୍ଧା ବୁଝି ନାହିଁ ।
ହୃଦ ଗୂଢ଼କଥା କହୁଥିଲ୍ ବୋଲି
ଭାବୁଥିଲ୍ ସିନା ମନେ
ମଣୁଥିଲ ତାଙ୍କ ହୃଦୟରେ ସେତେ
ପଣୁଥିଲ୍ ସଂଗୋପନେ ।
ନେବ କର୍ଣ୍ଣ ଅଧ ପଞ୍ଚେନ୍ଦ୍ରିୟ ଠାଣେ
ଠାଣୁଥିଲ ମୂନ ଭଳ
କହୁଡ଼ ଷଷଏ ନାଚୁଥିଲ ଭ୍ରୂବେ
ଅନ୍ତରେ ଚଞ୍ଚଳ ମତି ।

ପିଠେ ପାଖେ ଥାଇ ସ୍କନ୍ଧ ତାଙ୍କ ଆଡ଼େ
ଠେଲୁଥିଲି ପୁଣି ବଳେ
ଅତି କଷ୍ଟେ ନିଜେ ନିଜକୁ ସମ୍ଭାଳି
ରହିଥିଲି ସେହିସ୍ଥଳେ ।
ବହୁଥିଲା ବେଗ— ବେଗରେ ନିଶ୍ୱାସ
ନାସିକା ପୁଡ଼ା ଅଗ୍ରଭ
ଯାଉଥିଲା ଶ୍ୱାସ ହୃଦେ ସ୍ଥାନ ରଖି
ଦେବା ତାଙ୍କ ବାସ ପାଇଁ ।
ବକ୍ଷଃସ୍ଥଳ ସହ କମ୍ପିଲା କୁମାର
ଅଧୈର୍ଯ୍ୟେ ଶିର ଉପର
ନବ ଅନୁରାଗ ଉଚ୍ଛ୍ୱାସେ ସ୍ଫୁରିଲା
ଅଧୀରେ ଓଷ୍ଠ ଅଧର ।
ଅସମ୍ଭାଳେ ଆହା ବିନ୍ଦୁ ବିନ୍ଦୁ ଝାଳ
ଦେହରୁ ବହିଲା ଖରେ
ସେ ଝାଳରେ ଧୋଇ ହୋଇ ଲାଜେ ଲହା
ପଡ଼ିଗଲି ଭୂତଳରେ ।
ହୃଦୟ ସ୍ଥଳକୁ ଦହିଲା କଟାକ୍ଷ
ବିଶିଖେ କୁସୁମ ଧନୁ
ରୋମାଞ୍ଚିଲା କ୍ଷଣେ ନବ ଆଲିଙ୍ଗନ
ସୁଖ ଅଭିଳାଷେ ତନୁ ।
ସହସ୍ର ଯତନେ ସୁଧା ସ୍ୱବଶକୁ
ନ ଫେରିଲା ଚିତ୍ତ ଆଉ
ନ ପାରିଲି ବୁଝି କି ଦୋଷେ ଦଇବ
ଦେଲା ମୋତେ ଏଡ଼େ ଦାଉ ।
ମହାଭ ମନକୁ ମୋର ଉପସ୍ଥାନ
ବନବାସୀ ଷଣ୍ଡଠାରେ
କି ଫଳ ଲଭିଲି କୁଳ ବାଳାକୁ ଯେ
ପକାଇ କୁଠହଠାରେ ।
କାହିଁ ତପସ୍ୟାର ଦିବ୍ୟ ତେଜ, କାହିଁ
ଲଳିତ ବେଶ ରଚନା,

କାହିଁ ଏକନିଷ୍ଠ ବ୍ରହ୍ମ ସେବା, କାହିଁ
ସୌନ୍ଦର୍ଯ୍ୟର ଉପାସନା ।
କାହିଁ ଗୀତ ବାଦ୍ୟ ନର୍ତ୍ତନେ ଆସକ୍ତି,
କାହିଁ ଧ୍ୟାନରେ ପ୍ରବୃତ୍ତି,
କାହିଁ ଘୋରତର ବିଳାସ ବାସନା,
କାହିଁବା ବେଗ ନିବୃତ୍ତି ।
ନୋହିବାର ଯାହା ଏସ୍ବେ ମିଳାଇ
ଘଟକ ଦେଲଣ୍ଡ ଯାହିଁ
ଦୁଃଖ କାରାଗାରେ ଚିରଦିନ ମୋତେ
ରଖିଲତ ଅଟକାଇ ।
ସ୍ୱର୍ଗ ସୁଲଭ ଲକ୍ଷ୍ମୀ ଏଡ଼ ଏତେ
ଉଜ୍ଜ୍ୱଳ କଲେକ ମୋତେ
ମନେ ମନେ ମୁନି ହସୁଥିବେ ବୋଲି
ହୃଦୟରେ ହେଲ ପ୍ରତେ ।
ସ୍ପଷ୍ଟରୂପେ ସବୁ ବୁଝିଲେହେଁ କିସ
କରିବ ରାଜକୁମାର
ନପାରିଲି ମନ୍ତ୍ର ଘୁଞ୍ଚାଇ ଟିକିଏ
ସେ ମାନସିକ ବିକାର ।
ସେ ଦିନୁ ମୋ ପକ୍ଷେ ଚିରଦିନ ହେଲ
କେବଳ କନ୍ଦନମୟ
ଦରଶନ ମାତ୍ରେ ଯଉ ଜନେ ସେଣୁ
ବିକି ଦେଲି ଏ ହୃଦୟ ।
ସଚେତନ ଥିଲି ସେଉଁ ଯାଏ ମୁହିଁ
ସେ ଯାଏ ସେହି ଗୋସାଇଁ
ବିକାର ଜନିତ ଲଘୁତା ମୋହର
ବୁଝି ପାରୁଥିଲେ ନାହିଁ ।
ତା ମଧ୍ୟେ ସେ ସ୍ଥାନ ଉପେକ୍ଷି ଯିବାକୁ
ଚିନ୍ତକଣେ ମାନସରେ
ପ୍ରଣମି, ଦ୍ୱିତୀୟ ମୁନି ପାଶେ ଯାଇ
ପଶିଲି ବନସ୍ତରେ ।

କ୍ଷେ ଦେବ, କହ ଏ ! ଜଳଧି ସମୁଜ୍ଜ୍ୱଳ
କରୁଛନ୍ତି କେଉଁ କୂଳ ?
କର୍ଣ୍ଣଭୂଷା ରୂପେ ବହୁଛନ୍ତି ଯାହା
କେଉଁ ଗଛର ସେ ଫୁଲ ?
ମୋ ଅତେ ଅନାଇଁ ସହାସ୍ୟେ ତପସ୍ୱୀ
କହୁଲେ ଗୋ ମଦାଳସି !
ଦିବ୍ୟ ଲୋକବାସୀ ଶ୍ୱେତକେତୁ ନାମେ
ଅଛନ୍ତି ଏକ ତପସ୍ୱୀ ।
ପରମ ସୁନ୍ଦର ରୂପ ତାହାଙ୍କର
ଜଗତରେ ଅନୁପମ
ତିନ ଭୁବନରେ ବ୍ୟାପିଛି ବିମଳ
କୀର୍ତ୍ତିଚୟ ମନୋରମ ।
ଦିନେ ସେ ସକାଳୁ ଉଠି ଯଥାବିଧି
ପୁଜିବା ଲାଗି ବିଗ୍ରହ
ପବିତ୍ର ସଲିଳା ସ୍ୱର୍ଣ୍ଣପଥେ ପଶି
ତୋଳୁଥିଲେ କୁଶୋଶୟ ।
ସେ କାଳେ କନକ— ସ୍ଥଳ ବିହାରିଣୀ
ଶତଦଳ ନିବାସିନୀ
ତାହାଙ୍କୁ ବିଲୋକି ପ୍ରେମେ ବଶ ହେଲେ
ଲକ୍ଷ୍ମୀଦେବୀ ସୁହାସିନୀ ।
ଦେବୀ ଦେବଙ୍କ ଲଭି ଦେବଙ୍କର
ସୌନ୍ଦର୍ଯ୍ୟେ ହୋଇ ଉଦ୍ଭଲ ।
ମଦନ ବିକାର ବଶେ ପଦ୍ମବନେ
ଆରମ୍ଭିଲେ କେଳିକଳା ।
କେଳିକାଳେ ଶ୍ୱେତ— ପଦ୍ମରୁ ଜନ୍ମିଲ
ଏକ ପୁଣ୍ଡରୀକ ତହିଁ
ଅନ୍ତର୍ଦ୍ଧାନ ହେଲେ ମୁନିବର ତୋଳେ
ପୁନ ଶୋକ ଶୋକମୟୀ ।
ପୁଣ୍ଡରୀକୁ ଜନ୍ମ ବୋଲି ପୁଣ୍ଡରୀକ
ନାମ ରଖି ମୁନି ତାର

ବିଦ୍ୟାଶିକ୍ଷା ଦେଇ          ସମାପିଲେ ଯେବେ
ଉପନୟନ ସଂସ୍କାର ।
ଶୁଣିଛ ପୁରାଣେ          ଦେବାସୁରେ ମିଳି
ମନ୍ଥିଲେ କ୍ଷୀରସାଗର
ଜନ୍ମିଥିଲା ସେହୁ          ମନ୍ଥନୁ ବୃକ୍ଷବ
ପାରିଜାତ ତରୁବର ।
ପୁଣ୍ଡରୀକ କର୍ଣ୍ଣେ          ଶୋଭୁଅଛି ଯାହା
ସୁବାସେ ଚୌଦିଗ ଭରି
ତାହା ସିନା ସେହୁ          ସର୍ବ କାମଦାତା
ପାରିଜାତର ମଞ୍ଜରୀ ।
ଆଜ ଚତୁର୍ଦ୍ଦଶୀ          ପୁଣ୍ୟ ତିଥି ହେତୁ
ଶିବଙ୍କୁ ପୂଜିବା ଆଶେ
ଆସୁଥିଲୁ ବେନି          ସ୍ୱର୍ଗର ନନ୍ଦନ
କାନନ-ବାଟେ କେଳାସେ ।
ଅକସ୍ମାତ ସେହୁ          କାନନ ଦେବତା
ଆମ୍ଭଙ୍କୁ ଦେଖି ବାଟରେ
ଶିଷ୍ଟାଚାରେ ତୋଷି          ଅତି ସମାଦରେ
ପ୍ରଣମି ଭକତି ଭରେ ।
ବନ୍ଧୁ ଅଗ୍ରଜନ୍ମେ          ଉପହାର ଦେଇ
ସ୍ୱହସ୍ତେ ସକୁତୂହଳେ ।
ଏ ମଞ୍ଜୁ ମଞ୍ଜରୀ          ପୁଣ୍ଡରୀକ କର୍ଣ୍ଣେ
ଖଞ୍ଜି ଦେଲେ ବଳେ ବଳେ ।
ଶ୍ୱେତକେତୁଙ୍କର          ତନୟ ଏ ଯୁବା,
ଏ ଫୁଲ୍ଲ କଲ୍ପଲତାର
ବନ ଦେବତାଙ୍କ          ପ୍ରଣଦାନେ ଶୋଭା
ବହୁଛି କର୍ଣ୍ଣଭୂଷାର ।
ଶୁଣି ପୁଣ୍ଡରୀକ          ସ୍ମିତହାସ୍ୟେ ମୋତେ
କହିଲେ କୌତୁକବଶ !
ପଚାରିବା କିବା          ପ୍ରୟୋଜନ ଏଥି
ବଳଥାଏ ଯେବେ ମନ ।

ଦୟାବନ୍ତୁ ଏହୁ ମଞ୍ଜରୀଟି ନେଇ
ରୁଚିର ଶ୍ରବଣେ ଧର ।
ଘ୍ରାଣ ତୃପ୍ତିକର ଏ ଫୁଲ ସୌରଭ
ମାନସ ତୋଷୁ ଭ୍ରମର ।
ଏତେ ବୋଲି ପାଶେ ଆସି ନିଜ କର୍ଣ୍ଣୁ
ମଞ୍ଜୁଳ-ମଞ୍ଜରୀ ଫେଇ
ସ୍ୱକର କମଳେ ମୋର କର୍ଣ୍ଣେ ଧୀରେ
ଖଞ୍ଜି ଦେଲେ ଯତ୍ନେ ନେଇ ।
ହସ୍ତସ୍ପର୍ଶ ଲାଗି ଅବଶେ ଉଲ୍ଲାସେ
ଠାଙ୍କୁରିଲା ଗଣ୍ଡସ୍ଥଳ
କମ୍ପିଲା ଅଙ୍ଗୁଳି ଆବଳ, କପୋଳେ
ଦେଖା ଦେଲା ସ୍ୱେଦଜଳ ।
ଲଜ୍ଜାସହ ତାଙ୍କ ଜପାମାଳ ଖସି
ଭୂମିରେ ପଡ଼ିଲା ଯାଇ
ପଡ଼ୁପଡ଼ୁ ତାହା ଅଲକ୍ଷିତେ ମୁହିଁ
ଚଞ୍ଚଳ ହସ୍ତେ ଉଠାଇ
ଆଦରେ ଅନ୍ଧାରେ ହେ ସ୍ୱଜନଦ୍ୱୟ
ଗ୍ରୀବାରେ ଖଞ୍ଜି ଉଲ୍ଲାସେ
ମଣିଲି ମୋ କଣ୍ଠ ବେଷ୍ଟିତ ହେଲା କି ?
ମୁନିସୁତ ବାହୁପାଶେ ।
ବେନିଙ୍କର ମନ ଦୃଢ଼ସ୍ୱରେ ଗଲା
ବେନିଙ୍କ ଉପରେ ଲାଗି
ତହୁଁ ପୁଣି ଗଣ୍ଠି ପକାଇଲା ଠାଣେ
ନବ ପ୍ରେମ ହୋଇ ସାକ୍ଷି ।
ଦୁହିଁଙ୍କ ହୃଦୟୁଁ ତରଳ-ପ୍ରେମକୁ
କିଅବା ଘେନି ମଦନ
ଏକତ୍ରେ ମିଶାଇ ପାକ ଯତ୍ନେ କଲା
ବରଫ ପରିଏ ଘନ ।
କ୍ଷୀର ନୀର ପରି ବେନିଙ୍କ ମଧୁର
ମନୋବୃତ୍ତି ମନୋରମ

ମଣିଗଣ ଦେଖି    ଦେଖି ଅତର୍କିତେ
ବାୟୁରେ ସୌରଭ ସମ ।
ଏ ଭାବେ ମିଳନ    ହେଲା ଅଲକ୍ଷିତେ
ସେ ସ୍ଥାନେ ପରସ୍ପରର
ହୃଦସହ ହୃଦ    ତନମୟ ହେଲ
ଫୁଲଶରେ ଫୁଲଶର ।
ପବନ ପ୍ରବାହେ    ପ୍ରଦୀପର ଶିଖା
ଦୁଳଇ ଯଥା ଚଞ୍ଚଳ
କରସ୍ପର୍ଶେ ତେସନ୍ତେ    ହେଲା ତାଙ୍କ ମନ
ବିକାରେ ଅତି ଚଞ୍ଚଳ ।
ମୁଗ୍ଧହୋଇ ମୋର    ରୂପେ ସ୍ନିଗ୍ଧନେତ୍ରେ
ରହିଲେ ଯତି ଅନାଇଁ
ନିଷ୍ପନ୍ଦ କମଳ    ପତ୍ରେ ଅଙ୍କିତ
ପଲକ ପଡ଼ିଲା ନାହିଁ ।
ତର୍କୁ ଥିଲା ମୋତେ    ଯେଉଁ କାମ ତାଙ୍କୁ
କଲା ସେ ଦୃଢ଼େ ଶାସନ
ଏବେ ମୋ ମାନସ    ନମନ୍ତି ବସନ୍ତ
ମନ୍ଥିଲା ତାହାଙ୍କ ମନ ।
ଘଟାଇ ନ ଥିଲା    ଯୌବନ ଏବେ ମୋ
ସ୍ୱଭାବର ବିଶୃଙ୍ଖଳ
ସେ ଯୌବନ ଯୋଗେ    ହେଉଥିଲା ପୁଣି
ମାନସ ତାଙ୍କ ତରଳ ।
ନବ ଅନୁରାଗେ    ଦେହଗୋଟିଯାକ
ଲୋମାଙ୍କୁରେ ଗଲା ଭରି
ଛଇଁଦେଲା କିସେ    ଶର ମାରିମାରି
ମାର ଫୁଲ ଧନୁର୍ଧର ।
ହୃଦୟ ସହିତେ    ଉଦରକୁ ଆହା
କମ୍ପାଇଣ ଘନଘନ
ଚିନ୍ତା ପକାଇଣ    ବହିଲା ପ୍ରବଳ
ବେଗରେ ଶ୍ୱାସପବନ ।

ମୋ ପାଖକୁ ଯିବା ଆସିବାକୁ ସେହୁ
ଚଞ୍ଚଳଚିତ୍ତ ଯୁବାର
ବାଟ ଖୋଜଖୋଜ ହେଲକ ନାସାରୁ
ନିଶ୍ୱାସ ଚଳେ ତାହାର ?
ପବନ ହିଦଣ୍ଡ ଖଣ୍ଡ ବୋହଇଲ
ଅନାସ୍ୱାଦିତ ଦମ୍ପତରେ
ସୁଚିର ସଞ୍ଚିତ ବ୍ରହ୍ମଚର୍ଯ୍ୟ ନାଶେ
ଜନ୍ମିଲ କବା ଜାତରେ ।
ଗଣ୍ଡସ୍ଥଳ ମଣ୍ଡି ବହିଲା ପ୍ରଖରେ
ବନ୍ଦୁବନ୍ଦୁ ଘର୍ମଜଳ
ବିସ୍ଫାରିତ ହେଲା ତଫୀବ ଉଛଳ
ଅମୃତ ନେତ୍ର ଯୁଗଳ ।
ଚକ୍ଷୁ ତାରା କୁଳ ଉପରେ ଉଠିଲା
ସହସା ସ୍ୱପ୍ନପ୍ରାୟ ବଶ
ପଲକ ବ୍ୟାଜେ କି ନେତ୍ର ବେନି ଦେଲେ
ଶ୍ୱେତ ପଦ୍ମ ଫୁଲ ଛିନ୍ନ ।
ଦେଖୁଁ ଦେଖୁଁ ଘୋର ସାନ୍ଦ୍ର ଆକାର
ବର୍ଦ୍ଧିଣ ଖର ବେଗରେ
ପ୍ରକାଶିତ ମୋର ଜାମ ଆକାରରୁ
ବଳଗଲା ଦ୍ୱିଗୁଣରେ ।
କେତେ ଅଙ୍ଗଭଙ୍ଗୀ ହାବ ଭାବ ଛନ୍ଦ
ଉପୁଜିଲା ସେହିକ୍ଷଣେ
ସିତ ହାସ୍ୟ ସହ ପୁନଃ ପୁନଃ ହୋଇ
ପ୍ରକଟ ହେଲା ବଦନେ ।
ନୁଆ ଘୁଠିଟିକୁ ଛଠ ପିଟ ମାର
ନାଟ ଗୁରୁ ମହାଶୟ
ପ୍ରେମ-ରଙ୍ଗଭୂମେ ଶିଖାଇଲା ସିନା
ହାବ ଭାବ ଅଭିନୟ ।
ନୋହିଲେ ତାହାଁକ ତପସ୍ୱୀବିରାଗୀ
ଯତୀଙ୍କ ଶୂନ୍ୟ ହୃଦରେ

ଜନ୍ମାନ୍ତା ଏମନ୍ତ    ଉଳଟ ଫଳାସ—
ଭଙ୍ଗୀ ଏବେ ଚଞ୍ଚଳରେ ।
ବାକ୍ୟ ବ୍ୟଞ୍ଜରେବେ    ନେହ ସ୍ନହାଣିରେ
ହୃଦର ଗୂଢ଼ କାହାଣୀ
କେଳଣ ପଣ୍ଡର    ଉପଦେଶ ବନା
ପାରବ କଏ ବଖାଣି ।
ଏକାଳେ ସଖୀର    ଇଙ୍ଗିତେ ଫେରକ୍
ବେଦନା ଲଭ୍ ବସମ
ଅକୁଣ ପ୍ରହାରେ    ନବ ପରାଧୀନା
କାନନ କରଣୀ ସମ ।
ଅତ୍ୟନ୍ତ ଅସ୍ୱାସେ    ଅକର୍ଷି ନୟନ
ପ୍ରିୟଙ୍କ ମୁଖ ମଣ୍ଡଳୁଁ
ସେମାନଙ୍କ କଥା    ଶୁଣିଲ ଅଦୂରୁ
ସର ଟୀର ତରୁ ତଳୁଁ ।
ଧୈର୍ଯ୍ୟଭଙ୍ଗ ଦେଖି    ବନ୍ଧୁଙ୍କୁ କପାଦେ
ତ୍ରିଗାସ୍ତ ମୁନି ନନ୍ଦନ
ପ୍ରକାଶି ପ୍ରଣୟ    କୋପେ କହୁଥିଲେ
କଠୋରସ୍ୱରେ ଏମନ ।
ଏ ମାଚ ବେଷ୍ଟର    ସଖେ ! ତୁମ୍ଭ ପକ୍ଷେ
କଦାପି ନୋହେ ଶୋଭନ
ଅବଲମ୍ବିଥାନ୍ତି    ଏ ପଥକୁ ଯିନା
ଭବେ ହୀନଚେତାଗଣ ।
ସାଧୁମାନଙ୍କର    ହୃଦୟ ଭଣ୍ଡାରେ
କେବଳ ଧୈର୍ଯ୍ୟ ସମ୍ପଦ
ସେ ଧୈର୍ଯ୍ୟ ହୁଡ଼ିଲେ    ଭଦ୍ର ସମାଜରେ
ହୁଅନ୍ତି ସେ ହାସ୍ୟାସ୍ପଦ ।
ଆଜ କାହିଁ ତୁମ୍ଭ    ସଂଯତ ମାନସ
ହେଉଛି ଏତେ ଅବୋଧ
ମନସ୍ୱୀ ମାନବ    ପର କପାଁ କହ
ତାହାକୁ ନ କର ବୋଧ ।

ପ୍ରବେଶି ମନରେ      କାହିଁ ଏ ଦୁରନ୍ତ
ଇନ୍ଦ୍ରିୟର ଉପଦ୍ରବ
ଖଣ୍ଡି ଦେଇ ତୁମ୍ଭ      ଚିର ସଂଯମକୁ
ମହତ୍ତ୍ୱ କରେ ଖର୍ବ ।
କାହିଁ ସେହି ଧୈର୍ଯ୍ୟ,      କାହିଁ ବ୍ରହ୍ମଚର୍ଯ୍ୟ,
କାହିଁ ସେ ଜିତେନ୍ଦ୍ରିୟତା,
କାହିଁ ସମଗୁଣ,      ଶାସ୍ତ୍ରଜ୍ଞାନ କାହିଁ,
ଚିତ୍ତର ସେ ସ୍ୱାଧୀନତା ।
କାହିଁ ସେ ବୈରାଗ୍ୟ—      ବୁଦ୍ଧି, ତପେ ପ୍ରୀତି,
କାହିଁ ଗୁରୁ ଉପଦେଶ,
ବିକାରେ ବିରୁଚି,      ସୁଖେ ବିମୁଖତା
କାହିଁ ବା କ୍ଲେଶେ ବିଦ୍ୱେଷ ।
ସକଳ ପ୍ରତିଷ୍ଠା      ମାନ ହୋଇ ଅନ୍ତ
କ୍ଷଣକେ ସିନା ନଷ୍ଟଲ ।
ବିଷୟ ଆଶକ୍ତ      ବିଷେ ବିକ୍ଷିପ୍ତ
ଏବେ ତୁମ୍ଭ ହୃଦସ୍ଥଳ ।
ଦେଖୁ ନାହିଁ କିହେ      ଛଳେ ଜପାମାଳା
ହରନେଇ ହରିଣାକ୍ଷୀ
ବାଞ୍ଛ ନ ରଖିବ      ହୃଦ ହରିବାକୁ
ଏବେ ରହିଅଛି ଠାଣି ।"
କପିଞ୍ଜଳ ବାକ୍ୟ      ଶ୍ୱେତକେତୁ ସୁତ
ଲଜ୍ଜା ନମ୍ର ବିଲୋଚନେ
କହିଲେ "କିପାଇଁ      ବିପରୀତ ମୋତେ
ବୁଝୁଅଛ ସଖା ମନେ ।
ଜପାମାଳା ନେଇ      କରିଛି ଛଇଳୀ
ଛଳିବାକୁ ଯା ମାନସ
କ୍ଷମିବ ନାହିଁ ମୁଁ      କଦାପି ତାହାର
ଏହି ଘୋରତର ଦୋଷ ।"
ଏକଥା ବଖାଣି      ଫେରାଇ ନୟନ
ଚହାଁନ୍ତେ ମୋତେ ପ୍ରଖରେ

ଅଧରୁ ସୁନ୍ଦର  ବଶିଲା ଅରକ୍ତ
ଅଜନ ମିଥ୍ୟା ରୋଷରେ ।
ହୃଦୟର ଭାବ  ଘୋଡ଼ାଇ ଭ୍ରୂକୁଟି
କଲେ ମୁନି ବାରବାର
ମାତ୍ର ସେ ଭ୍ରୂକୁଟି  ହେଲା ତାହାଙ୍କର
ଶ୍ରୀମୁଖର ଅଲଙ୍କାର ।
ମିଥ୍ୟା ରୋଷେ ଋଷି  କହିଲେ "ସୁନ୍ଦର !
ମୋର ଜପମାଳ କାହିଁ ?
ତା ବିନା ତୁମ୍ଭଙ୍କୁ  ଏକପାଦ ଯିବା
ଯିବାପାଇଁ ଦେବି ନାହିଁ ।"
ଅନଙ୍ଗ ଦେବଙ୍କ  ନୃତ୍ୟ ଆରମ୍ଭର
କେଳି ପୁଷ୍ପାଞ୍ଜଳି ପରି
ନିଜ ପ୍ରକୋଷ୍ଠରୁ  (୧) କାଢ଼ି ମୋର ମୁକ୍ତା—
ବଳୟ ଏକ ଲହରୀ ।
ସହାସ୍ୟେ କହିଲି  'ହେ ଦେବ ! ତୁମ୍ଭର
ମାଳକୁ ନିଅ ବଦଳ'
ଅକଣ୍ଠ ଅଧୁରେ  ଶୂନ୍ୟମନେ ମୋତେ
ଚଲେଇ ବହୁକ୍ଷଣ ।
ନେବାଲାଗି ହାତ  ବଢ଼ାଇ ବଅନ୍ତେ
ଶୀକରେ ସେ ହାର ଥୋଇ
କର ପରଶରେ  କ୍ଷଣେ ଯାଏ ଜଡ଼
ପଡ଼ିଏ ଅବଶେ ରହି ।
ଝାଳରେ ଗାଧୋଇ,  ପୁନରୁକ୍ତ ପର
ତହୁଁ ଗାଧୋଇବା ପାଇଁ
କମଳ ଗନ୍ଧିଳ  ବିମଳ ସରସୀ
ନୀରେ ପ୍ରବେଶିଲି ଯାଇ ।
ଜନନୀ ସଙ୍ଗତେ  ବସିରେ ମାଜଣା
ବଢ଼ାଇଣ ଅନନ୍ତାରେ

(୧)—ସେର

ସ୍ୱପ୍ନବତ ଗତ ଘଟଣା ପୁରକୁ
ଲେଉଟିଲି କଳାଛାରେ ।
ମୁନିକୁମାରଙ୍କ ଚନ୍ଦ୍ରାରେ ଚୌଦିଗ
ଦିଶିଲା ଅନ୍ଧାରମୟ
ବନେ କି ସଦନେ ରହୁଥିଲି କିଛି
କରି ନ ପାରିଲି ଥିର ।
ସଖୀବୃନ୍ଦେ ବେଢ଼ି ଥିଲେହେଁ ନିଜକୁ
ମଣିଲି ଏକାକୀ ପରି
ଜାଗ୍ରତରେ ସୁଦ୍ଧା ଆସି ପ୍ରତାରିଲେ
ସର୍ବଦା ସ୍ୱପ୍ନ-ସୁନ୍ଦରୀ ।
ସୁଖ ଦୁଃଖ କ୍ଷୁଧା ତୃଷା ରୋଗ ଶୋକ
ଦିନ ଯାମିନୀର ଛବି
ଉନ୍ମାଦ ପରାଏ ରହିଲି ଏସବୁ
ନ ପାରିଲି ଅନୁଭବି ।
ପାରୁ ନ ଥିଲି ମୁଁ ଏହାପରେ କେବେ
ଅନଙ୍ଗର ପରାଭବ
କିଏ ଜାଣିଥିଲା ଏବେ ଦୁର୍ନିବାର
ଦୁରନ୍ତ ରତିବଲ୍ଲଭ ।
ଆବେଷ୍ଟି ବିଶାଳ ରାଜ ନଗରର
ଉଚ୍ଚ ଅଟ୍ଟାଳିକା ପରେ
ସଭିଙ୍କ ପ୍ରବେଶ ନିଷେଧ ଏକାନ୍ତ
ରହିଲି ସେ ନିର୍ଜନରେ ।
ବଦନ ନିବେଶି ଅଙ୍କୁରେ ଦ୍ୱିରଦ—
ରଦ ରମ୍ୟ ବାତାୟନେ
ସଜଳ ଉପେକ୍ଷି ଉପବନ ମୁଖେ
ଚାହୁଁଥିଲି ଅନୁକ୍ଷଣେ ।
ମୋ ନେତ୍ରେ ସେ ଦିଗ ଦିଶୁଥିଲା କେଳ
ପରାଏ ଦୁଗ୍ଧେ ଧଉତ
ସେ ଦିଗର ଶବ୍ଦ ଲାଗୁଥିଲା ମୋର
ଶ୍ରବଣେ ସଙ୍ଗୀତାମୃତ ।

ସେ ପାଖୁଁ ପବନ ବହୁଲେ ଆଦରେ
କରୁଥିଲି ଆଲିଙ୍ଗନ
ଆସିବା ସମୟେ ଛୁଇଁଅଛ ବୋଲି
ପ୍ରିୟତମ ଅପଘନ ।
ଶୁଣି ଦୂରେ ଶୁଷ୍କ ପତ୍ରର ମର୍ମର
ଖଣ୍ଡନ୍ତ ଭୁଲ ଭାବିଲି
ଅରତେ ପଥସ୍ୱେ ପଚ୍ଛାରୁଥିଲି ମୁ
ନାଥଙ୍କ ଘଟଣାବଳୀ ।
ତପସ୍ୱୀ ବୋଲି ସେ ତପସ୍ୟା ପାଇଁକି
ହେଉଥିଲି ମୋର ମନ
ମୌନବ୍ରତୀ ବୋଲି କଲି ଥରେ ଥରେ
ମଉନ ଅବଲମ୍ବନ ।
ସ୍ୱଚଳି ଏ ଭବେ ସକଳ ସୁନ୍ଦର
ସାର ଏ ମୁନିକୁମର
ଆଜି ତାଙ୍କ ତନୁ ଦିଶୁଛି ଯୌବନ
ସୁନ୍ଦରୁ ସୁନ୍ଦରତର ।
ଧନ୍ୟ ଏ ପୁଷ୍ପିତା ପାରିଜାତ ଲତା
କି ତପ ଥିଲା ଆଚରି ?
ପ୍ରିୟତମଙ୍କର ସୁନ୍ଦର ଶ୍ରବଣେ
ହେଲା ଯାହା ସହଚରୀ ।
ଏ ଦିବ୍ୟ ରୂପକୁ ଉତ୍ସଙ୍ଗରେ ଧରି
ଧନ୍ୟ ସେ ସ୍ୱର୍ଗଭୁବନ
ଧନ୍ୟ ମୁ ଏ ରମ୍ୟ ରୂପ ଦେଖି ଆଜ
ସାର୍ଥ କଲି ଯା ନୟନ ।
ଚିନ୍ତି ଚିନ୍ତି ସଦା ଏବେ ମୁନିଙ୍କ
ମୂରତି ହେଲି ଅଥୟ
ମୋ ନେତ୍ରେ ଜଗତ ଯାକ ଏକାବେଳେ
ଦିଶିଲା ତପସ୍ୱୀମୟ ।
ପ୍ରଭାତେ ସରସୀ ବକ୍ଷେ ସବିତାଙ୍କୁ
ଅନାଏ ଯଥା କମଳ

ଅଥବା ବିମଳ ବିଧୁବିମ୍ବ ପ୍ରତି
ଯେମନ୍ତ ସାଗର ଜଳ ।
କି ଅବା ନବୀନ ନବ—ନୀରଧର
ମୂର୍ତ୍ତିକୁ ଯଥା ମୟୂରେ
ତେସନ ତାହାଙ୍କ ଅଭିମୁଖେ ଦୃଷ୍ଟି
ରହିଲି ଅତି ଆତୁରେ ।
ବିରହ ବ୍ୟାଧିରେ ଏ ଜୀବନ ଦେହୁଁ
ଯାଇଥାନ୍ତା ନଷ୍ଟେ ଚଳି
କଣ୍ଠ ଲଗ୍ନ ହୋଇ ରହି ନ ଥାନ୍ତାଟି
ଯେବେ ତାଙ୍କ ଜପାମାଳି ।
ଏକାଳେ ସରଘୁ ଫେରି ତରଳବା
କହୁଛ ଗୋ ମଞ୍ଜୁମତି !
ଅଚ୍ଛୋଦ ତୀରରେ ଦେଖିଥିଲି ସେହି
ଯୁଗଳ ସୁନ୍ଦର ଯତି ।
ତାଙ୍କ ମଧ୍ୟୁ ଯେହୁ ପାରିଜାତ ଲତା
ଖଞ୍ଜିଥିଲେ ତୁମ୍ଭ କର୍ଣ୍ଣେ
ଆତୁର ଚିତ୍ତେ ସେ ବନ୍ଧୁର ଅଗ୍ରତେ
ମୋ ପାଶେ ଆସି ପୁଛିଲେ ।
ଆଗ୍ରହେ ସତ୍ବର, ଉତ୍ତରେ ତୁମ୍ଭର
ସବୁ ପରିଚୟ ପାଇ
ଅନୁନୟେ ମୋତେ ଭାଷିଲେ ଏମନ୍ତ
ମଧୁରସ୍ବରେ ଅନାଇଁ ।
"ଶରୀରୁ ସ୍ବରୁ ଜଣାଯାଏ ତୁମ୍ଭେ
ଭଦ୍ର ଘରର ସନ୍ତତି
ଏଣୁ ତୁଚ୍ଛ କଥା କହୁଛି ସଦୟେ
ଶୋଭନ କି ଗୁଣବତୀ ।"
କୃତାଞ୍ଜଳିପୁଟେ ନିବେଦିଲି ! ଦେବ—
ତୁମ୍ଭେ ପୂଜ୍ୟ ଜଗତର
ତବ ପଦରଜ ବାଞ୍ଛନୀୟ ସଦା
ମୋ ଭଳି ଅକିଞ୍ଚନର ।

ପୁଣ୍ୟ ବନା ଭୂମି   ଭୁଲି ମହାତ୍ମାର
ଦର୍ଶନ ମିଳଇ କାହିଁ
ନିଜ ମନୋଭବ   ନିଃଶଙ୍କ ଚିତ୍ତରେ
ମୋ ପାଖେ କହ ଗୋସାଇଁ ।
ପ୍ରିୟସଖୀ ସମ   ମୁନିବର ମତେ
ଅଭିନନ୍ଦ ସମାଦରେ
ତମାଲ ପଲ୍ଲବ   ତୋଳି ଧୀରେ ଧୀରେ
ମର୍ଦ୍ଦିଲେ ଶିଳାଖଣ୍ଡରେ ।
ଗଜ ମଦସମ   ସୌରଭ ସମ୍ପନ୍ନ
ସେ ଗାଢ଼ରସକୁ ଧରି
ନିଜ ଉତ୍ତରୀୟ   ବଲ୍କଲରୁ ଖଣ୍ଡେ
ଛିଣ୍ଡାଇ ବାହାର କରି ।
ସୁରଭିତ କର—   କମଳ-କନିଷ୍ଠ
ଅଙ୍ଗୁଳି ନଖ ମୁନରେ
ଲେଖି ଏ ଗୁପତ   ପତ୍ରିକା ଅଧୀରେ
ଦେଇଛନ୍ତି ମୋର କରେ ।
ଏତେ କହି ସଖୀ   ସ୍ତନପାଟୁ ପତ୍ର
କାଢ଼ି ଦେଲା ମୋର ହସ୍ତେ
ଉଦ୍‌ବେଗ ଉଲ୍ଲାସେ   ସେ ଲେଖା ଖଣ୍ଡିକ
ନେଲି ତାଠାରୁ ବ୍ୟସ୍ତେ ।
ହେ ରାଜକୁମାର   ସଖୀର ଭାରତୀ
ହେଲେହେଁ ଶବ୍ଦମୟୀ
ସ୍ପର୍ଶ ସୁଖସମ   ଶରୀରେ ରୋମାଞ୍ଚ
ଜନ୍ମାଇଲା ରହି ରହି ।
ତୃଷାର୍ତ୍ତ ଥିଲି ମୁ   ମୋ ପକ୍ଷେ ହେଲା ତା
ସୁପେୟ ପାୟସ ପରି
ସ୍ମର ଉଦ୍‌ବୋଧକ   ସମ୍ମୋହନ ମନ୍ତ୍ର
ଅବା ଚିତ୍ତ ଗଲା ଭରି ।
ଲେଖାଥିଲା ପତ୍ରେ   "ହେ ସୁନ୍ଦରୀମଣି !
ଦେଖାଇ ମୃଣାଳନାଳ

ମଙ୍ଗଳକରକୁ ମାନସରୁ ଯଥା
ଟାଣନ୍ତି ଧୀବରଜାଳ ।
ତେସନ ଧବଳ ମୃଣାଳ ସମାନ
ମଞ୍ଜୁଳ ମୁକ୍ତାମାଳେ
ଟାଣିନେଲୁଁ ଧନ ! ଅଲକ୍ଷେ ମୋହର
ଚଞ୍ଚଳ ମନ ମଙ୍ଗଳେ ।”
ପ୍ରେମ ତୃଷାତୁରେ ପିଇଲି ସେ ପର
ଅମୃତକୁ ପୁନଃପୁନଃ
ମେଣ୍ଟିଲା ନାହିଁ ତ ତୃଷା ହୃଦବ୍ୟଥା
ବଢ଼ିଲା ହୋଇ ଦ୍ୱିଗୁଣ ।
ବାଟବଣା କ୍ଳାନ୍ତ ପାନ୍ଥ ପକ୍ଷେ ହୁଏ
ଦିଗ୍‌ଭ୍ରମ ଯଥା ବିଷମ
କିବା ଅନ୍ଧ ଆଗେ ଯେମନ୍ତ କଜ୍ଜଳ
କୃଷ୍ଣପକ୍ଷ ରାତି ତମ ।
ଅବା ପାପି ପକ୍ଷେ ଯେସନ ନାସ୍ତିକ
ଗ୍ରନ୍ଥପାଠ ବାରବାର
ପୀତଗ୍ରସ୍ତ ଜନେ କି ଅବା ଯେମନ୍ତ
ପ୍ରଖର ଜ୍ୱର ବିକାର ।
କି ଅବା ଯେପରି ମୂକ ମାନବର
ପକ୍ଷରେ ଜିହ୍ୱା ଛେଦନ
ଲକ୍ଷଣ ଉନ୍ମାଦ ରୋଗୀ ପକ୍ଷେ ଅବା
ମଦିରା ପାନ ଯେସନ ।
ତେସନ ମୋ ପକ୍ଷେ ଅଣ୍ଡ ଭସ୍ମାବହ
ହେଲା ସଜନୀର ଗିର
ଯୁଆର ବେଗରେ ଅଟକିଲା କରେ
ଖରସ୍ରୋତା ନଦୀ ନୀର ।
ତରଳିକା ସହ ବସି ସେହୁ କଥା
ହେଉଥିଲି ଅବିରତ
ମୋ ନେନେ ଷଞ୍ଚିଲ ସଖୀର ମୂରତ
ପବିତ୍ର ସାମଗ୍ରୀବତ ।

ଥିଲେ ହେଁ ପାଖରେ ପୁନଃପୁନଃ ମୁହଁ
ଲେଢ଼ଇ ତାର ବର୍ଣ୍ଣନ
ପୂର୍ବ ପରିଚିତା ହୋଇ ସୁଦ୍ଧା ସେହି
ଦିଶିଲା କେଡ଼େ ନୂତନ ।

ପୂରୁଥିଲା ତାକୁ କି ସ୍ୱେଦେ ଦେଖିଲା
କି ବସ୍ତୁରୁଥିଲେ ସେହି
କେତେକାଳ ତହିଁ ଥିଲା, କେତେଦୂର
ଆସିଥିଲେ ପଥ ଦେଇ ।

ଉଲଟାଇ ପାଲ- ଟାଇ ଏକ କଥା
ହେଉଥିଲି ବାରେବାରେ
ତା ସଙ୍ଗ ଏକାନ୍ତ ବସି ସେ ନିର୍ଜନ
ନିଭୃତ ଅଟ୍ଟାଳିକାରେ ।

# ଅଷ୍ଟମ ସର୍ଗ

ଦେଖୁଁ ଦେଖୁଁ ଦିନ     ସରିଲ କ୍ରମଶଃ
ସନ୍ଧ୍ୟା ହେଲ ସମାଗତ
ଚୁମ୍ବିଲେ ତରଣି     ସସ୍ପୃହେ ବାରୁଣୀ
ତରୁଣୀ ଅଧରାମୃତ ।
ମନେ ହେଲ ହେର     ପ୍ରତୀଚୀ ଅଚଳେ
ରବି ବିମ୍ବ ପାଟଳିମା
ଶୋଭିଲେ କିବା ସେ     ଭୋଳା ହୋଇ ବାଳା
ଅନୁରାଗରୁ ରକ୍ତିମା ।
ସୂର୍ଯ୍ୟଙ୍କ ବିରହେ     ବିଧୁରା ରୁଚିରା
ଆଲୋକ—ଲକ୍ଷ୍ମୀ ସହିତେ
ପଦ୍ମଦଳେ ଶୋଇ     ଧୂସର ବରଣ
ବସିଲେ ତାହାର ରଜେ ।
ଗୈରିକ ଶିଖର     ନିର୍ଝର ନୀରରେ
ଧଡ଼ ପାଟଳ କିରଣ
ବନ୍ୟ କରୀଯୂଥ     ପଗ୍ରଏ ବସିଲ
ଉପେକ୍ଷି କମଳବନ ।
ଆକାଶମଣ୍ଡଳ     ପର୍ଯ୍ୟଟନ ସାରି
କ୍ଳାନ୍ତ ଉପଶମ ପାଇଁ
ରବି ରଥ ଅଶ୍ୱେ     ପ୍ରତୀଚୀ ଅଚଳ
ଶିରେ ପ୍ରବେଶିଲେ ଯାଇ ।
ପକ୍ଷୀରବ ଛଳେ     ସେ ଅଶ୍ୱମାନଙ୍କ
କୁତୂହଳ ସ୍ୱରସହ
ସୁମେରୁ ଶିଖର     ଗୁହାରେ ପଶିଲ
ରଜନୀ ଭୟରେ ଅହଃ ।
ଅର୍ଦ୍ଧ ନିମୀଳିତ     ରକ୍ତପଦ୍ମ ଗର୍ଭେ
ପଶନ୍ତେ ଭ୍ରମରବାର
ପ୍ରତେ ହେଲ ପଦ୍ମ     ଦେଖାଏ କି ? ହୃଦ
ଚିର ଦୁରବସ୍ଥା ତାର ।

ଦୂର ଦିଗ୍‌ ସ୍ପର୍ଶି      ନଳିନୀ ନାଡ଼କୁ
କୋକ କୋକ-ସହଚରୀ
ଖାଉଥିବା ଦେଖି,      ସହଜେ ଏ ସ୍ମର
ହୃଦୟରେ ଗଲା ଭରି ।
ଛିନ୍ନ ମୃଣାଳକୁ      ଯତ୍ନେ ସୂକ୍ଷ୍ମ ଧୀରେ
ଆପଣା ଅଡ଼କୁ ଟାଣି
ବଦଳାଉଥିଲେ      କେନଏ ହୃଦ କ
ଶର୍ବରୀ ଆଗତ ଜାଣି ?
ସନ୍ଧ୍ୟାତପେ ବୋଳା      ପକ୍ଷୀଏ ବସାକୁ
ଯାଉଥିଲେ ଉଡ଼େ ଉଡ଼ି
ଅସ୍ତୁଥିଲେ ବନ୍ଧୁ      ପାଳିତ ତୁରଙ୍ଗେ
ଆଶ୍ରମ ମୁଖେ ବାହୁଡ଼ି ।
ଏ ସମୟେ ଆସି      ସହସା କପିଞ୍ଜଳ
ନିବେଦିଲେ ମୋର ପାଶେ
'ଅଚ୍ଛୋଦ ତଟରୁ      ଆସିଛନ୍ତି ଏକ
ତପସ୍ୱୀ ସାକ୍ଷାତ ଅର୍ଥେ ।
ଋଷି ସୁତଙ୍କର      ଆଗମନ ଶୁଣି
ହର୍ଷ ବିସ୍ମୟେ ହୃଦୟ
ଅବଶ ହୋଇଲା,      ସହସା କର୍ତ୍ତବ୍ୟ
କର ନ ପାରିଲି ଥୟ ।
ଶରୀର ଅଳସ      ସ୍ୱେଦ ସଲିଳରେ
ସିକ୍ତ ହୋଇଲା ଗଣ୍ଡଦେଶ
ମୋ ପାଶେ ତାହାଙ୍କୁ      ଘେନ ଆସିବାକୁ
ଇଙ୍ଗିତେ ଦେଲି ଆଦେଶ ।
ସୌନ୍ଦର୍ଯ୍ୟର ସଖା      ଯେମନ୍ତ ଯୌବନ
ଯୌବନ ସଖା ମଦନ
ମଦନର ସଖା      ବସନ୍ତ, ବସନ୍ତ—
ବାନ୍ଧବ ମଳୟପବନ ।
ସେହିପରି ମୋର      ପ୍ରାଣନାଥଙ୍କର
ସଖା ଏ ମୁନି ତନୟ

କପିଞ୍ଜଳ ନାମ ପ୍ରଶ୍ନକର ପର
ତେଜୋବନ୍ତ ଅତିଶୟ ।
ପ୍ରବେଶିଲେ ଯହିଁ ଶୁକ୍ଳବେଶ ଦ୍ୱିଜ
ପଛେ ସେ ଋଷି ତନୟ
ଶାହାନ୍ତ୍ୟ ଚନ୍ଦ୍ର— ମୟୂଖ ସ୍ପୃଷ୍ଟରେ
ଯଥା ନବ ସୂର୍ଯ୍ୟାଲୋକ ।
ମ୍ଳାନ ଦିଶୁଥିଲା ମୁଖଶ୍ରୀ ବାସି
କମଳଦଳ ସମାନ
ଗୃହ ଅବସ୍ଥାନ ଥିଲାପରି ହୃଦେ
ହେଉଥିଲା ଅନୁମାନ ।
ବାରଣ ନ ମାନ ନାନା ଶିଷ୍ଟାଚାରେ
ପଦ୍ମର ପଖାଳି କ୍ଷଣେ
ଯୁବାର ତାହାଙ୍କୁ ଅତି ସମାଦରେ
ବସାଇଲ ଦିବ୍ୟାସନେ ।
କ୍ଷଣପରେ କହି କହିବାକୁ ମୋତେ
ଲଜ୍ଜି ସେ ମୁନିକୁମର
ପାଖେ ଅବସ୍ଥିତା ତରଳିକା ପ୍ରତି
ଦେଖିଲେ ଥରକୁ ଥର ।
ସେ ଦୃଷ୍ଟିରୁ ତାଙ୍କ ମନୋଭାବ ବୁଝି
ନିବେଦଲ ସଦନସ୍ତେ
ମୋଠାରୁ ଏ ସଖୀ ଭିନ୍ନ ନୁହେ ଦେବ !
ସକଳ କହ ନିର୍ଭୟେ ।
ସୁଦୀର୍ଘ ନିଃଶ୍ୱାସେ ଉତ୍ତରିଲେ ମୁନି
"କି କହିବ ହେମାମଣି ।
ଲଜ୍ଜାବଶେ ମୋର ବାଞ୍ଛିତ ବଚନ
ମୁଖେ ନ ପାରୁଛି ଭଣି ।
କାହିଁ ବନବାସୀ ଫଳମୂଳାହାରୀ
ତପସୀ ଋଷିକୁମାର
ଆସକ୍ତ ଦୂଷିତ କାହିଁ ଏ ସଂସାର
ବିଳାସିତାର ଆଧାର ।

କପାଳ ସୁନ୍ଦର ମୋହନ ନାଟ୍ୟରେ
କେଶ କଣ୍ଟକ ଭୂଷଣ
ବୁଝିବ କେ ଏହୁ ରହସ୍ୟ ? ବିଧାତା
ବୁଝନ୍ତି ତାଙ୍କ ବିଧାନ ।
ଦୟା ଧର୍ମ ସତ୍ୟ ସୂକ୍ଷ୍ମ ଜ୍ଞାନ ବୋଧ
ମନୁଷ୍ୟ ବୃତ୍ତିନିଚୟ
କେ କହିବ କାହିଁ ସ୍ୱସୃଷ୍ଟିକୁ ଧାତା
କଲନ୍ତି ପ୍ରପଞ୍ଚମୟ ।
ସଦା ଜିତେନ୍ଦ୍ରିୟ ଜଟାଧର ପକ୍ଷେ
ଯୋଗ୍ୟ ନୁହେ ସେହି କଥା
ଅପର ତା କାହିଁ ହେଲୁ କଲେ ବଧ
ମୋ ପ୍ରିୟ ସଖାର ମଥା ।
ତପସ୍ୟା ପକ୍ଷରେ ସବୁକାଳେ ସାହା
କଷ୍ଟେ ମହା ବିଡ଼ମ୍ବନା
ଶୁଣ ରାଜକେମା ! ବିବର କହୁଛି
ସେହୁ ବଟନ ଘଟଣା ।
ଶୁଣିଅଛ ତୁମ୍ଭେ ସବୋଧେ ବନ୍ଧୁଙ୍କୁ
ନିଷ୍ଠୁର ବଚନ କହି
ନ ତୋଳ କୁସୁମ ଅନ୍ୟସ୍ଥାନେ ଗଲି
ଯେରୂପ ରୋଷ ପ୍ରକାଶି ।
ତୁମ୍ଭେ କେମାମଣି ! ବାହାର ଅସିଲ
ପୁରକୁ ସଖୀ ସଙ୍ଗରେ
ଅଲକ୍ଷଣେ ପୁଣି ଫେରିଲି ସନ୍ଦେହ
ହେବାରୁ ମୋର ମନରେ ।
ବାଲ୍ୟ ସଖୀଥିଲ କେନଙ୍କର ହୃଦ
କେନଙ୍କର ସ୍ନେହରସେ
କ୍ଷଣସ୍ଥାୟୀ କୋଧ ପଳାଇଲା, ସ୍ନେହେ
ଅସିଲି ଫେରି ରଭସେ ।
ନିବିଡ଼ ପାଦପ ଅନ୍ତରାଳେ ଲୁଚି
ଦେଖିଲି ସେ ଭଗେ ଗୁହ୍ୟ

ପ୍ରିୟ ସଖାଙ୍କର ସଡ଼ା ଶବ୍ଦ କିଛି
ଟିକିଏ ପାଇଲି ନାହିଁ ।
ସୁବଲ୍ ଦାମାଙ୍କ ଛନ୍ଦେ ଅନୁସରି
ଭ୍ରମରି ସବୁ ପଥଯେ
ସଖି ଲଭି ଏବେ ଆସିବାକୁ ଅବା
ନବ୍ୟହାନ୍ତ ଲଜ୍ଜା ଭୟେ ।
ଖୋଜେ ମନସ୍ତାପେ ଛଡ଼ି ମୋତେ କିସେ
ସ୍ୱଲଗଲେ ନକେତନେ ?
ଖୋଜି ଖୋଜି କିବା ଏକାନ୍ତ ଅନ୍ତରେ
ଭ୍ରମୁଛନ୍ତି ଘୋରବନେ ?
ଶୈଶବ ସମୟୁଁ ଛଳେ ସୁଦ୍ଧା କେବେ
ନୋହୁଥିଲୁ ଅଦର୍ଶନ
ନ ଦେଖି ସହସା ତାଙ୍କୁ ଏଣୁ ଅତି
ସନ୍ତପ୍ତ ହେଲା ମୋ ମନ ।
ନାନା ଅମଙ୍ଗଳ ଆଶଙ୍କାରେ ମୋର
ହୃଦସ୍ଥଳ ଗଲା ଭରି
ସୁବଲ୍ ଲଜ୍ଜାରେ କିଛି ଅଘଟନ
ପାରନ୍ତିନ କି ଆଚରି ।
ତଳାତଳ କରି ଉତ୍ତପ୍ତ ଭୂମି
ସଙ୍ଗେ ବନ ଭିତରେ
ଖୋଜିଲି ଚନ୍ଦନ କାନନେ ଲଭିକା
ମଣ୍ଡପେ ସର ତଟରେ ।
ଚକିତେ ଦେଖିଲି ବସିଥିଲେ ସେଠୁ
ସର ତୀର ଶିଳାସନେ
କୋମଳ ପଲ୍ଲବେ ସମାଚ୍ଛନ୍ନ ଏକ
ସୁରମ୍ୟ ଲତାଭବନେ ।
ନୋହୁଥିଲା ତଳେ ପ୍ରିୟସଖାଙ୍କର
କୌଣସି ଅଙ୍ଗ ସ୍ପନ୍ଦନ
ବସିଥିଲେ ମୌନେ ଖୋଦିତ ମର୍ମ୍ମର
ପାଷାଣ ମୂର୍ତ୍ତି ଯେସନ ।

ତାଙ୍କ ମୂର୍ତ୍ତି ଦେଖି          ମନେ ହେଉଥିଲା
ଧ୍ୟାନସ୍ଥ ହର ଭ୍ରମରେ
ଭଙ୍ଗ ହେବା ଭୟେ          ମାର ମାରୁଥିଲା
ଛପି କିବା ଫୁଲଶରେ ।
ଅଥବା ହୃଦୟ          ବାସିନ୍ଦା ଅପ୍ସାର
ସହଜ ମିଳିବା ପାଇଁ
ପଶିଥିଲେ ତାଙ୍କ          ଇନ୍ଦ୍ରିୟ ନିକର
ହୃଦୟ ଭିତରେ ଯାଇ ।
ଇନ୍ଦ୍ରିୟ ସ୍ଥଳନ          ଶୂନ୍ୟ ହୋଇ ଏଣୁ
ଦେହ ମାତ୍ର ଥିଲା ପଡ଼ି
ଭିତରର ଯନ୍ତ୍ର          ନଷ୍ଟ ହେଲେ ଯଥା
ରହିଥାଏ ସ୍ୱର୍ଣ୍ଣଘଡ଼ି ।
ମୁଦ୍ରିତ ଜଳାର୍ଦ୍ର          ଲୋଚନକ ସମ
ଦିଶୁଥିଲା ନେତ୍ର ତାର
ବହି ଯାଉଥିଲା          ଅବଶ୍ରାନ୍ତ ତହିଁ
ସ୍ରୋତ ବେଗେ ଅଶ୍ରୁଧାର ।
ସେହି କାମାନଳ          ଦଗ୍ଧ କରୁଥିଲା
ହୃଦୟ ପୁଣ୍ଡରୀକର
ଦିଶୁଥିଲା ତାର          ଊର୍ଦ୍ଧ୍ୱଗାମୀ ଶିଖା
ସମ ତାଙ୍କ ରକ୍ତାଧର ।
ବସିଥିଲେ ମୌନେ          ବାମଗଣ୍ଡ ତାଙ୍କ
ବାମହସ୍ତରେ ଆବରି
କରଜ ନିକର          ଦିଶୁଥିଲା ଗଲେ
ଚନ୍ଦନର ଠୋପା ପରି ।
ପୂର୍ବେ ଲାଗିଥିବା          ପାରିଜାତ ଫୁଲ
ମଧୁ ସୌରଭେ ଚଞ୍ଚଳ
ଅସ୍ପଷ୍ଟ ମଧୁର          ସ୍ୱରେ ଉଡୁଥିଲେ
ତହିଁ ଚଳ ଅଳିଦଳ ।
ଜଣା ଯାଉଥିଲା          ଜପୁଥିଲେ ସେହି
ମାର ମନ୍ତ୍ର ଏକମନେ

ଅବା ଯାଉଥିଲେ    ବଧୀବାକୁ ନିଜ
ସଂକଳ୍ପ ସିଦ୍ଧି କାରଣେ ।
ଜନିଥିଲା ଦେହେ    ରୋମାଞ୍ଚ ଉତ୍କଟ—
ସନ୍ତାପର ସଙ୍ଗେ ସଙ୍ଗେ
ଲାଗି ରହୁଥିଲା    ମଦନ ଶରର
ଫଳମାଳ କିବା ଅଙ୍ଗେ ?
ଉପରୁ ନିକ୍ଷେପୁ—    ଥିଲେ ସଖୀଙ୍କର
କଳେବର ତରୁବ୍ରଜ
ମଦନର ବଶୀ—    କରଣ ଅମୋଘ
ଚୂର୍ଣ୍ଣଦ୍ରବ୍ୟ ଯେ ପୁଷ୍ପରଜ ।
ଋତୁ ସାମ୍ରାଜ୍ୟର    ଅଭିଷେକ ଜଳ
ସମ ଅତି ସୁରଭିତ
ପୁଷ୍ପ ମଧୁରସେ    ବନଲକ୍ଷ୍ମୀ ତାଙ୍କୁ
କଲେ କିବା ଅଭିଷିକ୍ତ ?
ପଳାଶ କୁସୁମ    ଖସି ସଖୀ ଦେହେ
ପଡୁଥିଲା କ୍ଷଣେ କ୍ଷଣେ
ତଥିପରେ ଅଳି    ବସିଥିବା ଦେଖି
ଏଭାବନା ହେଲା ମନେ ।
ଧୂମ ପରିପୂର୍ଣ୍ଣ    ଆଗ୍ନେୟ ବର୍ତ୍ତିକ
କିଅବା ଘେନ ଅତନୁ
ଗର୍ଭ ଦେଉଥିଲା    ବନ୍ଧୁଙ୍କ ଦେହକୁ
ଠକାଇ କୁସୁମଧନୁ ।
ମଧୁ ସମୟର    ଜୟଧ୍ୱଜ ଚଳେ
ପରଭୃତ ଧରି ପାଳି
ତପ ବିପରୀତ    ଆଚରଣ ପାଇଁ
ଦେଉଥିଲେ ସିନା ଗାଳି ।
ପ୍ରସ୍ତୁତ କାଳୀନ    ଚନ୍ଦ୍ରକଳା ପରି
ଦିଶୁଥିଲେ ବନ୍ଧୁବର
ଅଥବା ଶରତ    କାଳରେ ଯେସନ
କୃଶକାନ୍ତ ସରୋବର ।

ଅନ୍ତର୍ଗତ ଅଗ୍ନି— ଶିଖା ସନ୍ତାପରେ
ଚନ୍ଦନ ତରୁ ସମାନ
ଶରତ ବଧୂର କୃଶ କଳେବର
ହୋଇଥିଲା ମ୍ରିୟମାଣ ।
ଚନ୍ତାକୁଳ ମନେ ମୁଖ ରଖିବାକୁ,
ପତା ଦେଇ ବୃକ୍ଷେ ଲକ୍ଷି
ଅସହ୍ୟ ଦୁଃଖରେ କାନ୍ଦ କାନ୍ଦ ଅହା
ଫୁଲ୍ ଯାଇଥିଲା ଅକ୍ଷି ।
ଗାଢ଼ ଭାବନାରେ ଯାଇଥିଲା ରୂପ
ସମ୍ପୂର୍ଣ୍ଣଭାବେ ବଦଳି
ସହସା ସୁଙ୍କର ପରିଚିତ ବୋଲ୍
ନୋହୁଥିଲା ଆଉ କଳ ।
କେ କହିବ କପିଁ। କି ବ୍ୟାଧି ତାହାଙ୍କୁ
କଲା ଏମନ୍ତ ଉଦ୍ଭ୍ରାନ୍ତ
ଅବସାଦ କ୍ଷଣେ ଦେଖୁଁ ଦେଖୁଁ ହେଲେ
କେଉଁ ମହାଭୂତଗ୍ରସ୍ତ ।
ହେଉ ତାହାଙ୍କର ଶରୀରର ଏହି
ଗଭୀର ଅବସାଦ
ଏହା ଅଶଙ୍କାରେ ଜନ୍ମିଲା ମୋହର
ହୃଦରେ ମହାବିଷାଦ ।
ପ୍ରିୟସଖୀ ପାଶେ ପ୍ରବେଶି ମୁଁ ତହୁଁ
ଶୁଣ ଗୋ ରାଜରୂପସୀ !
ସନ୍ନିକଟବର୍ତ୍ତୀ— ବିସ୍ତୃତ ପ୍ରସ୍ତର
ଖଣ୍ଡେ ଏକପାର୍ଶ୍ୱେ ବସି ।
ଧୀରେ ଧୀରେ ସ୍ନେହେ ତାହାଙ୍କ ପୃଷ୍ଠରେ
ଅଧୀରେ କର ଚଳାଇ
ଅର୍ଦ୍ଧମୃତ ଭାବେ ରହିଥିଲେ ଧରା
ବସାଇ ଦେଲି ଉଠାଇ ।
ବୁଝିଲି ଏହାଙ୍କ ପାଶେ ଉପଦେଶ
ହେବ ନାହିଁ କିଛି ଫଳ

ମୁମୂର୍ଷୁ ରୋଗୀର    ପକ୍ଷେ ଯେହ୍ନେ ତାର
ଔଷଧ ହୁଏ ବିଫଳ ।
ତଥାପି ଯେପରି    ପାପପଥେ ପ୍ରିୟ—
ବନ୍ଧୁର ହୁଅଇ ଗତି
ବନ୍ଧୁର କର୍ତ୍ତବ୍ୟ    ସତ୍‌ପଥେ ତାହାଙ୍କ
ଫେରାଇ ଆଣିବା ମତି ।
ଏହା ଭାବି ମୋର    କର୍ତ୍ତବ୍ୟ ବନ୍ଧୁର
କେତେ ବୁଝାଇ ବୁଝାଇ
ନାନା ଉପଦେଶ    ଦେଲି ବଚନତ
ମତି ଫେରାଇବା ପାଇଁ ।
ସ୍ମରିଲ କହତ    ସଖେ ! ସବସ୍ତର
କି ବଚନ ଏ ଘଟଣା
କହିଁ ଅସ୍ପର    ଦର୍ଶିଲି ବୃଥାରେ
ହେଉଛ ଏତେ ଉନ୍ମନା ।
କାହିଁଗଲା ତୁମ୍ଭ    ବ୍ରହ୍ମଚର୍ଯ୍ୟ କାହିଁ
ଗଲା ବ୍ରହ୍ମ ଆରାଧନା
କି ଭୀଷଣ ଘୋର    ପାପ ପଙ୍କେ ପଡ଼ି
ଲଭିଲ ଏ ବିଡ଼ମ୍ବନା ?
ବିସ୍ମରିଲ କିହେ    ଗୁରୁଜନଙ୍କର
ଯେତେ ଉପଦେଶାବଳୀ
ଧୈର୍ଯ୍ୟ ଲଜ୍ଜା ସିନା    ସ୍ମର ତାପେ ଗଲା
ତୁଷାର ପର ତରଳି ?
ମଣୁଅଛ କିହେ    ଏହା ଅଟେ ବୋଲି
ସ୍ୱର୍ଗକୁ ଯିବାର ପଥ ?
ଅବା ଏହା ଯୋଗ    ଅଭ୍ୟାସ କିବା ଏ
ମୁକତିଲାଭର ବ୍ରତ ?
ତୁମ୍ଭ କୃତ ପକ୍ଷେ    ରମଣୀର ଚିନ୍ତା
ଅତି ଗର୍ହିତ ବିଷୟ
କହ କହ କିପାଁ    ସେ ହୀନ କଥାରେ
ଢଳାଇଅଛ ଆଶୟ ?

ଦେଖ ଏ ଦୁର୍ମତ          ଉଣ୍ଡପଣ୍ଡ ରୂପ
    ମନକୁ କେମନ୍ତ ମନ୍ଥି
ଅଜ୍ଞା ଅଶୁଣା          ଲଳନାର ସହ
    ପକାଉଛ ପ୍ରେମଗ୍ରନ୍ଥି ।
ଅଜ୍ଞାନର ପରି          ବନ୍ଧୁ ! ଏ ସକଳ
    ବୁଝିପାରୁ ନାହିଁ କିଆଁ
କେ କହ ଭବରେ          ନିଶ୍ଚିନ୍ତେ ଶୁଅଇ
    ଘର ଜ୍ୱଳେ ଜ୍ୱଳୁଁ ନିଆଁ ।
ମୂଢ଼ ନାରୀରଙ୍କ—          ମାନଙ୍କୁ କେବଳ
    ଦିଅଇ ମାର ଯାତନା
ଜିତେନ୍ଦ୍ରିୟ ଜନେ          ସେଥିରେ କିପାଁଇ
    ହୋଇବେ କହ ଉନ୍ମନା ।
ଯେ ମୂଢ଼େ ବିଳାସ          ସମ୍ଭୋଗକୁ ସୁଖ
    ବୋଲି ବିଚାରନ୍ତି ମନେ
ରଜ୍ଜୁଭ୍ରମେ ସିନା          ସ୍ଥାନ ଦିଅନ୍ତି ସେ
    ସର୍ପକୁ ନିଜ ସଦନେ ।
ଫୁଲମାଳ ମଣି          ଶାଣିତ କୃପାଣ
    ଆଦରେ ବହନ୍ତି ଗଳେ
ମୃଣାଳ ଜ୍ଞାନରେ          ବାରଣ ଦନ୍ତକୁ
    ଉପାଡ଼ନ୍ତି କୁତୂହଳେ ।
ହୁତାହୁତ ଦୀପ          ଦାଉପର କିପାଁ
    ଅପକ୍ଷେ ଧାଉଁଛ ଜ୍ୱଳି
ଜ୍ୟୋତିରିଙ୍ଗଣର          ପର ଦୃଅ ନାହିଁ
    ଦୁର୍ଦ୍ଦିନେ ତେଜ ଦେଖାଇ ।
ବୁଝାଇ କହିଲି          ସଖାକୁ ଏ ସବେ
    କେତେ ବ୍ୟାଜ ବର୍ଣ୍ଣନାରେ
ତଥାପି ମୋ କଥା          ପଶିଲା ନାହିଁ ତ
    ତାହାଙ୍କର କର୍ଣ୍ଣ ଦ୍ୱାରେ ।
ବାଧା ଦେଇ ମୋର          କଥାରେ କହିଲେ
    ସଖା ଶୋକ ଅସମ୍ଭାଳେ

ତଳକୁ ବଦନ ପୋଛି ବାମକର
ନିବେଶିଣ ଗଣ୍ଡସ୍ଥଳେ ।
"କି କହିବ ସଖେ ! କହିବାର ଏଥି
ନାହିଁ କିଛି ପ୍ରୟୋଜନ
ବୁଝି କି ପାରିବ ବ୍ୟଥିତର ବ୍ୟଥା
ତୁମେ କେବେ ସୁଖୀଜନ ।
ବିଶେଷେ ବିଷମ ମହାଭୟଙ୍କର
ବିଷଧର ବିଷେ ମଖା
କାମର ଅସହ୍ୟ— ବାଣର ଲକ୍ଷରେ
ପଡ଼ିନାହିଁ ତୁମ୍ଭେ ସଖା !
ସେଥିପାଇଁ ମୋତେ ନାନାମତେ ସିନା
ଦେଉଅଛ ଉପଦେଶ
ମାତ୍ର ସେହି ଉପ— ଦେଶେ ଉପକାର
ହୋଇବ କି ମୋର ଲେଶ ?
ଇନ୍ଦ୍ରିୟ ମନ ଯା' ସୁସ୍ଥ ଅଛି ସେହି
ଜାଣୁଛି ସବୁ ଘଟଣା
କରି ପାରୁଅଛି କିବା ସେ ସକଳ
ଭଲ ମନ୍ଦ ବିବେଚନା ।
ସେ ସିନା ଅଟଇ ସଂସାରେ ଉତ୍ତମ
ଉପଦେଶଯୋଗ୍ୟ ସ୍ଥଳ !
ବାଳାର ଦର୍ଶନ ମାତ୍ର ମୋହଠାରୁ
ଗଲେଣି ସବୁ ପଳାଇ ।
କି କହିବ ସଖେ ନିଜବଶେ ଆଉ
ନାହିଁ ତ ମନ ମୋହର
ଅଲକ୍ଷିତେ ତାହା ହୃଦରୁ ହରଣୀ—
ଧୁଣା କରିଲଣି ସ୍ୱୈର ।
ଦେଖୁଛ ତ ମୋର ଏହି ଦୁରବସ୍ଥା
କହିବାର କିବା ଫଳ,
ସେ ସବୁ ଛାଡ଼ିବା ପାଇଁ ହୃଦୟରେ
ନାହିଁ ଆଉ ଶକ୍ତି ବଳ ।

ମନ ଫେରାଇବା ଲଗି ବୃଥା ଯତ୍ନ
ନ କର ଅଉ ସୁଧୀର !
ଯେତେ ବାରିଲେହେଁ ବାରଣ ମାନେ କି
କେବେ ନିମ୍ନମୁଖୀ ନୀର ?
ପ୍ରଳୟକାଳୀନ ଉଦିତ ଦ୍ୱାଦଶ
ସୂର୍ଯ୍ୟକିରଣରୁ ବଳି
ଅତ୍ୟନ୍ତ ତୀବ୍ର ସ୍ମର ସନ୍ତାପରେ
ଦେହ ଯାଉଅଛି ଜଳି ।
ଅନଙ୍ଗ ଅଗ୍ନିରେ ମୋ ଅଙ୍ଗପ୍ରତ୍ୟଙ୍ଗ
ପାକହୋଇ ଅକସ୍ମାତ
ଅସ୍ଥି ମଜ୍ଜାସବୁ ତରଳ ତାହାର
କାହାର ହେଲଣି କ୍ୱାଥ ।
ପୋଡ଼ିଯାଉଅଛି ପ୍ରଖରେ ଶରୀର
ସନ୍ତପ୍ତ ହୃଦୟ ମନ
ପ୍ରବଳ ପ୍ରଗାଢ଼ ଚିନ୍ତାରେ ମସ୍ତିଷ୍କ
ହେଉଅଛି ଅବସନ୍ନ ।
ସେତେବେଳ ସଖୀ ବସିଛି ସେଥିର
ଚିନ୍ତା ଭିନ୍ନ ପ୍ରତିକାର"
ଏହା କହି ତୁନି ହେଲେ ସେ, ବହିଲା
ପ୍ରବଳ ଲୋତକଧାର ।
ଦେଖିଲି କାମର ଚରମ ଦଶାକୁ
ଲଭିଲେଣି ବନ୍ଧୁ ମୋର
ବୃଥା ଉପଦେଶେ କଦାପି ନିବୃତ୍ତି
ହେବ ନାହିଁ ଏହାଙ୍କର ।
ଅନନ୍ୟ ଉପାୟେ ସରୋବରେ ପଶି
ମୃଦୁମୃଣାଳ ଆହରି
ଶଯ୍ୟାଏ ରଚିଲି ଜଳାର୍ଦ୍ର କମଳ
କୋମଳଦଳେ ସୁନ୍ଦର ।
ସୌରଭେ ସୁନ୍ଦର ନବ ଶ୍ୱେତୋତ୍ପଳ
କହ୍ଲାରଫୁଲ ତୁଳାଇ

ଲତା ମଣ୍ଡପର ସେ ପୁଷ୍ପ ଶଯ୍ୟାରେ
ବହ୍ଲେ ଦେଲ୍ ବିଛାଇ ।
ନିଜସ୍ଥାନ୍ତୁ ଉଠି ସଖୀ ସେହି ଶେଷେ
ବସନ୍ତେ ଯାଇ ସୁସ୍ଥରେ
ଦେହରେ ଯେତେକ ଧୂଳି ଲାଗିଥିଲା
ଝାଡ଼ି ଦେଲ୍ ତାହା କରେ ।
ଚନ୍ଦନ ପଲ୍ଲବ ଅପୂର୍ବ ତାହାର
ଶୀତଳ ସ୍ନିଗ୍ଧ ରସରେ
ଲେପିଲ୍ ବହ୍ଲେ ନବ-ଜାମାତୃର
ବକ୍ଷବର ଲଲାଟରେ ।
କର୍ପୂର ଗନ୍ଧର ବିଦୀର୍ଣ୍ଣ ଫଳର
ଛିଦ୍ରରୁ ପରାଗ ଫେଇ
ସେ ଶୀତଳ ରଜ ଝାଳ ଜରଜର
ତନୁରେ ଘଷିଲ୍ ନେଇ ।
ସଖୀର ବିରହ ସନ୍ତାପ ନାଶିଲ୍
ବଷ୍ପବହ୍ନି ନିଜ ହାତେ
ଜଳବିନ୍ଦୁ ବର୍ଷୀ କୋମଳ କଦଳୀ
ପଲ୍ଲବ ବିଚଣା ବାତେ ।
ପାଞ୍ଚିଲ୍ ମନରେ ହାୟ ! କି ପ୍ରଚଣ୍ଡ
ଭିଆଇ ପ୍ରଚଣ୍ଡ ମାର
ଏମନ୍ତ ଅତୁଳ ଶୁଦ୍ଧ ଚରଣକୁ
କ୍ଷଣେ କଲ ଛାରଖାର ।
ଚିର ସଂଯମୀକୁ କଥାକେ କାମିନୀ
ଦାସେ ଯୋଗୀ ବଳହାରେ
ପ୍ରକାଶିଲା ସିନା 'ସଂଯତ ଯୌବନ
ବିରଳ ବୋଲି ଧରାରେ' ।
ଯାହୁଁ ମୃଗ ସମ ବନବାସୀ, ସଦା
ଜିତେନ୍ଦ୍ରିୟ ତପସ୍ୱୀ
ଯାହୁ ବିଳାସିନୀ ହାବ ଭାବ ମୟୀ
ଗନ୍ଧର୍ବ ରାଜ-କୁମାରୀ ।

ହରତା ତାହାତା ଭସ୍ମକ ସାଇଁଣ—
ପ୍ରିୟ, ତାହିଁ ଉଦ୍ଧ୍ୱେତା
ତାମ୍ବୁଳ କର୍ପୂର ଦନୋଷନା ତାହିଁ
ପ୍ରେମଶୀଳା ମହାଶ୍ୱେତା ।
ମହା ଦମ୍ଭୀଠାରୁ ଦାମ୍ଭିକ ଜଗତେ
ଅଛୁ ତୁହି ରଣଷଢ !
ତୋତେ ଅବହେଳା କରିବ ଏମନ୍ତ
କାହାର ଅଛି ଶକତ ?
ସଂସାରେ ତପସ୍ୱୀ— ମାନଙ୍କର କଥା
ଗଣନା କରୁଛି କିଏ ?
ଅଚେତନ ଦ୍ରବ୍ୟ ପଣ ହେଉଛନ୍ତି
ତୋର ପ୍ରଶ୍ରେ ଯୋଗେଏ ।
ତୋର ଇଚ୍ଛା ହେଲେ କୁମୁଦିନୀ ସହ
ରସିବେ ଦେବ ତପନ
ରବି ରଶ୍ମି ଛାଡ଼ି ଚନ୍ଦ୍ରଙ୍କରେ ପ୍ରୀତ
କରିବେ କମଳ ବନ ।
ତୋହରି ପ୍ରତାପେ ରଜନୀ ହୋଇବ
ଦିନର ଅନୁରାଗିଣୀ
ଜ୍ୟୋତ୍ସ୍ନାଜାଲ ହେବ ପ୍ରଗାଢ଼ ପ୍ରବଳ
ଅନ୍ଧକାରର ସଙ୍ଗିନୀ ।
ତୁ ମନେ ପାଇଲେ ଛାୟା ମରିଯିବ
ପ୍ରେମରେ ସେ ପ୍ରଦୀପର
ସହଜେ ବାର୍ଦ୍ଧକ୍ୟ ଇଚ୍ଛିବ ହେବାକୁ
ଯୌବନର ସହଚର ।
କି କରିବ ଏବେ କାହିଁ ଯିବ ମୁହିଁ
କାହାର ନେବି ଶରଣ
କିସ ପ୍ରତିକାର ଲେଢ଼ିବ କି ଯୁକ୍ତି
କରିବ ଅବଲମ୍ବନ ।
କେମନ୍ତେ ଏ ଘୋର ଦୁଃଖୁଁ ରକ୍ଷା ହେବ
ଜୀବନ ପ୍ରିୟ ସଖାର

ଅଗୋ ରାଜବାଳା । ସେ କଥା ମୋ ହୃଦେ
ଉପୁଜଇ ବାରବାର
ପରିଣାମ ଶୁଭ ହେଉ ବା ଅଶୁଭ
ହେଉ ପ୍ରାଣରକ୍ଷା ପାଇଁ
ପ୍ରବଳ ବ୍ୟାଧିର 'ମହାଶ୍ୱେତା' ବିନା
ସ୍ୱତନ୍ତ୍ର ଔଷଧ ନାହିଁ ।
ପ୍ରାଣ ଛାଡ଼ିବାକୁ ଡେରି ନାହିଁ ଏକା
ଶ୍ୱାସ ବନ୍ଦବାର ଦେଖି
ସଙ୍କଟ କାର୍ଯ୍ୟରେ ଧାଇଁଛି ସଂସାର
ନିନ୍ଦା ଭୟକୁ ଉପେକ୍ଷି ।
ନିତାନ୍ତ କର୍ତ୍ତବ୍ୟ ବିଷୟ ହେଲେହେଁ
ନିଜର କର୍ତ୍ତବ୍ୟ ମଣି
ବନ୍ଧୁର ପରାଣ ବଞ୍ଚାଇବା ଲାଗି
ଆସିଥିଲ ଜେମାମଣି !
ଏହି ଘଟଣାର ଯା କର୍ତ୍ତବ୍ୟ ଏହି
ପ୍ରେମର ଯା ପ୍ରତିଦାନ
ନିଜର ଉଚିତ ଯାହା ଶୀଘ୍ର ଚିନ୍ତ
ସେଥିର ପ୍ରତିବିଧାନ ।”
ଏହା କହି ମୋତେ ଅନାଇଁ ରହିଲେ
ଏକ ଦୃଷ୍ଟେ କପିଞ୍ଜଳ
ବନ୍ଧୁଙ୍କର ଭଙ୍ଗୀ ଶ୍ରବଣାରେ ତାଙ୍କ
ଶାନ୍ତି ହେଲା ମର୍ମସ୍ଥଳ ।
କପିଞ୍ଜଳ ବାକ୍ୟ ଶୁଣିଲି କୁମାର !
ସୁଖ ସୁଧାସର ନୀରେ
ବହ୍ନି ସନ୍ତାପିତ ଧରଣୀ ଉପରେ
ସୁଧା ବରଷିଲା କିରେ ।
ସେତେକ ଆନନ୍ଦ ଏକାବେଳେ ଆସି
ହୃଦେ ହେଲା ପୁଞ୍ଜୀଭୂତ
ସ୍ୱେଦ ବ୍ୟାଜେ ସୁଧା ଜଳ ବରଷିଲା
ଦେହେ କି ପ୍ରେମ ଅମୃତ ?

ଗ୍ରଥିତ ସୂତ୍ରରୁ    ଗୋଟି ଗୋଟି ମୁକ୍ତା
ପଡଇ ଖସି ଯେସନ
ବନ୍ଧୁ ବନ୍ଧୁ ଅଶ୍ରୁ    ଅଲକ୍ଷେ ଅନନ୍ଦେ
ଝରଇ ନେତ୍ରୁ ତେସନ ।
ଲଜ ପାଟଳମା    ଫୁଟିଲା କୁମାର !
ଅଚିରେ ମୁଖ ମଣ୍ଡଳେ
ବାଳ ରବିକର    ଯେମନ୍ତ ପ୍ରକଟେ
ପ୍ରଫୁଲ୍ଲ ପଙ୍କଜ ଦଳେ ।
ଜାଣିଲି କେବଳ    ଏକା ମୋତେ ପୀଡ଼ା
ଦେଉ ନାହିଁ ଫୁଲଶର
ସେହି ଫୁଲଶରେ    ମୁଗ୍ଧା ସେ ପ୍ରାଣେଶ
ତନ୍ତୁକୁ କରେ ଜର୍ଜ୍ଜର
ଦୋଷୁଥିଲି ମୁହିଁ    ମୀନକେତନକୁ
ମନରେ ବୈରୀ ବିଚାର
ମାନବ ଜାଣିଲି    ତାଠାରୁ ସଂସାରେ
ନାହିଁ କେହି ଉପକାରୀ ।
ସ୍ୱପନରେ ମୁଗ୍ଧା    ସାଧୁ କପିଞ୍ଜଳ
ନକହିବେ ମିଥ୍ୟାବାଣୀ
ନଷ୍ଟେ ପ୍ରାଣକାନ୍ତ    ସହି ମିଳାଇବ
ଅନୁକୂଳ ଭାଗ୍ୟ ଆଣି ।
କି ଉତ୍ତର ଦେବ    ମୁନିଙ୍କୁ, ସହସା
ସ୍ଫୁରିଲା ନାହିଁ ମନରେ
ବାତେ ଚଳଦଳ    ପତ୍ର ଏ ଥରଇ
ହୃଦ ମୋର ଉଦ୍‌ବେଗରେ
ଏକ ସଖୀ ଆସି    କହିଲା ସେକାଳେ
ତୁମ୍ଭର ଅସ୍ୱାସ୍ଥ୍ୟ ଜାଣି
ଦେଖିବା ପାଇଁକି    ପରିବୃତ ସହି
ଆସୁଛନ୍ତି ମହାରାଣୀ ।
ଉଠିଲେ, ଶୁଣି ତା    କପିଞ୍ଜଳ ଋଷି
ଏମନ୍ତ ସଦୟ ବାଣୀ

ପ୍ରିୟ ବନ୍ଧୁପାଶେ  ଗନ୍ଧର୍ବନନ୍ଦନ !
କହ ଗୋ ମୋତେ ମେଲାଣି ।
ବୁଡ଼ିଲେଣି ସୂର୍ଯ୍ୟ  ଅସ୍ତ ହେଲାଣି
ସନ୍ଧ୍ୟା ପ୍ରବାଳପାଟଳା
ମାଗୁଣି ଏତିକି  ପ୍ରଣୟୀର, ପ୍ରାଣ
ରଖିବ ନରେନ୍ଦ୍ର ବାଳା !
ଏ କଥା ଉଚ୍ଚାରି  ପ୍ରତ୍ୟୁତ୍ତର ଲାଗି
ନ ଠାକି, ମହାଉତ୍ସୁକେ
ଗୃହରୁ ବାହାରି  ଗଲେ ସେ ଚଞ୍ଚଳେ
'ଅଚ୍ଛୋଦ' ସରସୀ ମୁଖେ ।
ମନେ ହେଉଅଛି  ସେକାଳେ ଜନନୀ
ଆସିଥିଲେ ମୋର ପାଶେ
ମାତ୍ର ମନେ ନାହିଁ  କି କରେ ବ୍ୟବସ୍ଥା
କି କି କଲେ ବ୍ୟାଧି ନାଶେ ।
ମୁନି ପାଶେ ମନ  ଥୋଇ ପଡ଼ିଥିଲି
ଶଯ୍ୟାରେ ଶୂନ୍ୟ ହୃଦୟ
କେବଳ ଜଗତ-  ଯାକ ଦିଶୁଥିଲି
ଏକା ପୁଣ୍ଡରୀକମୟ ।
ଏକାଳେ ହାରୀତ (୧)  ସମ ହରିତ୍‌ବର୍ଣ୍ଣ
ଘୋଟକ ଯୁକତ ରଥେ
ଆରୋହି ସହସ୍ର  କର ପ୍ରବେଶିଲେ
ଦୂର ପଶ୍ଚିମାଶା ପଥେ ।
ଉଲ୍ଲାସେ ଉନ୍ମତ୍ତ  ନୃତ୍ୟକାରୀ କେକୀ
କେକା ତାକ ସଙ୍ଗେ ସଙ୍ଗେ
ଅତି ମନୋହର  ପ୍ରଦୋଷ ସମୟ
ଧରାକୁ ଆସିଲା ରଙ୍ଗେ ।
ପ୍ରବାଳ ପାଟଳ  କିରଣେ ରଞ୍ଜିଲେ
ଗଗନକୁ ଛାୟାବର

(୧)—ହରଡ଼ ପକ୍ଷୀ

ପ୍ରତେ ହେଲ ଜଳ ଉଠିଲ ଦରନ୍ତ
ବହ୍ନିକି ଚକ୍ରବାକର ?
ପଶ୍ଚିମଦଗକୁ ଢଳଦଅ ପୁଣି
ପୁର୍ବକୁ ସାଗୁଅ କର
କାଳଅ ମିଶ୍ରିତ ଲଲିଅ ବେଶରେ
ଆସିଲ ସନ୍ଧ୍ୟାସୁନ୍ଦରୀ ।
ଅଗ୍ନେୟ ଗିବରୁ ଉଥିତ ଲୁସିତ
କର୍ଦ୍ଦମଜଳ ପ୍ରକାର
ବଶ୍ୱକୁ ବ୍ୟାପିଲ ଅବଲମ୍ବେ ଆସି
ସର୍ବଗ୍ରାସୀ ଅନ୍ଧକାର ।
ଲକ୍ଷମ ଦପଦେ ପଡ଼ିଲ, ମଗଜ୍
ଚନ୍ଦ୍ରାଶକ୍ତ ହେଲ ଭ୍ରଂଶ
କାହାକୁ କହବ କିଏ ବା ଏ କାର୍ଯ୍ୟେ
ଦେବ ମୋତେ ପରାମର୍ଶ ।
ଅନନ୍ୟ ଉପାୟେ କର୍ତ୍ତିବ୍ୟ ଲେଡ଼ଲ
ତରଳକା ସହିତରେ
ଭ୍ରମରୀ ଯେମନ୍ତ ସ୍ୱଦୁଃଖ କାହାଣୀ
କହଇ ପୁଷ୍ପ କର୍ଣ୍ଣରେ ।
ବୁଝୁଛୁ ତ ସଖି ! ଯଣ ଅଗେ କହି
ଗଲେ ଯାହା କପିଞ୍ଜଳ
ନ କରବ ଭଲେ ଥୟ ଧରୁ ନାହିଁ
ହେଉଛି ପ୍ରାଣ ଚଞ୍ଚଳ ।
ଉତର ବଂଶୀୟା କନ୍ୟା ପର ଯେବେ
ଲଜ୍ଜା, ଧୈର୍ଯ୍ୟ, ସଦାଚାର,
ସ୍ୱବଂଶ ଗୌରବ, ଲେକ ନନ୍ଦାଭୟ,
ଆଉ କୁଳ ବ୍ୟବହାର ।
କେବଳ ପ୍ରଣୟ ମୁଖକୁ ଅନାଇ
ସବୁ ବସର୍ଜନ ଦେଇ
ହୃତାହୃତ ହୃଡ଼ ସ୍ୱେଚ୍ଛାରେ ପଡ଼ବ
ପ୍ରେମ ପୟୋଧିରେ ତେଇଁ ।

ତେବେ ମାନ୍ୟ ଗୁରୁ- ଜନଙ୍କୁ ଲଙ୍ଘିବା
ଅଧର୍ମ ହେବ ନିଶ୍ଚୟ
ବାନ୍ଧବ ସଭାରେ ନିନ୍ଦା ଅପବାଦ
ଦୁର୍ନୀତି ନାମସଞ୍ଚୟ ।
ଅଥବା ଯେବେଟି ଧର୍ମ ଅନୁରୋଧେ
ନିଜ ମୃତ୍ୟୁବାଟ କାଢ଼ି
ଆପେ ଉପସ୍ଥିତ କପିଞ୍ଜଳଙ୍କର
କଥାକୁ ଦେବ କୋପାଡ଼ି ।
ନଗରୀରେ ଯେବେ ମୋ ଲାଗି ଦୁଃଖରେ
ମରିବେ ମୁନି ବାଳକ
ସେ ନୁହି ଜନିତ ନିଶ୍ଚୟ ଲାଗିବ
ସଶିରେ ମହାପାତକ ।
ଏକାଳେ ରସାଳୁ ରଞ୍ଜି ଶୀତକରେ
ପୂର୍ବଦିଗରୁ ଉଚ୍ଛଳ
ସୁବଳିତ ଚନ୍ଦ ପରାଏ ପଡ଼ିଲା
ସ୍ୱରୁ ଚନ୍ଦ୍ରବିମ୍ବ ଝୁଲି ।
ବସନ୍ତ କାଳର ପୁଷ୍ପ ପରାଗରେ
ମଞ୍ଜୁ ବନଶ୍ରେଣୀ ସମ
ଚନ୍ଦ୍ରମା ରୁଚରେ ଦିଶିଲା ଧୂସର
ପ୍ରାଚୀ ନଭ ମନୋରମ ।
ଅନ୍ଧକାର ଭୂମୀ ଭୂମିକୁ କରଣ
ନଖରେ ଚନ୍ଦ୍ରକେଶରୀ
ବିଦାରି ମୁକୁତା ରଜ ବ୍ୟାଜେ ଅବା
ଫିଙ୍ଗିଲା କର ଲହରୀ ।
ଉଦୟ ଅଚଳ— ଶୃଙ୍ଗ ପିଣ୍ଡ ନାରୀ
ସ୍ତନର ଚନ୍ଦନ ଧୂଳି
ପରାଏ ହିମାଂଶୁ ଅଂଶୁ ଖରବେଗେ
ସରଗେ ଗଲା ଉଛୁଳି ।
ବେଗବାନ ପୂର୍ବ ସିନ୍ଧୁର ପ୍ରଚଣ୍ଡ
ତରଙ୍ଗବାତେ ଉତ୍ଥିତ

କାଲଗଣ୍ଡି ଓର　　　କଳାକର କର
ଧରାରେ ହେଲ ଧାବିତ ।
ପ୍ରିୟମିନ ସହ　　　ମିଳି ମନ୍ଦେ ମନ୍ଦେ
ହସିଲ ହରଷେ ଶର୍ବରୀ
ଜ୍ୟୋତ୍ସ୍ନାଜାଲ ଛଳେ　　　ସତେ କି ସୁନ୍ଦର
ଦନ୍ତପଂକ୍ତି ବ୍ୟକ୍ତ କରି ।
ଉଜ୍ଜ୍ୱଳ ରଜତ　　　ଥାଳି ପ୍ରାୟେ ନଭେ
ବିରାଜିଲେ ନିଶାମଣି
ଭୂତଳ ବିଦାରି　　　ଉଠିଲ କି ଫଣୀ—
ପନ୍ନଗର ଫଣାମଣି ?
ପୂର୍ବ ଗିରିସ୍ଥିତ　　　କେଶରୀ ନଖରେ
ଚନ୍ଦ୍ରଙ୍କ ଅଙ୍କ କୁରଙ୍ଗ
ଘାଇଲ ହେବାରୁ　　　ସେ ରକ୍ତେ ରଙ୍ଗ କି ?
ବଶୁଥିଲ ତାଙ୍କ ଅଙ୍ଗ ?
ଅଥବା ସମ୍ଭୋଗ　　　ବିବାଦେ କୁପିତା
ରୋହିଣୀର ପଦାଘାତ
ଲଭିଣ ଅଲତା　　　ରସରେ ଉର୍ଦ୍ଧ୍ୱର
ହୋଇଥିଲେ ନିଶାନାଥ ?
ପ୍ରାଣୀ ପ୍ରେମସିନ୍ଧୁ　　　ଅନଙ୍ଗର ବନ୍ଧୁ
ରସିକା ରହସସର
ଯୁବାଙ୍କ ସହାୟ　　　ପ୍ରୀତି ସୁଖଦାୟୀ
ବିରହିଣୀ ମନଦ୍ୱେଷ ।
ଯୌବନକାଳର　　　ନବ ଶିକ୍ଷା ଗୁରୁ
କୁମୁଦନାଥ ସୁଧାଂଶୁ
ଅନୁରାଗିଣୀଙ୍କୁ　　　ଉଜ୍ଜ୍ୱଳା କରିଲେ
ପ୍ରାଚୀପଟେ ଉଇଁ ଅଂଶୁ ।
ସ୍ୱଚ୍ଛ ରକ୍ତାଲୋକେ　　　ଧରଣୀକୁ ଧୋଇ
ବିମଳ ବିଧୁମଣ୍ଡଳ
ଦ୍ୱିଗୁଣ ବେଗରେ　　　ଜ୍ୱଳାଇଲା ମୋର
ହୃଦୟର କାମାନଳ ।

ଉରଳକା ମୋତେ ନବଢ଼େ ତାହ୍ନାର
କୋଡ଼େ ଧରିଲେହେଁ ଯାକ
କରେ ସୁଧାକର ଦନ୍ତୁଥିଲ, ମିତ
ମଦନକୁ ରଖି ସାକ୍ଷୀ ।
ଚେତା ବୁଢ଼ିଗଲ ଅଉଁଡେ ନୟନ
ସଂକୋଚ ପଡ଼ିଲ ତଳେ
ସେ କାଳେ ଚନ୍ଦ୍ରଙ୍କୁ ଦେଖି ମୁଦିଥିଲେ
ପାଖୁଡ଼ା ଯଥା କମଳେ ।
ନାସେ ତାଳବୃନ୍ତ ଘୃତ ସୁଶୀତଳ
ଚନ୍ଦନ ବୋଳ ଅଙ୍ଗରେ
ମୁଖେ ପାଣି ପାଉ ଚେତାଇଲ ସଖୀ
ଉରଳକା ସ୍ନେହଭରେ ।
ମୋତେ କୋଳେ ଘେନ ଏକାକ୍ଷୀ ସଜନୀ
କାନ୍ଦିଲ ବଷାଦେ ବସି
ପଡ଼ିଲ ତାହାର ବାଷ୍ପାକୁଳ ନେତ୍ରୁ
କରୁଣା ମୌକ୍ତିକ ଖସି ।
ମୋର ଏ ଦୁସ୍ତର ଦୁରବସ୍ଥା ଦେଖି
ଶୋକ ଗଦଗଦ ସ୍ୱରେ
ସମ ବେଦନାରେ କହିଲ ଆକାଙ୍କ୍ଷ—
ସଙ୍ଗିନୀ ସୁହାଗଭରେ ।
'କଛ ଲଜ୍ଜା ନାହିଁ ଗୁରୁଜନଙ୍କର
ଅନୁମତକୁ ନଗଣି
ପ୍ରାଣ ବଲ୍ଲଭଙ୍କ ନକଟେ ପଠାଇ
ଏଥ ମୋତେ କେମାମଣି !
ନାନା କଉଶଳେ ଅଣିବ ତୁମ୍ଭର
ହୃଦୟ ଶ୍ୱେରକୁ ଧର
କମ୍ପା ଉଠ ତୁହେଁ ଯିବା ସେ ସଙ୍କେତ
ଲତା ମୂଳ ଅନୁସର ।
ସହ ହେଉନାହିଁ ଦେଖି ତୁମ୍ଭ ବ୍ୟଥା
କମରେ ବଢି ଉପମ

ଉତ୍କଣ୍ଠା ଆକୁଳ ପ୍ରାଣ କମାଉଛି
ଚନ୍ଦ୍ରୋଦୟେ ସିନ୍ଧୁ ସମ ।
ସବୁ ମାୟା ଏଡ଼ି ପ୍ରାଣେଶ୍ୱର ପ୍ରାଣ
ବଞ୍ଚାଇବା ମୂଳ କଥ
ଭୁଲି ଚନ୍ଦ୍ରମୁଖି ! ଭୁଲିବା ସାଗର—
ଗାମିନୀ ତଟିନୀ ପରି ।
ଉଠ ଉଠ କେମା ! ଜୀଇଁ ଥାଉଁ ଥାଉଁ
ତୁମ୍ଭର ହୃଦୟ ଧନ
ଏହି ଘୁରୁତର ସଙ୍କଟୁଁ ରକ୍ଷିବା
ଯାଇ ତାହାଙ୍କ ଜୀବନ ।
ଉଠିଲ ସଜନୀ ସହ ଆଉ ସହି
ନ ପାରି ସେହି ବେଦନା
ସହସା ଦକ୍ଷିଣ— ନେନ ସ୍ଫୁରି ସ୍ୱବା
ଅଶୁଭ କଲା ସୂଚନା ।
ମୂର୍ଚ୍ଛା ହେବା କାଳେ ଲେପିଥିଲା ଭାଲେ
ସଜନୀ ଯେଉଁ ଚନ୍ଦନ
ସେତେବେଳ ଯାଏ ଓଦା ରହିଥିଲା
ବହଳ ସେହି ଲେପନ ।
ଚୂର୍ଣ୍ଣ କେଶେ ତାହା ଲଗି ଦିଶୁଥିଲା
ପଦ ଯଥା ଭୃଙ୍ଗଦଳେ
କବା ପଡ଼ିଥିଲା ଖଣ୍ଡ,ଖଣ୍ଡ ଜ୍ୟୋସ୍ନା
ଝଙ୍କାଳିଆ ତରୁତଳେ ।
ସେହି ଜପାମାଳ ସେ ଯାଏ ସେପରି
ଝୁଲୁଥିଲା ଗଳାରେ
ସେହିଭଳି କର୍ଣ୍ଣେ ଶୋଭା ପାଉଥିଲା
ସେ ପାରିଜାତ ଲତାରେ ।
ବାହାରିଲ୍ ପୁରୁ ନିର୍ଭୟେ ନ ଥିଲେ
ସଙ୍ଗେ ବନ୍ଧୁ ପରିଜନ ।
କିଏ ନ ଜାଣଇ ପ୍ରେମ ସଦାବେଳେ
ଖୋଜୁଥାଇ ନିର୍ଜନ ?

ଉଦ୍ୟାନର ଦ୍ୱାର ଅତିକ୍ରମି ଅଣୁ
ଗମିଲି ପ୍ରିୟଙ୍କ ପାଶେ
ଉଦ୍‌ବେଗେ ଚଂଚଳ ଦଉଡ଼ିଲି ବେଗେ
ଅଗରେ ମିଳନ ଆଶେ ।
ପାରିଜାତ ପୁଷ୍ପ ସୌରଭେ ଆକୃଷ୍ଟ
ଭ୍ରମରେ ମୋର ପଛରେ
ଯାଉଥିଲେ ଅବ— ଗୁଣ୍ଠନର ଶୋଭା
ବଢ଼ାଇଣ ଦ୍ୱିଗୁଣରେ ।
ତରଳିକା ଛଡ଼ା ଯିବାକାଳେ ଆଉ
କେହି ନ ଥିଲେ ସଙ୍ଗରେ
ଲଳନାଏ କେବେ ଲୋଡନ୍ତି ସାହା କି ?
ଅଭିସାର ସମୟରେ ।
ଅନ୍ତରେ ତାଙ୍କୁ କୁସୁମ କୋଦଣ୍ଡ
ଧରି ଧାନୁଷ୍କ ମଦନ
ପ୍ରସାରିତ କରେ ବୃନ୍ତଧର ବାଟ
ଦେଖାନ୍ତି ତାଙ୍କ ରମଣ ।
ପ୍ରେମ ଅନୁରାଗ ଇଙ୍ଗିତରେ ଖରେ
ଚରଣ ବେନି ଚଳାଇ
ଇନ୍ଦ୍ରିୟ ଘୋଡାରେ ଆରୋହି ମାନସ
ଆଗେ ଆଗେ ଦଉଡ଼ଇ ।
ପ୍ରିୟତମ ସହ , ମିଳନ ହୋଇବ
ଏହି ଯେ ଦୃଢ଼ ବିଶ୍ୱାସ
ଉତ୍କଣ୍ଠା ଜନ୍ମାଇ ଏକା ଦେଲେ ଲଜ୍ଜା
ଭୟକୁ କରଇ ନାଶ ।
ଯିବା ବେଳେ ମାର୍ଗେ କଉତୁକେ ମୁହିଁ
କହୁଥିଲି ରଜନୀକି
ଆଣିଥିବ ପରା ଅଧେ ପଥ ଚନ୍ଦ୍ର
ବଲ୍ଲଭଙ୍କୁ ମୋର ଝିଙ୍କି ।
କହୁଥିଲା ସଖୀ ସହାସ୍ୟେ ସରଳା
ତୁମ୍ଭେ ଗୋ ରାଜନନ୍ଦିନୀ

ସକଳ ଭଣ୍ଡାରେ  ବୁଝି ପାରୁ ନାହିଁ
ଚନ୍ଦ୍ରର ଯାହା ବାସନା ।
କେମନ୍ତ ସ୍ୱ ପ୍ରସ୍ନୋ—  ଜନ ଯାଉଛି ଯେ
ଦେଖ ଦେଖ ସୁଧାହାସି
କାମୁକ ସଦୃଶ  ଜଳ ଧର ଚୁମ୍ବ
ଗଣ୍ଡରେ ଚୁମ୍ବୁଛ ଆସି ।
ଲଳିତ ଲହର  ଲାବଣ୍ୟ ପ୍ରଭାରେ
ମୁକ୍ତାମାଳ ଛବି ବହି
ନିତମ୍ବ ଅମ୍ବର  ମେଖଳା ମଣିରେ
ଝିଡୁଛି ଯେ ରହି ରହି ।
ଚମ୍ପିତ ତୋରଣ  ଦର୍ପଣ ସଦୃଶ
ନିର୍ମଳ ନଖ ମଣ୍ଡଳେ
ଭାମାରୁର ଚନ୍ଦ୍ର  ପଡ଼ୁଛି କେମନ୍ତ
ଦେଖ ଚୁମ୍ବ ପାଦ ତଳେ ।
ଏହିସ୍ଥଳେ ସେହି  କାଳେଚନ୍ଦ୍ର ନାନା
ଆଲାପେ ବେନି ସୁଖରେ
ପାଉଥିଲୁଁ ବେଗେ  ହେ ରାଜକୁମାର !
ନିର୍ଦ୍ଦିଷ୍ଟ ସ୍ଥାନ ଲକ୍ଷ୍ୟରେ ।
ଚନ୍ଦ୍ରମା ଉଦୟେ  ଚନ୍ଦ୍ରକାନ୍ତମଣି
ଉଲ୍ଲାସେ ତରଳ ହୋଇ
କୈଳାସ ଶିଖର  ଶୃଙ୍ଗୁ ଜଳ ପରି
ଆସୁଥିଲା ତଳେ ବହି ।
ପଥ ଲତା ଜାତ  କୁସୁମ ରେଣୁରେ
ଧୂସର ଚରଣ ମୋର
ପଖାଳୁଥିଲୁ ଯେ  ନିର୍ମଳ ସଲିଳ
ଧାରରେ ଥରକୁଥର ।
ସହସା ଅଚ୍ଛୋଦ (୧)  ସରର ପଶ୍ଚିମ
ତୀରରୁ କରୁଣତର

(୧)—ପୁଷ୍କରିଣୀ ବିଶେଷ ।

ଶୁଭିଲା ତତ୍‌କ୍ଷଣେ ପୁରୁଷ କଣ୍ଠର
ଅସ୍ପଷ୍ଟ ବେଦନା ସ୍ୱର ।
ଥରିଲା ଶରୀର ବଢ଼ିଲା ଅବଶ
ହେଲେ ହୃଦୟ ନିକର
ମହାକଷ୍ଟେ ମୁହିଁ ସେ ଦିଗେ ଚଳିଲି—
ପଦେ ହେଲି ଅଗ୍ରସର ।
ଶୁଣିଲି ଦୂରରୁ ନୈଶ ନିସ୍ତବ୍ଧତା
ଭାଙ୍ଗି ଅତି ଉଚ୍ଚସ୍ୱରେ
କପିଞ୍ଜଳ ଆର୍ତ୍ତି— ନାଦେ କାନ୍ଦୁଥିଲେ
ଡାକଲେଁ ମୁକ୍ତକଣ୍ଠରେ ।
ଅକସ୍ମାତ୍ ଅକୂଳ ହେଲା ପ୍ରାଣ ମୋର
ଘୋରତର ଉତ୍କଣ୍ଠାରେ
ସମ୍ଭାଳି ନପାରି କାନ୍ଦିଲି ଫୁକାରି
ଉଚ୍ଚସ୍ୱରେ ହାହାକାରେ ।
ବନପଥେ ଦ୍ରୁତ— ବେଗେ ଧାଇଁବାରୁ
କଣ୍ଟାରେ ଲାଗି ବହନ
ଖଣ୍ଡ ଖଣ୍ଡ ହେଲା ଛିଣ୍ଡି ପରିଧେୟ
ସୁନ୍ଦର ଝୀନବସନ ।
ନତାନତ ଶିଳା ବହୁଳ ଭୂମିରେ
ଧାଇଁ ପଡ଼ୁଥିଲି ଝୁଣ୍ଟି
କଣ୍ଟକ ନିକର ଯାଉଥିଲା ମୋର
କୋମଳ ଚରଣେ ଫୁଟି ।
ତରୁଛାୟା ତଳ ଅନ୍ଧାରେ ଅଲକ୍ଷ୍ୟେ
ପିଚ୍ଛିଳ ଶିଳାରେ ମାଡ଼ି
ଖସୁଥିଲା ଗୋଡ଼ ତଳେ ପଡ଼ୁଥିଲି
ଭୂତଳେ ବ୍ୟସ୍ତେ କମ୍ପିଡ଼ି ।
ସେଠାରୁ ଉଚ୍ଚରେ ଆସୁଥିଲା ସ୍ୱର
କପିଞ୍ଜଳ କଣ୍ଠୁ ଛୁଟି
ତେଣୁଙ୍କ ୍ରେଗରେ ଧାଇଁଥିଲି ମୁହିଁ
ଅସମ୍ଭାଳେ ପଡ଼ି ଉଠି ।

ଏସ୍ବେ ଦଇବ ଦେଖିଲି ମୃଣାଳ
ମଣ୍ଡିତ ଘନ ପଣପରେ
ଚେତନା ହରାଇ ପଡ଼ିଥିଲେ ନାଥ
ମୁଦ୍ରିତ ସ୍ଥିର ନେତ୍ରରେ ।
କୁନ୍ତଚ୍ୟୁତ ନାନା— ଗନ୍ଧ ବନଫୁଲେ
ଶୋଭୁଥିଲା ଶଯ୍ୟାସ୍ଥଳ
ପଡ଼ିଥିଲା ଦଗ୍ଧ ହୋଇକି କାମର
ନକ୍ଷିପ୍ତ ଶର ସକଳ ।
ରକ୍ତ ଓଷ୍ଠାଧରୁ ଜଣାପଡୁଥିଲା
ସତେକି ମୋତେ ସେ ଚଳ
ରୁଷି କହୁଥିଲେ ଭ୍ରମଯୋଗେ ମୋର
ଏଦଶା ହୋଇଛି ବୋଲି ।
ବସ୍ତ୍ରେ ଚନ୍ଦ୍ରକୁ ପୃଷ୍ଠ ଦେଇ ଶୋଇ—
ଥିଲେ ସେ କର ପଡ଼ାଇ
ନିର୍ଲ୍ଲଜ ଚନ୍ଦ୍ରମା ତେବେ ସୁଦ୍ଧା ତାଙ୍କ
ପୃଷ୍ଠ ଛାଡୁଥିଲା ନାହିଁ ।
କପୋଳରେ ଜଳ— ଜଳ କରୁଥିଲା
ରକ୍ତ ଚନ୍ଦନର ଟିକା
ପୂର୍ବ ପରି ଲକ୍ଷ୍ମ-- ଥିଲା ତା ଅଲୁଟେ
ହୋଇଥିଲା ନାହିଁ ଫିକା ।
ମୋତେ ଦେଖି ତାର ଠାରୁ ପ୍ରିୟ ଜଣେ
ଆସିଲା ବୋଲି ଗୁମାନେ
କୋପେ ଅବା ପ୍ରାଣ ଚାଲିଗଲା ତାଙ୍କ
ଦେହ ଛାଡ଼ି ଅନ୍ୟସ୍ଥାନେ ।
କିବା ସେ କାମର ଯାତନା ନ ସହି
ପରାଣକୁ ପରିହରି
ଅଚେତନ ସୁଖ ଅନୁଭବୁଥିଲେ
ଏକାନ୍ତ ଧ୍ୟାନ ଆଚରି ।
ନାଥଙ୍କ ପାଖରେ ମୋତେ ଅଣି ଭେଟି
ଦେବାକୁ କପଦା ମାର

ପରିଚ୍ଛଦରେ ସେ　　ଦେଇଥିଲେ ତାକୁ
　　ନନ୍ଦପ୍ରାଣ ପୁରସ୍କାର ।
ସୁଟକଚ ପୂତ　　ଯଜ୍ଞ ଉପବୀତ
　　ସ୍କନ୍ଧରେ ଥିଲା ତାଙ୍କର
କଦଳୀ ପଟର　　କୌପୀନ କଟୀରେ
　　ଜଡ଼ିଥିଲା ସ୍ନେହପର ।
ଜପାମାଳା ରୂପେ　　ମୋ ଦନ୍ତ ମୁକୁତା
　　ମାଳ ଶୋଭୁଥିଲା ଗଳେ
ତ୍ରିଗୁଣ ଗଉର　　ଶୋଭୁଥିଲା ତନୁ
　　କର୍ପୂର ଭସ୍ମ ରଜରେ ।
ମୃଦୁଳ ମୃଣାଳ　　ବଳୟ ଯୁଗଳ
　　ସଜୁଥିଲା ବେନି ହସ୍ତେ
ମସ୍ତକରୁ ଖସି　　ଜଟାଜାଳ ଶିଳା—
　　ତଳେ ଲୋଟୁଥିଲା ବ୍ୟସ୍ତେ ।
ସଦା କାନ୍ଦ କାନ୍ଦ　　ନୟନ ଯୁଗଳ
　　ଦିଶୁଥିଲା ଜବାଫୁଲ
ଅଶ୍ରୁ ସଲିଳରୁ　　ଶେଷେ ରକ୍ତବିନ୍ଦୁ
　　ନେହାଉଥିଲା କିବା ତୂଳ ?
ମେଲ ଓଷ୍ଠାଧର　　ମଧ୍ୟରେ ଧବଳ
　　ଦନ୍ତ ହେଉଥିଲା ବାର
ଅଭ୍ୟନ୍ତରଗତ　　ଚନ୍ଦ୍ରକର ସାର
　　ପଡୁଥିଲା କି ବାହାର ?
ମୃଣାଳ ବଳୟ　　ଛଳେ ଚନ୍ଦ୍ରକର
　　ରଜ୍ଜୁ ସୁଦୃଢ଼େ ଲଗାଇ
ଲୋକାନ୍ତରେ ଟାଣି　　ନେଉଥିଲା କିବା ?
　　ପ୍ରାଣେଶଙ୍କୁ ଟପ୍ରତସାଇଁ ।
ମୋତେ ଦେଖି କପି—　　ଝଳଙ୍କ ନୟନ
　　ପୁଣି ପୁରିଗଲା ଜଳେ
ସମ ଦୁଃଖୀ ଦେଖି　　ଦୁଃଖୀ ଦୁଃଖ ସିନା
　　ବଢ଼ଇ ମହାପ୍ରବଳେ ।

ଢ଼ାଙ୍କିଲା ମୋ ହୃଦ ଅକସ୍ମାତ ଆସି
ଘୋରମୋହ ଅନ୍ଧକାର
ନଜାଣେ ସେ କାଳେ ତାହାଙ୍କର ସହ
କଲ୍ କିବା ବ୍ୟବହାର ।
ନହୁଏ ସ୍ମରଣ ପାତାଳେ ଆକାଶେ
ଥିଲ୍ କିବା ଭୂତଳରେ
କି କରିଲ୍ କାହିଁ ଗଲ୍ ରାଜପୁତ୍ର
ନପଚ୍ଛେଣ୍ଡଲେ ମନରେ ।
ସହଣ ନତାନ୍ତ କଠିନ ଅଥବା
ସ୍ୱଭ ଦଃଖଅଛି ବୋଲି
ପୂର୍ବ ଜନ୍ମାର୍ଜିତ କିବା ମହାପାପେ
ସର୍ବଦା ହେବାକୁ ଦଳି ।
କିବା ଶନସ୍ଥ ଲଭିବାକୁ ଦୁଷ୍ଟ
ଫୁଲଧନୁର ଶାସନ
ଛାଡ଼ିଲ ନାହିଁତ ସେ କାଳେ ମୋହର
ପିଣ୍ଡୁ ଏ ସ୍ଥାନ ଜୀବନ ।
ଦୁଃଖେ ମୁଣ୍ଡ କୋଡ଼ି ଭୂମିରେ ଝଲ୍ଲାରେ
ବନ ଭଲ ମୁଖରତ
ଅବିରଳ ସ୍ଥୂଳ ଅଶ୍ରୁ ପ୍ରବାହରେ
ଧରାତଳ ହେଲା ସିକ୍ତ
କାନ୍ଦିଲୁ ସୁମରି ବାହୁନି ବାହୁନି
ଭାବ ଭଣିଲ୍ ଡକଲେ
କାହିଁ ଗଲ ନାଥ ! ତୁମ୍ଭ ବିନା ମୋର
କେହି ନାହିଁ ଧରାତଳେ ।
ପର ଉପକାରୀ ହେ ତରୁ ଲତାଏ !
ଜଣେଦିଅ କୃପାବହି
ପ୍ରିୟତମ ମୋର କାହିଁ ରହିଛନ୍ତି
ଥରେ ଦେବ କହେ ଭଣ୍ଡ ।
ମାତଃ ! ବସୁନ୍ଧରେ ! ଶରଣ ମାଗୁଛି
ମୋତେ ବାରେ କୋଳେ ନିଅ

ଆକୁଳରେ ପଡ଼ି ଗଡ଼ୁଛି ଦେଖ ମା !
ତୁମ୍ଭ ଅନାଥିନୀ ଝିଅ ।
ମୋର ଦୁଃଖ ଦେଖି ଜ୍ୟୋତ୍ସ୍ନାଶ୍ୱାସ ଛାଡ଼ି
ଆକାଶେ କାନ୍ଦଲେ ଚନ୍ଦ୍ର
ପୁଷ୍ପକୁଞ୍ଜେ ଛଳେ ମୁଞ୍ଚିଲେ ବ୍ରତତୀ—
ମାନେ ସ୍ଥୂଳ ଅଶ୍ରୁବିନ୍ଦୁ ।
ଅସ୍ତବ୍ୟସ୍ତ ହୋଇ ଶରୀର ସଙ୍ଗରେ
ମୋର ଚମ୍ପାଦେ ଚକଳେ
ଭୂଷାଏ କାନ୍ଦଲେ କଙ୍କଣ, କିଙ୍କିଣୀ,
ନୂପୁର ନିନାଦ ଛଳେ ।
ବିଳାପ ସହିତେ ପ୍ରବଳ ପ୍ରଳାପ
ମୁଖୁଁ ଉଠୁଥିଲା ତୁଚ୍ଛା
ଅବଶେ ଅସ୍ଥିର— ଥିଲା ଶରୀରକୁ
ଆସି ଘଡ଼ଘଡ଼ି ମୂର୍ଚ୍ଛା ।
ଏସବୁ ନିଜର ଜଗତ ବୃତ୍ତାନ୍ତ
କହୁଁ କହୁଁ ତରୁଣୀର
ସେ ଦୁଃଖର ବେଗ ସମ୍ଭାଳି ନ ପାରି
ମହୀ ତଳରେ ପଡ଼ିଲା ।
ସବିଷାଦେ କର ପ୍ରସାରି ସଦୟେ
ସବେଗେ ଧରି ସୁଧୀର
ଶୀଘ୍ର ଉପଚାରୁ ପଙ୍ଖାବାତେ ମୂର୍ଚ୍ଛା
ନାଶିଲେ ବାଳାମଣିର ।
ସଜଳନୟେ ହାତ ଯୋଡ଼ି ଜଣାଇଲେ
‘ଦେବ ! ଦୋଷ କ୍ଷମାକର
ମୋ ଲାଗି ନବୀନ ହେଲା ସିନା ଯେତେ
ଅତୀତ କ୍ଲେଶ ତୁମ୍ଭର ।
ପୂର୍ବର ସ୍ମୃତିକୁ ଚେତାଇବା ଆଉ
ନାହିଁ କିଛି ପ୍ରୟୋଜନ
କି ଫଳ ବଢ଼ାଇ ଭସ୍ମାବୃତ୍ତ ସେହି
ଦୁଃଖଦାୟୀ ହୁତାଶନ ।’

ବିଷାଦେ ଉଭୟେ . ଦୀର୍ଘଶ୍ୱାସ ଛାଡ଼ି
ଶୋକ ଗଦଗଦ ସ୍ୱରେ
ଭାଷିଲ୍ଲ ଭାବନୀ ନୟନୁ ଝିଙ୍କାପି
ଅତ୍ୟନ୍ତ ଅବଜ୍ଞାଭରେ ।
ଅହେ ଯୁବରାଜ ! ଅପରନ୍ତା ସେହି
କାଳ ରଜନୀରେ ଲବେ
ଏ ନୃଶଂସ ପ୍ରାଣ ଛାଡ଼ି ନ ପାରିଲି
ଯେଉଁ ଶରୀରକୁ ଲେଭେ ।
କଦାପି ନ ଭବ ସେ ପରାଣ ଏବେ
ପିବ ବୋଲି ପିଣ୍ଡଛାଡ଼
ଯେତେ ଇଚ୍ଛିଲେହେଁ ଛାଡ଼ଇବ କେବେ
ଦୁଃଖୀର କଠିନ ନାଡ଼ୀ ।
କହିବା ପାଇଁକି ଏହାପରେ ଆଉ
ଅଛି କିବା କଷ୍ଟକର
ଶୁଣିବାକୁ ଅବା କହିବାକୁ ଯାହା
ହୋଇବ କଠିନତର ।
ଯେବଣ ଦୁରାଶା ମୃଗତୃଷ୍ଣିକାର
ମୋହେ ବଶୀଭୂତ ହୋଇ
ପ୍ରୟୋଜନ ହୀନ ମୃତପ୍ରାୟ ଏହି
ଶରୀର ଅଛଇ ବହି ।
ଅଶନ ପତନ ପରେ ହେଲା ଯେଉଁ
ନୂତନ ପରିବର୍ତ୍ତନ
ସେ ସବୁ ବିବରି କହୁଛି ସଦୟେ
ଶୁଣ ହେ ରାଜନନ୍ଦନ !
କାନ୍ଦି କାନ୍ଦି ଖେଦେ ତରଳିକା ସଙ୍ଗେ
କାନନୁ କାଠ ଠୁଳାଇ
ଚିତାଏ ରଚଇ ବାହାରିଲି ସଙ୍ଗେ
ଅନୁମୃତା ହେବା ପାଇଁ ।
ସେ କାଳରେ ଏକ ଦିବ୍ୟ ପୁରୁଷ
ଚନ୍ଦ୍ରଲୋକୁଁ ଅବତରି

ମୃତ ପ୍ରାଣେଶଙ୍କୁ ବାହୁ ଯୁଗଳରେ
ଉଠାଇ ସୁବକ୍ଷେ ଧରି ।
ଗମ୍ଭୀରେ କହିଲେ ମୋତେ ସ୍ପର୍ଶି "ବତ୍ସେ !
ନକର ପ୍ରାଣ ସଂହାର
ପୁଣ୍ଡରୀକ ସହ ମିଳନ ତୁମ୍ଭର
ହେବ ଏଥି ପୁନର୍ବାର ।"
ପିତାସମ ସ୍ନେହେ ଏହି କଥା କହି
ପୁଣ୍ଡରୀକ ଦେହ ବହି
ଆକାଶକୁ ଉଠି ବ୍ୟୋମ ଅନ୍ତରାଳେ
ଗଲେ ସେ ବିଲୁପ୍ତ ହୋଇ ।
କପିଞ୍ଜଳ ଏହି ଘଟନା ବିଲୋକି
ତା ପଛେ ଧାଇଁ ରଭସେ
ରେ ଦୁରାତ୍ମ ! କାହିଁ ପଳାଉଛୁ ବୋଲି
ମିଶିଗଲେ ବିହାୟସେ ।
ମୋତେ ଲକ୍ଷ୍ୟ, ଯିବା କାଳେ ସେ ପୁରୁଷ
କହିଥିଲେ ଯେଉଁ ବାଣୀ
ସେ କଥା ହୃଦୟେ ସେତେକ ଦୁରାଶା
ମାନ ଠୁଳାଇଲି ପୁଣି ।
ଏ ଭବେ କୁମାର ! ଅସୀମ ପ୍ରଭାବ
ବିଶ୍ୱମୋହିନୀ ଆଶାର
ଦୁରନ୍ତ ମାନବେ ତାର ମାୟାବଳେ
ଅପାର ସାଗର ପାର ।
ତାହାର ପ୍ରଭାବେ ଦୀନହୀନ ମୁଖେ
ଉଠେଇ ହାସ୍ୟ କଲ୍ଲୋଳ
ସହନ୍ତି ସରବେ ତା ମନ୍ତ୍ରେ ସନ୍ତାନ
ବିଚ୍ଛେଦ ଦୁଃଖ ଅନଳ
ଭାବିଲି ଏଭଳି ପୁରୁଷଙ୍କ କଥା
ନୋହିବ କେବେ ଅନ୍ୟଥା
ଭବେ ସତ୍ୟଭାଷୀ ତ୍ରିକାଳ ଦରଶୀ
ଦେବତାଗଣ ସର୍ବଥା ।

କପିଞ୍ଜଳ ସେହି    ପୁରୁଷର ପଛେ
ବେଗରେ ଅଛନ୍ତି ଧାଇଁ
ଅବଶ୍ୟ ତା' କରୁ    ମୋ ପ୍ରାଣକାନ୍ତକୁ
ଆଣିବେ ସେ ଲେଉଟାଇ ।
ମହାମାୟାବନୀ    ଆଶାର ଅଳୀକ
ମୃଗତୃଷ୍ଣାଜଳେ ଭୁଳି
ରହିଲି ସେ ଗୃହେ    ଉଦ୍ବେଗ ଦୁଃଖରେ
ଭୂତଳରେ ମୁଣ୍ଡକୋଡ଼ି ।
ଏହି ଅବସ୍ଥାରେ    ତରଳିକାସହ
ମହାକାଳରଜନୀର
ଯାପିଲି ସହସ୍ର    ବରଷର ତୁଲି
ସୂର୍ଯ୍ୟର୍ଣ ସେହି ଶର୍ବରୀ ।
ପାହିଲା ରଜନୀ    ଗୁରୁଦୁଃଖ ମୋତେ
ଦଶିଲା ଅନ୍ଧାରମୟ
ଭବ ଭଙ୍ଗୁରତା    ସ୍ମରି ସ୍ମରି ଚିତ୍ତେ
ବୈରାଗ୍ୟ ହୋଇଲା ଉଦୟ ।
ସେହି କମଣ୍ଡଳୁ    ଅକ୍ଷମାଳା ଯୋଗେ
ତପସ୍ୟାରେ ଦେଇ ମନ
ସେ ବନ୍ଧୁ ବନ୍ଧରେ    ତ୍ରିଲୋକନାଥଙ୍କ
ପଦ୍ମରେ ନେଲି ଶରଣ ।
ପରିଜନସହ    ପିତା ମାତା ଆସି
ଗୃହେ ବାହୁଡ଼ିବା ପାଇଁ
ବିବିଧ ସାନ୍ତ୍ୱନା    ବାକ୍ୟରେ ବହୁତ
କହିଲେ ମୋତେ ବୁଝାଇ ।
ମାତ୍ର ସେହି କ୍ଷୁଦ୍ର    ସଙ୍କଳ୍ପ ମନରୁ
ଟଳାଇ ନପାରି ଶେଷେ
ଅପତ୍ୟ ସ୍ନେହରେ    କାନ୍ଦିବାନ ରହି
ରାଜପୁରେ ବାହୁଡ଼ିଲେ ।
ହୃଦ କୃତଜ୍ଞତା    ପ୍ରକାଶି ମୋହର
ସେ ବନ୍ଧୁ ଦୁଃଖାଗ୍ନି ଜଳେ ।

ପ୍ରାଣନାଥଙ୍କର ଗୁଣ ଗାଉଅଛ
ସର୍ବଦା ଜପିବାଛଳେ
ବିଳାସେ ଲଳିତ ଏହି ଶରୀରକୁ
ବନବାସବ୍ରତେ ଥୋଇ
ଧନ ନେଉଅଛ ନିକାଞ୍ଚନ ଏହି
ଗିରିଗହ୍ୱରରେ ରହି ।
ଉପବାସେ, ବ୍ରତେ ତନଦେଳ ଏହି
ସଗ୍ରେବରେ ମଜ୍ଜି ହେଲେ
ଦେବଦେବ ମହା— ଦେବଙ୍କ ମହିମା
ଗାଉଅଛ ସବୁବେଳେ ।
ତରଳତା ଭିନ୍ନ ଆଉ ମୋ ପାଖରେ
ଜଣେ ସୁଦ୍ଧା କେହି ନାହିଁ
ମୋପରି ପାପିନୀ ଅଭାଗିନୀ ଏହି
ଧରଣୀମଣ୍ଡଳେ ନାହିଁ ।
କିଛି ରଖି ନାହିଁ ଶେଷେ ବ୍ରହ୍ମହତ୍ୟା
ଯାଏ ଆଚରିଛି ଆପେ
ମୋ ସଙ୍ଗ ଆଲାପ କଲେ ସୁଦ୍ଧ ଆତ୍ମା
କଳୁଷିତ ହେବ ପାପେ ।
ଏହା କହି ନିଜ ବଳ୍କଳେ ବିଷାଦ
ବଦନ-ଅର୍ଦ୍ଧରେ ଢାଙ୍କି
ବାଷ୍ପାକୁଳ ନେତ୍ରେ କାନ୍ତ ଗୁଣ ସ୍ମରି
କାନ୍ଦିଲା ଦୁଃଖେ ବରାକି ।
ଦେଖି ମନେ ହେଲା ଶରତ କାଳୀନ
ଶୁଭ୍ର ମେଘଖଣ୍ଡ କରେ
ରୁଚିର ଚନ୍ଦ୍ରମା ମଣ୍ଡଳ ଘୋଡ଼ାଇ
ବରଷିଲା ଧୀରେ ଧୀରେ ।
ଗନ୍ଧର୍ବ ବାଳାର ବିନୟ ସୌଜନ୍ୟ
ବିଶେଷ ରାଜତନୟ
ପ୍ରଥମୁ ରମଣୀ— ରତି ଭୋଳି ତାକୁ
ମନେ କରିଥିଲେ ଅପୁ ।

ଏବେ ଅଯୋଧ୍ୟାପ୍ରାନ୍ତ ତା ଆମ୍ରକୁଞ୍ଜନ୍ତ
ବାଣୀ ଅତି ଚମତ୍କାର
ଶୁଣି ମଣିଲେ ଏ ଅଲୌକିକ ସୃଷ୍ଟି
ନାଗିଲେ ବିଧାତାର ।
ବିବିଧ ସାନ୍ତ୍ୱନା ଗୀତେ ମନ ତୋଷି
କହିଲେ 'ସ୍ୱଜନନ୍ଦନୀ
କାହିଁଅଛ ଏବେ ତରଳକା ତୁମ୍ଭ
ଦୁଃଖର ଅଂଶଭାଗିନୀ ।'
ଖରଶ୍ୱାସ ମାର ଉତ୍ତରଲ୍ଲ ଗୋସ୍ତି,
ପୂର୍ବେ ରୂପେ ଗୁଣେ ଧନ୍ୟା
ଅପ୍ସରା ସମ୍ଭୂତା ମଦିରା ନାମରେ
ଥିଲେ ଏକ ଦେବକନ୍ୟା ।
ଚିତ୍ରରଥଙ୍କର ଔରସେ ତାହାଙ୍କ
ଗର୍ଭେ ସର୍ବଗୁଣଯୁତା
କାଦମ୍ବରୀ ନାମେ ଜନ୍ମ ଲଭିଥିଲେ
ଦୈବେ ଏକମାତ୍ର ସୁତା ।
ଶନୈଁ ଶନୈଁ ନବ ଶଶିକଳା ପରି
ବଢ଼ିଲେ ନୃପନନ୍ଦନା
କ୍ରମେ କ୍ରମେ ହେଲେ ଗନ୍ଧର୍ବ ନଗରେ
ରୂପେ ଗୁଣେ ଅତୁଳନା ।
ବାଲ୍ୟୁଁ କରବାରୁ ଶୟନ ଭୋଜନ
ଏକତ୍ର ଉପବେଶନ
ଦୋହିଙ୍କ ଉପରେ ସଖି ପାଉଥିଲ
ପ୍ରୀତିରେ ଦୋହିଙ୍କ ମନ ।
ଏକତ୍ରେ ଗୁରୁଙ୍କ ଠାରୁ ପଢୁଥିଲେ
ନାନାବିଧ ଶାସ୍ତ୍ର ବେନ
କେତେ ନୃତ୍ୟ ଗୀତ ଶିକ୍ଷା କରୁଥିଲେ
ବୀଣା କରତାଳ ଘେନ ।
ଉଭୟଙ୍କ ମନ ଏକ ହୋଇଥିଲ
କ୍ଷୀର ନୀର ପ୍ରୀତି ପରି

ଦେଖଏ ଦେଖଙ୍କୁ ଦେଖୁଥିଲୁ ସ୍ନେହେ
ସଦା ସହୋଦର ସର ।
ଏବେ ଶୁଣି ଏହ ଦାରୁଣ ବୈରାଗ୍ୟ
ଭାଙ୍ଗି ସକଳ ମୋହର
ଡଗମ ପ୍ରତଜ୍ଞା ମନାସି ଅଛନ୍ତି
ମାନସରେ କାଦମ୍ବରୀ
"ଯେଉଁ ଦନଯାଏ ଯୁବରାଜ ! ମୋର
ନ ହୋଇବ ପରିଣୟ
ସେତକ ଦବସ ଯାଏ ସେ ରହବେ
ଅବବାହତା ନଶ୍ଚୟ ।
ଯେବେ ପିତାମାତା ପରିଣୟ ଦେବେ
ବଳେ ବଚଳ ନଜ ମନେ
ତା ହେଲେ ପରାଣ ତେଜବେ ସେ ବସି
ମୌନବ୍ରତେ ଅନଶନେ ।"
ଏ ସକଳ ତାଙ୍କ ଶୁଣିଲ ବନରୁ
ବବାହ କଥା ନ କହ
ଏକମାତ୍ର ଝିଅ ଦୁଃଖେ ରାଜା ରାଣୀ
ରହଛନ୍ତି ଶୋକ ହୋଇ ।
ତାଙ୍କ କଞ୍ଚୁକୀଙ୍କୁ ମୋ ପାଶେ ନବରୁ
ପଠାଇଥିଲେ ରାଜନ
ମୁଁ ଯାଇ ଦେବାକୁ ପରିଣୟ ପାଇଁ
ବଦଳାଇ ତେମା ମନ ।
ଗୁରୁଜନଙ୍କର ଆଜ୍ଞାର ଗୌରବେ,
ମିତ୍ରତାର ଅନୁରୋଧେ
ପ୍ରେରଛ ସଖୀକୁ ହେ ରାଜକୁମାର !
ପ୍ରିୟ ସଜନାଙ୍କ ବୋଧେ ।
ମହାଶ୍ୱେତା ଏହ ଭବେ କାଦମ୍ବରୀ
ପରିଚୟ ଦେବା କାଳେ
ରକ୍ତ ଚନ୍ଦନର ଟିକା ପ୍ରାୟ ରବ
ରଞ୍ଜଲେ ପ୍ରତଚୀ ଭାଲେ ।

ଅବଳାର ଅମ୍ବ— ବୃନ୍ତଚ୍ୟୁତ ଆକଣ୍ଠ
ବିଷାଦ ଲଭି ଅନ୍ତରେ
ରହିଲେ କି ସୂର୍ଯ୍ୟ ଏନ କାର୍ଯ୍ୟ ଛାଡ଼ି
ଦୁଃଖରେ ଅଧୋମୁଖରେ ।
ପରିଣତ ପୁଷ୍ପ ପ୍ରିୟଙ୍ଗୁ ଲତାର
ପ୍ରସୂନ ପ୍ରାୟେ ସୁନ୍ଦର
ପିଙ୍ଗଳ ବରଣ ଧରି ତଳମୁଖେ
ପଡ଼ିଲେ ଝୁଲି ସୁନ୍ଦର ।
ଲାକ୍ଷାରସ ବୋଳା ଝୀନବାସ ସମ
ଉଜ୍ଜ୍ୱଳ ଦିବ୍ୟ ଆଲୋକ
ଦିଗମଣ୍ଡଳ ବ୍ୟାପି ବଢ଼ିଲା କମଳା
ଜଗତ ବଢ଼ାଇ ଶୋକ ।
ଘନ ମହୁଫର ପୁଷ୍ପ ଲେମସମ
ଅସ୍ପଷ୍ଟ ସାନ୍ଧ୍ୟ ଅନ୍ଧାର
ଦୃଷ୍ଟିଶକ୍ତି ରୋଧି ହ୍ରାସ କଲା ଚକ୍ଷୁଁ
ନଭସ୍ଥଳର ବିସ୍ତାର ।
ଗୋଟି ଗୋଟି ହୋଇଁ ଗଗନମଣ୍ଡଳେ
ମଞ୍ଜୁଳ ତାରକାକର
ଦିଶିଲେ ଆକାଶୁ ଚୌଦିଗେ ଚହଟିଲେ
ହୀରକ ଉଜ୍ଜ୍ୱଳକର ।
ଘୋର ଅନ୍ଧକାର ନିବାରଣ ଲାଗି
କି ଅବା ରଜନୀବାଳୀ
ଶତ ଶତ ରୂପା ପ୍ରଦୀପାବଳୀ ଦେଲା
ନଭେ ଏକାବେଳେ ଜାଳି ।
କ୍ରମେ କ୍ରମେ ନଭେ ଉଠିଲେ କୁମୁଦ-
ବାନ୍ଧବ ତାରା ଲମ୍ପଟ
ଦେବ କନ୍ୟାଙ୍କର ସୁମଧୁର ମଧୁ
ସୁସ୍ୱନ ମଙ୍ଗଳଗୀତ ।
ଗଗନ ଗଙ୍ଗାର ଧବଳ ପୁଲିନ,
କ୍ଷୀରସାଗରର ପଙ୍କ,

ଶୃଙ୍ଗାର ସଦନ        ରୁଚିର କୁଞ୍ଜିକା,
ଅପ୍ସରୀଙ୍କ ଶୁଭ୍ର ଶଙ୍ଖ ।
ଉଇଁ ସୁମଧୁର        ପୂର୍ଣ୍ଣିମା ଆକାଶେ
କୁମୁଦିନୀ ପ୍ରାଣପତି
ଦିଶିଲେ ଯେସନ        କାମ ରାଜନର
ମନୋହର ଶ୍ୱେତ ଛତ୍ର ।
ବାରହେଉଥିଲେ        ପରସ୍ପର ସ୍ୱବେ
ଅଙ୍କ ତାଙ୍କ ବକ୍ଷସ୍ଥଳେ
ବିରହୀ ଶୋକକୁ        କହୁଥିଲେ ବସେ ?
ପଦରେ କଳଙ୍କଛଳେ ।
କୃଷ୍ଣଅଞ୍ଜନରେ        ଅଧେ କୃଷ୍ଣ, ଭସ୍ମେ
ଅର୍ଦ୍ଧେକ ଧଳାବରଣ
ଦିଶୁଥିଲେ ଅବା        ବାମାଙ୍ଗ ସଙ୍ଗିନୀ
ଭବାନୀଙ୍କ ବାମସ୍ତନ ।
ବଧୂକୁ ପନାଇଁ        ରାବଲେ ରଥାଙ୍ଗେ
ବିରହେ ଅସ୍ଥିର ଚିତ୍ତ
ତୋଳିଲେ ଚନ୍ଦ୍ରଙ୍କ        ପୀଯୂଷ କଳସୀ
ଚକୋରେ ମୃଦୁସଙ୍ଗୀତ ।
ରଜନୀ ଅଧିକ        ଦେଖି ଶଶିମୁଖୀ
ଗନ୍ଧର୍ବରାଜକୁମାରୀ
ଶୋଇଲେ ଶୀତଳ        ଶିଳାଶଯ୍ୟାପରେ
ପଲ୍ଲବ ଶେଯବିସ୍ତାର ।
ସ୍ୱକ ସ୍ୱକ ଅନ୍ତ        ବିଷାଦ ମାନସେ
ମହାଶ୍ୱେତାର ବୟସ୍ୟ
ଖଣ୍ଡେଦୂରେ ଯାଇ        ରାଜସୁତ ନେଲେ
ନିଦ୍ରାର ଅଙ୍କେ ଆଶ୍ରୟ ।

# ନବମ ସର୍ଗ

ହେ ସ୍ୱଚ୍ଛ କିଶୋର—     ଚନ୍ଦ୍ର ତାଳଚେର
ଧରଣୀର ମଥାମଣି
ଦୟା ଦାକ୍ଷିଣ୍ୟାଦି     ଗୁଣ ନିବହର
ମଞ୍ଜୁମଣି ରତ୍ନଖଣି ।
ଅଳୀକ ଅମୋଦ     ରହସ୍ୟ ରସରେ
ନ ବଳାଇ ତୁମ୍ଭେ ମନ
ଖୋଜୁଅଛ ସଦା     ଶାଶ୍ୱତ ଭଣ୍ଡାରେ
ସୁରୁଚି ଶାଶ୍ୱତଧନ ।
ବ୍ରାହ୍ମୀ ବୀଚିମାଳ     ଶୀକର ଶୀତଳ
ଦିବ୍ୟ ରମ୍ୟ ମଣ୍ଡଳରେ—
ବସି ନବ ନବ     ସୁଖ ଲଭୁଅଛ
ବରଦା ବାଗ୍‌ଦେବୀ ବରେ ।
ଭଗବାନ ସଦା     ସଦୟ, ପାର୍ଥିବ
ସକଳ ସମ୍ପତ୍ତି ଦେଇ
ସେ ଧନ ବର୍ଦ୍ଧନେ     ଦେଇଛନ୍ତି ପୁଣି
ପାତାଳ ଭଣ୍ଡାର ଫେଇ ।
ଭୂତଳେ କଳନା     ପଶାଇ ତହିଁରୁ
ପଥର କୋଇଲା ତୋଳି
ତାର ବିନିମୟେ     ବିଦେଶୁ ଅଣୁଛ
ସରସର ଟଙ୍କା ଥଳୀ ।
ଉଦ୍ଭାବନ କରି     ମନରୁ ନିରତ
ଅଭିନବ କଉଶଳ
ଅସୀମ ଉଦ୍ୟମେ     ସୁମାର୍ଗେ ସର୍ବଦା
ବଢ଼ାଉଛ ଧନବଳ ।
ସେ ଧନକୁ ପୁଣି     ଗଣ୍ଠିଧନ ପରି
ନ ରଖି କୃପଣ ପରି
ସୁକାର୍ଯ୍ୟେ ସୁପାତ୍ରେ     ଶୁଭ୍ରଯଶ ନେଇ
ଦେଉଛ ସୁଖେ ବିତରି ।

ବୟସ ଗଲେହେଁ　　ଯୁବକ ପରାଏ
କୋରଡ଼ା ହାତରେ ନେଇ
ପୋଲୋ ଖେଳେ ଘୋଡ଼ା　　ଦଉଡ଼ାଉଅଛ
ହସି ନଶ ମୋଡ଼ଦେଇ ।
ଚଳ ଲକ୍ଷ୍ୟଭେଦୀ　　ପର ପ୍ରାଣହାରୀ
ଖ୍ୟମନାଦୀ ନଳୀ ଧର
ବନେ ବିହରୁଛ　　ଶାର୍ଦ୍ଦୂଳକୁଳର
ମୂର୍ତ୍ତିମନ୍ତ କାଳ ପରି ।
ନବୋଦ୍ଗତ ଶ୍ୟାମ　　ସମ ମନୋରମ
ସ୍ୱଦେଶ ନଭେ ବିରାଜି
ବର୍ଷି ଦେଉଅଛ　　ନିଖିଳ ଉତ୍କଳେ
ଯଶ ସୁଧାକରରାଜି ।
ବସନ୍ତ ଆଗମେ　　ଜଗ ଆମୋଦଇ
ଯେସନେ ଆମ୍ର ବଉଳ
ତାଳଚେର ଆଜ　　ତୁମ୍ଭର ଗୌରବେ
ତେସନ ଯାଏ ଉଚ୍ଛୁଳି ।
ଆସ ଆସ ଭାଇ　　ସାଦରେ ତୁମ୍ଭଙ୍କୁ
କରୁଅଛି ଆମନ୍ତ୍ରଣ
ଏ ରହସ୍ୟ କଥା　　ଜାଣିବାକୁ ଯେବେ
ବଳୁଅଛି ତୁମ୍ଭ ମନ ।
ପଶିବା ଗନ୍ଧର୍ବ—　　ମାନଙ୍କ ଦେଶରେ
ବସି ବୀଣାପାଣି ରଥେ
ସର୍ବ ଶୋଭାଧାର　　ସରଳ ସୁଢ଼ଳ
କାଦମ୍ବରୀ ବାକ୍ୟପଥେ ।
ଉଷାର ଉତ୍ଫୁଲ୍ଲ　　ଆଲୋକ ପରାଏ
ବିଶ୍ୱଜନ ମନଲୋଭା
ଦେଖିବା ଗନ୍ଧର୍ବ—　　ବାଳାର ଅପ୍ସର
ନନ୍ଦତ ଅପୂର୍ବଶୋଭା ।
ଜାଣିବା କିସବେ　　ଯୌବନେ ଯୋଗିନୀ
ମହାଶ୍ୱେତା ପ୍ରୀତିଲୀଳା

ଚନ୍ଦ୍ରାପୀଡ଼ ରୂପ          ମଣ୍ଡସ୍ତ ପିଅନ୍ତୁ
ତାହାକୁ କଲ ଉଜ୍ଜଳ ।
ଲୁଣ୍ଠିବା ସମ୍ଭାର          ସୁନ୍ଦରୀ ସାରଙ୍କ
ରୂପରାଶି ଚମତ୍କାର
ଶୁଣିବା କଳସ୍ୱ          କୁଳର ସଙ୍ଗୀତ
ମିଶ୍ରିତ ବୀଣା ଝଙ୍କାର ।
ମହୋତ୍ଫୁଲ୍ଲମଣି          ମାଣିକ୍ୟେ ହେ ସ୍ୱଭ !
ସେମାନେ ଭବେ ଅତୁଳା
ଅତୁଳା ଯେମନ୍ତ          ତୁମ୍ଭ ଲକ୍ଷ୍ମୀଦେବୀ
ହୃଙ୍ଗୁଳା ପ୍ରଭ୍ର ମଞ୍ଜୁଳା ।
ଏଥୁ ଅନନ୍ତରେ          ଋଷିତନୟଙ୍କୁ
କହିଲେ ପୁଣି ଜାବାଳି
ପ୍ରସ୍ତରୁ ଉଠି          ସୁମୁଖୀ ସରସୀ
ନୀରେ ଶ୍ରୀମୁଖ ପଖାଳି ।
ସ୍ତବପାଠ ଶେଷେ          ହର ଗତ୍ସୀଙ୍କ
ପଦେ ନମି ଚନ୍ଦ୍ରାନନା
ରାଜପୁତ୍ର ସଙ୍ଗେ          ସମ୍ପାଦିଲେ ନତ୍ୟ
ପ୍ରସ୍ତରର ଉପାସନା ।
ଗନ୍ଧର୍ବ ପୁରର          ଏକ ସହଚର
ଏକାଳେ ସଙ୍ଗତେ ବହି
ସଖୀ ତରଳିକା          ମନ୍ଥର ଗତିରେ
ପ୍ରବେଶିଲେ ଆସି ତହିଁ ।
ନାମ୍ନୀ ମନସ୍ୱେର          ଚନ୍ଦ୍ରାପୀଡ଼ଙ୍କର
ସୌନ୍ଦର୍ଯ୍ୟ ଅବଲୋକନେ
ପୁଲକିତ ମନେ          ସହସ୍ରେ କେତେ
କଥା ସେ ପାଣ୍ଡୁଲେ ମନେ ।
ମହାଶ୍ୱେତା ଗିରେ          ସବୁ ଜାଣି, ନମି
କହିଲେ ପ୍ରିୟଭାଷିଣୀ
ଗନ୍ଧର୍ବ ନଗରେ          ସମସ୍ତ କୁଶଳ
କୁଶଳ ତୁମ୍ଭ ସଙ୍ଗିନୀ ।

ତୁମ୍ଭର ଲେଖାରେ ପରିଣୟ କଥା
ଗଜଦନ୍ତକୁମାରୀ ଲକ୍ଷି
'କହୁଲେ ଏମନ୍ତ କଟୂକ୍ତି କରନ୍ତ
କେଉଁ ଦୋଷେ ମୋତେ ସଖୀ ।
ପରଖନ୍ତ ପତ୍ର ତୁମର ହସ୍ତରେ
ପେଷି ଏହୁ ସମାଗ୍ଭର
ଅଥବା ଅଦ୍ୟାପି ଗୃହେ ଅଛ ବୋଲି
ଦେଉଛନ୍ତ ଧରସ୍ଥାର ।
ବାହାରୁ ଅଥବା ଅନ୍ତରୁ କହନ୍ତ
ନ ପାରୁଛ ଉପଲବ୍ଧି
ହୃଦୟ ଭିତରୁ କହୁଥିଲେ କିଛ
ଅଛି ଏଥି ଅଭିସନ୍ଧି ।
ମଧୁର ଭାଷିଣୀ ମାନସ ରଞ୍ଜିନୀ
ସଖୀ ମୋର ସ୍ୱଭାବତଃ
ଏରୂପ ଅପ୍ରିୟ କଥା କହିବାକୁ
ଶିଖିଲେ କାହୁଁ କହତ ?
ପ୍ରିୟ ସଜନୀର ଦୁଃଖରେ ନିତାନ୍ତ
ହୋଇଛ ମୁହିଁ କାତର
ଏ ସମୟେ କହ କିପରି କରିବ
ବିବାହର ଆଡ଼ମ୍ବର ।
ସହଚର ଦୁଃଖେ ଝୁରି ହେଉଛନ୍ତ
ସର୍ବଦା ପଶୁପକ୍ଷୀ ଏ
ଜ୍ଞାନେ ଶ୍ରେଷ୍ଠ ନର— ମାନଙ୍କର କଥା
ତହୁଁ ବଳିଯିବ କହେ ।
ସୂର୍ଯ୍ୟ ଅସ୍ତହେଲେ ସରେ ନିମୀଳିତ
ନଳିନୀର ଦୁଃଖ ଗ୍ଭହିଁ
ପ୍ରିୟ ସଙ୍ଗଛଡ଼ି ଚକ୍ରବାକୀ ରାତି-
ଯାକ ଝୁରଇ କି ନାହିଁ ।
ସଜନୀ ଯାହାର ବନବାସେ ରହି
କାଟନ୍ତ କଷ୍ଟେ ସମୟ ।

ସେ ଖୋଜିଲେ ସୁଖ     କି ବୋଲିବେ ତାଙ୍କୁ
ଜଗତେ ଜନ ନିଚୟ ।
ଲଜ୍ଜାଭୟ ଛାଡ଼     ଉପେକ୍ଷି ଜନକ
ଜନନୀଙ୍କର ବଚନ
କୁଳ କୁମାରୀର     ଧୈର୍ଯ୍ୟ ପ୍ରତିକୂଳେ
କରଅଛ ଯେଉଁ ପଣ ।
ସେହି ଗୁରୁତର     କଠୋର ପ୍ରତିଜ୍ଞା
ଯେମନ୍ତ ରକ୍ଷିବ ମୁହିଁ
ତୁବେକି ଉଚିତ     ତହିଁର ସାହାଯ୍ୟ
କରିବା ଚନ୍ଦ୍ରମାମୁହିଁ ?'
ତରଳିକା ମୁଖୁଁ     ଲଭି ଏହିରୂପ
ଉତ୍ତର ପ୍ରିୟସଖୀର
ହେମକୂଟ ପୁରେ     ନିଜେ ଯିବା ପାଇଁ
ବାଳାମଣି କଲ ସ୍ଥିର ।
କହିଲ 'କୁମାର !     ହେମକୂଟ ଗିରି
ବଡ଼ ରମଣୀୟ ସ୍ଥାନ
ନାନା ବର୍ଣ୍ଣମୟ     ପଦାର୍ଥ ତହିଁରେ
ରହିଅଛି ବିଦ୍ୟମାନ ।
ଅତ୍ୟନ୍ତ ମଧୁର     କିନ୍ନରମାନଙ୍କ
ସଦାଶୟର ବ୍ୟବହାର
ନାନା ଉପାୟନେ     ପୁରିତ ଗନ୍ଧର୍ବ
ପତିଙ୍କ ରତ୍ନଭଣ୍ଡାର ।
ରମଣୀ ଲଲାମ—     ଭୂତା କାଦମ୍ବରୀ
ସୌଜନ୍ୟ ସୌହାର୍ଦ୍ଦ୍ୟବତୀ
ସୁଶୀଳା ସରଳା     ଶାନ୍ତମୂର୍ତ୍ତି ପୁଣି
ଅତ୍ୟନ୍ତ ଉଦାରମତି ।
ଯେବେ ସେହିସ୍ଥାନ     ଦେଖିବାକୁ ମନେ
ବଳୁଛି ତୁମ୍ଭ ଶରଧା
ଅଥବା ସେଠାକୁ     ଯିବାକୁ ଯେବେ
ନାହିଁ ଅନ୍ୟକିଛି ବାଧା

ଡାହେଲେ ମୋ ସହ    ଯୁବରାଜ ତହିଁ
ପିତାଙ୍କ ବଚନ ପାଇଁ
ଛାଡ଼ିବାକୁ ତୁମ୍ଭ    ସଙ୍ଗ ତଳେସୁଦ୍ଧା
ହୃଦୟ ଇଚ୍ଛାଇ ନାହିଁ ।
ପ୍ରକାଶି ତୁମ୍ଭର    ଠାରେ ମୋର ଗତ-
ବିଷାଦବାର୍ତ୍ତା ସକଳ
ପ୍ରବଳ ଶୋକର    ବିଷମ ଆବେଗ
ହୋଇଛି ସିନା ଲଘବ ।
ଅକାରଣ ମିତ୍ର    ହୋଇଛ ଏ ବନେ
ସୌଜନ୍ୟେ ରାଜତନୟ
ଦୁଃଖି—ଦୁଃଖ ଦେଖି    ନିରତ ସଦୟ
ହୁଅଇ ସାଧୁ ହୃଦୟ ।’
ସମ୍ଭ୍ରମ ପ୍ରକାଶି    ଗମିଲେ ଯୁବକ
ମହାଶ୍ୱେତା ସହିତରେ
ପର୍ବତ ସଙ୍କୁଳ    ନତାନତ ଶିଳା
ବିଷମଗିରି ପଥରେ ।
ସୁତୀକ୍ଷ୍ଣ ଶିଙ୍କୁଳା    ଘାସେ ପରିପୂର୍ଣ୍ଣ
ସରଣୀ କଣ୍ଟକାକୀର୍ଣ୍ଣ
ମନୁଷ୍ୟେତର    ପ୍ରାୟ ଥିଲା ତହିଁ
କେବଳ ଅସ୍ପଷ୍ଟ ଚିହ୍ନ ।
କଳକଳ ନାଦେ    ଗିରିନଦୀ କାହିଁ
ବହୁଥିଲା ଅବିଶ୍ରାନ୍ତ
ଡେଇଁଥିଲା କାହିଁ    ଗମ୍ଭୀର ନାଦରେ
ଗିରିଶିଖରୁଁ ପ୍ରପାତ ।
ସରଳ ଶଇଳ    ସଂକୀର୍ଣ୍ଣ ପଥକୁ
ଲଙ୍ଘି ଯାଉଥିଲେ ତାହିଁ
ତଳକୁ ଦେଖିଲେ    ଦେଉଥିଲା ହାସେ
ବେନଙ୍କ ମୁଣ୍ଡ ବୁଲାଇ ।
କାହିଁବା ଶ୍ୱାପଦ    ବିକଟ ରୁହା ଟ
ଶୁଣି ବନ ପ୍ରାଣୀଙ୍କର

ହେମକୂଟ ଯାକୀ ହୃଦେ ନାନାଭାବ
ଉଠୁଥିଲା ଥର ଥର ।
ସେହି ପ୍ରାକୃତିକ ଦୃଶ୍ୟ ଦେଖି ଦେଖି
ମାର୍ଗ ଅତିକ୍ରମ ସାରି
ଏସବେ ଗନ୍ଧର୍ବ— ପୁରେ ପ୍ରବେଶିଲେ
ରାଜ କୁମାର କୁମାରୀ ।
ସୁବର୍ଣ୍ଣ ଖଚିତ ବୈଜୟନ୍ତୀଧାରୀ
ସେ ପୁରର ରଙ୍ଗୀଥାଟ
ପ୍ରଣମି ବେନଙ୍କୁ ଆଗେ ଆଗେ ଧାଇଁ
ଦେଖାଇଲେ ପୁରବାଟ ।
ହାସ୍ୟ ରସମୟୀ ଅସଂଖ୍ୟ ମହିଳା
ମନୋମୋହିନୀ ସମ୍ମୁଖେ
ଦେଖି ଦେଖି ସୁଖେ ପୁରୁଁ ପୁରେ ବେନି
ଚଳିଲେ ଅତି ଉତ୍ସୁକେ ।
ଜଗତରେ କେତେ ସୁନ୍ଦରୀ ଅଛନ୍ତି
ସଂଖ୍ୟା ଜାଣିବାକୁ ନହି
ସୌନ୍ଦର୍ଯ୍ୟ ତୁଳାଇ ଆଣି ସେମାନଙ୍କୁ
ଏକଠେ ଥିଲେ କି ନହି ।
ଗଢ଼ୁ ଗଢ଼ୁ ଯବେ ଅବଲା ସର୍ଜନା
କଳ ଯିବାରୁ ଧାତାର
ବାଛି ବାଛି ତହିଁ ପୂର୍ଣ୍ଣ କରିଥିଲେ
ଏ ରମ୍ୟନାରୀ ଭଣ୍ଡାର ?
ସେମାନଙ୍କ ଦେହ କାନ୍ତିରେ ଶୁଦ୍ଧାନ୍ତ
ହୋଇଥିଲା ଚନ୍ଦ୍ରମୟ
ଦିଶୁଥିଲା ବନା ବାରଦେ ଜଳଦ
ପରସ୍ପେ ଚଞ୍ଚଳାଚୟ ।
ବନା ଅଲଙ୍କାରେ ଅଲଂକୃତ ପରି
ସାଜୁଥିଲେ ବାମାକୁଳ
ସ୍ୱଦେହର କାନ୍ତି ବସନ, ଅଭର୍ଣ୍ଣ—
ଲକ୍ଷ୍ମୀ କେଶ କର୍ଣ୍ଣଫୁଲ ।

ନିଶ୍ୱାସ ପବନ ସୁଗନ୍ଧ ଲେପନ,
ଭ୍ରୂ ଜଲତା ଚମ୍ପାସ୍ରଜ,
କୌମୁଦୀ ଧବଳ ଦଶନର ପ୍ରଭା—
ବିମଳ କର୍ପୂରରଜ ।
କରତଳ ଲୀଳା କମଳ, ଅଧର
କାନ୍ତି କୁଙ୍କୁମ ଲେପନ,
ଅଙ୍ଗୁଳର ପ୍ରଭା ତରଳ ଅଳତା,
ସୁହାସ୍ୟ ବାସଚନ୍ଦନ ।
ସେମାନଙ୍କ ଗଣ୍ଡ— ସ୍ଥଳର ଲାବଣ୍ୟ
ସୁରଭି ଗୋଲାପଜଳ,
ପରସ୍ପର କଥା ବୀଣାର ଝଙ୍କାର,
ଦର୍ପଣ ସ୍ତନ ମଣ୍ଡଳ ।
ସେ ବାଳାମାନଙ୍କ ତାନ ଲୟ ଯୁକ୍ତ
ବାଦ୍ୟର ମଧୁରଧ୍ୱନି
ଶୁଣି ଶୁଣି ଦୁହେଁ କାଦମ୍ବରୀ ପୁରେ
ପ୍ରବେଶିଲେ ସେହିକ୍ଷଣି ।
ବସିଥିଲେ ଦନ୍ତୀ— ଦନ୍ତ ପଲଙ୍କେ ସେ
ଆନନ୍ଦେ ସଖୀ ଗହଳେ
ଚାମର ଧାରିଣୀ ପଛରୁ ଚାମର
ଚାଳୁଥିଲେ କୁତୂହଳେ ।
ମନେ ହେଉଥିଲା ମଦନ ତନ୍ତ୍ରୀକୁ
ବାଳାଏ ସ୍ୱକାନ୍ତ ଜଳେ
ବାନ୍ଧୁଥିଲେ କିବା ମୃଦୁ ଭୁଜଲତା—
ଅନୁଭବ ଗୁଣ କୌଶଳେ ।
ପୂର୍ଣ୍ଣ ଶଶିକଳା ଲଭି ଯେସନ୍ତେ ସିନ୍ଧୁ
ହୁଏ ହୁଏ ଉଦ୍‌ବେଳିତ
ସୁମୁଖୀ ଦର୍ଶନେ ତେସନ ଯୁବାଙ୍କ
ଉଲ୍ଲସି ଉଠିଲା ଚିତ୍ତ । '
ଭାବିଲେ ଦେଖିଛି ଜଗତେ ବହୁତ
ସ୍ଥଳ ବୁଲି ବୁଲି ମୁହିଁ

ଦୃଷ୍ଟ ନାହିଁ କେବେ ମୋ ନେତ୍ରେ ଏମନ୍ତ
ନିରୁପମ ଚନ୍ଦ୍ରମୁହିଁ ।
ଜନ୍ମଜନ୍ମାନ୍ତରେ ନୟନ ଯୁଗଳ
ଥିଲେ କି ପୁଣ୍ୟ ଆଚରି
ତାହାର ବଳରେ ଦେଖିଲେ ଏସ୍ଥାନେ
ଆସି ଏ ନବକିଶୋରୀ ।
କାହିଁକି ବିଧାତା ସକଳ ଇନ୍ଦ୍ରିୟ
ନକଲେ ମୋ ଚକ୍ଷୁମୟ
କେବଳ ନୟନ୍ତୁ ଲଭୁଥାନ୍ତା ସର୍ବ
ଇନ୍ଦ୍ରିୟ ସୁଖ ହୃଦୟ ।
ଯେତେ ଦେଖିଲେହେଁ ଆଉ ଦେଖିବାକୁ
ତଥାପି ହେଉଛି ମନ
କେଉଁ ଉପାଦାନେ ଏମନ୍ତ ମୂରତି
ସୃଜିଲେ ଚତୁରାନନ ।
ମନେହୁଏ ଅଗେ ସୃଷ୍ଟି କରି ସାର
ଏ ଅତୁଲ ରୂପନିଧି
ଅବଶିଷ୍ଟ ଦ୍ରବ୍ୟେ ଗଢ଼ିଥିଲେ ସିନା
ଗୁରୁଚନ୍ଦ୍ର ପଦ୍ମ ବିଧି ।
ଯେମନ୍ତ ସର୍ବାଙ୍ଗ ସୁନ୍ଦରୀ ତେମନ୍ତ
ଅଟେ ସର୍ବ ସୁଲକ୍ଷଣା
ଲଳନା ସୃଷ୍ଟିରେ ସାର ସିନା ଏହି
ଚଞ୍ଚଳ ମୃଗଲୋଚନା ।
ଏହି ରୂପ ଜଳ କିଶୋର, କିଶୋରୀ-
ସୌନ୍ଦର୍ଯ୍ୟେ ହୋଇ ବିହ୍ଵଳ
ଅବଶେ ତୃପ୍ତିରେ ବିଲୋକିଲେ ସେହି
ରୂପରାଶି ସୁକୋମଳ ।
ରକ୍ତ କଞ୍ଜ ଗଞ୍ଜି ଶୋଭୁଥିଲା ମଞ୍ଜୁ—
ମଣିର ବେନି ଅଧର
ଦୁହାଇ ସେ ପଦ କାନ୍ତିରେ ପ୍ରବାଳ
ମଣିର ନବ କର୍ପୂର ।

ଅଲକ୍ତକ ରସେ    ରଞ୍ଜିତ ଅଙ୍ଗୁଳି
ଆବଳୀ ପଦ କମଳେ
କମ୍ପୁଥିଲ, ଗାଢ଼    ହିଙ୍ଗୁଳ ଦୋଳା କି
ହୋଇଥିଲ ଚମ୍ପାଦଳେ ?
ଲଳନା ଲଳିତ    କଦମ୍ବ ଯୁଗଳ
ସତେ କି ଅଗେ ବରଟ
କଟି ପ୍ରଦେଶକୁ    ଜାକି ଧରିଥିଲେ
ସୁଦୃଢ଼ସ୍ତବେ ବରହି ।
ଏଣୁ ସ୍ତନଶୈଳ    ବାହାର ଲବଣ୍ୟ—
ପ୍ରବାହ ସିନା ପ୍ରବଳେ
ଜଘନ ଶିଳାରେ    ବାଜି ଦୁଇଧାରେ
ବହୁଅଛି ଊରୁଛଳେ ।
ଶୋଭୁଥିଲ ସ୍ତରୁ—    ଚନ୍ଦ୍ରହାରେ ସୀମା
ପୃଥୁଳ ଶ୍ରେଣୀଯୁଗଳ
ବେଢ଼ିଥିଲ କିବା    ସୁଦମଳା କଧୂ—
ଡିମ୍ବକୁ ତାରମଣ୍ଡଳ
ଦେଖୁଥିଲ କଠୀ    ପ୍ରଫୁଲ୍ଲ କମଳ
ମୁଖକୁ ବହୁ ଶରଧା
ମଧ୍ୟେ କୁଚ ବେନି    ଉଠି ତା ଦର୍ଶନେ
ଦେବାରୁ ବାଧା ସର୍ବଦା ।
ନାଭିମଣ୍ଡଳର    ତଳକୁ ବଷାଦେ
ଦ୍ୱି ତିନ ଅଙ୍ଗୁଳ ହଟି
ଝୁର ଝୁର ସରୁ    ହୋଇଥିଲ କିବା
କୃଶାଙ୍ଗୀର କୃଶକଟୀ
ଅଲ୍ପ ନମ୍ର ନାଭି    ଦର ବିକଶିତ
କମଳ କୋରକବତ
ଘୂରୁଥିଲ କିବା    ମାର ତଟିନୀର
ଲାବଣ୍ୟ ଜଳେ ଆବର୍ତ୍ତ ।
ପିପୀଲିକା ଶ୍ରେଣୀ    ସମ ଦିଶୁଥିଲ
ତା ପରେ ସରୁ ରୋମାଳୀ

ତ୍ରିଭୁବନ ଜୟୀ ଚାମର କରା ସେ
ଯଶ ଗୀତ ବର୍ଣ୍ଣାବଳୀ ।
ନିର୍ମଳ ସୁନ୍ଦର ଲାବଣ୍ୟ ସରରେ
ଫୁଟିଛି କମଳ କଳି—
ପରାୟେ ଉନ୍ନତ ଉରଜ ଯୁଗଳ
ଶୋଭିତାର ଥିଲା ବଢ଼ି ।
ପ୍ରତେ ହେଉଥିଲା ବାଲ୍ୟ ଚପଳତା
ଥିଲା ଯା ହୃଦୟେ ଭରି
ଯୌବନ ତାହାଙ୍କୁ ବଳେ ଉପରକୁ
ଠେଲି ଦେଉଅଛି ପରା ।
ଅଙ୍ଗୁଳି ଅବଳୀ ଶୋଭା ବଢ଼ୁଥିଲା
ପାଣି ତଳେ ଲଳିତାର
ପଦ୍ମଦଳେ ଚମ୍ପା— କଢ଼ି ଗୁନ୍ଥିଥିଲା
ଅବା ଅନୁରାଗେ ମାର ।
ରମ୍ୟ ଓଷ୍ଠାଧର ଅଣୁଥିଲା ରକ୍ତ
କୋକନଦୁ କାନ୍ତି ଝିକି
ଅନୁରାଗ ବଲ୍ଲୀ ଯଉବନ ବାତେ
କମ୍ପି ଉଠୁଥିଲା କି ?
ନବ କୁଶୋଦରୀ ଗଣ୍ଡସ୍ଥଳ ବେନି
ଶ୍ୱେତ ରକ୍ତ ଆଭା ଧରି
କର୍ଣ୍ଣିକାର ଫୁଲ— ଗର୍ବର ମଞ୍ଜୁଳ
କାନ୍ତି ନେଉଥିଲା ହରି
କିଏ ସମ୍ଭାଳିବ ଦେଖି ନବୀନାର
ନର୍ତ୍ତିତ ନାସିକା ଖଣ୍ଡ
ଦିଶୁଥିଲା ତାହା ଯେସନ୍ତେ ମନ୍ମଥର
ରତ୍ନମୟ ବୀଣାଦଣ୍ଡ ।
ଚଳ ଲୁବ୍ଧ ପୁଷ୍ପ ଅନୁଗାମୀ ଭୃଙ୍ଗ
ଯୁଗପ୍ରାୟ ବିଲୋଚନ
ଭବ ସ୍ତୁହାଣିରେ କର୍ଣ୍ଣପ୍ରାନ୍ତ ପାଏ
ଧାଇଁଥିଲା ଘନଘନ ।

ପଞ୍ଚବାଣ ବର୍ତ୍ତି    ମଦ ଧାରି ଧର
ଭ୍ରୂଲତା କି ମନୋହର
ଲତା ଅଙ୍କିଥିଲା    ଦର୍ପଣ ଫଳକେ
କିବା ମାର କାରିଗର ।
କାଳାନାଗ ସମ    ସେ ଭୂରୁ ଦୁଇକି
ନର୍ତ୍ତିଲ ରଙ୍ଗେ ରଙ୍ଗିଣୀ
ନେଉଥିଲା ଆହା    ବନାମୂଳେ ବନ୍ଧ—
ମନ ନୟନକୁ କିଣି ।
ବିଧୂବିମ୍ବ ବଳ    ବିମଳ ଦର୍ପଣ
ପରାସ୍ତେ ଭିଲ ଫଳକ
ମାର ହୃଦ ସମ    ତଥିପରେ ଶୋଭି
ସିନ୍ଦୂରେ ରଚି ତିଳକ ।
ମନ୍ଦହାସ୍ୟ ମାଝ    ବଦନ ବିମ୍ବକୁ
ଅର୍ଦ୍ଧନୟନେ ଅନାଇଁ
ଦେଉଥିଲା ଚନ୍ଦ୍ର—    ପୀଡ଼କୁ ଧବଳ
ସୁଧା ଧାରେ ଅବଗାହି ।
ଶିରଦେଶ ମଣ୍ଡି    ଶୋଭୁଥିଲା ରମ୍ୟ
ଘନ ନୀଳକେଶ ଶ୍ରେଣୀ
ଦୁଇଭାଗ କରି    ତାହାକୁ ବନାଇ—
ଥିଲା ବାଳାମଣି ବେଣୀ ।
ସୁନିର୍ମଳ ଚନ୍ଦ୍ର—    ମଣ୍ଡଳ ସତେକି
ହରିବାକୁ ସୁଧାରାଶି
ପଛଦିଗୁଁ ରାହୁ    ସବଳେ ସବେଗେ
ଝାମ୍ପି ଧରିଥିଲା ଆସି ।
ତଥିପରେ ସୀମ—    ନ୍ତରେ ଶୋଭୁଥିଲା
ମଥାମଣି ମଞ୍ଜୁଳାର
ନବଘନ କୋଳେ    ସ୍ଥିର ସୌଦାମିନୀ
ଶୋଭାକୁ କରି ଧିକ୍କାର ।
କର୍ଣ୍ଣେ କାମକୁ    ଦହିଥିଲେ ପୂର୍ବେ
କ୍ରୋଧବଶେ ସ୍ମର ହର

ଠେକ ରକ୍ଷା ପାଇଁ ସୃଜିଥିଲ କି ସେ
ଏଣୁ ପ୍ରଭନ୍ତୁଦେ ସ୍ୱର ?
ସଜ ସରସିଜ ବଦନ ସୁଶୀଳା
ସୌନ୍ଦର୍ଯ୍ୟମଦ ବହୁଳା
ରୁଚିର ଗନ୍ଧର୍ବ— ପୂର୍ବ ଗଗନର
ନବୋଦିତ ଶଶିକଳା ।
ଚିତ୍ରରଥ ସୁତା, ସଜନୀଙ୍କୁ ଦେଖି
ରତ୍ନ ପଲଙ୍କରୁ ଉଠି
ଆବେଗ ରଭସେ ଖଣ୍ଡେଦୂର ଯାଇ
ଅଧୀରେ ନେଲ ପାଶେ ଟି ।
ସସ୍ନେହେ ସସ୍ମିତେ ଆଲିଙ୍ଗିଲ ମୋଦେ
ଗାଢ଼େ ଭୁଜ ରସଲତା
ଜଡ଼ଗଲ କୁରେ ନଅଳୀ ବଲ୍ଲୀରେ
ପୁଷ୍ପିତା ମାଳତୀ ଲତା ।
ପ୍ରୀତ ଆଲିଙ୍ଗନ ଦେଇ ମହାଶ୍ୱେତା
ଚନ୍ଦ୍ରାପୀଡ଼ଙ୍କୁ ଦେଖାଇ
କହିଲ ମଧୁରେ ବଧୂଲୀଅଧରୀ
ବଧୂବଦନୀକୁ ଚାହିଁ ।
'ଭାରତବର୍ଷରେ ଉଜ୍ଜୟିନୀ ନାମେ
ଅଛି ଏକ ଜନପଦ
ତହିଁ ତାରାପୀଡ଼ ନୃପ କେଶରୀ
ମର୍ତ୍ତ୍ୟରେ ଇନ୍ଦ୍ରସମ୍ପଦ ।
ତାହାଙ୍କ ତନୟ ଚନ୍ଦ୍ରାପୀଡ଼ ଏହୁ
ରୂପେ ଗୁଣେ ଅନୁପମ
ଏ ସଂସାରେ ସାର— ସୁନ୍ଦର କେବଳ—
ବର ପର ମନୋରମ ।
ଦର୍ଶନସ୍ତୁ ଅଶେ ଅପି, ହୋଇଥିଲେ
ଅତିଥି ମୋହ ଆଶ୍ରମେ
ବଡ଼ ଅହ୍ଲାଦରେ ଯାପିଲି ଦିନ ମୁଁ
ଏହାଙ୍କର ସମାଗମେ ।

ଅକାରଣେ ମିତ୍ର      ଅକୃତ୍ରିମ ଚିତ୍ତ
ଏହାଙ୍କ ପର୍ଯ୍ୟେ ଜନ
ଦେଖି ନାହିଁ କାହିଁ      ସଜନି ! ଏ ବିଶ୍ୱ
ମଧ୍ୟରେ ମୋର ନୟନ ।
ଶୁଣି କାଦମ୍ବରୀ      ବିନୟେ ଭୂମିରେ
ଲୋଟାଇ ଶିର ତାହାର
ଗନ୍ଧର୍ବୀ ହେଲେହେଁ      ସବିଧିରେ କଲା
କୁମାରଙ୍କୁ ନମସ୍କାର ।
ସମ୍ମୁଖେ ମହାର୍ଘ      ସିଂହାସନ ପରେ
ଯୁବାମଣିଙ୍କି ବସାଇ
ସମ୍ଭାଷଣ ଅନ୍ତେ      ବେଣ ନତମ୍ବିନୀ
ପଲଙ୍କେ ବସିଲେ ଯାଇ ।
ଉଦିତ ହେଲକି      ରବି ବିମ୍ବ ଆଗେ
ଯୁଗଳ ଫୁଲ୍ଲ ନଳିନୀ
ଅବା ବନ ଆଗେ      ମହମାୟା ସନ୍ଧ୍ୟା
ଉଜ୍ଜ୍ୱଳ ଜ୍ୟୋତ୍ସ୍ନା ସଙ୍ଗିନୀ ।
ଫଣୀ ଫଣାଶାୟୀ      ଅଥବା ଶ୍ରୀପତି
ଆଗେ ଲକ୍ଷ୍ମୀ ସରସ୍ୱତୀ
ଶରତ ସମୁରେ      କାଶ ହାସମୟୀ
କି ଅବା ଯୁଗ୍ମ ପ୍ରକୃତି ।
ତରୁଣଙ୍କୁ ଆଗେ      ସମାସୀନ ଦେଖି
ତରୁଣୀ ହେଲା ସ୍ତମ୍ଭିତ
ଠକୁରଙ୍କ ଲୋମ      ସର୍ବାଙ୍ଗେ ଅଥୟେ
ଅବସନ୍ନ ହେଲା ଚିତ୍ତ ।
ମହାଶ୍ୱେତା ଦୁଃଖେ      ଛାଡ଼ିଥିଲା ପ୍ରେମ
ପ୍ରସଙ୍ଗ ହୃଦୟୁ ତାର
ଏବେ ଖରେ ହୃଦେ      ଧାଇଁଲା ପ୍ରଣୟ
ପ୍ରବାହ ତୋଳି ଜୁଆର ।
ଶ୍ଳଥ ହେଲା ସର୍ବ      କନ୍ଦ୍ରସ୍ୱର ଗତ,
ଉଲ୍ଲସି ଉଠିଲା ଗତ,

ଦରଦର ଝାଳ ବହିଲା ସର୍ବାଙ୍ଗେ
ଭିଜିଗଲା କଳାବତୀ ।
ଶୁଖିଗଲା କଣ୍ଠ, ଉନ୍ମାଦରୁ ପର
ଥରିଲା ସେ ପଞ୍ଚସ୍ୱରେ
ଠାଣି ନ ପାରିଲା ଶ୍ୱାସ ଦୁକୁଦୁକୁ
ହୋଇଲା ବୁକୁ ଭିତରେ ।
ଚକ୍ଷୁତାରା ବେନି ଦେଖିବା ପାଇଁକି
ପ୍ରାନ୍ତଭାଗେ ଦଉଡ଼ଇ
ଲଜ୍ଜାରେ ଲଳିତା ଥରଥର ଠାଣି
ଆଣୁଥିଲା ଲେଉଟାଇ ।
ଏଣୁ ଶ୍ରମବଶେ କିବା ନେହ ବେନି
ସ୍ୱେଦ ଜଳବିନ୍ଦୁ ଛଳେ
ଆନନ୍ଦାଶ୍ରୁ କଣା ଅଲକ୍ଷେ ଜନ୍ମାଉ—
ଥିଲେ କନୀନିକା ତଳେ ।
ଆସ୍ତ ଧସ୍ତ ଛଳରେ ନିରେଖି ନବୀନା
ଏକଧ୍ୟାନେ ଅବିରତ
ମତ୍ତା ତୃଷାବଶେ ପିଉଥିଲି କିସେ
କିଶୋରର ରୂପାମୃତ ।
ସୌନ୍ଦର୍ଯ୍ୟ ସାଗର ମନ୍ଥନରୁ ଜାତ
ସେ ଅମୃତ ପିଇ କିବେ
ପଲକ ପାଶୋର ଯାଉଥିଲେ ତାର
ନୟନ ବେନି ଅଧୀରେ ।
ଭାବିଲା ଭାମିନୀ ବିଧାତା ସୃଷ୍ଟିରେ
ନାହିଁ ତୁଲ୍ୟ ଏ ରୂପର
ଏହାକୁ ଦେଖିଲେ ସୌନ୍ଦର୍ଯ୍ୟ ମଦ
ଭାଙ୍ଗିଯିବ ମଦନର ।
କେ କହେ ସ୍ୱର୍ଗ— ପୁର ଅଟେ ବୋଲି
ସର୍ବ ସୁଖର ଆଧାର
ଏ ମୂର୍ତ୍ତିକୁ ବହି ସହସ୍ର ଗୁଣରେ
ଶ୍ରେଷ୍ଠ ଏ ମର୍ତ୍ତ୍ୟ ଆଗାର ।

ସଦାବେଳେ ଅହ୍ଲା ପିଇ ପିଇ ଏହି
ରୂପ ସରସୀର ବାରି
ଭବେ ଶତେଗୁଣେ ସୁଖିନୀ ସିନା ସେ
ଅମରୀଙ୍କ ଠାରୁ ନାରୀ ।
ଗଢ଼ି ଏ ଯୁବାର ସ୍ୱରୂପକୁ, ରୂପ—
ଜଗତେ କମଳାସନ
ସର୍ବ କଳାବିଦ୍ୟା ଏକସ୍ଥାନେ ସିନା
କରିଛନ୍ତି ସମ୍ମିଳନ ।
ନାରୀ ସମାଜରେ ଭାଗ୍ୟବତୀ ବୋଲି
ଟେକାଇବ ସିନା ଛତ୍ର
ଏ ଅଙ୍ଗନା ରଙ୍କ ଅଙ୍କ ପଲଙ୍କକୁ
ମଣ୍ଡିବ ସେଇଁ ଯୁବତ୍ର ।
ଫଳକ ପରାୟେ ବିଶାଳ ଉରସ
ସୁଆଢି ବାହୁ ଯୁଗଳ
ପୂର୍ଣ୍ଣଚନ୍ଦ୍ର ବିମ୍ବ ବଳ ଶୋଭାପାଏ
ମଞ୍ଜୁଳ ମୁଖମଣ୍ଡଳ ।
ଉନ୍ନତ ଲଲାଟ ଉନ୍ନତ ନାସିକା
ଆୟତ ନୟନ ବେନି
ସ୍ଥୂଳ ମୁକ୍ତାଫଳ ସଦୃଶ୍ୟ ବିଶଦ
ସୁମାର୍ଜିତ ଦନ୍ତଶ୍ରେଣୀ ।
ପାଣିତଳ ବେନି ଆରକ୍ତ ଅମ୍ବୁଜ
କାନ୍ତିକି କରୁଛି ଦୂର
ଜମ୍ବୁ କର ଜୁମ୍ବ ଅଙ୍ଗୁଳି ତହିଁରୁ
ଲଗିଛି ପରି ସିନ୍ଦୂର ।
ଅବିରତ ଧନୁ ଟାଣିବାରୁ ଗୁଣ
ଘଷି ହୋଇ ବାରବାର
ବେଣୁଦଣ୍ଡ ଖଣ୍ଡ ପରାୟେ ସୁନ୍ଦର
ପ୍ରକୋଷ୍ଠେ ପଡ଼ିଛି ଗାର ।
ଦେଖି ମନେହୁଏ ବାନ୍ଧୁଥିବା ବେଳେ
ଶତ୍ରୁ ଲକ୍ଷ୍ମୀ ନେତ୍ରଜଳ

ସଦୟରେ ପୋଛ   ଦେବାକୁ ତହିଁକ
ହାତେ ଲଗିଛ କଜ୍ଜଳ ?
ଏରୂପଶରକୁ   ଅଦରେ ବସାଇ
ଦୁର୍ଦ୍ଧର୍ଷ ଧନୁରେ ତାର
ଅଣୟ ନାହିଁଟି   ସହଜେ ଜଣିବ
ନାରୀ ଅସାରକୁ ମାର ।
ଏଭବେ ଭ୍ରମିଣ   ଶ୍ୱବୁଥିଲ ସେହୁ
ସୌନ୍ଦର୍ଯ୍ୟେ ହୋଇ ଲଟୁଅ
ଯେତେ ଦେଖୁଥିଲ   ତେତେ ତା ନୟନେ
ଦିଶୁଥିଲ ନୂଆ ନୂଆ ।
ମହାଶ୍ୱେତା ଯହେ   କମେ ସେ କୁମାର
କୁମାରୀ ଲଜ୍ଜା ବର୍ଜ୍ଜି
ବବଧ ମଧୁର   ଅଳାପେ ବମଳ
ପ୍ରେମରସେ ଗଲେ ମଜ୍ଜି ।
କେମା ମନ ବୁଝି   ସଖିଏ ମୁଖରେ
ଅଙ୍ଗୁଳି କରୁ ସ୍ଥାପିତ
କମେ ବଂଶୀ ବୀଣା   ସହ ସଭିଙ୍କର
ସଙ୍ଗୀତ ହେଲ ସ୍ଥଗିତ ।
ସୁମଧୁର ହାସ୍ୟ—   ରସେ ତନଜଣ
କଟାଇ କେତେକ କ୍ଷଣ
ବାସ ପାଇଁ ସଖୀ   ସହ କୀଡ଼ାଶୈଳେ
ଆସିଲେ ନୃପନନ୍ଦନ ।
ଅତୁଳନ ସେହୁ   ପୁରକୁ ରୁଚରେ
ସୁର ଶିଳ୍ପୀ ଗଢ଼ିଥିଲ
କଗଇ ତଳରେ   ହରିତ ବର୍ଣ୍ଣର
ମରକତ ମଣିଶିଳା ।
ସ୍ଥାନେ ସ୍ଥାନେ ତହିଁ   ଶୋଭା ପାଉଥିଲ
ରମ୍ଭାତରୁରେ ତୋରଣ
କାହୁ ଝରୁଥିଲ   ସଧୀରେ ସୁବାସ
ଜଳେ କୃତିମ ଝରଣ ।

ଶ୍ୱେତ ଉତ୍ପଳର    ପତ୍ରେ ନିର୍ମିତ
ବାଳରେ ଅତି କୌଶଳେ
କୃତ୍ରିମ ଉତ୍ପଳ    ବନା ହୋଇଥିଲା
ଶୁଖିଲା ନଡ଼ିଆ ଫଳେ ।
ବକମାଳା ନଦ    ଝୁଲୁଥିଲା ନବ
ମଲ୍ଲିକା ଫୁଲର ସ୍ରଜ
ବାତେ ଉଡୁଥିଲା    ଦୋହଲି ଦୋହଲି
ସଜ ଶ୍ୱେତୋତ୍ପଳ ଧ୍ୱଜ ।
ଶୋଭା ପାଉଥିଲା    ସ୍ଥାନେ ସ୍ଥାନେ ତାହିଁ
ଜଳ ଯନ୍ତ୍ରର ନିଳୟ
ଶିରୀଷ କୁସୁମ    ରଜେ ତଳ ତାର
ବର୍ଷୁଥିଲା ହିରଣ୍ମୟ ।
ସେ ଘରେ (୧) ତଳର    କେକୀ ନାଚୁଥିଲେ
କରଙ୍ଗେ ପୁଚ୍ଛ ମେଲାଇ
ଜଳୀୟ ବାଷ୍ପରେ    ଦେହ ଘଣୁଥିଲା
ଧୂସରବରଣ ତାହିଁ ।
ସୁବର୍ଣ୍ଣ କମଳ    ବନରାଜ ଥିଲା
ତାହିଁ କ୍ରୀଡ଼ା ଦୀର୍ଘିକାରେ
କୌତୁକେ କୃତ୍ରିମ    ଜଳ ଶିଶୁ ତାକୁ
ଟାଣୁଥିଲେ ଥୋରପାରେ ।
ନିର୍ମାଣ କୌଶଳେ    ଚଳୁଥିଲେ ତାହିଁ
କୃତ୍ରିମ ମେଷ ନିକର
ତହିଁରେ କରଙ୍ଗେ    ଶୋଭା ପାଉଥିଲା
ଇନ୍ଦ୍ରଧନୁ କୃତ୍ରିମର ।
ଉଡୁଥିଲେ ପାଖେ    ଶ୍ରେଣୀବଦ୍ଧ ଭାବେ
ଧବଳ ବକ ସକଳ
ସେମାନଙ୍କ ଦେହେ    ପଡୁଥିଲା ସେହି
ମେଘୁ ଝର୍ ଝର୍ ଜଳ ।

(୧) ଯନ୍ତ୍ର ନିର୍ମିତ ।

ରହୁଥିଲା କାହିଁ — ଚନ୍ଦନ ଶୀତଳ
ସଲିଳେ ପୂର୍ଣ୍ଣ କାସାର
ମାଳତୀ ବଢ଼ିରେ — ଗଢ଼ା ହୋଇଥିବ
କ୍ଷୁଦ୍ର କ୍ଷୁଦ୍ର ଗୀଚ ତାଲ ।
ବସିଥିଲେ କାହିଁ — ନବ ପଲ୍ଲବରେ
ନିର୍ମିତ ଭଳ ଚତ୍ୱାର
ଉଡିବାକୁ ସଦା — ଇଚ୍ଛୁଥିଲେ ଭଳ—
ପକ୍ଷପୁଞ୍ଜଳ କମ୍ପାଇ ।
ପଞ୍ଚ ବାତେ ଜଳ— ଯନ୍ତ୍ରରୁ ଉତ୍ଥିତ
ଜଳୀୟ ବାଷ୍ପ ନିରତ
ଧୂମରାଶି ପରି — ଗବାକ୍ଷ ମାର୍ଗରୁ
ହେଉଥିବ ବହିର୍ଗତ ।
ତାର ସନ୍ନିକଟେ — ସ୍ୱଚ୍ଛ ଫଟିକମୟ
ମନୋଜ୍ଞ ହିମ ମନ୍ଦିର
ସତେ କି ଅଟେ ତା — ଭୁବନ ଶୀତଳ
ହୃଦୟ ହିମ ଶେଖର ।
ଶୀତେ କମ୍ପୁଥିଲେ — ସେଥି ମନ୍ଦବାତେ
କଦଳୀ କାନନ ଘର
ଗ୍ରୀଷ୍ମକାଳେ ସୁଦ୍ଧା — ତହିଁ ଯାଉଥିଲ
ଜାଡ଼େ ଦନ୍ତେ ଦନ୍ତ ବାଜି ।
ଏ ଅଙ୍କ ସକଳ — ମ୍ଲାନ ଅତିକ୍ରମି
ରାଜପୁତ୍ର ମନୋଲ୍ଲାସେ
ଅଶନାଦ ନାଥ — ବଢ଼ାଇଲେ ପଗ
ନିର୍ଦ୍ଦିଷ୍ଟ ଭୁବନ ବାସେ ।
କାଦମ୍ବରୀଙ୍କର — କମଳାସ୍ୟ କାନ୍ତ
ଚକ୍ଷୁ ଚନ୍ଦ୍ର ଅନ୍ୱେଷଣେ
ଉତ୍କଣ୍ଠିତ ହୃଦେ — ତାରାପୀଡ ସୁତ
ଯାପିଲେ ଦିନ ଉକ୍ଳେ ।
ଦିବସ ସରିଲା — ଦମରେ ଅନନ୍ତ
ନଭଦେଶର ସମ୍ରାଟ

ଫିଟାଇଲେ ନିଜ ରାଜଧାନୀ ମଧ୍ୟେ
ନବୀନ ସୌନ୍ଦର୍ଯ୍ୟ ହାଟ ।
କୁପ୍ରସ୍ଥାନେ ଗର— ହାଜର—ପ୍ରିୟଙ୍କ
ଉପରେ ଅରକ୍ତ ଦୃଷ୍ଟି
(୧) କୋପନାଙ୍କ, କିବା କରଇ ପଶ୍ଚିମ
ଆକାଶେ ରକ୍ତିମା ସୃଷ୍ଟି ।
ପଦ୍ମବନ ହେଲ ହରିତ, କୁମୁଦ—
କାନନ ହେଲ ଧବଳ
ପ୍ରଦୋଷ ଦର୍ଶିଲ ପାଂଶୁଳ, ଅରକ୍ତ
ବର୍ଣ୍ଣ ହେଲ ଦିଗ୍‌ମଣ୍ଡଳ ।
ହରିତ ବରଣ ଚଞ୍ଚଳ ତୁରଙ୍ଗ
ମାନଙ୍କୁ କରି ସଂଯତ
ପ୍ରଭୁ ଦିନମଣି ଧରଣୀରୁ କଲେ
କରଜାଳ ସଂକୋଚିତ ।
ଦିନ ଲକ୍ଷ୍ମୀଙ୍କର ସମ୍ମିଳନ ସୁଖ
ସଖେଦେ ମନ୍ତ୍ର ବରଜି
ତହିଁରୁ ପଳାଇ ଲଜ୍ଜାବଶେ ସୂର୍ଯ୍ୟ
ସିନ୍ଧୁନୀରେ ଗଲେ ମଜ୍ଜି ।
ଯୁବରାଜଙ୍କର ନବ ଅନୁରାଗ
ସମ ରମ୍ୟ ସନ୍ଧ୍ୟାରାଗ
ଅଭିସାରିକାଙ୍କୁ ଚେତାଇବା ପାଇଁ
ହେଲ ଯପି ଆଗ ଅଗ ।
ତାମାନଲେ ପୂର୍ଣ୍ଣ ବର୍ଦ୍ଧମାନଙ୍କ
ହୃଦପୁର ଧୂମ ପରି
ଶ୍ୟାମଳ ତମାଳ ତରୁ କାନ୍ତି ଗଞ୍ଜି
ପ୍ରଗାଢ଼ ତମ ଲହରୀ ।
ନେତେ ଅଶ୍ରୁଜଳ ଜନମାଇ ଆଣୁ
ଅଭିମାନିନୀ ଯୋଷାର

(୧) ଯେଉଁ ସ୍ତ୍ରୀ ନାୟକ ଅନାଗମନରେ କୋପିତା ହୁଅନ୍ତି ତାହାଙ୍କ ଦୃଷ୍ଟି ।

ଧୀରେ ଧୀରେ ବଢ଼ି    ଘନ ଅନ୍ଧକାରେ
ଗ୍ରାସିଲା ବିଶ୍ୱସଂସାର ।
କେଳ ମଦେ ମତ୍ତ    ଦିଗ୍‌ଗଜମାନଙ୍କ
ଶୁଣ୍ଡରୁ ନିଷ୍ପ୍ର ଜଳ
ପର୍ଯ୍ୟେ ପ୍ରକାଶ    ପାଇଲେ ସ୍ୱାରକ
ଉଜ୍ଜ୍ୱଳ ଗ୍ରହ ପଟଳ ।
ଅଟରେ ପସରି    ଚଳିଲେ କୁମୁଦିନୀ
ପ୍ରାଣଧନ ଉଣ୍ଣ ହୋଇ
ଅନ୍ଧକାର ରାଶି    ଛଡ଼ଇ ଧରଣୀ
ଅନନ୍ତକୁ ଦେଲେ ଧୋଇ ।
ତାର ପୁଷ୍ପହାର    ହରଷେ ଲମ୍ବାଇ
ସମୁଦିତ ଶଶିକଳା।
କଳଙ୍କ ଛଳେକି    ବନ୍ଧୁଙ୍କ ବକ୍ଷରେ
ରଜନୀର ସେତେ କଳା ।
ଗଜଦନ୍ତେ ଗଢ଼ା    ଫୁଟୁଆ କାନ୍ତି
ବନ୍ଧୁ ପୂର୍ଣ୍ଣ ଶଶଧର
ଧବଳ କର୍ପୂର    ରଜେ ଧରିଥିର
ଶରୀର ଭସ୍ମ ଜର୍ଜ୍ଜର ।
ଏକାଳେ ଗନ୍ଧର୍ବ    ବାଳା ସମୂହେ
ସଜନୀଗଣ ଗହଣେ
ପୂରୁଁ ବାହାରିଲ    ନବ ପ୍ରେମଶୀଳା
ପ୍ରିୟତମଙ୍କ ଦର୍ଶନେ ।
ସାଧାରଣ ବେଶ    ଭୂଷାରେ ଧରନ୍ତି
ଶୋଭା ହେଲା ଅନୁସାର
ଭୂଷଣରେ ଭୂଷା    ଅଟେ ସେ ତାହାର
କିସ ଲୋଡ଼ ଅଳଙ୍କାର ।
ଏକ କେଶ ମାନ    ମୁକ୍ତାର ହାର
ଲମ୍ବିଥିଲା ବକ୍ଷସ୍ଥଳେ
ମୃଦୁ ଦେହ ଖଣ୍ଡି    ଧଳା ଦିଶୁଥିଲା
ଚନ୍ଦନ ରସର ବୋଳେ ।

କଣ୍ଠେ ରାଜୁଥିଲ          କୌମୁଦୀ ଧବଳ
କୋମଳ କୁମୁଦଦଳ
ହସିଲେ ରମଣୀର          ଶୋଭା ପାଉଥିଲ
ସିନ୍ଦୂର ବିନ୍ଦୁ କେବଳ ।
ଜ୍ୟୋସ୍ନାଜାଲ ଜିନି          ଝୀନବାସ ପିନ୍ଧ
ଶୋଭୁଥିଲ ବନୋଦ୍ଭବା
ସମୁଦ୍ରଗତା ଅବା          ସିନ୍ଧୁ ମନ୍ଥନରୁ
ସୁନ୍ଦରୀ ସିନ୍ଧୁନନ୍ଦନା ।
ସଖୀଗଣ ସହ          ପ୍ରବେଶି ସୁକେଶୀ
ପ୍ରମୋଦ ମନ୍ଦରେ ସୁଖେ
ଦେଖିଲ କୁମାର          ମହାଶ୍ୱେତା ସହ
ବସିଥିଲେ ହାସ୍ୟ ମୁଖେ ।
ଗୀତ ବାଦ୍ୟ ପରେ          କିଛିକାଳ ମଧ୍ୟ
ବିବିଧ ହାସ୍ୟ ରସରେ
ଗନ୍ଧର୍ବ ବାଳାକୁ          କହିଲ ଶୋଭାଙ୍ଗୀ
ମହାଶ୍ୱେତା ମୃଦୁସ୍ୱରେ ।
'ସଜନି ! ତୁମ୍ଭର          ସ୍ନେହ ଅଭ୍ୟର୍ଥନା
ଲଭି ଚନ୍ଦ୍ରାପୀଡ଼ ବଳୀ
ଚନ୍ଦ୍ରମା କରରେ          ଚନ୍ଦ୍ରକାନ୍ତ ମଣି
ପରଶେ ହନ୍ତି ତରଳ ।
ତେଣୁ ମନଭାବ          ପ୍ରକାଶି ବାକ୍ୟରେ
ପାରୁ ନାହାନ୍ତି ସେ କହି
ଇଚ୍ଛା ନଥିଲେହେଁ          ଯିବାକୁ କର୍ତ୍ତବ୍ୟ
ଠେଲୁ ଅଛି ରହି ରହି ।
ଅଦର୍ଶନେ ତାଙ୍କ          ପରିଜନ ଥିବେ
ଶିବିରେ ଅତି ଆତୁରେ
ସେମାନଙ୍କୁ ଦେଖା          ଦେଇ ପୁଣି ଆସି
ଭେଟିବେ ତୁମ୍ଭ ଗୃହରେ ।
ଦେଖ କମଳିନୀ          ପ୍ରଭାକର ପୁଣି
କୁମୁଦିନୀ ଶଶଧର

ଯେତେଦୂରେ ଥିଲେ ହେଲେହେଁ ସର୍ବଦା
ଅଭେଦ ପ୍ରୀତ ତାଙ୍କର
ପିବାପାଇଁ ଏଣୁ ଉନ୍ମତ୍ତ ଚିତ
ଆନନ୍ଦ ସୁଧାସାର
ଯନ୍ତ୍ର ତନ୍ତ୍ର ଥିଲେ କି ହେବ ସଜନ !
ଯେ ଯାହାର ସେ ତାହାର ।
ଶୁଣି ଅଦରଣୀ ଭୃଷିଲ ଅଧରେ
ପ୍ରାଣପ୍ରିୟ ସଜନଙ୍କ
"ଦେଖୁଁ ଦେଖୁଁ ଯୁବା ମଣିଙ୍କ ପାଦେ ମୋ
ପରଣ ଦେଇଛିଁ ଚକ୍ଷୁ ।
ଏଥିପାଇଁ ଏତେ ଅନୁରୋଧ କରି
ତାହାଙ୍କ ଯାହା ବାସନା
ସବୁ ଅଙ୍କାଦେଇ ନଜେ ସେ କରବେ
ତର୍କିବ କି ଅଛି ମନା ।"
ଏତେ ବୋଲି ବାଳା ନିଜ ଅନୁଚର
ମାନଙ୍କୁ ପାଖେ ଡକାଇ
ଆଦେଶିଲ ତାଙ୍କୁ ଦେବାପାଇଁ ପ୍ରାତେ
ଯଥାସ୍ଥାନେ ପହଞ୍ଚାଇ ।
ଏସବେ ଜନନେଁ ଗଢଧ ରହସ୍ୟ
ଆଳାପେ କାଳ କଟାଇ
ରଜନୀ ଉଛୁର ଜାଣି ସ୍ୱ ସ୍ୱ ପୁରେ
ପହୁଞ୍ଚିଲେ ସୁଖେ ଯାଇ ।
ତାହାଙ୍କ ମିଳନ ଦେଖିବା ଉତ୍ସୁକ
ଜାଗରଣେ ହୋଇ କ୍ଲାନ୍ତ
ତୁହିନ ଶୀତଳ କାନନ ଭିତରେ
ପଶିଲେ ରଜନୀନାଥ ।
ଅସ୍ତଳ ଭରରେ ବହିଲା ବାଳାଙ୍କ
ଉଷ୍ଣଶ୍ୱାସ ଅବିଚ୍ଛିନ୍ନ
ବହି ଧୀରେ ଧୀରେ ରଜତ ନିର୍ମଳ
ଜ୍ୟୋତ୍ସ୍ନାକୁ କଲା ମଳିନ ।

ଦିବସର ଦୀପ୍ତି,  କୁନ୍ଦକୁସୁମରେ
ଅଧୀରେ ରଜନୀ ଯାପି
ପ୍ରାତଃ ହେଉଁ ହେଉଁ  ଚଞ୍ଚଳେ କମଳ
ଦଳରେ ପଡ଼ିଲା ଝାମ୍ପି ।
ତାହାରଲେ ତର—  ତରେ କେଳିଗୃହୁଁ
ଗୃହର କାର୍ଯ୍ୟେ ନାୟିକା
ନିଜର ବିରହେ  ସେ ଗୃହ ପ୍ରଦୀପ
ଶିଖାମାଳ କଲା ଫିକା ।
ଖର ମାରୁମାରୁ  କ୍ଳାନ୍ତ ମନ୍ମଥର
ଶ୍ୱାସ ସମ ସୁରଭିତ
ପ୍ରସୂନ ସୁଗନ୍ଧ  ବାହି ମନ୍ଦ ମନ୍ଦ
ବାତ ହେଲା ପ୍ରବାହିତ ।
ତାରୁଏ ଅରୁଣ  ଉଦୟରେ ଧୀରେ
ପଶି ଗିରି ଗହ୍ୱରରେ
ଅନ୍ଧକାର ସବୁ  ଏକତ୍ରିତ ହୋଇ
ଲୁଚିଲେ ଯାଇ ଭୟରେ ।
ଅରୁଣ ତମକୁ  ନାଶୁ ନାଶୁ ପୁଣି
ଧ୍ୱଂସକଲା ତାରୁବଂଶ
କୁସୁମେ ମିଶିଲେ  କିଏ ନ ଜାଣଇ
ବିନଷ୍ଟ ହୁଏ ସର୍ବସ୍ୱ ।
ନବୀନ ତପନ  କର ରେଖାବଳୀ
ଦେଖି ହେଲା ଏ ଭାବନା
ସୁବର୍ଣ୍ଣ ଶୃଙ୍ଖଳେ  ସୁବର୍ଣ୍ଣ କଳସ
ତୋଳିଲେ କି ଦିଗଙ୍ଗନା ।
ସେ ଲୋହିତ କର  ବ୍ୟାପିଲା ଜଗତ
ସତେକି ବାଡ଼ବାନଳ
ସିନ୍ଧୁଗର୍ଭୁଁ ଉଠି  ଧାଇଁଲା ଧପଟି
ଗ୍ରାସିବାକୁ ଧରାତଳ ।
ପ୍ରଭାତେ କୁମୁଦ  ବନର ହରଷ,
ପଦ୍ମାକରର ହରଷ,

ଅସ୍ତଚନ୍ଦ୍ରମାର ବିଷର୍ଣ୍ଣ ବଦନ,
ରବିଙ୍କର ହସହସ
କୋକ ଦମ୍ପତିର ହୃଦୟ ଉଲ୍ଲାସ,
ପେଚକ ଦୁଃଖନଠାଇ ।
ଜହ୍ନର ସମାନ ଅବସ୍ଥା କାହାର
ସବୁକାଳେ ରହେ ନାହିଁ ।
ଯାହେ ସେବଥିବା ବାରୁଣୀର ନିଶା—
ବଶେ ରକ୍ତ ନେତ୍ରେ ହର
ଅବସନ୍ନ ଦେହେ ଧୀରେ ପୁବାଶାରେ
ଦେଖାଦେଲେ ଅବଡର ।
ଦୁଃଖଶଯ୍ୟା ଛାଡ଼ି ଇନ୍ଦ୍ରାୟୁଧେ ବସି
ନରେନ୍ଦ୍ରସୁତ ବଧିରେ
ବାହାରିଲେ ବେଗ ସିମନ୍ତିନୀ ପାଶୁଁ
ମେଲାଣି ଘେନ ଶିବିରେ ।
ନାଚୁନଥିଲାଟି ମାର୍ଗରେ କେବଳ
ହେମମୂର୍ତ୍ତି ମନେ ଆସି
ଦଶେ ଦଶେ ତାଙ୍କୁ ଦିଶୁଥିଲା ସିନା
କାଦମ୍ବରୀ ରୂପରାଶି ।
ଜାଗ୍ରତ ସ୍ୱପନେ ଦେଖୁଥିଲେ ଯେତେ
ବିରହ ସହି ନ ପାରି
ତାଙ୍କ ପଛେ ପଛେ ଅନୁସରୁ ଥିଲା
କାତରେ ରାଜକୁମାରୀ ।
ପାଷାଣ ବନ୍ଧୁର ପଥ ଅତିକ୍ରମି
ଏହିରୂପେ କ୍ରମେ କ୍ରମେ
ପ୍ରବେଶିଲେ ଯୁବା ଅଚ୍ଛୋଦ ତୀରରେ
ମହାଶ୍ୱେତାର ଆଶ୍ରମେ ।
ଅଶ୍ୱଖୁର ଚିହ୍ନ ଲକ୍ଷି ଏଣେତେଣେ
ବହୁଦୂର ବନେଯାଇ
ଭେଟିଲେ ସେସ୍ଥାନ କିନ୍ନରଙ୍କ ପଛେ
ଯହିଁ ଥିଲେ ପୂର୍ବେ ଧାଇଁ ।

ସଙ୍ଗୀ ଗନ୍ଧର୍ବଙ୍କ ମନ ତୋଷି ନାନା
ମଧୁର କଥାବାର୍ତ୍ତାରେ
ମିତ୍ରଙ୍କୁ ଉତ୍ସୁକେ ସଞ୍ଚଳ କହିଲେ
ପରବେଶି ସ୍ବଭାବାରେ ।
ଅଦର୍ଶନେ ତାଙ୍କ ପରିଜନେ ଥିଲେ
ଅଜ୍ଞାତ ଭୟେ ଆତୁର
ଏବେ ସମ୍ମୁଖରେ ବିଲୋକି ସକଳ
ସନ୍ଦେହ ହୋଇଲା ଦୂର ।
ଜାଣିଲେ ଯୁବକ ଉକ୍ତସ୍ମିମାପୂରୁ
ବହୁ ଶୁଭସମାଚାର
ପିତାଙ୍କ ପ୍ରେରିତ "ପତ୍ରକରେ ଘେନି"
ଆସିଅଛି ଏକ ଚର ।
ଜନକ ଆଦେଶ ପତ୍ର ପାଠମାତ୍ର
ଫେରି ଯିବାକୁ ନଗରେ
ଦୂତମୁଖୁଁ ଶୁଣି ହୃଦୟ ଉତ୍କଣ୍ଠା
ବଢ଼ିଲା ବହୁଗୁଣରେ ।
ଉଭୟ ସଙ୍କଟେ ପଡ଼ି ସେ କ୍ଷଣକ
ପାର୍ଥ ହରାଇଲେ ଧୃତି
ଗୁରୁଜନ ଆଜ୍ଞା ଏକଦିଗେ ଅନ୍ୟ
ଦିଗରେ ପ୍ରେମପ୍ରବୃତ୍ତି ।
ଆଲୋଚନା ପରେ ପୁରେ ବାହୁଡ଼ିବା
ପରିଶେଷେ ହେଲା ସ୍ଥିର
ଆତ୍ମସୁଖ ଲାଗି ହୁଅନ୍ତି କେବେ
କର୍ତ୍ତବ୍ୟବିମୁଖ ଧୀର ?
ପତ୍ର ଘେନି ପତ୍ର — ଲେଖା ବାହୁଡ଼ିଲା
ଗନ୍ଧର୍ବ ରାଜନଗରେ
ଅନାହୂତ ହେଲେ ସମ୍ପାଦଇ ନାହିଁ
କାର୍ଯ୍ୟ କେ ଦୂତ ହସ୍ତରେ ?
ଚତୁରଙ୍ଗସହ ପଛେ ଆସିବାକୁ
ରହିଲେ ବୈଶମ୍ପାୟନ

ଥୋକେ ଅଶ୍ୱାରୋହୀ ଘେନ ବାହାରିଲେ
ଆଗରେ ନୃପନନ୍ଦନ ।
ବାଣିକଙ୍କ ଠାରୁ ସ୍ୱ ରାଜଧାମର
କଥାମାନ ଶୁଣି ଶୁଣି
ତ୍ୱରିତେ ସରଣୀ ସେ ଅତିକ୍ରମିଲେ
କାଦମ୍ବରୀ ଗୁଣଗଣି ।
ଅଶ୍ୱ ସେନାସହ ଚଳାଇ କୁମାର
ଶୀଘ୍ର ବାଜୀ ଧାଉଁବାରେ
ପଶିଲେ ପ୍ରକାଣ୍ଡ ପାଦପ ଲତିକା
ଜଡ଼ିତ ମହାକାନ୍ତାରେ ।
କାହିଁ ନଭସ୍ପର୍ଶୀ ବିଶାଳ ତରୁର
ଗଜଭଗ୍ନ ଶାଖାପନ୍ତି
କାଠ ରୋଧି ପଡ଼- ଥିବାରୁ ଅଶ୍ୱଙ୍କ
ହତ ହେଉଥିଲା ଗତି ।
ବାଟେ ଉତ୍ପାଟିତ ଶାଳତରୁ କାହିଁ
ପଡ଼ିଥିଲା ସମ୍ମୁଖରେ
ବେଗବଶେ ଡେଇଁ ଡେଇଁ ଯାଉଥିଲେ
ଅଶ୍ୱମାନେ ଅକ୍ଳେଶରେ ।
କାହିଁ ଦ୍ରୁମସ୍କନ୍ଧ ଲଗାଲଗିହୋଇ
ମଣ୍ଡଳ ଆକାରେ ରହି
ସ୍ଥାନେ ସ୍ଥାନେ ବନେ ଦୁର୍ଭେଦ୍ୟ ଦୁର୍ଗର
ଭ୍ରମମାତ୍ର ଥିଲେ ବହି ।
ଭିତରେ କାହିଁବା ବିଶାଳ ପାଦପ
ତଳରେ ଭିଲ୍ଲ ଯୁବତୀ
ସିନ୍ଦୂରେ ଶିଳାକୁ ରଞ୍ଜି ଗଢ଼ିଥିଲେ
ବନଦୁର୍ଗାଙ୍କ ମୂରତି ।
ଜଳଚନା କାହିଁ ତୃଷା ନାଶ ପାଇଁ
ଘର୍ମାକ୍ତ ବାଟୋଇଦଳ
ଫିଙ୍ଗିଥିଲେ ପଥେ ଦନ୍ତେ ଖୁବ ଖୁବ
ରସାଳ ଅଁଳା ଫଳ ।

ଗୁଳ୍ମ ଗହ୍ୱରରେ ମୁଖ ଢାଙ୍କି ଥାନ୍ତି
ଥିଲ ଜୀର୍ଣ୍ଣକୂପମାନ
ନିତାନ୍ତ ବିବର୍ଣ୍ଣ ତିକ୍ତ ତାର ଜଳ
କଷାୟ ରସ ସମାନ ।
ଭଲ ନୋହୁଥାନ୍ତା ତହିଁ କୂପଥିବା
ପାନ୍ଥମାନଙ୍କ ମନରେ
ଜଳ ତୋଳିବାର ଲତାଡୋର ଯେବେ
ପଡ଼ ନ ଥାନ୍ତା ପାଖରେ ।
ଲଙ୍ଘିଲେ ଯାହିଁଏ ଜଳଶୂନ୍ୟ ଶୁଷ୍କ
ବହୁତ ଗିରି ସରିତ
ସିନ୍ଧୁବାର ଫୁଲ ରଜେ ଯାର ତଟ
ହୋଇଥିଲା ଧୂସରିତ ।
ସ୍ଥାନେ ସ୍ଥାନେ ତହିଁ ଲଭିବା ନିମନ୍ତେ
ସହଜେ ସୁପେୟ ବାରି
ତୃଷାର୍ତ୍ତ ଯାହିଁଏ କୂପଖୋଳି ଜଳ
ପିଇଲେ ବାଲି ବିଦାରି ।
ଅତିକମିଗଲେ ଦେଖାଯାଏ କେତେ
କ୍ଷୁଦ୍ର କ୍ଷୁଦ୍ର ଗ୍ରାମମାନ
ଗ୍ରାମ ବୋଲି ସ୍ଥାନ ସ୍ଥଳୁ ହେଉଥିଲା
ଦୂରୁ ଯାହା ଅନୁମାନ ।
ବିସ୍ତୀର୍ଣ୍ଣ ପ୍ରାନ୍ତରେ ଠିଆହୋଇ ଥାନ୍ତି
ସମୁଚ୍ଚ ଶାଳ୍ମଳୀ ତରୁ
ଦିଶୁଥିଲା ବନ ଦେବୀଙ୍କ ବିଶାଳ
ଛତ୍ର ସମାନ ଦୂରରୁ ।
ହରିତାଳ ସମ ପିଙ୍ଗଳ ବରଣ
ସୁପକ୍ୱ ବାଉଁଶ ନେଇ
ବାନ୍ଧି କୃଷୀବଳେ ଖଳା ବେଢିଥିଲେ
ସେ ବାଉଁଶେ ବାଡ଼ ଦେଇ ।
ସ୍ତମ୍ଭରେ ଯୋଡ଼ିକି କୃଷି କରୁଥିଲେ
କାହିଁ ତୃଣମୟ ବାଡ଼େ

ପ୍ରଭୁ ସ୍ଥାପନାରେ ଅଯୋଗ୍ୟ ଯେସନ
ହୁଅଇ ଯୋଗ୍ୟ ମଣ୍ଡାରେ ।
ଏଣୁବେ କେତେକ ଦିନ ରାଜସୁତ
କଟାଇ ବନ ଗରବେ
ବନ୍ଧୁ ବଜୟିନୀ ଉଜ୍ଜୟିନୀ ପୁରେ
ପ୍ରବେଶିଲେ ଅବଲମ୍ବେ ।
ପ୍ରଣମି ପବନ ପିତାମାତାଙ୍କର
ଚରଣେ ଶିର ଲେଟାଇ
ରହିଲେ ଉତ୍ସୁକେ ବୈଶମ୍ପାୟନଙ୍କ
ଆଗମନ ବାଟ ଚାହିଁ ।
କଣ୍ଠ ଚଳଗଲ ତଥାପି ବଦେଶୁଁ
ନଇଲେ ମନ୍ତ୍ରୀନନ୍ଦନ
ଦୁର୍ଭାବନାବଶେ ରାଜକାର୍ଯ୍ୟେ ଆଉ
ନଲଗିଲ ତାଙ୍କ ମନ ।
କରକରଦନୀ କାଦମ୍ବରୀ ରୂପ
ନରହ ମନେ ସ୍ମରି
ସେ ମୂର୍ତ୍ତିକି ଝୁରି ଝୁରି ଅନତ୍ରାରେ
ଜାପିଲେ ଦିବା ଶର୍ବରୀ ।
ଚେତାଥାଇ ସୁଦ୍ଧା ଜାଗ୍ରତ ସ୍ୱପନେ
ଅଗ୍ରତେ ଦେଖିଲେ ସଦା
ତାହାଙ୍କ ମାନସ ନେନ୍ଦେ ନାଚୁଥିଲ
ଆସି ସେ ଦିବ୍ୟ ପ୍ରମଦା ।
ଲେଖୁଥିଲେ ଯେବେ ବସ୍ତୁର ଅଳସ୍ୟେ
କୁମାର ଲେଖନୀ ଧରି
ଭଜାଉଥିଲ ସେ ଲିଖିତ ପତ୍ରକୁ
ଅଲକ୍ଷିତେ ଅଶ୍ରୁ ଝରି ।
ବୁଲିବା ବେଳରେ ସଙ୍ଗିମାନଙ୍କର
ସହିତ ରାଜନନ୍ଦନ
ଗନ୍ଧର୍ବ ନଗରେ ଯାଇ ଭ୍ରମୁଥିଲ
ତାହାଙ୍କ ଚଞ୍ଚଳ ମନ ।

କଥାବାର୍ତ୍ତା ହେବା କାଳେ ସ୍ମ ନବରେ
ପରିଜନଙ୍କର ସଙ୍ଗ
ହୃଦୟ ଭିତରେ କପଟ ଘଟଣା
ନାଚୁଥିଲା ଅହରହ ।
ଉଦାସୀନ ହୃଦେ ଏରୂପେ ଯୁବକ
ଦୁଷ୍ଟମ ଉଦ୍‌ବେଗ ବହି
ହୃଦୟର ଦୁଃଖ ହୃଦେ ରଖି ଘୋର
ଚନ୍ତାନଳେ ହେଲେ ଦହ ।
କ୍ରମେ ଗ୍ରୀଷ୍ମକାଳ ପ୍ରଭାବ ପ୍ରକାଶି
ପ୍ରବେଶିଲା ଭବେ ଆସି
ଆତଙ୍କ ଜନ୍ମାଇ ଫିଙ୍ଗିଲେ ପତଙ୍ଗ
ଖରତର ଶରରାଶି ।
ଅସହ୍ୟ ଉତ୍ତପ୍ତ ବାତ ଆଘାତରେ
ଦହଦହ ହେଲା ରସା
ଦଶଦିଗ ଢାଙ୍କି ବରଷିଲା ଦୀପ୍ତ
ଅନଳ କଣା ସହସା ।
ଖର କରୋଜ୍ଜ୍ୱଳ ଗଗନ ପଟଳୁ
ଦେଖି ହେଲାନାହିଁ ଆଉ
ନଅଁ ଦ୍ୱଳା ପ୍ରାୟ ଜଳଇ ଉଜ୍ଜ୍ୱଳ
ସୂର୍ଯ୍ୟବିମ୍ବ ଦାଉ ଦାଉ ।
ଜନଶୂନ୍ୟ ଦୀର୍ଘ ପ୍ରାନ୍ତରମାନଙ୍କେ
ଜନମାଇ ବିଭୀଷିକା
ଖେଳଇ ଜଗତ ଜନକୁ ଛଳାଇ
ମାୟାବିନୀ ମରୀଚିକା ।
ନସ୍ତବେ ଗଛର ଛାଇମାନଙ୍କରେ
ପକ୍ଷିଏ ରହିଲେ ଲୁଚି
ଘନ ପତ୍ରାବୃତ ଡାଳ ତଳେ ତଳେ
ବୁଲିଲେ ରଙ୍ଗି ଚୁଣ୍ଟି ।
ପିପାସା ଆକୁଳେ ମହିଷିଏ ଖରେ
ପଡ଼ିଲେ ଯାଇ ପଙ୍କରେ

ଜଳଦେ ଅନାଇ ଜଳ ଦେ ବୋଇଲେ
ଚାତକେ କାତର ସ୍ୱରେ ।
ତୃଷାତୁର ମୃଗେ ସୂର୍ଯ୍ୟ କିରଣକୁ
ବଲେଜ ଜଳଭ୍ରମରେ
ଇତସ୍ତତ ହୋଇ ଦଉଡ଼ିଲେ ବେଗେ
ପାଦପଶୂନ୍ୟ ପ୍ରାନ୍ତରେ ।
କୁକୁର ନିକର ବାରବାର ତାଙ୍କ
ଚଞ୍ଚଳ ଜିହ୍ୱା ଲମ୍ବାଇ
ସିକ୍ତ ଅଙ୍କୁଳରେ ଧକେଇ ଧକେଇ
ଖୋଜିଲେ କେବଳ ଛାଇ ।
ପ୍ରବଳ ବେଗରେ ବହିଲା ଶରୀର
ସନ୍ଧିରୁ ସ୍ୱେଦ ସଲିଳ
ମାନସ ତୋଷିଲା କେବଳ ଉଶୀର—
ବ୍ୟଜନ ଜାତ ଅନିଳ ।
ବିଳାସିଏ ନବ ଝୀନବାସ ପିନ୍ଧି
ଗନ୍ଧସାର ବୋଳି ଅଙ୍ଗେ
ଯୂଥିକା ଫୁଲରେ ବିରଚିତ ମାଳା
କଣ୍ଠରେ ଲମ୍ବାଇ ରଙ୍ଗେ ।
ସୁଗନ୍ଧ ଶୀତଳ ସୁଧାଂଶୁ ଉପର
ମହଲେ ବସି ଆନନ୍ଦେ
ବୀଣା ତାର ସହ ସ୍ୱ ସ୍ୱର ମିଶାଇ
ଗାଇଲେ ବିବିଧ ଛନ୍ଦେ ।
ରଜତ ଉଜ୍ଜ୍ୱଳ ଚନ୍ଦ୍ରିକାରେ କେବା
ଇଚ୍ଛାଗତ ଯାନେ ବସି
ପ୍ରିୟତମା ସହ ସେବିଲେ ଉଲ୍ଲାସେ
ଶୀତବାତ ହସି ହସି ।
ଗନ୍ଧର୍ବ କୁମାର ଅବସ୍ଥରେ ଏକା
ଚନ୍ଦ୍ରାପୀଡ଼ ଯୁବାମଣି
ବିଷାଦେ ଅନିଦ୍ରେ କାଟିଲେ ଅସହ୍ୟ
ଗ୍ରୀଷ୍ମର କିବା ରଜନୀ ।

ଗ୍ରୀଷ୍ମ ଉତ୍ସବରୁ ସଦାବେଳେ ସେହୁ
ରହୁଥିଲେ ଉଦାସୀନ
କେ ନଜାଣେ ସୁଖୀ ସବୁବାସେ ଦୁଃଖୀ
ଦ୍ୱିଗୁଣେ ହୁଅଇ ଧାନ ।
ଦିନେ ପ୍ରାତଃକାଳେ ଶଯ୍ୟା ଛାଡ଼ି ଯୁବା
ପାଇଲେ ଏ ସମାଚାର
ଦକ୍ଷପୁର ପାଖେ ଆସି ଉପଗତ
ହୋଇଲାଣି ସ୍କନ୍ଧାବାର ।
ଲଭିଲେ ଯେମନ୍ତ ଆନନ୍ଦ କୁମାର
ସେ ଶୁଭ ସନ୍ଦେଶ ପାଇ
ଶତରାଜ୍ୟ ଲଭେ ଯୁବା କେହୁ ସେହୁ
ଆନନ୍ଦ ପାଇବ ନାହିଁ ।
ଜନକ ନିକଟେ ଭଣାଇ ସକଳ
ମିତ୍ରଙ୍କୁ ଭେଟିବା ଆଶେ
ଭଦ୍ରାସ୍କନ୍ଧେ ବସି ତକ୍ଷଣେ ତରୁଣ
ବାହାରିଲେ ସେନାବାସେ ।
ପ୍ରବେଶି ଦେଖିଲେ ସେ ଶିବିରେ ନାହିଁ
ପ୍ରିୟସଖାଙ୍କର ଚିହ୍ନ
ମନ୍ତ୍ରୀ ନନ୍ଦନର ବଦନେ ବିଶାଳ
ବାହିନୀ ବିଶେ ମଳିନ ।
ନପାରିଲେ କିଛି ଭୟେ ପଚାରି ସେ
ନ କହିଲେ କିଛି କେହୁ
ସ୍ୱାମୀ ମନ୍ଦଫଳ ସୂଚିଲା କେବଳ
ବାମନେତ୍ର ତେଇଁ ତେଇଁ ।
କ୍ଷଣ ପରେ ଏକ ବୃଦ୍ଧ ସେନାପତି
ବିନୟେ ଆସି ନିକଟ
ମୂଳରୁ ଯାବତ ଚରିତ ଏସବୁ
ଭାଷିଲା ଯୁବା ମଣିଙ୍କ ।
"ବୈଶମ୍ପାୟନଙ୍କୁ ଦେଇ ସୁବିଶାଳ
ବାହିନୀ ଘୁଞ୍ଚିବା ଘର

ଥୋକେ ସୈନ୍ୟ ଘେନ   ଶ୍ୱେଦେବ ଛଡ଼ିଲ
ସେହିଁଦନ ସ୍କନ୍ଧାବାର ।
ସେ ଦିନ ସେତେକ   ସୈନ୍ୟ ସାମନ୍ତଙ୍କୁ
ଡକାଇ ସନ୍ଧ୍ୟାବେଳରେ
ପରାମର୍ଶ ସହ   କହିଲେ 'ସକଳେ
ଶୁଣିଛ ତ ପୁରାଣରେ ।
ଭାରତ ଧାମରେ   ଏ ଅଚ୍ଛୋଦ ସର
ସୁପବିତ୍ର ତୀର୍ଥ ବୋଲି
ଏହାର ଜଳରେ   ଧୋଇ ହୋଇଯାଏ
ହୃଦୟରୁ ପାପମଳ ।
କେତେ କଷ୍ଟ ସହି   ଦୂରେ ଲୋକ ଯାଇ
ଲଭନ୍ତି ତୀର୍ଥର ବାରି
ପାଖେ ଅଛି ସେହି   ତୀର୍ଥରେ ନମନ୍ତି
ଯିବା କି ଗୃହେ ବାହାରି ।
ଚାଲ ହେ ସକଳେ   ଯାଇ ସୁପବିତ୍ର
ସଲିଳରେ ମଜ୍ଜି ଅଙ୍ଗ
ପୂଜିବା ତା ତୀର-   ବାସୀ ଶିବଙ୍କର
ରାଜୀବ ପଦ୍ମରସାଙ୍ଗ ।"
ତାହାଙ୍କ ପ୍ରସ୍ତାବେ   ଯଥାକାଳେ ଯାଇ
ସର୍ବେ ଦେଖିଲେଁ ସେ ସର
ସୁନୀଳ ନଭରୁ   ଖସି ଦିଶୁଥିଲା
ସଲିଳ ତାର ସୁନ୍ଦର ।
ଫୁଲେ ଫଳେ ଦଳେ   ଜଳେ ଜଳଚରେ
ତଟସ୍ଥ ତରୁ ଲତାରେ
ଶୋଭୁଥିଲା ସର   ଥିଲା ତହିଁ କିବା
ବସନ୍ତ ସପରିବାରେ ?
ଏ ପାଖେ ସେ ପାଖେ   ବୁଲିଁ ବୁଲିଁ ତହିଁ
ମନ୍ତ୍ରୀସୁତ କୁତୂହଳେ
ବିଲୋକିଲେ ଏକ   ଚିକ୍କଣ ପାଷାଣ
ଲତାମଣ୍ଡପର ତଳେ ।

ବହୁକାଳ ପରେ  ମିତ୍ରଙ୍କୁ ଦେଖିଲେ
ଯେମନ୍ତ ହୁଏ ହୃଦୟ
ସହସା ତେମନ୍ତ  ମାନସରେ ହେଲା
ଅପମଭାବ ଉଦୟ ।
ଅନିମିଷ ନେତ୍ରେ  ସେ କେବଳ ସେଥି
ଶିଳାକୁ ରହିଲେ ଚାହିଁ
ଅତ୍ୟନ୍ତ ଉନ୍ମନା  ବଣେ ନୟନରେ
ପଲକ ପଡ଼ିଲା ନାହିଁ ।
ଭୂମି ତଳେ ବସି  ବାମ କରପଦ୍ମେ
ଥୋଇ ବାମ ଗଣ୍ଡସ୍ଥଳ
କି କଥାକୁ ଭାବି  ଭାବ ମଜ୍ଜିଲେ ସେ
ଗାଢ଼ ଚିନ୍ତାରେ କେବଳ ।
ତାହାଙ୍କ ଆକାର  ପ୍ରକାର ଦେଖିଲେ
ସ୍ପଷ୍ଟ ହେଲା ଅନୁମାନ
କରୁଥିଲେ ଯେତେ  ସେ କିଛି ବସ୍ତୁତ
ପ୍ରିୟଦ୍ରବ୍ୟର ସନ୍ଧାନ ।
ଭାବିଲେ ସକଳେ  ମଳୟ ପବନ
ନବପୁଷ୍ପିତା ବ୍ରତତୀ
ସୁକୋମଳ ସେହି  ସ୍ପର୍ଶ ସବୁ ମନେ
ଜନ୍ମାଇଅଛି ବସନ୍ତ ।
ରମ୍ୟ ମଧୁକାଳ  ତହିଁରେ ତାହାଙ୍କ
ପୂର୍ଣ୍ଣ ଯୌବନ ସମୟ
ଏ ସୁଖ ସମୟେ  ସ୍ୱାଭାବିକ ସିନା
ବିକାର ହେବା ଉଦୟ ।
ଏକେ ଗେଷ୍ଟାମୃତ,  ମନ୍ତ୍ରୀଙ୍କର ବୃଦ୍ଧା
ବୟସେ ଜନ୍ମ ତାଙ୍କର
ବାଲ୍ୟ ବଢ଼ିଥିଲେ  ପିତା ମାତାଙ୍କର
ଲଭି ପରମ ଆଦର ।
ଯନ୍ତଙ୍କର ସୁଦ୍ଧା  ଯୌବନ ଭରର
ଲଜ୍ଜା ଭୟ ଧୈର୍ଯ୍ୟ ଚୂନା

ମୁଖରେ ଲଳିତ    ମନ୍ଦସ୍ମିତ ଫେନ
    କପାଁ ବା ହୁଅନ୍ତା ଜଣା ।
ଜାଣାଏ କହନ୍ତି    ଯେ କାର୍ଯ୍ୟେ ହୃଦୟେ
    ଉଦୟ ହୁଏ ବିକାର
ସୁଜ୍ଞଜନେ ତାକୁ    ସର୍ବଦା କରବେ
    ନିକଟରୁ ପରିହାର ।
ଏହା ଭାବି ସର୍ବେ    ତାଙ୍କ ପାଖେ ଯାଇ
    ଡାକିଲୁ ବିନୟ ସ୍ୱରେ
ଉଠ ଏଥୁଁ ଯିବା    ସୈନ୍ୟ ସଜ ହୋଇ
    ରହିଲେଣି ଉତ୍ସୁକରେ ।
ନ ଶୁଣିଲପରି    ଅମ୍ଭମାନଙ୍କର
    କହିବା କଥାକୁ ଭଲେ
ଚିତ୍ରପୁତ୍ତଳିକା    ସମ ସେ ଲଣ୍ଠକା
    ଗୃହକୁ ଚାହିଁ ରହିଲେ ।
ଶେଷ ଅସନ୍ତୋଷେ    କ୍ଷେପିଲେ ବରଷେ
    ଅଦ୍ଭୁତ କର୍କଶଗୀରେ
ଯିବ ନାହିଁ ମୁହିଁ    ଫେରଯାଅ ଏଥୁଁ
    ସକଳେ ନିଜ ଶିବିରେ ।
ଏହି ଅସଙ୍ଗତ    ଉତ୍ତର ଭାବାର୍ଥ
    ନ ପାରି ବୁଝି ସଭୟେ
ଏକ ସଙ୍ଗେ ଯାଇ    ତାଙ୍କ ଆଗେ ସର୍ବେ
    ଗୁହାରିଲୁ ସବିନୟେ ।
ଯୁବରାଜ ତୁମ୍ଭ    କରେ ଦେଇଗଲେ
    ସେନା ଚଳାଇବା ଭାର
ଉଚିତକି ଏଥି    ଅକାରଣ ରହି
    ବ୍ୟତିକ୍ରମକରି ତାର ।
ନବୀନ ଯୁବକ    ହୋଇ ବୈରାଗ୍ୟର
    କଥା କପାଁ କହ ଆଜ
ଛାଡ଼ିଗଲେ ରହି    ଜନଶୂନ୍ୟ ବନେ
    କି ବୋଲିବେ ଯୁବରାଜ ।

ଷଣ୍ଢ ହୋଇ କିପାଁ    ମାଗୁଛ ଏମନ୍ତ
ଅସଙ୍ଗତ ବ୍ୟବହାରେ
ଦୋଷୀ ହୋଇଥିଲେ    ସଦୟେ ସଭିଙ୍କ
ଦୋଷ କ୍ଷମାକର ବାରେ ।
କ୍ଷିପିଲେ ଯୁବକ    ବଚନେ, କିପାଁଇ
ଦେଉଛ ମୋତେ ପ୍ରବୋଧ
ଯେତେ ବୁଝାଇଲେ    କଦାପି ମୋହର
ମନ ମାନୁନାହିଁ ବୋଧ ।
ଜାଣତ କୁମାର    ବିନା ମୁଁ ନପାରେ
କାହିଁ ରହି ଏକଦଣ୍ଡ
ଜାଣୁଛି ତାହାଙ୍କ    ବିନା ଏ ଜୀବନ
ହୋଇଯିବ ମୋର ଖଣ୍ଡ ।
କହୁ କି କରିବ    ଦେଖିଲ ବେଳରୁ
ଏ ଲତାତଳ ଉପଳ
ଅବସନ୍ନ ଦେହେ    ହୁଅଇ ସକଳ
ଇନ୍ଦ୍ରିୟକ୍ରିୟା ବିକଳ ।
ଯିବାକୁ ସାମର୍ଥ୍ୟ    ନାହିଁ ଅରତରେ
ଅଥୟ ହେଉଛି ଚିତ୍ତ
ବଳେ ଏଥୁ ନେଲେ    ପଳାଇବ ପ୍ରାଣ
ପିଣ୍ଡରୁ ଛାଡ଼ି ନିଶ୍ଚିତ ।
ନେବାକୁ ଏସ୍ଥାନୁ    ମୋତେ ଆଉ କେହୁ
ଯତନ ନ କର କ୍ଷଣେ
ଫେରିଯାଅ ସୁଖେ    ବିଶାଳ ବାହିନୀ
ସହିତ ସର୍ବେ ସଦନେ ।
ଚନ୍ଦ୍ରପୀଡ଼ଙ୍କର    ସ୍ମରି ଚନ୍ଦ୍ରମୁଖ
ଦେଖି ସୁଖେ ରହ ଘରେ
ସେ ସଜସରୋଜ    ମୁଖ ଦେଖିବାକୁ
ଆଉ ନାହିଁ ମୋ ଭାଗ୍ୟରେ ।
ଶପଥ କରୁଛି    ବୁଝି ନାହିଁ ମୁହିଁ
ଏଥିର କିଛି ବୃତ୍ତାନ୍ତ

କିପାଇଁ ଏମନ୍ତ ବିକଳ ଚଞ୍ଚଳ
ହେଲ ଚନ୍ଦ୍ର ଅକସ୍ମାତ ।
ତୁମ୍ଭମାନଙ୍କର ସବୁ ଅସିଥିବ
ଏହି ନକାଞ୍ଚନ ସ୍ଥଳେ
ତୁମ୍ଭମାନଙ୍କର ସବୁ ଭ୍ରମୁଥିବ
ଲତାକୁଞ୍ଜେ କୁତୂହଳେ ।
ଏହା କହି ଯୁବା ଗମିଲେ ଚଞ୍ଚଳେ
ସ୍ଥିରପାଖେ କାନନର
ବୁଲଇ ଯେମନ୍ତ ବୃଥାରେ ଉଦ୍ଦେଶ୍ୟ
କୃପଣ ଉନ୍ମାଦ ନର ।
ଅପହୃତ ଦ୍ରବ୍ୟ ଦରିଦ୍ର ତାହାର
ଖୋଜି ବୁଲଇ ଯେସନ
ତନ୍ନତନ୍ନ କରି ଦେଖୁଥିଲେ ପଦ
ଡାଳ ତରୁ ଲତାଗଣ ।
ଲତାଗୃହେ ତରୁ ତଳେ ଦେବାଳୟେ
ଅଚ୍ଛୋଦ ସରତଟରେ
ନାନାସ୍ଥାନେ ପଶି ଖୋଜି ବୁଲିଲେ ସେ
ଅଧୀରେ ଭ୍ରାନ୍ତ ମନରେ ।
ଏରୂପେ ସେ ସ୍ଥାନେ ଉନଷନକାଳ
ସଭିଙ୍କ ହେଲ ଅତୀତ
ବହୁ ଅନୁନୟେ ନ ଫେରିଲ ପଛୁଁ
ଆଉ ମନ୍ତ୍ରିସୁତ ଚନ୍ଦ୍ର ।
ଅବଶେଷେ ତାଙ୍କ ଫେରିବା ବିଷୟେ
ସକଳେ ନିରାଶ ହୋଇ
ଅସିଲୁଁ ବାହୁନି ସବୁ, ସେହି ସ୍ଥାନେ
ଥୋକାଏ ସୈନିକ ଥୋଇ ।
ଏ ବିଷମବାର୍ତ୍ତା ଅଧେ ମାତ୍ର ଶୁଣି
ବାର୍ତ୍ତାବହ ବଦନରୁ
ଉଦ୍ବେଗ ବଢିବ ବୋଲି ଦେଲ ନାହିଁ
ଶମ୍ଭୁକୁ ବାର୍ତ୍ତା ଅଗରୁ ।"

ଯାହା ଅସମ୍ଭବ ଅବ୍ୟକ୍ତ ଅଚିନ୍ତ୍ୟ
ଚରିତ ପ୍ରିୟ ସଖାର
ସ୍ୱପ୍ନେତ ରହିଲେ ସେନାପତି ମୁଖ୍ୟ
ଯଥାର୍ଥ ରାଜକୁମାର ।
ଭାବିଲେ ସଖାର ଅକସ୍ମାତ ଏହି
ବୈରାଗ୍ୟ ହେଲା କାହିଁକି
ଘୋର ଅରଣ୍ୟରେ କାହାଠାରେ ନିଜ
ହୃଦୟ ଦେଲେକି ବନ୍ଧି ?
ଗୃହସ୍ଥାଶ୍ରମର ସମସ୍ତ ତାହାଙ୍କ
ପୂର୍ଣ୍ଣରୂପେ ଆସି ନାହିଁ
ମନ ବଳାଇବେ ତୃତୀୟ ଆଶ୍ରମ
ଲାଗି ସେ ଅବା କି ପାଇଁ ।
ଏମନ୍ତ ଅଜ୍ଞାନ ନୁହନ୍ତି ସେ ସେହି
କିଛିମାନ ନ ବସ୍ତୁର
ଜରାଜୀର୍ଣ୍ଣ ପିତା ମାତାଙ୍କୁ କନ୍ଦାଇ
ହୋଇବେ କାନନବାସୀ ।
ଏହି ଆକସ୍ମିକ ଆଚରଣେ ଅଛି
ନିଶ୍ଚୟ ଗୂଢ଼ରହସ୍ୟ
ପାଶେ ଉପସ୍ଥିତ ହେଲେ ମୁଁ ବୁଝିବି
ଘଟଣାବଳୀ ଅବଶ୍ୟ ।
ପୁରକୁ ନ ଫେରି ଏଥୁ ଯେବେ ଯିବି
ତାହାଙ୍କର ଅନ୍ୱେଷଣେ
ତେବେ ନଗରରେ ସର୍ବେ କ୍ଷିପ୍ତପ୍ରାୟ
ହେବେ ମୋର ଅଦର୍ଶନେ ।
ସବୁକଥା କହି ଶୁକନାସ ମନୋ—
ରମାକୁ ପ୍ରବୋଧ ଦେଇ
ସଭିଙ୍କୁ ବୁଝାଇ ପୂଜ୍ୟ ପିତାମାତା
ପାଖୁଁ ଅନୁମତି ନେଇ
ଖୋଜିବା ନିମନ୍ତେ ସୁଦୂର ଅଚ୍ଛୋଦ
ତଟକୁ ଗମିବ ମୁହିଁ

ପୁଣ୍ଡରୀକ ଧ୍ୟାନେ        ରହିଛନ୍ତି ସହି
    ମହାଶ୍ୱେତା ଚନ୍ଦ୍ରମୁହିଁ ।
ଅନ୍ୟାୟ ଆଚରି        ସୁଦ୍ଧା ସଖା ମୋର
    କଲେ ବଡ଼ ଉପକାର
ଏ ସୁଯୋଗେ ବିନା        ନଦେଖିବ ଯାର
    ବଦନଚନ୍ଦ୍ର ପ୍ରିୟାର ।
ଏ ସବୁ ବନ୍ଧୁର        ବିଚ୍ଛେଦକୁ ସୁଦ୍ଧା
    ପରିଣାମେ ସୁଖ ମଣି
ଗମ୍ଭୀର ଯାତନା—        ସାଗରେ ମଗନ
    ନୋହିଲେ ବୀରେନ୍ଦ୍ରମଣି ।
ତେଣୁ ନିଜେ ଯାଇ        ପହଞ୍ଚିଲ ମାତ୍ର
    ପ୍ରିୟ ସୁହୃଦଙ୍କ ପାଶ
ଫେରାଇ ଆଣିବେ        ବୋଲି ହୃଦୟରେ
    ସୁଦୃଢ଼େ ଥିଲା ବିଶ୍ୱାସ ।
ଶିବିରେ ସେ ଦିନ        ଯାପି ପ୍ରତ୍ୟୁଷରୁ
    ଫେରିଲେ ନୃପ କୁମାର
ପହଞ୍ଚିବା ଆଗୁଁ        ଏ ବାର୍ତ୍ତା ନଗରେ
    ହୋଇଥିଲଣି ପ୍ରଚାର ।
ମହିଷୀ ସହିତ        ମହାରାଜ ଥିଲେ
    ଶୁକନାସଙ୍କ ଭବନେ
ଅଶ୍ୱୁଁ ଅବତରି        ତେଣୁ ସେ ଗମିଲେ
    ତହିଁ ମହାକ୍ଷୁଣ୍ଣ ମନେ ।
ନିରେଖିଲେ ଯାଇଁ        ପବନ ଆହତ
    ବିଚ୍ଛିନ୍ନ ଲତିକା ପରି
ପଡ଼ି ଗଡ଼ୁଛନ୍ତି        ଭୂମିରେ ଅଥୟେ
    ଶୋକରେ ମନ୍ତ୍ରୀଙ୍କ ନାରୀ ।
କାନ୍ଦୁଛନ୍ତି ଉଚ୍ଚେ        ବାହୁନି ବାହୁନି
    ଦାରୁଣ ଶୋକ ବଚନେ
'ରେ ସନ୍ତାନ ! କାହିଁ        ରହିଲୁ ଏପଣ—
    ଭୁଜଙ୍ଗସଙ୍କୁଳ ବନେ ।

କ୍ଷୁଧାକାଳେ ଅନ୍ନ  ଖାଦ୍ୟଦ୍ରବ୍ୟ ତୋତେ
କିଏ ଦେଉଥିବ ଆଣି
କେ ଦେବ ତୃଷାରେ  ଅତୁର ହୋଇଲେ
କନ୍ୟ ବସ ! ଟୋପେ ପାଣି !
ନିର୍ଜ୍ଜନ ବନରେ  ରହିବାକୁ ଯେବେ
ଇଚ୍ଛା ଥିଲା ତୋ ମନରେ
ନ ନେଲୁ କିପାଇଁ  ତା'ହେଲେ ଏ ବୃଦ୍ଧ
ପିତା ମାତାଙ୍କୁ ସଙ୍ଗରେ ।
ବାଲ୍ୟକାଳୁ କେବେ  ତୋ ମୁଖୁଁ ଗୋଟିଏ
କଟୁ କଥା ଶୁଣି ନାହିଁ
ଅତର୍କିତେ ଏହି  ସ୍ୱଭାବର ତୋର
ହେଲା କିଆ କାହିଁପାଇଁ ।
ନ ଦେଖି ତୋହର  ନିଷ୍କଳଙ୍କ ଚନ୍ଦ୍ର
ସଦୃଶ ଚାରୁ ବଦନ
ଏ ଶୂନ୍ୟ ସଦନେ  କେମନ୍ତେ ରହିବୁ
କହରେ ଜୀବନଧନ !'
କାନ୍ଦନ୍ତି କାନ୍ଦନ୍ତି  ଏରୂପେ ରୂପସୀ
କାନ୍ଦୁଥିଲେ ବିକଳରେ
ପାଶେ ଯାଇ ତାଙ୍କୁ  ପ୍ରବୋଧି କୁମାର
କହିଲେ ମଧୁର ସ୍ୱରେ ।
କାହିଁକି ଜନନି !  ଅକାରଣ ଦୁଃଖେ
ହେଉଛ ଏଡ଼େ ଅଥୟ
ସୁସ୍ଥ ଶରୀରରେ  ବନେ ରହିଛନ୍ତି
ନିଷ୍ଠୟ ତୁମ୍ଭ ତନୟ ।
ଏକୁଟିଆ ସେହି  ନାହାନ୍ତି ସଙ୍ଗତେ
ଅଛନ୍ତି ସେନା ସରବ
ତାହାଙ୍କ ଉପରେ  ବିପଦ ଘଟିବା
କେବେହେଁ ନୁହେ ସମ୍ଭବ ।
କିଛି କାରଣରୁ  କ୍ଷଣିକ ବୈରାଗ୍ୟ
ଜନ୍ମିଛି ନିଜ ମନରେ

ନ ଜାଣ ନ ଜାଣ ମୁଁ ଯାଇ ତାହାଙ୍କୁ
ଫେରାଇ ଆଣିବ ଘରେ ।
ଏତେ ବୋଲି ଯୁବା ମନ୍ତ୍ରୀ ମନ୍ତ୍ରୀଜାୟା
ପିତା ମାତା ପଦରଜ
ଲଲାଟରେ ଘେନ ପ୍ରିୟବନ୍ଧୁ ପାଶେ
ଯିବାଲାଗି ହେଲେ ସଜ ।

---

## ଦଶମ ସର୍ଗ

ମନୋମୁଗ୍ଧକର ବଚନ ଚତୁର
ଶୁକପକ୍ଷୀର ବର୍ଣ୍ଣନ
ଅକଣ୍ଠି ନଶିଲ ଭୂପ ମଥାମଣି
ବଢଣା ମଣ୍ଡି ମଣ୍ଡନ ।
ଅନ୍ତଶସ୍ତୁ ଦୀର୍ଘ ହେଲେହେଁ ସେ କଥା
ଅନ୍ୟାନ୍ୟ ବିଷୟ ରଖି
ଶୁଣିବାକୁ ମନ ବଳାଇ ମୃଦୁଲେ
କହିଲେ ତାହାକୁ ଲକ୍ଷି ।
ଅତ୍ୟନ୍ତ ହୃଦୟ— ଗ୍ରାହ୍ୟ ଏ କାହାଣୀ
କେବେହେଁ ନ ଛାଡ଼େ ମନ
କହ ଶୁକ ଫେର ଅସିଲେ କି ପୁରେ
ପୁଣି ସେ ମନ୍ତ୍ରୀନନ୍ଦନ ।
ଉଜ୍ଜୟିନୀ ପୁର କୁମୁଦ ଚନ୍ଦ୍ରମା
ଚନ୍ଦ୍ରାପୀଢ଼ ଧନୁର୍ଦ୍ଧାରୀ
ଲଭିଲ କି ତାଙ୍କୁ ନବ ରସବତୀ
ଗନ୍ଧର୍ବ ରାଜକୁମାରୀ ।
ହେମପୁର ନେତ— ସଖୀଳ ସୁଶୀଳା
ମହାଶ୍ୱେତା ରୂପସୀର
ଶ୍ୱେତକେତୁ ସୁତ ପୁଣ୍ଡରୀକ ସହ
ମିଳନ ହେଲା କି ଆର (୧) ?
କି କାର୍ଯ୍ୟ କଲୁ ତୁ ଜାବାଲିଙ୍କ ମୁଖୁଁ
ଶୁଣି ଏସବୁ ପ୍ରସଙ୍ଗ
ତାହାଙ୍କୁ ବରଜି କପଟ ଲଭିଲୁ
ଦୂଷିତ ଚଣ୍ଡାଳ ସଙ୍ଗ ।
ଉତ୍ତରିଲ ଶୁକ ପିତା ମାତା ପାଖୁଁ
ଜନମେ ମାଗି ମେଲଣି

---

(୧) ଶୁକପକ୍ଷୀ

ଯୋଡେ ସୈନ୍ୟ ସେନ ଗମିଲେ ଚଞ୍ଚଳେ
ଚନ୍ଦ୍ରାପୀଡ଼ ଧନୁଷ୍ପାଣି ।
ସିପ୍ରା ନଦୀ ତୀରେ ସେ ରଜନୀ ଯାପି
ସେନାନୀଏ, ଡୋଳାହେଲେ
ଉଜ୍ଜଳ ନଗରୁ ପ୍ରତ୍ୟୁଷରୁ ଉଠି
ଅନୁସରିଲେ ସକଳେ ।
ଯିବାବେଳେ ମାର୍ଗେ ଉତ୍କଣ୍ଠା ଆବେଗେ
ଭାବୁଥିଲେ ଯୁବାବର
'ସନ୍ଧ୍ୟା ପରରୁ ପ୍ରବେଶିବେ ଯାଇଁ
ଅଳ୍ପେତ ପ୍ରିୟ ମନ୍ଦିର ।
ବଳୟିତ ଭୁଜ ବେଷ୍ଟନରେ ନବୋଢ଼େ
କଣ୍ଠରେ ଧରିବେ ଯାକି
ଉପହାସେ ଯେତେ ଲଜ୍ଜା ବଢ଼ାଇବେ
କିଛି ନ ରହିବ ବାକି ।
ତହୁଁ ତରଳାକ୍ଷୀ ମହାଶ୍ୱେତାଙ୍କର
ଆଶ୍ରମ ସନ୍ଦେ ଶ୍ରୁତ
ଅତର୍କିତେ ଦ୍ରୁତ ପ୍ରବେଶି ତାହାଙ୍କ
କରିବେ ହର୍ଷ ଚକିତ ।
ସେ ଅଶ୍ରମେ ସୈନ୍ୟ ସାମନ୍ତଙ୍କୁ ଥୋଇ
ଗନ୍ଧର୍ବ ନଗରେ ଯାଇ
ପ୍ରେୟସୀର ଫୁଲ ମୁଖ ଶତଦଳ
ଦେଖିବେ ନୟନ ପୁରାଇ ।
ପ୍ରିୟସଖୀ ସହେ ଯଥାକାଳେ ହୋଇ
ବାଞ୍ଛାସହ ପରିଣୟ
ନିଜ ନିସ୍ପନ୍ଦ ଜୀବନକୁ ଯୁବା
କରିବେ ଉତ୍ସବମୟ ।
ଚରଣେ ଲଗାଇ ରୂପବତୀ ନବ—
ପ୍ରଣୟିନୀ ପ୍ରେମଫାଶି
ଅନାୟାସେ ପ୍ରିୟ— ସଖୀର ସଂସାର
ବୈରାଗ୍ୟକୁ ଦେବେ ନାଶି ।

ଘଡ଼ ଅଭିଳାଷ    ବୋଇତକୁ ଯୁବା
ଏରୂପେ ସଙ୍କଳ୍ପସ୍ରୋତେ
କ୍ଷୁଧା ତୃଷା ଭୁଲି    ଯାଉଥିଲେ ମହା—
ଦୁର୍ଗମ ବନ୍ଧୁର ପଥେ ।
ମଣୁଥିଲେ ଚିତ୍ତେ    ପହଞ୍ଚିଲା ପରି
ନିମିଷେ ଗନ୍ଧର୍ବପୁରେ
ସଂକଲେ ମିଳନ    ସୁଧା ପିଉଥିଲେ
ସିନା ପ୍ରେମ ତୃଷାତୁରେ ।
ରହି ତୋଳୁଥିଲେ    ନିର୍ବିବାଦେ ପକ୍ଷି
ଉଲ୍ଲାସେ ମହାସାଗରେ
ଜାଗ୍ରତ ସ୍ୱପନେ    ବୁଲୁଥିଲେ ବସି
କଳିତ ବ୍ୟୋମଯାନରେ ।
ମାନସ ନୟନେ    ଦେଖୁଥିଲେ ସର୍ବ
ସୁଖର ମଞ୍ଜୁ ମୂରତି
ଜାଣୁ ନ ଥିଲେ ସେ    ଚଣ୍ଡବାତ୍ୟା ରୂପେ
ବୁଲୁଛି ତହିଁ ନିୟତି ।
ବ୍ୟଗ୍ରେ ଯାଉଁ ଯାଉଁ    ଦେଖିଲେ ବୀର
ସହସା ଦୂର କାନ୍ତାରେ
ସନ୍ଧ୍ୟାରୁଣ କାନ୍ତି    ଅଶ୍ୱଖୁର ଧୂଳି
ଉଡୁଛି ଶଳଭାକାରେ ।
ସୂର୍ଯ୍ୟ ମଣ୍ଡଳକୁ    ଘୋଟାଇ ଅଘୋର
ଜଳସ୍ଥଳ ଚରାଚର
ସେ ଧୂଳିପଟଳ    ହେଉଥିଲା ବେଗେ
ନିଜ ଆଡ଼େ ଅଗ୍ରସର ।
ରେଣୁରାଶି ଭେଦି    କ୍ରମଶଃ ଦିଶିଲା
ପଟଳେଖା ଖଣ୍ଡେ ଦୂରୁ
ଫେରି ଆସୁଥିଲା    ଅଶ୍ୱାରୋହୀ ସୈନ୍ୟ
ସତେ ସେ ଗନ୍ଧର୍ବପୁରୁ ।
ତୁରଙ୍ଗମ ପୃଷ୍ଠୁ    ଅଗ୍ରତେ ଓହ୍ଲାଇ
ଶାଦରେ ସ୍ନେହେ ସମ୍ବୋଧି

ପଚ୍ଚାରିଲେ ତାଙ୍କୁ    ଉଦ୍‌ବେଗରେ ସେତେକ
କୃତାନ୍ତ ଯୁବା ମଣ୍ଡଳ ।
"ବୈଶମ୍ପାୟନଙ୍କୁ    ଦେଖିଛ କି ନା ସେ
ଅଚ୍ଛୋଦ ସର ତଟରେ ?
କାହିଁ, କି ଅଣସ୍ୱେ    କେମନ୍ତେ ସେ ଏବେ
ରହିଛନ୍ତି ସେ ସ୍ଥାନରେ ?
କି ସଙ୍କଳ୍ପ ତାଙ୍କ    ହୃଦ ଅଭିପ୍ରାୟ
ପାଉଥିଲ ପରକାଶ ?
ଗୃହକୁ ଫେରିବା    ନିମନ୍ତେ ମନରେ
ଥିଲା କି ନା ଅଭିଳାଷ ?
ହେମକୂଟପୁରେ    ଗନ୍ଧର୍ବ ତନୟା
ଛନ୍ତି ତ ସର୍ବ ଶୁଭରେ ?
ଅବସର କାଳେ    ଥରେ ଥରେ ତାଙ୍କ
ପକାନ୍ତି କି ନା ମନରେ ?
ଉତ୍ତର କହିଲା    ଯିବୁ ହେମପୁରୁଁ
ଅସୁଛି ମୁହିଁ ସତ୍ବର
ଜାଣି ନାହିଁ ବାଟେ    ରହିଥିଲେ ବୋଲି
ଏକାକୀ ମନ୍ତ୍ରୀକୁମର ।
ଅସିବା କାଳରେ    ଅଚ୍ଛୋଦ ସରସୀ—
ତୀରରେ ନ ଥିଲେ ସେହି
କାହାକୁ ସେ କଥା    ପଚ୍ଚାର ନାହିଁ ମୁଁ
ମତେ କହି ନାହିଁ କେହି ।
ହେମକୂଟ ପୁରେ    ଚିତ୍ରରଥ ସୁତା
ନାହାନ୍ତି ଭଲେ କୁଶଳେ
ଧନ ନେଉଛନ୍ତି    ତୁମ୍ଭ ବିରହରେ
ନିରତେ ମନ ବିକଳେ ।
ଯୁବରାଜ ! ତୁମ୍ଭେ    ସଦନେ ଅସିଲ
ମହାରାଜାଙ୍କ ଅଦେଶେ
ଯଥାକାଳେ ମୁହିଁ    ପ୍ରବେଶିଲି ଯାଇ
ଭୂତଳ ଗନ୍ଧର୍ବ ଦେଶେ ।

ପୁରକୁ ଯେପର ଫେର ଆସିଥିଲ
ଜନକଙ୍କ ଅଙ୍କ ପାଇ
ଗୋଟି ଗୋଟି ସେହ ବୃତ୍ତାନ୍ତ ତାହାଙ୍କୁ
କହିଲ ସବୁ ବୁଝାଇ ।
ମହାଶ୍ୱେତା ଶୁଣି ବର୍ଷାଦେ ଯୁଗଳ
ନୟନୁ ବୁହାଇ ବାର
ଅଳମାନ ତହୁଁ ନରହ ଆପଣା
ଆଶ୍ରମେ ଗଲେ ବାହାର ।
କାଦମ୍ବରୀ କ୍ଷଣେ ରହିଲେ ମୁଦ୍ରିତ
ନେତ୍ରେ ସଂଜ୍ଞା ଶୂନ୍ୟ ହୋଇ
ଅକାଳ ବାରଦୋ— ଦୟେ ସରେ ଯଥା
ପଙ୍କଜିନୀ ପଡେ ଶୋଇ ।
ସେ ଦନ୍ତ ସେ ବସି କଥା ନ କହନ୍ତ
ତନୁ ହୋଇଲଣି ଫିକା
ବଦନ ବଧୁରୁ ଉଠୁନାହିଁ ଆଉ
ଉଲ୍ଲାସ ହାସ ଚନ୍ଦ୍ରିକା ।
ଉଦାସୀନ ମନେ ଏକାକୀ ମଞ୍ଚେନ
ଯାପନ୍ତି ବସି ବାସର
ପୂର୍ଣ୍ଣ ଚନ୍ଦ୍ରମାକୁ ନ ଦେଖି ଯେମନ୍ତ
ଚନ୍ଦ୍ରିକାପାୟୀ ଚକୋର ।
ପରଜନ ମୁହଁ ନରେଖିଲ ସେହ
ସଂଜ୍ଞାଶୂନ୍ୟ ଅବସ୍ଥାରେ
ଧରହ ଅସ୍ଥିର ଚଢେ ପଡ଼ିଥିଲେ
ନିର୍ଜୀବ ଭାବେ ଶଯ୍ୟାରେ ।
କେବଳ ମାଳାରୁ ନେତ୍ର ଖରବେଗେ
ବହୁଥିଲ ଅଶ୍ରୁଜଳ
କାନ୍ଦ କାନ୍ଦ ଶୋକେ ମ୍ଳାନ ହୋଇଥିଲ
କମଳ ମୁଖମଣ୍ଡଳ ।
ଶୋକଜୀର ଏହ ଦୁରବସ୍ଥା ଦେଖି
ଚରମ ଯାତନା ପାଇ

ତେଣୁ ଅଗୋଚରେ ଆସିଲି ଗୃହକୁ
ଏ ବାରତା ଦେବା ପାଇଁ ।”
ସ୍ୱଭାବେ ସକଳ କାର୍ଯ୍ୟେ ଚନ୍ଦ୍ରାପୀଡ଼
ଥିଲେହେଁ ଅତ୍ୟନ୍ତ ଧୀର
ଗନ୍ଧର୍ବ ବାଳାର ବିରହ ବୃତ୍ତାନ୍ତ
ଶ୍ରବଣେ ହେଲେ ଅସ୍ଥିର ।
ଦୀର୍ଘଶ୍ୱାସ ତେଜି ଚିନ୍ତିଲେ ସତେ କି
କାହିଁଥିବ ମନୋରମା
ସତେ କି ଦେଖିବ ଆଉ ପ୍ରେୟସୀର
ରୁଚିର ମୁଖଚନ୍ଦ୍ରମା ।
ଦୁଃସହ ବିରହ ବହ୍ନିର ଦହନେ
ସଜନୀ ହେବଣି କୃଶା
ମହାକଷ୍ଟେ ଦିନ ପାରୁଥିବ ପିନା
ଚଟୁଳ ଶଫରୀଦୃଶା ।
ପ୍ରେୟସୀ ମିଳନ ସୁଖ ଲଭିବାକୁ
ନାହିଁ ପର ଭାଗ୍ୟ ମୋର
ସ୍ୱର୍ଗ ସୁଧାରାଶି ପାରିବ ପରଶି
କାହିଁ କ୍ଷୀଣ ପୁଣ୍ୟ ନର ।
ଅବା ମେଘୋଦୟେ ଯେମନ୍ତ ବରଷା—
କାଳର ହୁଏ କଳନା
ପୂରୁବ ଦିଗରେ ଜ୍ୟୋତି ଦେଖି ଯଥା
ସୂର୍ଯ୍ୟୋଦୟ ପଡ଼େ ଜଣା ।
ଅଥବା ପ୍ରକାଶେ ବସନ୍ତ ଆଗମ
ଯେସନ ମଳୟ ବାତ
ଦୂରୁଁ ବହ୍ନିରେଖା ପ୍ରକାଶଇ, ଉଠେ
କବା ଯଥା ଧୂମବ୍ରାତ ।
ତେବେ ଉପସ୍ଥିତ ଘଟଣାବଳୀରୁ
ନହୁଏ କି ଅନୁମିତ
ନିଷ୍ଟ ନିୟତ ଭେଟାଇବ ନେଇ
ପଥରେ ପ୍ରିୟା ସହିତ ।

ନୋହିଲେ ଝୁଞ୍ଜାକୁ ବାଟେ ରହିଥାନ୍ତେ
ବେଶମାଧୂନ କପାଇଁ
ତାହାଙ୍କ ସକାନେ ଅସନ୍ତ ମୁ ବୃଥା
ଅଯାଚିତ ଆଜ୍ଞା ପାଇ ।
ଅଶୁଭ ସନ୍ଦେଶ ଦେଇ ଯେତୁ ମୋତେ
ଅଣିଅଛି ବହୁଦୂରେ
ବାଧା ବିଘ୍ନ ନାଶି ସେ ଅଦୃଷ୍ଟ ନେବ
ନିଶ୍ଚିତ ଗନ୍ଧର୍ବପୁରେ ।"
ଏହା ଭାବି ସଖା— ସାଧ୍ୱ ଆନନ୍ଦରେ
ଗମିଲେ ସେ ବ୍ୟଗ୍ରତର
ବାଧା ଦେବା ଲାଗି ତାଙ୍କୁ କି ମାର୍ଗରେ ?
ଆସିଲା ବର୍ଷା ବାସର ।
ଘନ ନୀଳବର୍ଣ୍ଣ ବାରିଦ ମଣ୍ଡଳେ
ବ୍ୟାପିଲା ଗାଢେ ଗଗନ
ଘୋଟିଲା ଚୌଦିଗେ ଅନ୍ଧକାର ଅତି
ଦିଶିଲେ ନାହିଁ ତପନ ।
ନିବିଡ଼ ଅନ୍ଧାରେ ନୋହିଲା ପାନ୍ଥକୁ
ଦିବସ ଯାମିନୀ ବାର
ବଢାଇଲେ ମନେ ଭୀଷଣ ଆତଙ୍କ
ବଜ୍ରଧର ବଜ ମାର ।
ଘୋର ଘନଘଟା ଗମ୍ଭୀର ଗର୍ଜନ
କ୍ଷଣପ୍ରଭାର ଚମକ
ସାଧସେ କମ୍ପାଇ ଜନ୍ମାଇଲା ସଦା
ମନରେ ମହା ଚମକ ।
ପ୍ରବଳ ପବନ ବୃଷ୍ଟିଧାରା ସହ
ଖେପିଲା କୁଆପଥର
ଜଳୀୟ ଶୀକର ସଂସିକ୍ତ ସମୀରେ
ଦେହ ହେଲା ଜରଜର ।
ଅବିରତ ଦ୍ରୁତ ମୂଷଳ ଧାରରେ
ପଡ଼ିଲା ବରଷା ଜଳ

ଉଦୟ ତଟକୁ ଧସି ନୀରବେଗେ
ଧାଇଁଲେ ନଦୀ ସକଳ
ଜଳେ ଶାନ୍ତ ହେଲା ଧରଣୀର ତାପ
ପଙ୍କରେ ପୂରିଲା ପଥ
ଗମ୍ଭୀର ନାଦରେ ନାଚିଲା ପ୍ରପାତ
ନୀର ନିକର ନିରତ ।
ହର୍ଷେ ପୁଲକିତ ମୟୂର ମୟୂରୀ
ଶୋଭିଲେ ଶିଖଣ୍ଡ ଟେକି
ଉଲ୍ଲାସେ ଚାତକେ ନିଜ କଣ୍ଠରେଖୀ
ବଜାଇଲେ ତାହା ଦେଖି ।
ବିସ୍ତାରିତ ସ୍ନେହ ଶିଖଣ୍ଡ ମାଳକୁ
ଅମ୍ବର ଠାଣେ ବିସ୍ତାରି
ଗନ୍ଧବହ ମନ୍ଦେ ବହିଲା ଜଳାର୍ଦ୍ର
ମୃତ୍ତିକା ସୁଗନ୍ଧଧାରୀ ।
ଫୁଟିଲେ କଦମ୍ବ, ମାଲତୀ, କୁଟଜ
କେତକୀ ବିବିଧ ଫୁଲ
ପ୍ରଫୁଲ୍ଲ କୁସୁମେ ନବ ପଲ୍ଲବିତ
କାନନ ହେଲା ମଞ୍ଜୁଳ ।
କେକୀ କେକା ରବେ ଦାଦୁର ମଣ୍ଡୁକ
ସ୍ତୁତକମାନଙ୍କ ସ୍ୱରେ
ବିଷମ ଅର୍ଦ୍ଧଙ୍କ ଜନ୍ମାଇଲା ଘୋର
ଛମିର ଗହି ମନରେ ।
ମେଘ ଅନ୍ତରାଳେ ବିମଳ ଚନ୍ଦ୍ରମା
ସଭୟେ ରହିଲେ ଲୁଚି
ତାହାଙ୍କ ବିରହେ ଆକାଶୁଁ ତାରାଏ
ଧୀରେ ଧୀରେ ଗଲେ ଘୁଞ୍ଚି ।
କାଳସର୍ପ ପରି ବରଷା ସମୟ
ରୋଧିଲା ସରଣି ଆସି
ଚନ୍ଦ୍ରତେ କୁମାର ମନ୍ତ୍ରୁ, ଆଚମ୍ବିତେ
ଜନ୍ମିଲା ଆଶା ନାଶି ।

ଭାବିଲେ ପ୍ରେୟସୀ ପ୍ରିୟସଖା ପାଶେ
ଧାଉଁଛି ମୁଁ ପ୍ରାଣପଣେ
ଅବସର ନାହିଁ ବାଟରେ ଅଟକି
ରହିବାକୁ କାହିଁ କ୍ଷଣେ ।
କାହିଁ ଏ ଦୁର୍ଦ୍ଦାନ୍ତ ଘୋର ଘନକାଳ
ଦଶଦଶକୁ ଘୋଡ଼ାଇ
ମୂର୍ତ୍ତିମତୀ ବିଘ୍ନ ପଶ୍ଚାତୁଁ ଆସିଲା
ବୈରି ନିର୍ଯ୍ୟାତନ ପାଇଁ ।"
ଭୟ ବିଷାଦରେ ନସରେ ଏ କଥା
ଚିନ୍ତୁ ଚିନ୍ତୁ ଯୁବାମଣି
ଆଶା ମାୟାବଳେ ବାଞ୍ଛା ଅନୁକୂଳେ
ଭାବିଲେ ପୁଣି ସେକ୍ଷଣି ।
"କଣ୍ଟକ ସଙ୍କୁଳ ପଥ ଦେଖାଇବା
ଲାଗି ବନ୍ଧୁ ସଙ୍କଟରେ
ସୂର୍ଯ୍ୟଙ୍କ ଅସହ୍ୟ କର ଶୋଷିବାକୁ
ନୀରଦ ଚନ୍ଦ୍ରାତପରେ ।
ଆସିଛି ନବୀନ ବରଷା ବାସର
ଏଥିରେ ନାହିଁ ସଂଶୟ
ପଥିକମାନଙ୍କ ବାଟ ଚାଲିବାର
ଏହିତ ଯୋଗ୍ୟ ସମୟ ।"
ନବୀନ ଉତ୍ସାହେ ଗଲେ ସେ ଏଥିବେ
ଅଣ୍ଡଦମି ଘନାଘନ
ଜଳରେ ପ୍ଲାବିତ ପ୍ରାନ୍ତର, କେଦାର,
ଗ୍ରାମ, ନଦୀ, ଗିରିବନ ।
ଯଥାସ୍ଥାନେ ଆସି ଚନ୍ଦଲେଖା ଯୋଗେ
ପ୍ରିୟାକୁ ସନ୍ଦେଶ ଦେଇ
ଖୋଜି ଖୋଜି ମିତେ ଅଚ୍ଛୋଦ ସରସୀ
ତୀରେ ପ୍ରବେଶିଲେ ସେହି ।
ପୁଷ୍ପ ତରୁଲତା ଚଳଚଳ କର
ଖୋଜିଲେହେଁ କାନନର

ନ ପାଇଲେ କାହିଁ      ଜଳମାନ ତହିଁ
ଚନ୍ଦ୍ର ପ୍ରିୟ ବୟସ୍ୟର ।
ପୂର୍ବେ ଯହିଁଥିଲା      କାଚଧାର ପର
ସୁପେୟ ସ୍ୱଚ୍ଛ ସଲିଳ
ଏବେ ତହିଁ ରାଜେ      କାଦୁଅ ଜର୍ଜର
ଉଦ୍ଧାର ପଥ ଅଚଳ ।
ନବ ବିକଶିତ      ଜଳପୁଷ୍ପ ଜାଳ
ବିଲୁଥିଲା ଚନ୍ଦ୍ର ଯହିଁ
ଜଳାଙ୍କୁ ଉଠିଲ      ତୃଣଗୁଳ୍ମ ରାଜି
ଅଙ୍କୁରିତ ଏବେ ତହିଁ ।
ଶୋଭୁଥିଲା ଆଗେ      ଯହିଁ ମନୋହର
କଚନ ଲତିକାକୁଞ୍ଜ
ପଡ଼ିଛି ତା ତଳେ      ଏବେ ସେ ଲତାର
ସିକ୍ତ ଶୁଷ୍କପତ୍ର ପୁଞ୍ଜ ।
ଉଡ଼ି ବୁଲୁଥିଲେ      ମଧୁକରେ ଯହିଁ
ପୁଷ୍ପୁ ପୁଷ୍ପେ ନାଚି ନାଚି
ତହିଁ ଏବେ ପୀଡ଼ା      ଦିଅନ୍ତି ଦେହକୁ
ଦୁରନ୍ତ ମଶକ ମାଛି ।
ଶୁଭୁଥିଲା ଆଗେ      କଳହଂସଙ୍କର
ଯହିଁ ମନୋହର ସ୍ୱନ
ଏବେ ସେ ସ୍ଥାନରେ      ରବନ୍ତି ଉଚ୍ଚେ
ବିକଟେ ଦର୍ଦ୍ଦୁରଗଣ ।
ସୁଷମା ବିସ୍ତାର      ଆଗେ ଯହିଁ ଥିଲା
ସୈକତ ଶଯ୍ୟା ଧବଳ
କୁଟାକାଠି ସବୁ      ତହିଁ ଏବେ ବେଗେ
ଧାଉଁଛି ଦୂଷିତ ଜଳ ।
ହରି ନେଉଥିଲା      ତାହାଙ୍କ ମାନସ
ପୂର୍ବେ ସେହି ଉପବନ
ଖୋଜି ଖୋଜି ତହିଁ      ପାଇଲେ ନାହିଁ ତ
ପ୍ରିୟସଖାର ଦର୍ଶନ ।

ଭାବିଲେ "ଅବା ମୋ ଆସିବା ସମ୍ବାଦ
ଶୁଣି ବନ୍ଧୁବର କାହିଁ
ଲଜ୍ଜାରେ ନ ଦେଇ ଦେଖା ଏ ସ୍ଥାନରୁ
ଗଲେଣି ଗୁପ୍ତେ ପଳାଇ ।
ଥିଲେ ରହିଥାନ୍ତା କହିଦେଲେ ଚଣ୍ଡ
ନଷ୍ଟପ୍ରୁ ଅବସ୍ଥାନର
କାହିଁପିବ ଏବେ କି କରିବ କାହିଁ
ପାଇବ ଦେଖା ତାଙ୍କର ।
ଅବଲମ୍ବି ଯେଉଁ ଆଶାକୁ ଏ ଯାଏ
ରହିଥିଲି ସଞ୍ଜୀବିତ
ଏକାବେଳେ ସେହି ଆଶାଲତା ହେଲା
ସମୂଳରେ ଉତ୍ପାଟିତ ।
ଦେହ ମନ କ୍ରମେ ଶିଥିଳ ହେଉଛି
ପାରୁ ନାହିଁ ଆଉ ଚଳି
ବୈଶମ୍ପାୟନଙ୍କ ବିନା ମୁଁ ଅକୂଳ
ପାରାବାରେ ଭାସିଗଲି ।
ମାୟାବିନୀ ଆଶା ଏକାଳେ ମଧୁରେ
କହିଲା ତାଙ୍କ କର୍ଣ୍ଣରେ
ଦେଖ ଯୁବରାଜ ଥିବେ ତବ ସଖା
ମହାଶ୍ୱେତା ଆଶ୍ରମରେ ।
ଆଶାର ଆଶ୍ୱାସେ ତହିଁ ଗମିଲେ ସେ
ଘେନି ଥୋକେ ସହଚର
ଯାଉଥିଲେ ପୂର୍ବେ ସେ ବାଟେ ଆକର୍ଣ୍ଣି
ବାଳାର ସଙ୍ଗୀତ ସ୍ୱର ।
ଭାବିଲେ ମନରେ ଖଣ୍ଡେ ଦୂରୁ ତାଙ୍କୁ
ଦେଖି ସେ ଚନ୍ଦ୍ରବଦନା
ପରମ ଆଦରେ ସଙ୍ଖୋଳି କରିବେ
ଆହ୍ଲାଦରେ ଅଭ୍ୟର୍ଥନା ।
ମାନ ବଧାଭାର ବିଷମ ଗୁରୁତ୍ୱ
ଭବିତବ୍ୟର ପ୍ରସ୍ତାବ

ସଦାକାଳେ ଭବେ ଅଜ୍ଞେୟ ଅଦୃଷ୍ଟ
କେ ବୁଝିବ ତାର ଭାବ
ମହାପଣ ନର ବାଞ୍ଛା ଅନୁକୂଳ
ଅନୁମାନ ବାନ୍ଧ ଅନ୍ତେ
ଦୈବର ଅଜ୍ଞେୟ ମାୟା ଆବରଣ
ପାରିବ ଭେଦ କେମନ୍ତେ ।
ବନେ ଲୁକ୍କାୟିତ ପ୍ରିୟ ସଖାଙ୍କର
ସନ୍ଧାନ ପାଇବା ଆଶେ
ମନେ ଆଶାବନ୍ଧ ନରେନ୍ଦ୍ର ତନୁଜ
ଗଲେ ଯାହାଙ୍କର ପାଶେ ।
ଦୂରରୁ ଦେଖିଲେ କାନ୍ଦୁଥିଲେ ସେହ
ଦୁଃଖେ ବସି ଶିଳାସନେ
କେନ ହସ୍ତେ ଭିଡ଼ି ତରଳିକା ତାଙ୍କୁ
ଧରିଥିଲା ସପତନେ ।
ବାଳାର ସେରୂପ ଅବସ୍ଥା ବିଲୋକି
ଯୁବାମଣି ହେଲେ ଭୀତ
ଭାବିଲେ କଅବା ପ୍ରିୟତମାଙ୍କର
ଘଟିଛି କିଛି ଅହିତ ।
ବୈଶମ୍ପାୟନଙ୍କ ନିରୁଦ୍ଦେଶେ ଏବେ
ହୋଇଥିଲେ ସେ ଅଧୀର
କଥିପରେ ପ୍ରିୟା ଦୁଃଖଚିନ୍ତା କଲା
ମନକୁ ବଡ଼ ଅସ୍ଥିର ।
ଶୂନ୍ୟହୃଦେ ବାଳା ସମୀପକୁ ଯାଇ
ନୟନଦେ ସମ୍ବୋଧନ
ତରଳିକା ପ୍ରତି ଗୁହିଁ ପଚ୍ଚରିଲେ
ଏ ନବ ଶୋକ କାରଣ ।
ଯୁବାଙ୍କ ପ୍ରଶ୍ନରେ ସଖୀ ତରଳିକା
ଲାଜେ ତୁଣ୍ଡ ନ ଫିଟାଇ
ଅଙ୍ଗୁଳିକି ନେଇ ଏକା ମହାଶ୍ୱେତା
ମୁହଁକୁ ରହିଲା ଗୁହିଁ ।

ବସନାଞ୍ଚଳରେ ଧୀରେ ଧୀରେ ନେତ୍ର
ସଜଳ ପୋଛି ସ୍ୱଦରେ
ଅନାଇଁ ତାହାଙ୍କୁ ଶୋକ ଗଦଗଦେ
ଭଣିଲ ବାମା କାତରେ ।
"ଯୁବରାଜ ! ପୂର୍ବେ ଶୁଣାଇଥିଲି ଯେ
ଦୁଃଖକଥା ସୁଦାରୁଣ
ସେ ପାପିନୀ ଏବେ ଅପର ଅପୂର୍ବ
ଘଟଣା କହୁଛି ଶୁଣ ।
ଉଜ୍ଜୟିନୀପୁରେ ଗ୍ଭଲିଗଲ ତୁମ୍ଭେ
ପିତୃଦେବଙ୍କ ଆଦେଶେ
ନୈରାଶ୍ୟ ଯନ୍ତ୍ରଣ ବେଦନା ବଢିଲି
ସତୀଙ୍କ ସେହ ସଦେଶେ ।
ଦୈବ ପ୍ରତିକୂଳେ ପ୍ରିୟ ସଙ୍ଗମର
ହେବାରୁ ବ୍ୟର୍ଥ ଆଶୟ
କ୍ରମ କ୍ରମ ତାହା ବିଷମ ବୈରାଗ୍ୟ
ହେଲି ମୋ ମନେ ଉଦୟ ।
ସଙ୍ଗମର ସ୍ପୃହା ପାଶକୁ ଏଡାଇ
ଆଶ୍ରମେ ଅସିଲି ଫେରି
ପୂର୍ବପର ବନ ଦୁଃଖରେ କାଟିଲି
ସ୍ୱର୍ଗୀ ବଦନକୁ ହେରି ।
ଅକସ୍ମାତ ଦିନେ ପ୍ରବେଶିଲି ଏକ
ସୁନ୍ଦର କପ୍ରକୁମାର
ତୁମ୍ଭ ସମରୂପ ତୁମ୍ଭ ସମବୟ
ତୁମ୍ଭ ପରି ସୁକୁମାର ।
ସଦା ସେହି ଅନ୍ୟ ମନସ୍କ ତାହାକୁ
ଦେଖି ହେଉଥିଲି ମନେ
ବୁଲୁଥିଲି କିବା ଖୋଜି ଖୋଜି ତାର
ନଷ୍ଟଦ୍ରବ୍ୟ ଅନେ୍ୱଷଣେ ।
କ୍ରମେ ପାଖେ ଆସି ଚିର ପରିଚିତ
ପରି ଏକଧ୍ୟାନ ଦେଇ

ଅନିମେଷନେତ୍ରେ    ମୋ ମୂର୍ତ୍ତିରେ ତାର
ନୟନ ଥୋଇଲା ନେଇ ।
ସମ୍ବୋଧି ସେ ମୋତେ    କହିଲା "ସୁନ୍ଦର !
ଦେଖ ଏହି ଭୂମଣ୍ଡଳେ
ରୂପ ବୟସର    ଅନୁରୂପ କାର୍ଯ୍ୟ
ସମାଦୃଛନ୍ତି ସକଳେ ।
ମାନ ତରଳାକ୍ଷି !    ତୁମ୍ଭେ କପଶ୍ରୀତ
କଷ୍ଟ ଆଚରୁଛ ତାର
ଏ ନବ ବୟସ    ମୃଦୁଳ ଶରୀର
ନୋହେ ଯୋଗ୍ୟ ତପସ୍ୟାର ।
ମୃଣାଳିନୀ ପକ୍ଷେ    ତୁହିନ ପତନ
ଯେମନ୍ତ ଦୁଃସହତର
ତୁମ୍ଭ ପକ୍ଷେ ତେସନ୍ତ    ମହା ବିଡମ୍ବନା
ତପସ୍ୟାର ଆଡମ୍ବର ।
ଇନ୍ଦ୍ରିୟ ସୁଖରେ    ଜଳାଞ୍ଜଳି ଦେଇ
ତୁମ୍ଭ ପରି ଯୁବତୀଏ
ତପ ଆଚରିଲେ,    ସୃଜାବଧିକୁ
ଆଉ ବା ଭଜିବ କିଏ ?
ବସନ୍ତ ଆଗମେ,    କୋକିଳର ସ୍ୱରେ,
ପୂର୍ଣ୍ଣେନ୍ଦୁର ଅବର୍ଣ୍ଣବେ,
ବର୍ଷା ଆଡମ୍ବରେ,    ତମ୍ବୁରୁ ମଧ୍ୟମା !
ହୋଇବ କି ଫଳଲଭ ।
ଜାଇ ଯୂଇ ମଲ୍ଲୀ    ନିପାଳି ଫୁଲରେ
ସୁରଭିତ ଉପବନ
ମଳୟ ଅନିଳ    କି କାର୍ଯ୍ୟରେ ଆଉ
ଲଗିବ ସ୍ୱମାରତନ ! ।"
ପ୍ରିୟତମଙ୍କର    ମୃତ୍ୟୁଦନ୍ତ ମୁହିଁ
ହୋଇଥିଲି ଉଦାସୀନ
ସେ ବିପ୍ରର ବାକ୍ୟ    ଅଗ୍ନିଶର ସମ
କଲା ମୋର ମର୍ମ ଛିନ୍ନ ।

ନସରୁଁ ତା କଥା ବିରକ୍ତରେ ଖରେ
ସେ ସ୍ଥାନୁ ଉଠି ପଳାଇ
ଅନାସ୍ଥା ପ୍ରକାଶି ବିପରୀତ ପଥେ
କୁସୁମ ତୋଳିଲି ଯାଇ ।
ସଖୀକୁ କହିଲି ଏ ଦୁଷ୍ଟ ବିପ୍ର
ସ୍ୱଭାବ ବଡ ଚପଳ
କଥାବାର୍ତ୍ତା ସ୍ୱର- ଭଙ୍ଗୀରୁ ଜଣାଏ
ଅଭିପ୍ରାୟ ନୁହେ ଭଲ ।
ଯେମନ୍ତେ ସେ ଅଉ ଏସ୍ଥାନେ ନ ଆସେ
ତାକୁ ଦୃଢେ କର ମନା
ବଳାତ୍କାରେ ଏଥି ପଶିଲେ ଲଭିବ
ପରଣାମେ ବିଡମ୍ବନା ।
ତର୍ଜ୍ଜନେ ଗର୍ଜ୍ଜନେ ତରଳକା ତହୁଁ
ବିଶେଷ ଦ୍ରବ୍ୟ ଦେଖାଇ
ତଡ଼ିବାରୁ ତାକୁ, ଭୟେ ସେ ବ୍ରାହ୍ମଣ
ନିରସେ ଗଲା ପଳାଇ ।
ସଖୀ ତାଡନାରେ ପଳାଇଲା ସତ୍ୟ
ଏଠାରୁ ବିପ୍ରକୁମାର
ମାତ୍ର ନଛାଡ଼ିଲା ଏକାବେଳେ ପୂର୍ବ
ସଂକଳ୍ପ ମନରୁ ତାର ।
ଦିନେ ବସନ୍ତକାଳେ ସ୍ୱଚ୍ଛ ଜ୍ୟୋତ୍ସ୍ନାଜାଲେ
ହସୁଥିଲା ଏ ଭୁବନ
ଶିଳାସନେ ଶୋଇ ପ୍ରିୟସଖୀ ଥିଲା
ନିଦ୍ରାବେଶେ ଅଚେତନ ।
ଶୀଘ୍ର ଲଗେ ନିଦ ନୋହିବାରୁ ମୁହିଁ
ଗୃହାରୁ ଆସି ବାହାରେ
ପାଷାଣେ ଆଉଜି ସୁଧାଂଶୁ ବିମ୍ବକୁ
ଚାହୁଁଥିଲି ଦୂରଣାରେ ।
ଗାତ୍ରେ ସୁଧା ବୋଳି ମନ୍ଦ ମନ୍ଦ ବହି
ଗନ୍ଧବହ ବେଳ ଜାଣି

ଜନମାଉଥିଲି ପ୍ରାଣନାଥଙ୍କର
ଭାବ ସ୍ମୃତିପଥେ ଆଣି ।
ଏକାଳେ ଚକିତ— ଚନ୍ଦ୍ରେ ଦୁରୁ ପଦ—
ସଞ୍ଚାର ଶବଦ ପାଇ
ଶବ୍ଦ ଆସୁଥିବା ଦିଗକୁ ରହିଲି
ଏକଧ୍ୟାନରେ ଅନାଇଁ ।
ଦୂରୁ ଜ୍ୟୋତ୍ସ୍ନା ଲେକେ ସ୍ପଷ୍ଟ ନରେଖିଲି
ପୁଙ୍ଗର ସେହି ଗୋସାଇଁ
ଉଲଙ୍ଘି ପଗ୍ରୟେ ବାହୁ ତୋଳି ମୋର
ପାଖକୁ ଆସୁଛି ଧାଇଁ ।
ହୃଦେ ମହାଶଙ୍କା ଜନ୍ମିଲା ନରେଖି
ତାର ମୂର୍ତ୍ତି ଭୟଙ୍କର
ସ୍ୱବଳ ଦୁର୍ବୃତ୍ତ ଛୁଇଁବ ସେବେଟି
ଆସି ଏହି କଳେବର ।
ତା ହେଲେ ଅନଳେ ପ୍ରବେଶି ନିଶ୍ଚୟ
ବର୍ଜ୍ଜିବି ଏହି ତନୁ
ହାୟ ଏତେଦିନେ ପ୍ରିୟଙ୍କ ଦର୍ଶନ—
ଆଶା ଛିନ୍ନ ହେଲା ମନୁ ।
ସହସା ଚଞ୍ଚଳେ ଆସି ସେ ଜନୟେ
କହିଲା ମୋତେ ଅଥୟେ
ଚନ୍ଦ୍ରମୁଖି ! ହେର ମାର ସଖା ଚନ୍ଦ୍ର,
ଦହୁଛି ମୋତେ ନିର୍ଦ୍ଦୟେ ।
ଅରୁଣ ଅଧରି ! ତୁମ୍ଭର ଚରଣ
ତଳରେ ପଶେ ଶରଣ
ସୁପ୍ରସନ୍ନ ମନେ ଦୀନ ଆଶ୍ରିତର
ସଦୟେ ରଖ ଜୀବନ
ଏହି ମାତ ଘୃଣ୍ୟ ହୀନ ପ୍ରସ୍ତାବରେ
ହେଲା ମୋର ଧୈର୍ଯ୍ୟଚ୍ୟୁତ
ଜଳିଲା ରୋଷାଗ୍ନି ହୃଦରେ ହୋମାଗ୍ନି
ଯେସନ ଲଭି ଅହୁତ ।

ସ୍ଫୁରିଲା ଅଧର,       ପ୍ରବଳ ବେଗରେ
କମ୍ପିଲା କ୍ରୋଧେ ବିଗ୍ରହ
କହିଲା ନାସାରୁ       ଅନଳ ସ୍ଫୁଲିଙ୍ଗ
ନିଶ୍ୱାସ ପବନ ସହ ।
ସକ୍ରୋଧେ ଭର୍ତ୍ସନା       କରି ରୂଢ଼ ସ୍ୱରେ
କହିଲି ଅରେ ପାମର !
କିପାଇଁ ଆକାଶୁ       ଭୀଷଣ ଅଶନି
ପଡ଼ୁ ନାହିଁ ଶିରେ ତୋର ।
ପତିବ୍ରତା ପ୍ରତି       କୁକଥା ପ୍ରକାଶି
ତୋର ଏ ରସନା ଖଣ୍ଡ
ନୋହୁଛି କାହିଁକି       ଏତେବେଳଯାଏ
ମୂକ ଛିଣ୍ଡି ଖଣ୍ଡ ଖଣ୍ଡ ।
ମନୁଷ୍ୟ ଶରୀର       ବହିଛୁ ମାତ୍ରକ
ଅଯୋଗ୍ୟ ମନୁଷ୍ୟ ନାମେ
ପଶୁ ପକ୍ଷୀଠାରୁ       ଅଧିକ କଦର୍ଯ୍ୟ
ଜନ୍ମି ତୁ ରେ ଭବ ଧାମେ ।"
ଏହା କହି ଦେବ !       ପୂର୍ଣ୍ଣ ଚନ୍ଦ୍ରମାକୁ
ଚାହିଁ ଯୋଡ଼ି ବେନି ହାତ
ଏକାନ୍ତ ହୃଦୟେ       ନିବେଦିଲି ଆହେ
ସର୍ବ ସାକ୍ଷୀ ତାରାନାଥ ।
ନାଥଙ୍କୁ ଦେଖିଲି       କିନ୍ତୁ ଯେବେ ଅନ୍ୟ
କାହାକୁ ନ ଭାବି ମନେ
କାୟ ମନୋବାକ୍ୟେ       ତାଙ୍କ ପ୍ରତି ଯେବେ
ଭକ୍ତି ଥାଏ ଅନୁକ୍ଷଣେ ।
ଯେବେ ନିଷ୍କଳଙ୍କ       ଏକନିଷ୍ଠ ବ୍ରତେ
ପବିତ୍ର ମୋହର ଚିତ୍ତ
ତେବେ ଏ ପାପିଷ୍ଠ       ମୋ ବାକ୍ୟେ ବିହଙ୍ଗ
ଜାତିରେ ହେଉ ପତିତ ।
ମଦନ ଜ୍ୱରର       ବିକାରେ କି ଅବା
ମୋହର ଶାପ ପ୍ରଭାବେ

ଅସ୍ତ କୁମ୍ଭକର ମହାପ୍ରାସୃଷ୍ଟିରେ
ଅଥବା ଅନ୍ୟ କ୍ଷ ଦ୍ରବେ ।
ତଥା ଅବସାନ ହେଉଁ ହେଉଁ ବସ୍ତ
ହୃଦର ସ୍ତୀସ୍ତ ଚେତନ
ଛିନ୍ନମୂଳ ତରୁ ପରାଏ ପଡ଼ଲ
ଧରଣୀ ତଳେ ତକ୍ଷଣ ।
ସଙ୍ଗୀମାନେ ତାର ହାହାକାର କରି
ଉଚ୍ଚ କାତର ସ୍ୱନେ
ମୁଖରିତ କଲେ କାନ୍ଦ କାନ୍ଦ ଶୋକେ
ଗୁହାଦ୍ୱାରକୁ ସଘନେ ।
ସେ କୁମ୍ଭର ପ୍ରିୟ ବାଲ୍ୟ ସହଚର
ଶୁଣିଲ୍ ତାଙ୍କ ମୁଖରୁ
ଏତେ ବୋଲ୍ ଖେଦେ ବଦନ ପୋଛଇ
ଲହ୍ୱା ଦୁଃଖେ କରସ୍ରେରୁ ।
ନମୀଳତ ନେତ୍ରେ ଉତ୍କର୍ଣ୍ଣେ କୁମାର
ଶୁଣୁଥିଲେ ସେ କାହାଣୀ
ଯେମନ୍ତ ସରଳ ସଙ୍ଗେ ସଙ୍ଗେ ଦୁଃଖେ
ହୃଦସ୍ଥରେ କର ହାଣି ।
କହିଲେ 'ବାଳାର ସହିତ ମିଳନ
ଏ ଜନମେ ନାହିଁ ଅଛ
ସେ ସୌନ୍ଦର୍ଯ୍ୟବତୀ ମୋ ସମ ଅଭ୍ରଗା
ସ୍ୱର୍ଗରେ ମିଳବ କାହ୍ୱଁ ।'
ଏହ୍ନା କହୁଁ କହୁଁ ତାହାଙ୍କ ସୁନ୍ଦର
ଶରୀର ଗଲ ମଉଳ
ପଡ଼ବା ମାତକେ ପ୍ରଭୃତ କରଣ
ସେସନ ଗଙ୍ଗଶିଉଳ ।
ଖସି ପଡ଼ୁଥିଲେ ଶିଳାପରୁ ନୃପ—
ସୁତ ତଳେ ଅସ୍ତବ୍ୟସ୍ତେ
ତରୁଣୀଙ୍କି ଛଡ଼ ତରଳକା ତାଙ୍କୁ
ଧରଲ ଚଞ୍ଚଳ ହସ୍ତେ ।

ରୁଦ୍ଧ ହେଲ ନେତ୍ର    ଗ୍ରୀବା ଭଙ୍ଗି ଶିର
ତଳକୁ ପଡ଼ିଲ ଝୁଲି
ସହସା ସ୍କନ୍ଧରୁ    ଭେଦ ସ୍ଖଳିଗଲ
କି ଅବା ନଳୀର ଗୁଳ ।
ଜୀବନର ଚନ୍ଦ୍ର    ଖଣ୍ଡ ନାହିଁ ଦୋଳ
ଚିତ୍କାରିଲ ହାସେ ସଖୀ
ଏ ଦେହ ପିଞ୍ଜର    ଛାଡ଼ି କାହିଁ ଉଡ଼ି
ଗଲାଣି ଜୀବନ ପକ୍ଷୀ ।
ଆହା କି ହୋଇଲ    କାହିଁ ଛାଡ଼ିଗଲ
କାଦମ୍ବରୀ ପ୍ରାଣଧନ
ଅନାଥିନୀ ହେଲ    ତୁମ୍ଭର ବିରହେ
ଅକାଳେ କାଳା ରତନ ।
ଦେଖି ଏ ଅବସ୍ଥା    ଅସ୍ତବ୍ୟସ୍ତେ ଉଠି
ମହାଶ୍ୱେତା ବିଷାଦିନୀ
ହତବୁଦ୍ଧି ହୋଇ    ରହିଲ ଆଲେଖ୍ୟ
ଲିଖିତ ପ୍ରତିମା ଜିଣି ।
ଶୁଖିଗଲ ନେତ୍ର    ଯୁଗଳ ଲୋତକ
ପୂର୍ଣ୍ଣିମା ଚନ୍ଦ୍ରମୁଖୀର
କାନ୍ଦୁଥିଲ ଯାହା    ଅଧୀରେ ସୁନ୍ଦରୀ
ବିଷାଦରେ ହେଲ ସ୍ଥିର ।
ଅନ୍ତେ ଅନୁଚରେ    ଉଚ୍ଚରେ କାନ୍ଦିଲେ
କାନନ ସ୍ଥଳ ମୁଖର
ଧ୍ୱନିତ ହୋଇଲ    ଚିତ୍କାର ଶବଦେ
ସେ ନିର୍ଜ୍ଜନ ଗିରିଦରୀ ।
କି କଲୁ କି କଲୁ    ଆରେ ଦୁଷ୍ଟମତି
ପାପୀୟସୀ ତପସ୍ୱିନୀ
ତୋ କୁହୁକ ମନ୍ତ୍ରେ    ଅନାଥା ହୋଇଲ
ଆଜଠାରୁ ଉଜ୍ଜୟିନୀ ।
ମହାରାଜା ମହା—    ରାଣୀଙ୍କର ତୁ ରେ
ହରିଲୁ ସର୍ବସ୍ୱ ଧନ

ବର୍ଷିବେ ପ୍ରଭାଏ    ଦେଖି ଆଉ କାହା
ପ୍ରଫୁଲ୍ଲ ପଦ୍ମ ବଦନ ।
ବିପଦେ ପଡ଼ିଲେ    ଜଣାଇବୁ ଆଉ
କାହା ଆଗେ ଯୋଡ଼ି ହାତ
କିନା ମେଘେ ବିନା    ହେଲା ମସ୍ତକରେ
ଏ ଭୀଷଣ ବଜ୍ରପାତ ।
ସୁମରି ସୁମରି    ସାଧୁ ଗୁଣମାନ
ଏସ୍ତବେ ଯୁବରାଜର
କାନ୍ଦନ କାନ୍ଦନ    ବହୁତ କାନ୍ଦିଲେ
ଅନୁଗାମୀ ଅନୁଚର ।
ଅନାଇ ରହିଲ    ଇନ୍ଦ୍ରାୟୁଧ ଏକ—
ଧ୍ୟାନରେ ଚନ୍ଦ୍ରାପୀଡ଼ଙ୍କୁ
ଅଜସ୍ର ଲୋତକ    ଦର ଦର ବହି
ପ୍ଲାବିଲା ଧରାତଳକୁ ।
ଯୁବରାଜମଣିର    ଆଗମନ ଜାଣି
ତେଣେ ପତ୍ରଲେଖା ଗୀରେ
ଗନ୍ଧର୍ବ ନନ୍ଦିନୀ    ସଖୀ ସହିତରେ
ମଜ୍ଜିଲ୍ଲ ଆନନ୍ଦ ନୀରେ ।
କୁମାରର ଶୁଭ    ଆଗମନ ପାଏ
ଅଧୀରେ ପୁରେ ନ ଠାକ
ପାଛୋଟିବା ପାଇଁ    ନିଜେ ସମୁତ୍ସୁକେ
ତାହାରଙ୍କ ହରଣାକ୍ଷୀ ।
ମଣି ରତ୍ନମୟ    ଅଲଙ୍କାରେ ସ୍ୱୀୟ
ଦେହ ମଣ୍ଡି ମହାଦରେ
ଲେପିଲ୍ଲ ଉଲ୍ଲାସେ    ସୁରଭିତ ନାନା
ବିଲେପନ କଳେବରେ ।
କମନୀୟ କମ୍ବୁ—    କଣ୍ଠରେ ସୁବର୍ଣ୍ଣୀ
କୁସୁମର ହାର ପିନ୍ଧି
ପୁରୁଁ ତାହାରଙ୍କ    ନକ୍ଷତ୍ର ଭୂଷିତ
ଚନ୍ଦ୍ରମାବିମ୍ବକୁ ନିନ୍ଦ ।

ନବୁଝାହେ ବାଟେ ସିବାବେଳେ ଜନ୍ତୁ—
ଥିଲ ସେ ଚନ୍ଦ୍ରବଦନା
"ଜଡବେ ଏ ପୁରେ ସତେକ ସଜନ !
ଉନ୍ମତ୍ତିନୀ ନଣାମଣି ।
କାହିଁକି ବୃଥାରେ ଶଙ୍କା ଉପୁଜୁଛି
ହତାଶ ହେଉଛି ପ୍ରାଣ,
ନାଥଙ୍କୁ ଦେଖିବ ବୋଲି ଆଶା ହୃଦେ
ଜଳେ ପାଉ ନାହିଁ ସ୍ଥାନ ।
ଦକ୍ଷିଣ ନୟନ ଚମକୁଛି କିପାଁ
ପ୍ରାଣ ହେଉଅଛି ଘାର
ପୁଣି କି ଅଜ୍ଞାତ ଦୁଃଖେ ଦୁଃଖିନୀଙ୍କ
ପକାଇବେ ବିଧାତା ।"
ଏହା କହୁଁ କହୁଁ ମହାଶ୍ୱେତା ମଠେ
ସଦଳବଳେ ଉସବେ
ପଶି ଦେଖିଲ ସେ ସଭିଙ୍କର ମୁଖ
ଶୁଷ୍କ ଦିଶୁଅଛି ଶୋକେ ।
ଖେଦେ ମହାଶ୍ୱେତା ବସିଛି ମଉନେ
ଗାଲେ ବାମହାତ ଥୋଇ
କମଳ ନୟନୁ ଅବରଳ ଧାରେ
ଅଶ୍ରୁ ଯାଉଅଛି ବହି ।
ପୁଷ୍ପଶୂନ୍ୟ ବନ, ପକ୍ଷିଶୂନ୍ୟ ତରୁ,
ବାରିହୀନ ସରୋବର,
ତଳ୍ପେ ପଡ଼ିଛି ରାଜ ତନୟର
ପ୍ରାଣଶୂନ୍ୟ କଳେବର ।
ଦେଖିବା ମାତ୍ରକେ ମୂର୍ଚ୍ଛା ଭଜି ବାଳା
ପଡ଼ନ୍ତା ମହୀତଳେ
କ୍ଷିପ୍ରକରେ ତାକୁ ସଖୀ ତରଳିକା
ଧରି ନଥିଲେ ସବଳେ ।
ଶୋକ ଅସମ୍ଭାଳେ ଧୀରେ ଧୀରେ ଧନୀ
ମହୀରେ ପଡ଼ିଲ ଲୋଟି

ଛାଡ଼ି ଏଣେତେଣେ          ବସନ ଭୂଷଣ
ସ୍ୱପ୍ନ ଶ୍ରାନ୍ତ ଗଲେ ଛୁଟି ।
ଚେତା ପାଇ ଉଠି          ଯୁବା ହୃଦେ ପଡ଼ି
ବ୍ୟସ୍ତେ ଲାଜ ଭୟ ଛାଡ଼ି
ବାହୁନ ବାହୁନ          କାନ୍ଦଲ ବହୁତ
ମସ୍ତକରେ କର ଡାଡ଼ି
କହିଲ ମହିଳା          ଯାହାର ଉଦ୍ଦେଶେ
ରଖିଥିଲି ଏ ଜୀବନ
ତାର ବନା ଅଉ          ଏ ପାପ ପରାଣେ
ଅଛି କେଉଁ ପ୍ରୟୋଜନ ।
ହାୟରେ ନିଷ୍ଠୁର          ହୃଦୟ ! କୁଳଶ
ଅପେକ୍ଷା ତୁହି କଠିଣ
ଏ ଭୀଷଣ ଦୃଶ୍ୟ          ଦେଖି ଏତେକାଳ
ଅଛୁ ଯା ନୋହି ବିଦୀର୍ଣ୍ଣ ।
ଶାନ୍ତ ଲଭିବାକୁ          ଏମନ୍ତ ଜୀବନ
ପାଇବୁ କାହିଁ ହୃଦୟ ।
ଚରଣାନ୍ତ ପାଇଁ          ଉପଗତ ଆଜ
ତୋ ପକ୍ଷେ ଶୁଭସମୟ ।
ଜୀବିତେଶ୍ୱରଙ୍କୁ          ପୁଣି ଦେଖିବାର
ନଥିଲା ଆଶା ମନରେ
ଅନୁକୂଳ ଭାଗ୍ୟ          ମିଳାଇଲା ସିନା
ଆଣି ତାଙ୍କ ସନ୍ନିକଟରେ ।
ଜାଉଁଥିଲେ ଆଜି          ନାଥଙ୍କର ସଙ୍ଗ
ନପାନ୍ତି କେବେ ବରଜ
ମରବ ସଙ୍ଗତେ          ଫଳବ ତ ଯାହା
ଅଛି ମୁଁ ପୂର୍ବେ ଅରଜ ।
ଏତେ ଦିନେ ଆଜି          ସବୁ କ୍ଳେଶ ଗଲା
ଶ୍ରମ ହେଲା ଅବସାନ,
ଶାନ୍ତ ହେଲା ସର୍ବ          ଯାତନା, ସକଳ
ବାସନା ହେଲା ନିର୍ବାଣ ।

ଯାହାଙ୍କ ଲାଗି ଛାଡ଼ ଅଭିମାନ ଭୟ,
କୁଳ-କାମିନୀଙ୍କ ଧନ
ଗୁରୁଜନ ପ୍ରୀତି ଉପେକ୍ଷି ଲଜ୍ଜାରେ
ଦେଇଥିଲି ଜଳାଞ୍ଜଳି ।
ଯା ଲାଗି ସଖୀଙ୍କି କଷ୍ଟ ଦେଇ ନିଜେ
ଦଗ୍ଧ ହେଲି ଅଶାନ୍ତିରେ
ଲୋଟିଅଛି ଆଗେ ପ୍ରାଣଶୂନ୍ୟ ସେହି
ପ୍ରାଣେଶ ତନୁ ମଧ୍ୟରେ ।
ତେବେହେଁ ଏସ୍ଥାନ— ପରାଣ ପିଞ୍ଜର
ଆଶା ଛାଡ଼ ଯାଉ ନାହିଁ ।
ଏଥୁଁ ବଳି ଆଉ ଲଜ୍ଜାକର କଥା
ମୋ ପକ୍ଷରେ ଅଛି କାହିଁ ।
ପିତାଙ୍କୁ ଉଦ୍ଦେଶି କହିଲା ରୂପସୀ
ଶୂନ୍ୟେ ଦୃଷ୍ଟି ଯୋଡ଼ିକରି
ମାଗୁଛି ମେଲାଣି ଆଶୀର୍ବାଦ କର
ସ୍ନେହମୟ ପିତା ମୋର ।
ସଂସାର ଉଦ୍ୟାନେ କୁସୁମ ପରାୟେ
ହେ ପିତଃ ! ତୁମ୍ଭ ନନ୍ଦନା
ନଫୁଟୁ ନଫୁଟୁ ଅଳପ ବୟସରେ
ମଉଳାଇଲା ଦୁଃଖିନୀ ।
ମଣିଥିଲି ଯାଙ୍କୁ ମନେ ମନେ ମୋର
ହୃଦୟ ଦେବତା ସାର
ଦୁଃଖରେ ଭସାଇ ସେ ଏବେ ବାହାର
ଗଲେଣି ଯମ ନଗରୀ ।
ମନାସିଛି ପିତ ! ଯିବି ତାଙ୍କ ସଙ୍ଗେ
ଅଛି ସ୍ୱର୍ଗ ଥାଉଁଥାଉଁ
ତହୁଁ ବଳି ଭବେ ସତୀର ମହତ
କାର୍ଯ୍ୟ କିବା ଅଛି ଆଉ ।
ଯାଉଛି ମା ମୋତେ ହସି ହସି ଆଜି
ପ୍ରସନ୍ନେ ବିଦାୟ ଦିଅ

କର୍ମାର୍ଜ୍ଜିତ ଫଳ ଭୁଞ୍ଜିବ ମାଆଲେ
ତୋର ଅନାଥୁଣୀ ଝିଅ ।
ସର୍ବଦା ମୋ ଲାଗି ଦୁଃଖେ ବସି ମାତା
କାନ୍ଦବୁ ନାହିଁ ଶୋକରେ
ସ୍ୱପନ ଘଟଣା ପରାଏ ମୋତେ ଯେ
ପାଶୋର ଦେବୁ ସତ୍ୱରେ ।
ସହିଅଛୁ ମୋର କେତେ ଅଳି କେତେ
ଜଞ୍ଜାଳ ମା ଅକାତରେ
କ୍ଷମିବୁ ସେ ସବୁ ସନ୍ତାନବତ୍ସଳା
ମାତାଲୋ ନିଜଗୁଣରେ ।
ତୋହର ସେବାରେ, ଦିନ ଯାପିବାକୁ
ମାଆଲୋ ମୋଭାଲେ ନାହିଁ
ବିଧି ଥିଲା ଲିଖି କପାଳେ ଅକାଳେ
ତନୁଦଗ୍ଧ ହେବା ପାଇଁ ।
ଏରୂପେ ବଖାଣି ପ୍ରିୟସଖୀ ମଦ—
ଲେଖାକୁ ଆହ୍ୱାନ ଧନୀ
ଶୋକ ଗଦଗଦ ବଚନେ ଭାଷିଲା
ଶୁଣ ମୋ ପ୍ରିୟ ସ୍ୱଜନୀ ।
ମୋତେ ଭାବି ଭାବି ପିତା ମାତା ଯେହ୍ନେ
ନୋହିବେ ସଦା ଅଧୀର
ମୋ ପ୍ରାଣସଖିଲୋ ଧୈର୍ଯ୍ୟ ଧର ହୃଦେ
କରିବୁ ଯତ୍ନ ତତ୍ପର ।
ଦେଖିବୁଲେ ସଖି ! ମୋର ଅଭାବରେ
ସହଚରୀଏ ଦୁଃଖରେ
ନଯାନ୍ତି ଯେସନ ଖାଦ୍ୟ ପାନାସ୍ୱେ
ପଡ଼ି ଦେଶ ଦେଶାନ୍ତରେ ।
ପ୍ରାଙ୍ଗଣେ ରୋପିତ ବାଳ ସହକାର
ତରୁ ସହ ସହଚରୀ
ନବ ମୁକୁଳିତା ମାଧବୀ ଲତାର
ଦେବୁଲୋ ବିବାହ କରି ।

ପ୍ରିୟପ୍ରାଣ ମୋର ହରଣ ଶିଶୁଟି
ଛଡ଼ଦେବୁ ତପୋବନେ
ନବ୍ଲୀଟି ମୋର, କୋଳରେ ସଜନ !
ରଖିବୁ ତୁ ଲୋ ଯତନେ ।
ନେ'ଲେ ସଖି ଏହୁ ବହୁମୂଲ୍ୟ ମୁହୁ
ଅଙ୍ଗର ଭୂଷଣମାନ
ସନସ୍ଥାନ ଦେଖି ଅନାଥ ଧାର୍ମିକ
ଦରିଦ୍ରଙ୍କୁ ଦେବୁ ଦାନ ।
ବୀଣାଅଦି ବାଦ୍ୟ ସାମଗ୍ରୀ ଯେତେକ
ତୋର ରୁଚମତେ ରଖି
ବାଙ୍କ ଦ୍ରବ୍ୟମାନ ଯାହାକୁ ଯେମନ୍ତ
ବତର ଦେବୁଲୋ ସଖି !
ଚନ୍ଦନେ ଚନ୍ଦ୍ରମା କରେ, ପଦ୍ମାଜଳେ,
ଶୀତଳ ଶିଳା ଉପରେ,
କମଳନୀ ଦଳ ଶଯ୍ୟାରେ, ଯେ ଗାତ୍ର
ଦହି ହେଉଥିଲା ଖରେ ।
ନାଥ କଣ୍ଠଲଗ୍ନ ହୋଇ ଚତାନଳେ
ହେବ ତା ଏବେ ଶୀତଳ
କିଏ ନ ଜାଣଇ ସଂସାରେ କପର
ଔଷଧ ବିଷ କେବଳ ।
ଯାଉଛି, ପାଶୋର ନ ଦେବୁ ସଜନୀ
ପକାଇଥିବୁ ମନରେ
ତୋ ପରି ସଙ୍ଗିନୀ ମୋର ଭାଗ୍ୟେ ଯେହ୍ନେ
ମିଳୁ ଜନ୍ମଜନ୍ମାନ୍ତରେ ।
ସଖିଙ୍କ ଏମନ୍ତ କହି ମହାଶ୍ୱେତା—
କଣ୍ଠରୁ ଉଡ଼ ଉଚ୍ଛ୍ୱାସେ
ନବଢେ ହୃଦୟେ ତାଙ୍କ ଶଶିମୁଖୀ
କହଲ କରୁଣ ଭାଷେ ।
ମହା ମାୟାବିନୀ ଆଶା ମୃଗତୃଷ୍ଣା
ମାୟାରେ ମୋହତ ହୋଇ

ମରଣୁ ଅଧିକ      କଷ୍ଟ ଲଭି ଶୋକେ
    ରହିଥା ତୁ ପ୍ରାଣସହି !
ଏହି ଦୁଃଖିମାନୁ      ଶାନ୍ତି ଦେବା ପାଇଁ
    ସେ ଆଶା ସୁଦ୍ଧା ବିମୁଖ
ସର୍ବ ରକ୍ଷିବ      କି ଅଣସ୍ୱେ ଅଛ
    ଅନାଇଁ କାହାର ମୁଖ ।
ଅନାଥନାଥଙ୍କ      ଶ୍ରୀଛାମୁରେ ସଖି !
    ଏହିମାତ୍ର ନିବେଦନ
ପରଜନ୍ମେ ଯେମନ୍ତେ      ସଖୀରୂପେ ଆମ୍ଭ
    ଦୁହିଙ୍କ ହେବ ମିଳନ ।
ପୂରନ୍ତୁ ତୋହର      ମନୋରଥ ସଖି !
    ଭକତବତ୍ସଳ ହରି
ସୁଖେ ଦିନ ନିଅ      ମନୋମତ ପ୍ରିୟ
    ପ୍ରାଣବଲ୍ଲଭଙ୍କୁ ବରି ।
ବିଦାୟ ନେଉଛି      ସଦୟେ ସଜନ !
    ଆସ ଆସ ପାଶେ ଥରେ
ବାରେ ପ୍ରାଣଭରି      ଗାଢ଼ ଆଲିଙ୍ଗନେ
    ଶରୀର ଶୀତଳ କରେ ।"
ଏତେ ବୋଲି ନାଥ      ପଦ ପଙ୍କେରୁହ
    ଧରିଲା ଅଙ୍କେ ଯୁବତୀ
କର ସ୍ପର୍ଶ ମାତ୍ରେ      ବାହାରିଲା ସେହି
    ମୃତ ଦେହୁଁ ଏକ ଜ୍ୟୋତି ।
ସେ ଜ୍ୟୋତିର ଦିବ୍ୟ—      ଉଜ୍ଜ୍ୱଳ ଆଲୋକ
    ଉଛନ୍ଦି ନଭସ୍ଥଳ
କରିଦେଲା କ୍ଷଣେ      ଜ୍ୟୋତ୍ସ୍ନାଲୋକ ସମ
    ଚୌଦିଗକୁ ସମୁଜ୍ଜ୍ୱଳ ।
ଅନ୍ତରୀକ୍ଷ ଦେଶୁ      ସହସା ଶୁଭିଲା
    ଏହିରୂପ ଦେବ ବାଣୀ
ବତ୍ସେ କାଦମ୍ବରି !      ନ ପକାଅ ଆଉ
    ଦୁଃଖରେ ହୃଦୟ ହାଣି ।

ଚନ୍ଦ୍ରାପୀଡ଼ ଦେହ ସଦା ଅବନାଶ
ପୁଣି ଦେବ ତେଜୋମୟ
ଅଭିଶାପରେ ତୁମ୍ଭ କର ସ୍ପର୍ଶ ଲଭି
ହେଲଣି ତାହା ଅକ୍ଷୟ ।
ଶାପ ଦୋଷୁଁ ଏହୁ ସୁନ୍ଦର ପିଣ୍ଡରୁ
ଯାଇଛି ଶୁଭ୍ର ପରାଣ
ଯୋଗୀର ଶରୀର ପର ପୁଣି ଭଳି
ଜୀବାତ୍ମା ପଶିବ ଜାଣ ।
ଏ ପିଣ୍ଡକୁ ଧନ ! ଦହିବ ନାହିଁଟି
କେବେ ଚିତା ହୁତାଶନେ
ଯେତେ ଦିନଯାଏ ଜୀବିତ ନ ହେବ
ରଖିଥାଅ ଯତନେ ।’
ଏରୂପ ଆକାଶ— • ବାଣୀ ଶୁଣି ହର୍ଷେ
ଦୁଃଖେ ସମବେତ ଜନେ ।’
ଆକାଶକୁ ଚାହିଁ ରହିଲେ ଚକିତେ
ନିମେଷ ଶୂନ୍ୟ ନୟନେ ।
ଏକାଳେ ତକତେ ଘଟିଲା ସେ ସ୍ଥାନେ
ଏକ ଅଦ୍ଭୁତ ଘଟନା
ଚିରକାଳ କେତେ ଦୁର୍ବଳ ନରକୁ
ନ କରୁଛ ବିଡ଼ମ୍ବନା !
ରାଜକୁମାରଙ୍କ ମରଣ ନିରେଖି
ହତାଶେ ଅବଶେ ଏକା
ଚନ୍ଦ୍ରରେଖା ପରି ଅଙ୍ଗନେ ଭୂତଳେ
ପଡ଼ିଥିଲା ପତ୍ରଲେଖା ।
ଏବେ ତାଙ୍କ ଦିବ୍ୟ— ଶରୀରୁ ଅଦ୍ଭୁତ
ଉଜ୍ଜ୍ୱଳ ଜ୍ୟୋତି ବଳୟ
ଭଙ୍ଗିଦେଲା ତାର ଅଜ୍ଞାନ ଜଡ଼ତା
ଚେତନା ହେଲା ଉଦୟ ।
ଜଳଧି ପରାଣେ ଉଠେ ଚନ୍ଦ୍ରାସୁଧ
ଶାଖେ ଯେ, ଦଉଡ଼ି ଖରେ

ସବେଗେ ତାହାର     ଗଳ୍‌ଗା ଛାଣି ତେଜି
ପଡ଼ିଲ ଚଞ୍ଚଳ ସରେ ।
ତୁରଙ୍ଗମ ସହ     ବୁଡ଼ିଗଲ ବାଳା
ଗମ୍ଭୀର ଅଚ୍ଛୋଦ ଜଳେ
ବିସ୍ମୟେ ଦେଖିଲେ     ଏ ଅଦ୍ଭୁତ ଦୃଶ୍ୟ
ସଙ୍ଗେ ଯେତେ କୁତୂହଳେ ।
ଦେଖୁଁ ଦେଖୁଁ ଏକ     ତାପସ କୁମାର
ଦୀର୍ଘ ଜଟାଜୁଟ ଧାରୀ
ବାହାରିଲେ ଖରେ     ଗମ୍ଭୀର ସଲିଳୁଁ
ସରସୀ ବକ୍ଷ ବିଦାରି ।
ଲାଗିଥିଲା ଶିରେ     ଶୈବାଳ ଦେହରୁ
ପଡ଼ୁଥିଲା ନୀର ଝରି
ଦିଶୁଥିଲେ ଋଷି     ପାଣିଙ୍କ ପ୍ରେରିତ
ସଲିଳ ମନୁଷ୍ୟ ପରି ।
ମହାଶ୍ୱେତା ପାଶେ     ଆସି ତପୋଧନ
କହିଲେ ମଧୁରସ୍ୱରେ
ଗଦ୍‌ଗଦ ବଚନ—     ପୁତ୍ରି ! କହ ମୋତେ
ଚିହ୍ନି ପାରୁଛ କି ଥରେ ।
ସାଷ୍ଟାଙ୍ଗେ ପ୍ରଣମି     କହିଲା ଲଳନା
ହେ କପିଞ୍ଜଳ ଗୋସାଇଁ
ହତଭାଗିନୀକୁ     ବିପଦ ସଙ୍କଟେ
ରଖି ରହିଥିଲ କାହିଁ ।
ଏ କାର୍ଯ୍ୟେ ଅଟକି—     ଥିଲ ଅଜ୍ଞପାଏ
କହ କହ ମୁନିବର
ଆସିଲ ଏ ସ୍ଥାନେ     କେଉଁ ଦେଶେ ଗଢ଼
ପ୍ରିୟସଖାକୁ ତୁମ୍ଭର ।
ସୁଶୀଳାର ଗିର     ଶୁଣି କାଦମ୍ବରୀ
ସହୁ ଯେତେ ପରିଜନ
ବିସ୍ମୟେ ତ୍ୱରିତେ     ରହିଲେ ତାହାଙ୍କ
କଥାକୁ କରି ଶ୍ରବଣ ।

ଭଣିଲେ ତାପସ ସେ ଅପୂର୍ବ କଥା
ଶୁଣ ଗୋ ଚନ୍ଦ୍ରମାମୁହିଁ
ତୁମ୍ଭଙ୍କୁ ଉପେକ୍ଷି ସେ ଦିବ୍ୟ ପୁରୁଷ-
ପଛରେ ଧାଇଁଲି ମୁହିଁ ।
ମୋ କଥାରେ ଥରେ ଉତ୍ତର ନ ଦେଇ
ସେ ପୁଂସ ଖରବେଗରେ
ଉପସ୍ଥିତ ହେଲେ ଯଣେ ଜ୍ୟୋତିର୍ମୟୀ
ବିମଳ ସୁରମାର୍ଗରେ ।
ବିମାନସ୍ଥିରଏ ଚକିତେ ତାହାଙ୍କୁ
ନିରେଖିଲେ ପ୍ରୀତମନେ
ଦିବ୍ୟାଙ୍ଗନାଗଣ ସରସ୍ୱରେ ପଥ
ଛାଡ଼ଦେଲେ ତତ୍‌କ୍ଷଣେ ।
ପଛକୁ ନ ଚାହିଁ କ୍ରମାଗତ ମୁହିଁ
ଚାଲିଲି ତାଙ୍କ ସଙ୍ଗରେ
ଯଥାକାଳେ ସେହି ପ୍ରବେଶିରେ ଯାଇ
ଉଜ୍ଜ୍ୱଳ ଚନ୍ଦ୍ରଲୋକରେ ।
ଚନ୍ଦ୍ରକାନ୍ତମଣି ନିର୍ମିତ ପର୍ଯ୍ୟଙ୍କେ
ପ୍ରିୟସଖୀ ଦେହ ଥୋଇ
ମୋତେ ଚାହିଁ ସେହି କହିଲେ ହେ ତପି
ଚନ୍ଦ୍ର ମୁଁ, ଆକାଶେ ଉଇଁ ।
ବିଶ୍ୱବାସୀଙ୍କର ଉପକାର ପାଇଁ
ନିତକାର୍ଯ୍ୟେ ଥିଲି ରତ
ସବୁଙ୍କୁ ସମାନ ଭବରେ ବିତରି
ପୀୟୂଷରଶ୍ମି ନିରତ
ତୁମ୍ଭ ସଖୀ ପ୍ରିୟା— ବିରହ ବ୍ୟାଧିରେ
ପ୍ରାଣ ଛାଡ଼ିବାର ବେଳେ
ବିନା ଅପରାଧେ ମୋତେ କ୍ରୋଧବଶେ
ମହାଘୋର ଶାପ ଦେଲେ ।
କହିଲେ 'ଅସହ୍ୟ କର ପ୍ରତାପରେ
ରେ ଦୁରାତ୍ମା ଶଶଧର

ବିରହରେ ଚେତା ବୁଡାଇ ବୃଥାରେ
ହରିଲ୍ ପ୍ରାଣ ମୋହର ।
ସେହି ଅପରାଧେ ପୁନଃପୁନଃ ଦୁଷ୍ଟ
ଜନ୍ମଲଭି ମେଦିନୀରେ
ଅନୁରାଗବଶେ ଶାରହେବୁ ପ୍ରିୟା
ଭରିବ ଦୁଃଖବହ୍ନିରେ,
ଜନା ଅପରାଧେ ସେ ମୋତେ ଦୁରନ୍ତେ
ଏସ୍ବେ କଠୋର ଶାପ
କ୍ରୋଧାନ୍ଧ ହୋଇ ମୁଁ ସେହିକ୍ଷଣି ତାଙ୍କୁ
ପ୍ରଦାନିଲି ପ୍ରତିଶାପ ।
ଏଥର ଜନମ ଲଭି ସେହିଁ ଦୁଷ୍ଟ
ସ୍ୱେଗିଲୁ ତୁ ପାମର
ବାରବାର ଜନ୍ମି ସେପରି ଯାତନା
ଲଭିବୁ ଅରକ୍ଷର ।
ଏଣୁବେ ଦୁଷ୍ଟମ ଶାପ ଦେଲି ସିନା
ଯୁବକଙ୍କୁ ରୋଷବଶେ
ସଗ ଭାଙ୍ଗିଲରୁ ଅତ୍ୟନ୍ତ ଯାତନା
ହେଲା ମନେ ଅବଶେଷେ ।
ମୋର କାରଣରୁ ପୁର୍ବେ ଥିଲେ ଯେଉଁ
ଅପ୍ସରା କୁଳ ସମ୍ଭବ
ସେ ଭୁକ୍ତ ଜନମି— ଥିଲେ ଗୌରୀ ନାମ୍ନୀ
ରୂପସୀ ଏକ ଗନ୍ଧର୍ବୀ ।
ତାହାଙ୍କ ଦୁହିତା ମହାଶ୍ୱେତା ଧର୍ମେ
ତାହାର ମନ ସର୍ବଦା
ବଉଛି ଏ ମୁନି କୁମାରଙ୍କୁ ପ୍ରାଣ—
ପଣ ପଦେ ସେ ପ୍ରମଦା
ସେହି କଥା ଶୁଣି ହୃଦୟେ ଜନ୍ମିଲା
ଅତିଶୟ ଅନୁତାପ
ମାନ କି ଉପାୟ ସେଥିକି କେବେତ
ଫେରିବାର ନୋହେ ଶାପ ।

ଯେ ଯାଏ ନୋହିବ ଏଘୋର ପ୍ରବଳ—
ଶାପ କାଳ ଅବସାନ
ସେ ଯାଏ ଏ ମୃତ କଳେବର ଏଥି
ରହୁଥିବ ବିଦ୍ୟମାନ ।
ମୋର ସୁଧାମୟ କରସ୍ପର୍ଶେ କେବେ
ନୋହିବ ହାନି ଏହାର
ଶାପ ଶେଷ ହେଲେ ଏ ପିଣ୍ଡରେ ପୁଣି
ସଞ୍ଚରିବ ପ୍ରାଣ ତାର
ଏବେ ତୁମ୍ଭେ ଯାଇ ଶ୍ୱେତକେତୁ ପାଶେ
ସକଳ କଥା ଜଣାଇ
ଯତ୍ନବାନ ହୁଅ ରକ୍ଷ କଳେବର
ଶାପୁଁ ମୁକ୍ତ ହେବା ପାଇଁ ।
ନିଜାଳଙ୍କ ଋଷି ସର୍ବ ସିଦ୍ଧି ଦଏ
ତାହାଙ୍କର କ୍ରିୟାମାନ
ଶୁଣି ସେ ଅବଶ୍ୟ କରିବେ ଏଥିର
ଅଦ୍ଭୁତ ପ୍ରତିବିଧାନ ।
ଚନ୍ଦ୍ରମା ଆଦେଶେ ଦେବମାର୍ଗେ ଗଲ—
ବେଗକୁ ପ୍ରସାରି ମୋର
ଯାଉଥିଲି ଶ୍ୱେତ— କେତୁ ମହର୍ଷିଙ୍କ
ଦେବାଲାଗି ଏ ଖବର ।
ପଥ ମଧ୍ୟେ ଏକ ବିମାନ-ସ୍ୱାମୀଙ୍କୁ
ଯିବାକାଳେ ଅଲକ୍ଷରେ
ଦୈବବଶେ ଡେଇଁ ଯିବାରୁ ସେ ମୋତେ
ଅନାଇଲେ ସରୋଷରେ ।
'ରେ ଭଣ୍ଡ ତପସ୍ୱି ! ଗର୍ବେ ଅଶ୍ୱପରି
କଲୁ ମୋତେ ଉଲ୍ଲଙ୍ଘନ
ମୋ ଶାପେ ଭୂତଳେ ଜନ୍ମି ଏଣୁ ଅଶ୍ୱ—
ରୂପ ବହ ତୁ ବହନ ।
ତ୍ରାସାକୁଳ ମନେ କୃତାଞ୍ଜଳି ପୁଟେ
କଲି ତାଙ୍କୁ ଅନୁନୟ

ଘଟିଥିଲା ଯେତେ ପୂର୍ବରୁ ବିବରି
କହିଲି ସବୁ ବିଷୟ ।
କ୍ଷିପିଲ୍ ଶ୍ୱେଦେବ ଶୋକେ ଅନ୍ଧ ହୋଇ
ଆଚରିଛି ଯେଉଁ ଦୋଷ
ଶରଣ ମାଗୁଛି ସଦୟେ ଅଧୀନ
ଦୁଷ୍ଟ ପରିହର ରୋଷ ।
ମୋହର ବଚନ ଅବସ୍ଥା ବିଲୋକି
ଦୟା ବହି ବ୍ୟୋମଚର
ଅଶ୍ୱାସେ କହିଲେ କଦାପି ଅନ୍ୟଥା
ନୋହିବ ବାକ୍ୟ ମୋହର ।
ଭୂତଳେ ତୁରଙ୍ଗ ରୂପେ ଅବତରି
ଯାହାର ହେବ ବାହନ
ମରଣାନ୍ତେ ତାର, ଜଳେ ମଜ୍ଜି ପୁଣି
ଲଭିବ ସ୍ୱ ଅପଘନ ।
ଉଜ୍ଜୟିନୀପୁର— ଷଣ୍ଡ ଆଚରନ୍ତି
ଯଜ୍ଞ ପୁତ୍ର କାମନାରେ
ଅବତୀର୍ଣ୍ଣ ହେବେ ଚନ୍ଦ୍ରମା ତାହାଙ୍କ
ତନୟରୂପେ ରସାରେ ।
ତୁମ୍ଭ ପ୍ରିୟସଖା ପୁଣ୍ଡରୀକ ସେହି
ରାଜମନ୍ତ୍ରୀଙ୍କ ଔରସେ
ମନୋରମା ଗର୍ଭେ ଜନମ ଲଭିବେ
ସେ ପୁରେ ସେହି ଦିବସେ ।
ମୋର ଶାପେ ତୁମ୍ଭେ ତହିଁ ତୁରଗମ
ଦେହ ବହି ତପୋଧନ
ଚନ୍ଦ୍ରମା ଅଂଶରେ ଅବତୀର୍ଣ୍ଣ ରାଜ—
ସୁତଙ୍କ ହେବ ବାହନ ।
ବ୍ୟୋମଚରଙ୍କର ବାକ୍ୟ-ଅବସାନେ
ପଡ଼ି ରତ୍ନାକର ନୀରେ
ଅଶ୍ୱରୂପ ଧରି ସ୍ରୋତେ ଭାସି ଭାସି
ଲାଗିଲି ମୁଁ ଯାଇ ତୀରେ

ଅଶ୍ବ ହେଲ ସତ୍ୟ ମାତ୍ର ଜନ୍ମାନ୍ତର
ସଂସ୍କାର ମେଣ୍ଟିଲ ନାହିଁ
ଆଣିଥିଲ ଏଥି ଯୁବାଙ୍କୁ କଳର
ମିଥୁନ ପଛେ ଗୋଡ଼ାଇ ।
ବଶ ହୋଇ ସେହି ଜନ୍ମାନ୍ତର ପ୍ରେମେ
ତୁମ୍ଭ ପ୍ରୀତି ଅଭିଳାଷେ
ଆସିଥିଲେ ସେହୁ ଅଚ୍ଛୋଦ ସରସୀ
ପାଖୁଁ ଏ ଆଶ୍ରମ ପାଶେ ।
ତୁମ୍ଭ ଅଭିଶାପେ ଭସ୍ମ ହୋଇ ସେହୁ
ଛାଡ଼ିଲେ ଦେହୁ ଜୀବନ
ଅନ୍ୟ କେ କୁହନ୍ତୁ ମୋର ସଖା ତୁମ୍ଭ
ପ୍ରଣୟୀ ସେ ପୁଣ୍ଡରୀକ ।"
ଗନ୍ଧର୍ବ ନନ୍ଦନୀ ମହାଶ୍ବେତା ସହ
ଉପସ୍ଥିତ ଯେତେ ନର
ହରଷ ବିଷାଦେ ଶୁଣିଲେ ସକଳ
ଘଟଣାମାନ ପୂର୍ବର ।
ସମ୍ବରିଲ୍ଲ ତହୁଁ ଦୁଃଖେ କାଦମ୍ବରୀ
ତାପସଙ୍କୁ କ୍ଷୀଣ ସ୍ବରେ
ଇନ୍ଦ୍ରାୟୁଧ ସହ ପତ୍ରଲେଖା ଦେବ !
ପଶିଥିଲ୍ଲ ସଲିଳରେ ।
ଇନ୍ଦ୍ରାୟୁଧ ରୂପ ଘୋଡ଼ ତୁମ୍ଭେ ଜଳୁ
ଉଠିଲ ସ୍ବରୂପ ବହି
ପତ୍ରଲେଖା କାହିଁ ସେ କଥା ସଦୟେ
ପାରିବ କି ଦେବ କହି ?
ଉତ୍ତରିଲେ ଋଷି 'ସଲିଳ ଗର୍ଭରେ
ଘଟିଲ୍ଲ ଯେତେ ବୃତ୍ତାନ୍ତ
ଜାଣିନାହିଁ ସବୁ, ଯାଇ ଶ୍ବେତକେତୁ
ପାଖରୁ ହୋଇବି ଜ୍ଞାତ ।'
ଏତେ ବୋଲି ନଭେ କପିଞ୍ଜଳ ଋଷି
ଚହୁଙ୍କ ପଶ୍ଚ୍ୟେ ଉଡ

ଦେଖୁଁ ଦେଖୁଁ କ୍ଷଣେ ଅନନ୍ତ ଆକାଶ—
ଛିନ୍ନ ହେଲେ ଗଲେ ବୁଡ଼ି
ପ୍ରଣୟ ତଡ଼ାଗ ଘଟେ ବରହୁଣୀ
ଦୁଃଖିନୀ ହେବ ନବୀନା
ହୃଦୟ କାନ୍ତକୁ ହରାଇ ସମାନ
ସତ୍ୟକୁ ଭଜିଲେ ସିନା ।
ରହିଲେ ସକଳେ ଉଭୟଙ୍କ ଭର
ସମାନ ଦୁଃଖ ସ୍ୱଜନ
ବୃହତର ସଖ୍ୟ ବନ୍ଧନରେ ସିନା
ବାନ୍ଧିଲେ ଚନ୍ଦ୍ରାନନ ।
ଗନ୍ଧର୍ବ ଅଧିପ ହେବ ଚମ୍ପାଗୋଷ୍ଠୀ
ହା ହା ରେ ଶୋକ ଅଧୀରେ
କୁମାରଙ୍କ ଦେହ ରଖିବାକୁ ସହେ
ତତ୍ପର ହେଲେ ଅଚିରେ ।
ଜଗୁନାହିଁ ସହି ତଳେ ଶୀତ ବାତ
ଉଷ୍ମ ବରଷା ପାଣି
ଏମନ୍ତ ସ୍ଥାନରେ ସତର୍କରେ ମୃତ
ଶରୀର ଥୋଇଲେ ଆଣି ।
ଜୀବତ ପର୍ଯ୍ୟନ୍ତ ସେ ମୂର୍ତ୍ତିକୁ ବାଳା
ପୁଜିଲେ ଭକତିଭରେ
ପାଦଅର୍ଘ୍ୟ ଦେଇ ଚନ୍ଦନ ମଖାଇ
କୁସୁମ ଥୋଇ ଆଦରେ ।
ପୁଣ୍ଡରିକ ଦେବେ ଫଳ ଲଭି ଅଶେ
ଅପ୍ରତ୍ୟକ୍ଷ ମୂର୍ତ୍ତିମାନ
ନର୍ଜୀବ ହେଲେହେଁ ସାକ୍ଷାତ ମୂର୍ତ୍ତିକୁ
କଏ ନ କରଇ ଧ୍ୟାନ ।
ଅହା ରେ ସେ ବାଳା ବିଭୂଷିତ ହୋଇ
ବହୁମୂଲ୍ୟ ଆଭରଣେ
ହର୍ଷୋତ୍ଫୁଲ୍ଲ ନେତ୍ରେ ଆସିଥିଲେ ଧାଇଁ
ପ୍ରିୟତମ ଦରଶନେ ।

ସେ ଏବେ ବିଷାଦେ    ଉଦାସୀନ ମନେ
ତପସ୍ୱିନୀ ବ୍ରତ ବନ୍ଧି
ଏକାକିନୀ ଘୋର    ବନରେ ରହିଲ
ଭୟଙ୍କର କଷ୍ଟ ସହି ।
ବିକଚ କୁସୁମ    ସୁରଭିତ ଧୂପ
ସୁଗନ୍ଧମୟ ଚନ୍ଦନ
ଭୋଗର ସାମଗ୍ରୀ    ଥିଲ ଯା'ର ହେଲ
ବୈରାଗ୍ୟ ରସେ ସେ ମନ ।
ନିର୍ଝରର ଧାର    ହେଲ ତା ଦର୍ପଣ,
ଗିରିଗୁହା ବାସଘର,
ରକ୍ଷକ ହୋଇଲେ    ମହାବୃକ୍ଷ ସଙ୍ଘ,
ଲତାଏ ସଖୀ ନିକର ।
ଘନତରୁ ଶାଖା    ରମ୍ୟ ଚନ୍ଦ୍ରାତପ,
କେକାରବ ବୀଣାସ୍ୱନ,
ବ୍ୟଜନ ଅଭାବ    ଘୁଞ୍ଚାଇଲ ଖର
ଉତ୍ତପ୍ତ ଝଞ୍ଜା ପବନ ।
ସରୋବରେ ମଜ୍ଜି    ସୁପବିତ୍ର ଶ୍ୱେତ—
ଦୁକୂଳ ବନ୍ଧି ସୁଶୀଳା
ପ୍ରିୟତମ ପଦ    ଉତ୍ସଙ୍ଗରେ ଧ୍ୟାନ
ବିଷାଦେ ଦିନ ଯାପିଲ ।
ସନ୍ଧ୍ୟା ଅନ୍ତେ ମି    କ୍ରମେ ସମାଗତ
ହୋଇଲ ଗ୍ରୀଷ୍ମ ସମୟ
ଏବେ ବର୍ଷାକାଳ    ଦୂରେ ଘନଘଟା
ନାଦେ ଉପୁଜିଲ ଭୟ ।
ମୂଷଳ ଧାରରେ    ବରଷିଲ ପାଣି
ଚମକିଲ ସୌଦାମିନୀ
ପ୍ରଚଣ୍ଡ ଧ୍ୱନି ସହ    ଘୋର ବଜ୍ରାଘାତେ
ଉଠିଲ ଥର ମେଦିନୀ ।
ଅବଲମ୍ବି ସାନ୍ଦ୍ର    ଅନ୍ଧାରେ ଆବୃତ୍ତ
ତରୁରୁ ଜ୍ୟୋତିରିଙ୍ଗଣ

ଯାମିନୀର ଏହି ଭୀଷଣ ତମକୁ
ବଳେ ଘୋର ଉଦ୍ଭୀଷଣ ।
ଗିରି ନିର୍ଝରର ଉତ୍ପ୍ଲାବନ ସ୍ୱନ
ଭେକଙ୍କର ଘୋର ରୋଳ
ତାଣ୍ଡବ ମୟୂର ଉଲ୍ଲୂକାଦି ପକ୍ଷୀ
ଝିଂକିଙ୍କ ମହାଚହଳ ।
ଚମକାଉଥିଲା ବିଜନ ବନକୁ,
ସେ ମହାନିଶା ସମୟ
ଦିଶୁଥିଲା ନାହିଁ କାହିଁ କିଛି, ଥିଲା
କେବଳ ଅନ୍ଧାରମୟ ।
ଏକାଳେ ଗ୍ରାମରେ ପୁଂସ ମନ ସୁଦ୍ଧା
ଭୟେ ଯାଉଥିଲା ଥରି
ମାତ୍ର ଏକାକିନୀ ମୃତଦେହ ପାଶେ
ଯାପିଲା ବାଳା ଶର୍ବରୀ ।
ସୂର୍ଯ୍ୟ ଉଇଁବାରୁ ନରେନ୍ଦ୍ର କାନ୍ତର
ପ୍ରଫୁଲ୍ଲ ମୁଖ ସରସ
ବିଗତ ଘଟଣା ସ୍ମରି ବିମ୍ବାଧରୀ
ମାନସେ ଲଭିଲା ତୋଷ ।
ଭାବଇ ଅନ୍ୟଥା ହେବ କି ତ୍ରିକାଳ—
ଦର୍ଶୀ ଦେବତାଙ୍କ ବାଣୀ
ଦୃଷ୍ଟ ଶେଷେ ଭାଗ୍ୟ ନିଶ୍ଚେ ମିଳାଇବ
ପ୍ରାଣ ବଲ୍ଲଭଙ୍କୁ ଆଣି ।
ଏରୂପେ ମହିଳା ମୃତ କାନ୍ତେ ବହି
ସମସ୍ତ ଯାପିଲା ତହିଁ
ଘୋରତର ଗ୍ରୀଷ୍ମ ବରଷା ଅସହ୍ୟ
ଶୀତ ପବନକୁ ସହି ।
ଗନ୍ଧର୍ବ ରାଜନ ରାଣୀ ତେଣେ ପୁରେ
ଦୂତମୁଖୁଁ ସବୁ ଶୁଣି
ଘରେ ନେବାଲାଗି ନକରିଲେ ଅଳି
ତନୟାକୁ ଠଣାଠୁଣି ।

ଅଚ୍ଛୋଦ ତୀରରୁ ପ୍ରତ୍ୟାବୃତ୍ତ ଯେତେ
କୁମାରଙ୍କ ସହଚର
ପାଖରୁ ଯାବତ ବାର୍ତ୍ତାଶୁଣି ଏଣେ
ତାରାପୀଡ଼ ନରେଶ୍ୱର ।
କିଛୁଦିନ ପରେ ମୃତଦେହ ପାଖେ
ପହୁଞ୍ଚି ରାଜଦମ୍ପତି
ପୁତ୍ର ଗୁଣଗୁଣି ନୟନ ନୀରରେ
ପ୍ଳାବିଲେ ଶୋକେ ଧରଣୀ ।
ଗୁରୁଜନଙ୍କର ଆଗମନ ଦେଖି
ମହାଶ୍ୱେତା ସମ୍ମୁଖରେ
ପ୍ରବେଶି ଓଳଗି ହେଲି ସେମାନଙ୍କ
ପଡ଼ିଣ ପାଦପଦରେ ।
ମୃତସ୍ୱାମୀଙ୍କର ପାଖରେ ସହଜେ
ଅନୁମୃତା ହେଲାପର
ଶୋକରେ ବିହ୍ୱଳା ହୋଇ ଅସମ୍ଭାଳେ
ମୂର୍ଚ୍ଛାଗଲେ କାଦମ୍ବରୀ
ନବକିଶଳୟ ସମାନ କୋମଳ
ଶୟନେ ସଦନେ ଶୋଇ
ପୀଡାରେ ଉନିଦ୍ର ହୋଇଥିଲେ ଯେଉଁ
ନୃପବାଳା ଚନ୍ଦ୍ରମୁହିଁ ।
କର୍କଶ ଶିଳାରେ ତାକୁ ମଲାପର
ମୃତପୁତ୍ରସହ ଖୁନ୍ଦି
ବିଳାସବତୀଙ୍କ ହୃଦୟେ ଶୋକର
ସୀମାତ ରହିଲା ନାହିଁ ।
ସସମ୍ଭ୍ରମେ ରାଣୀ ଉଠାଇ ବଧୂକୁ
ବସାଇଲେ ନେଇ କୋଳେ
ଯେତେ ଦେଖୁଥିଲେ ବାରବାର ତେତେ
ଭିଜୁଥିଲେ ନେତ୍ରଜଳେ ।
ବିପିଲେ ମହର୍ଷି ଶୋକ ଗଦଗଦେ
କିକଲୁ କିକଲୁ ବିଧି !

ଏ ଦାରୁଣକଷ୍ଟ ଦେଇ ପାପେ ମୋର
କପାଳରେ ଥିଲୁ ଲହୁ ।
ଆଶାଥିଲି ମନେ ପୁତ୍ରବଧୂ ସହ
ତନୟକୁ ଘେନି କୋଳେ
ସଂସାର ଜଞ୍ଜାଳ ଅବସର ଦିନ
ଯାପିବି ଆନନ୍ଦ ଭରେ ।
ତାହାର ବଦଳେ ବିଲୋକିଲି ସିନା
ସେ ବଧୂ ବୈଧବ୍ୟ ବେଶ
କପାଁ ଏତେକାଳ ରହିଛି ପରାଣ
ପିଣ୍ଡରୁ ନ ହୋଇ ଶେଷ ।
ହୋଇଥାନ୍ତା ଆଜ ଯେବେ ଉଜ୍ଜୟିନୀ
ନଗରୀ ଅଧିକାରିଣୀ
ହାହାରେ ଦଇବ କି ପାପେ ସେ ଏବେ
ବିଷାଦିନୀ ତପସ୍ୱିନୀ ।
ଏହା କହି ରାଣୀ ସ୍ନେହେ ବାରବାର
ମୁଖରେ ଦେଲେ ଚୁମ୍ବନ
ଶୋକ ଅଶ୍ରୁନୀରେ ଧୋଇ ବିଷାଦିନୀ
ବଧୂର ବିଧୁବଦନ ।
ଚେତା ଲଭି ବାଳା ଲଜ୍ଜା ନମ୍ର ମୁଖେ
ପ୍ରଣମିଲା ଗୁରୁଜନେ
ଆଶୀଷି ସକଳେ ଶାପ ଶେଷଯାଏ
ରହିଲେ ପର୍ଣ୍ଣସଦନେ ।
ପ୍ରତିଦିନ ଥରେ ଶୁକନାସ ସହ
ଆସି ତହିଁ କ୍ଷିତିପାଳ
ମୃତ ତନୟର ବଦନ ବିଲୋକି
ହରୁଥିଲେ ଶୋକେ କାଳ ।

---

# ଏକାଦଶ ସର୍ଗ

କହେବଣସ ଶୁକ ଏଥୁ ଅନନ୍ତରେ
ରହସ୍ୟ ଶୁଣ ଭୂପତ
ମହର୍ଷି ଜାବାଳ ସମାପି ତାହାଙ୍କ
ଏମନ୍ତ ସାର୍ଦ୍ଧ ସ୍ୱରତୀ ।
ସହାସ୍ୟେ କହିଲେ ମୋ ଅତେ ସଦପେ
ତର୍ଜ୍ଜନୀ ଧୀରେ ଦେଖାଇ
ପ୍ରାଣ ଛାଡ଼ିଥିଲେ ଯେ ମୁନି ତନୟ
କାମବାଣେ ହାସପାଇ ।
ଶୁକନାସଙ୍କର ଔରସେ ଜନମି
ଯେହୁ ଏ ମର୍ତ୍ତ୍ୟମଣ୍ଡଳେ
ବିହଙ୍ଗ ଯୋନିରେ ପଡ଼ିଥିଲେ ସଖା
ମହାଶ୍ୱେତା ଶାପଫଳେ ।
ସେହି ଏହି ଶୁକ ପୂର୍ବ କୃତ୍ୟରୁ
ଲଭୁଛି ମହାକଷଣ
ଖଣ୍ଡିବାକୁ ଭବେ ସମର୍ଥ ହୋଇବ
କିଏ ବା ସ୍ୱଲ୍ପ ଲିଖନ ।
କେ କହ ପ୍ରବଳ ସ୍ରୋତ ପ୍ରତିକୂଳେ
ଧରଚ ପାରବ ଗତ
କହ୍ନି ଅକର୍ଷଣ ଲଙ୍ଘିବାକୁ ସୁଦ୍ର
ପତଙ୍ଗର କାହିଁ ଶକ୍ତି ।
ଧମ୍ଭରତ ପାଠ ପ୍ରଥମ ପଦକ
ଜାଗରୂକ ହେଲେ ମନେ
କ୍ରମେ କ୍ରମେ ହୁଦେ ସମଗ୍ର ପଦକ
ଯେସନ୍ତେ ଉଦେ ହୁଏ ସରେ ।
ତେସନ୍ତେ ମୁନିକଥା ଅକର୍ଣ୍ଣି ସ୍ମରିଲ
ସକଳ ମୋର ଚିତ୍ତରେ
ଅଧୀତ ପ୍ରାଚୀନ ବିଦ୍ୟାମାନ ଅସି
ନାଚିଲ ରସନାଗ୍ରରେ ।

ସେଦିନ ମନୁଷ୍ୟ ସମ, ଦିବ୍ୟାଙ୍ଗନେ
ହୃଦସ୍ଥଳ ଗଲା ଭରି
ଟଣିଲ୍ ସକଳ, ଜାଗି ସକାଳରେ
ଶଯ୍ୟାରୁ ଉଠିଲି ପରି ।
ଲଭି ନପାରଇ କେବଳ ଦେ ଦେବ !
ମୋର ସେ ନର ଶରୀର
ମାତ୍ର ମାନବର ବୁଦ୍ଧି ବୃତ୍ତି ସହ
ଲଭିଲି ମାନବ ଗୀର ।
ପୁଙ୍ଗବର ସଖା ଚନ୍ଦ୍ରାପୀଡ଼ ପ୍ରତି
ଜନ୍ମିଲା ମହା ଆଗ୍ରହ
ହୃଦକାନନକୁ ସ୍ୱନ୍ତ ହୁତାଶନେ
ଜଳାଇଲା ଅହରହ ।
ମହାଶ୍ୱେତା ପ୍ରତି ସେ ରୂପ ଅରୂଢ଼
ହେନ୍ତ ଉପୁଜିଲା ମନେ
ହୃଦୟେ ବିଷମ ଉତ୍କଣ୍ଠା ଜନ୍ମିଲା
ତାର ରୂପ ଦରଶନେ ।
ସ୍ୱସ୍ୱରୂପ ତାର ବିମଳ ଆନନ
ଭ୍ରମିଲା ମୋର ନୟନରେ
ତୁଳନା ନୁହଇ ଶତ ଚନ୍ଦ୍ରବିମ୍ବ
ଯାହା ସଙ୍ଗ କିଅଁତରେ ।
ପିତା ମାତା ପୁଣି ନୃପ ତାରାପୀଡ଼
ମହିଷୀ ବିଳାସବତୀ
ପ୍ରିୟସଖା କପି— ଛଳ ସଭଙ୍କର
ଦର୍ଶିଲି ଦିବ୍ୟ ମୂରତି ।
ସେକାଳେ ମୋ ମନ ହେଉଥିଲା ଯାହା
ବଚନେ କହି ନୁହଇ
ନବନବ ଭାବ ହୃଦେ ଉଠି ହୃଦେ
ଯାଉଥିଲା ଲୀନହୋଇ ।
ନତବଦନରେ କମଳ କାନନ
ଯେମନ୍ତ ମନ୍ଦସମୀରେ

ଦେଖେ ମୁଖଶୋଭା    ନୟାରେ ରଖିଛି
ଭଲ୍ଲ ବନସ୍ଥଳୀରେ ।
ତୁମ୍ଭ ଅନୁଗ୍ରହେ    ପୂର୍ବକଥା ଦେବ !
ଉଦିଲା ସ୍ମୃତିରେ ମୋର
ପକ୍ଷୀଦେହେ ହେଲି    ଅଦଭୁତ ରୂପେ
ଜ୍ଞାନସ୍ଥ ମାନବର ।
ଅପ୍ସରୀମାନଙ୍କ    ମଧୁର ମୂରତି
ନାଚିଲା ମାନସ ପଥେ
ସେମାନଙ୍କ ଗୀତ୍    ଅଚ୍ଛେଦରେ ପ୍ରାଣ
ଆକୁଳ ହୁଏ ନିରତେ ।
ବିଶେଷେ ମୋ ମୃତ୍ୟୁ    ବାଣୀ ଶୁଣୁ ଶୁଣୁ
ଫାଟିଲା ଯାହାଙ୍କ ଉର
ସେ ପ୍ରିୟ ସଖାଙ୍କ    ଅଦର୍ଶନେ ପ୍ରାଣ
ହେଉଛି ଅତି ଅଧୀର ।
ତାହିଁ ଜନ୍ମିଛନ୍ତି    ଦ୍ୱେ ଦେବ ଏବେ ସେ
କହ ମୋତେ ଦୟା କରି
ବିହଙ୍ଗ ହେଲେହେଁ    ସବୁ ପାଶୋରିବି
ତାହାଙ୍କ ସଙ୍ଗତେ ରହି ।
କ୍ଷଣିକେ ଜାବାଲି    ସ୍ନେହ ପରିପୂର୍ଣ୍ଣ
କୋପଗର୍ଭିତ ବଚନେ
"ଏ ଘୋର ଦୁର୍ଦ୍ଦଶା    ଲଭିଛୁ ବିହଙ୍ଗ
ଯେ ପଥ ଅବଲମ୍ବନେ ।
ସେ ବାଟେ ଯିବାକୁ    ଅର୍ବାଚୀନ ମନ
ବଳାଉଛୁ କାହିଁପାଇଁ
ନପାରୁଛୁ ବୁଝି    ପୁଣି ନଦାରୁଣ
ଦୁଃଖରେ ପଡ଼ିବୁ ଯାଇ ।
ପକ୍ଷକଠୁ ଦେହେ    ସେମାନଙ୍କ ବାସ
କହିବ ସବୁ ବତାଇ
ସହଜି ବସ୍ତୁବ    ହରତ ସହତ
ବିହବାଲ ରହ ଯାଇ ।

କଥା ହେଉଁ ହେଉଁ    ଏରୂପେ ସୁଖରେ
ବିଭାବରୀ ହେଲା ଶେଷ
ପାଟଳ ବର୍ଣ୍ଣରେ    ରଞ୍ଜି ପୂର୍ବାକାଶ
ଉଦିଲେ ଦେବ ଦିନେଶ ।
ପମ୍ପା ସରୋବରେ    ଉଠିଲ ଶୁଭିଲା
କଳହଂସ କଳରବ
ପ୍ରାତଃ ସମୀରଣ    ମନ୍ଦଲ ସଧୀରେ
ଦୋଳାଇ ତରୁ ପଲ୍ଲବ ।
ଦେଖୁ ଦେଖୁ କ୍ଷଣେ    ନୀଳ ନଭସ୍ଥଳେ
ଲୁଚିଗଲେ ତାରାସାଇଁ
ତାରକା ନିକର    ଉଷାର ଆରକ୍ତ
କିରଣେ ଗଲେ ମିଳାଇ ।
ଦୂର୍ବାଦଳ ପରେ    ନିଶାର ଉଜ୍ଜ୍ୱଳ
ଶିଶିର ଜଳର ପୁଞ୍ଜ
ପ୍ରଭାତ ଆଲୋକେ    ସ୍ଥୂଳ ମୁକ୍ତାଫଳ
ପରାଏ ପାଇଲା ଶୋଭା ।
ହୋମବେଳ ଦେଖି    ଉଠି ମହାଋଷି
ଆରମ୍ଭିଲେ ନିତ୍ୟକର୍ମ
କର୍ତ୍ତବ୍ୟନିଷ୍ଠାର    ପଥେ ବାଧା କାହିଁ
ସାଧିବାକୁ ନିଜଧର୍ମ
ସ୍ନେହେ ମୋତେ ଘେନି    ହରିତ ଝୁଲାଇ
ନିଜର ପର୍ଣ୍ଣ ସଦନେ
ଅନ୍ୟତ୍ର ବାହାରେ—    ଗଲେ ଦୈନନ୍ଦିନ
ପ୍ରାତଃକୃତ୍ୟ ସମାପନେ ।
ଚଣ୍ଡାଳ ଏକାକୀ    ସେ କୁଟୀରେ ରହି
କ୍ଷଣକାଳ ମନେ ମନେ
ଏ ଜନ୍ମରୁ ପୁଣି    କି ଦଶା ଲଭିବ
ଭାଗ୍ୟଚକ୍ର ଆବର୍ତ୍ତନେ ।
ସେ ଦେହ ପାଇ କି    କାର୍ଯ୍ୟ ଯୋଗ୍ୟ ହେବ
ଉଚ୍ଚ ଉଦ୍ଦେଶ୍ୟତର

ଗଳଦେଶେ ଯେନ୍ତେ ଦୁଗ୍ଧ ରସହୀନ
ଲମ୍ବ ସ୍ତନ ଛାଗଳର ।
ଅନେକ ସୁକୃତ ଯୋହ୍ଲେ ନମିଲେ
ମାନବକୁଳେ ଜନମ
ଜ୍ଞାନରାଶି ସହ ଯହିଁ ବିଦ୍ୟମାନ
ବିବିଧ ପୁଣ୍ୟ କରମ ।
ନର ହୋଇ ଜନ୍ମ— କୁଳେ ଜନ୍ମହେବା
ସୌଭାଗ୍ୟ ଚିହ୍ନ କେବଳ
ବ୍ରାହ୍ମଣକୁ ଲଭି ଋଷି ହେବା ପୁଣି
ମହା ତପସ୍ୟାର ଫଳ ।
ଏ ସବୁ ଏକାଠେ ପାଇଥିଲି ମୁହିଁ
ହରାଇଛି ଭାଗ୍ୟଦୋଷେ
ବାଳକ ଯେସନ ବହୁମୂଲ୍ୟ ନିଧି
ବିସର୍ଜଇ କ୍ରୀଡ଼ାକ୍ଷଣେ ।
ଉଦ୍ଧରିବ ଏଥୁ କେମନ୍ତେ ଉପାୟ
କିଛି ଦିଶୁନାହିଁ ଆଉ
ନଳୀ ଫୁଟି ଗଲା ଗଳିଗଲେ ତାହା
ଲେଉଟି ଆସିବ କାହୁଁ ।
ଜନ୍ମାନ୍ତରଗତ ବନ୍ଧୁମାନଙ୍କର
ସାକ୍ଷାତ ପାଇବ କାହିଁ
ସେ ଚିନ୍ତା ଅନ୍ତରେ ହୃଦୟ ସତତ
ଖଣ୍ଡିହେଲା ନିରନ୍ତର ।
ମଣିଲି ଏ ଦେହେ କିଛି କାର୍ଯ୍ୟ ନାହିଁ
ଜୀବନ ଛାଡ଼ିବା ଶ୍ରେୟ
ସେ କାଳେ ମଣ୍ଡପ ! ମୃତ୍ୟୁରୁ ଜୀଇଁବା
ଶତଗୁଣେ ହେଲା ହେୟ ।
ଯୋଗ୍ୟସ୍ଥାନ ଏହୁ ପ୍ରାଣକୁ ଧିକ୍କାର
ଗାଳି ଦେଉଥିଲି ଦୁଃଖେ
ସହସା ହରିତ କପିଞ୍ଜଳ ସହ
ପ୍ରବେଶିଲେ ହାସ୍ୟମୁଖେ ।

ପ୍ରିୟ ବାନ୍ଧବଙ୍କୁ ନିରେଖି ହୃଦୟ
ନାଚଇ ଆନନ୍ଦଭରେ
କନ୍ଦୁକ ଯେମନ୍ତ ନାଚେ କ୍ରୀଡ଼ାରତା
କରସ୍ୱେବୁ କରୁଁ କରେ ।
ଉତ୍କଣ୍ଠା ଅକୂଳେ ସନ୍ନିକଟେ ଆସି
ପ୍ରବେଶିଲେ ସଖା ମୋର
ବଲେକ୍ତ ବେନଙ୍କ ନୟନ୍ତୁ ବହିଲ
ଆନନ୍ଦାଶ୍ରୁ ଦରଦର ।
ବହୁଦିନୁ ଦେବ ! ଦେଖି ନଥିଲି ମୁଁ
ସେ ଦିବ୍ୟମୂର୍ତ୍ତି ସୁଢ଼ଳ
ଇଚ୍ଛାହେଲା ଗାଢ଼ ଆଲିଙ୍ଗନେ ଥରେ
କରନ୍ତୁ ହୃଦ ଶୀତଳ ।
ମନଭାବ ବୁଝି ବନ୍ଧୁଷଣ ସଖା
ହୃଦୟରେ ତୋଳି ଧରି
ଦୁରବସ୍ଥା ଦେଖି କାନ୍ଦିଲି ଅଥୟେ
ଅବୋଧ ବାଳକ ପରି ।
ବଚନରେ କହି ନୁହଇ ସଜନ !
ବନ୍ଧୁମିଳନ ଯେ ସୁଖ
ତା ସଙ୍ଗ ତୁଳନା ନୁହଇ କଦାପି
ପୂର୍ଣ୍ଣିମା ଚନ୍ଦ୍ର ମୟୂଖ ।
ପ୍ରବୋଧି କହିଲି ମୋହପର ସଖେ
ତୁମ୍ଭେତ ଅଜ୍ଞାନ ନୁହ
କାହିଁକି ସୁଧୀର ମାନସ ତୁମ୍ଭର
ଅଧୀର ହେଉଛି କହ ?
ସ୍ୱଭାବେ ଗମ୍ଭୀର ପ୍ରକୃତ କଦାପି
ନ ହୁଅଇ ବିଚଳିତ
ତରଙ୍ଗରେ ବାଲି— ବନ୍ଧ ସିନା ସ୍ୱର୍ଗେ
ଶିଳା ସ୍ୱର୍ଗଇ କି ମିତ ?
ଧୈର୍ଯ୍ୟ ଧରି ବସି ଶ୍ରାନ୍ତି ପରହରି
କୁଶଳ କହ ତାହର

ଏହୁ ହତଭାଗ୍ୟ ତନୟ କି କେବେ
ପଡ଼ଇ ମନେ ତାଙ୍କର ?
ଶୁଣି କି ବୋଇଲେ ମୋର ଏ ଦାରୁଣ
ପୂର୍ବର ଯେତେ ଚରିତ
ଜଣପାଏ ମନେ ମନେ ହୋଇଥିବେ
ଉଗ୍ର ସେ ଅତ୍ୟ କୁପିତ ।
କିଏ ନଜାଣଇ ଅପଥରେ ଯେବେ
ତନୟ କରଇ ଗତି
ଷ[illegible] ସ୍ନେହାସ୍ପଦ ହେଲେହେଁ ଗୁରୁ ଏ
ତା ପ୍ରତି ରୁଷ୍ଟ ହୁଅନ୍ତି ।
କୁଶାସନେ ବସି ହରିତ ପ୍ରଦତ୍ତ
ଜଳେ ଧୋଇ ମୁଖ ହାତ
ନବେଦିଲେ ସଖା ଅଗ୍ରମେ ଉଛନ୍ତି
କୁଶଳେ ତୁମ୍ଭର ତାତ ।
ଧ୍ୟାନବଳେ ଜାଣି ଅମ୍ଭମାନଙ୍କର
ସକଳ ଘଟନାମାନ
ଫେଣ୍ଡିବାକୁ ତାହା ସାଧୁଛନ୍ତି ଏକ
ଦଇବୀ ପ୍ରତିବିଧାନ ।
ସେ ପବନକିଯ୍ୟା ପ୍ରଭାବେ ଘୋଟକ
ରୂପ ମୁହିଁ ପରହର
ଇନ୍ଦ୍ରପୁରେ ତାଙ୍କ ଅଗେ ଉପସ୍ଥିତ
ହୋଇଥିଲି ଡର ଡର ।
ମୋତେ ଦେଖି ତାତ ନକଲ କହିଲେ
ସ୍ନେହେ ରସ କପିଞ୍ଜଳ ।
ଦୈବ ପ୍ରତିକୂଳେ ଉଠିଅଛ ଯେଉଁ
ପ୍ରଚଣ୍ଡ ଶାପ ଅନଳ ।
ସେଥିପାଇଁ ତୁମ୍ଭ— ମାନଙ୍କର ତିଳେ
ନାହିଁ କିଛି ମାତ୍ର ଦୋଷ
କିଏ ଘଟରେଖି ପାରବ ଯେବେହିଁ
ବିଧାତାର ହେବ ରୋଷ ।

ପୂର୍ବେ ଜାଣି ମୁଁ ଯା   ନଭେଦ ଏପାଏ
ପ୍ରକାର ସେ ଶାପର
ସେଥିଲାଗି ସିନା   ବୁଝିବାକୁ ଗଲେ
ହୋଇଛି ତ୍ରୁଟି ମୋହର ।
ଏବେ ପୁଣ୍ୟଶୀଳ   ଆୟୁବୃଦ୍ଧି ପାଇଁ
କରନ୍ତି ଯଜ୍ଞ ଆରମ୍ଭ
ଶେଷ ହେବା ପାଇଁ   ସେ କାର୍ଯ୍ୟର ଅଛି
ନାହିଁତ ବହୁ ବିଳମ୍ବ ।
ସେ କର୍ମ୍ମ ସରିବା—   ଯାଏ ଥାଅ ଏଥି
ନୋହି ତିଳେ ବିଚଳିତ
ରୋଗର ସଙ୍କଷ୍ଟ   ଅବସ୍ଥା ନ ବୁଝି
ଚିକିତ୍ସା ନୁହେଁ ଉଚିତ ।
ତୁମ୍ଭ ପ୍ରିୟବନ୍ଧୁ   ଶୁକନାଶ ମଧ୍ୟେ
ଜନ୍ମିଛନ୍ତି ଏବେ ପାଇ
ନଯୁକ୍ତକ ବୟ !   ଫେରାଇ ଅଣିବା
ଲାଗି ତାହା ଶକ୍ତ ନାହିଁ ।
ବନ୍ଧୁ ସମୀପକୁ   ଗଲେହେଁ କଦାପି
ପାରିବକି ତାଙ୍କୁ ଜାଣି
ସେ ମଧ୍ୟ ତୁମ୍ଭଙ୍କୁ   ପ୍ରିୟସଖା ବୋଲି
ନପାରିବେ ଅନୁମାନ ।
ଏଣୁ ସେ ଆଗରୁ   ଯାଗ ଶେଷଯାଏ
ବିଷାଦ ବ୍ୟାକୁଳ ମନେ
ତାତଙ୍କ ଆଜ୍ଞାରୁ   ଅନାର୍ଦ୍ର ଏ ଯାଏ
ରହିଥିଲି ତପୋବନେ ।
ଆଜି ପ୍ରାତଃକାଳେ   ତାଙ୍କ ପିତାମୋତେ
ଆଦେଶିଲେ ସସ୍ନେହରେ
''ତୁମ୍ଭ ସଖା ବସ   ରହିଛନ୍ତି ଏବେ
ଜାବାଳିଙ୍କ ଆଶ୍ରମରେ ।
ପୂର୍ବବ ଜନ୍ମର   ବୃତ୍ତାନ୍ତ ସକଳ
ଆସିଛି ତାଙ୍କ ସ୍ମରଣେ

ଦୁଷ୍ମନ୍ତଙ୍କ ମନେ    ଶକୁନ୍ତଳା ଯଥା
ମୁଦ୍ରିକାର ଦରଶନେ ।
ତୁମ୍ଭଙ୍କୁ ଦେଖିଲେ    ଅନାୟାସେ ସେହି
ପାରିବେ ଏକଥି ଚିହ୍ନି
ମେଘ ଆବରଣ    ଅନ୍ତର୍ହିତ ହେଲେ
ଚନ୍ଦ୍ରକୁ ଯଥା ଯାମିନୀ ।
କହିବ ତାହାଙ୍କୁ    ଶାପମୁକ୍ତ ହେବ
ଏହି ସଙ୍କାର୍ଯ୍ୟ ଶେଷେ
ଏଣୁ ଯେହ୍ନପାଏ    ମହର୍ଷି ଆଶ୍ରମେ
ଥିବ ତପସୀ ବେଶେ ।
ତାଙ୍କ ମାତା ସୁନ୍ଦା    ପ୍ରିୟ ଜନସ୍ୱର
ଭବଷ୍ୟ ଶୁଭକାରଣେ
ମୋ ସହିତ ମିଶି    ସାଧୁଛନ୍ତି ସେହି
ଧର୍ମକର୍ମ ଅନୁକ୍ଷଣେ ।
ଏସ୍ୱେ ଶ୍ୱେଦେବ !    ଦୁହେଁ ଦୁହିଙ୍କର
ବିଗତ ଯେତେ ଘଟଣା
ଶୁଣି ଶୁଣି ପୁଣି    ପୁଣି କି କହିବ
ଲଭିଲ୍ଁ , ଯେତେ ଯନ୍ତ୍ରଣା ।
'ଯାଗ ଶେଷ ଯାଏ    ଚୁପ ମଠେ ରହିବା
ଲାଗି' ଉପଦେଶ ଦେଇ.
ଧୀରେ ଧୀରେ ଉଠି    ସଖା ଗଗନର
ବକ୍ଷରେ ଗଲେ ଉଭେଇ ।
ସେଦିନୁ ଆଦର    ସ୍ନେହେ ଯତ୍ନେ ମୋତେ
ପାଳଲେ ହରତ ଯକ୍ଷ
କମେ ପକ୍ଷଉଠି    ସଧୀରେ ଉଡ଼ିବା
ନିମନ୍ତେ ହେଲି ଶକତ ।
ଝୁଲ୍ଲି ଝୁଲ୍ଲି ଧୀରେ    ଖଣ୍ଡେ ଉଡ଼ା ଦେଇ
ନବେଶିଙ୍କର ପାଖରେ
ଏକ କୁଟୀରରୁ    ଉଡ଼ ବସୁଥିଲି
ନିଃଶଙ୍କେ ଅନ୍ୟକୁଟୀରେ ।

ଫଲଭନ ଅନ୍ତେ　　　　ଆଶ୍ରମର ସ୍ଥିର
　　ପାଶରେ ଲଗିଲି ବୁଲି
ଏଣିକି ସେ ଗଛେ　　　　ଉଡ଼ି ଖାଉଥିଲି
　　ପରିପକ୍ୱ ଜମ୍ବୁକୋଳ ।
ଏବେ ମହାଶ୍ୱେତା　　　　ଆଶ୍ରମେ ଯିବାକୁ
　　ବାହାରିଲି ଅକସ୍ମାତ
ନ ସହି ହୃଦୟେ　　　　ତାହାର ପ୍ରବଳ
　　ବିଚ୍ଛେଦର ପ୍ରତିଘାତ
ପ୍ରଣୟ ଆବେଶେ　　　　କହି ନବସ୍ୱର
　　ଆଖି ଗୁଳ ପକ୍ଷଯୋଡ଼ି
ଉତ୍ତର ଦିଗକୁ　　　　ଲକ୍ଷି ଅନାୟାସେ
　　ବହାୟସେ ଗଲି ଉଡ଼ି ।
ଉଡ଼ିବା ଯେମନ୍ତ　　　　ଅଭ୍ୟାସ ନଥିଲା
　　ଏଣୁ କିଛିଦୂରେ ଯାଇ
ପିପାସା ବେଗରେ　　　　କଣ୍ଠ ଶୁଖିଗଲା
　　ଅତି ଶ୍ରମକ୍ଳାନ୍ତ ପାଇ ।
ବାଟେ ସରୋବର　　　　ସନ୍ନିକଟେ ଆସି
　　ମଞ୍ଜୁଳ ଜମ୍ବୁ ନିକୁଞ୍ଜେ
କିଛିକ୍ଷଣ ବସି　　　　ଧକମାରିଲି ମୁଁ
　　ତାରବାହୁ ଛଇ ପୁଞ୍ଜେ
ସୁସ୍ୱାଦୁ ସୁମନ୍ଦ　　　　ସେହି ଫଳ ଭକ୍ଷି
　　ପିଇ ସୁଶୀତଳ ପୟ
ଚଞ୍ଚୁପୁଟେ ଧୋଇ　　　　ଶେଷରେ ନିଦ୍ରାରେ
　　ଅଙ୍କରେ ନେଲି ଆଶ୍ରୟ ।
ଚମକି ସହସେ　　　　ଚେଇଁ ଦେଖିଲି ମୁଁ
　　ହୋଇଛି ଦଣ୍ଡଆନାୟେ (୧)
ସ୍ୱପ୍ନେ କି ଜାଗ୍ରତେ　　　　ଥିଲି ତାହା ବୁଝି
　　ନ ପାରିଲି ଦଣ୍ଡେ ଯାଏ ।

(୧) ଜାଲ ।

ଦେଖିଲି ଅଗ୍ରେ ଘୋରମୂର୍ତ୍ତି ବ୍ୟାଧ
ସେ ହୋଇ ବଦ୍ଧଠାଲେ
ତୁଣ୍ଡ ହି ତହାସ୍ୟେ ଦେଖୁଛି ବଦାଗ୍ନି
ବଦ୍ଧଠଦଶନ ମାଳେ
ନିଷାଦର କ୍ରୂର ଅକୁଣ୍ଠ ବଳେକି
ଧରିଲା ମୋ କଳେବର
ଦୁରନ୍ତେଶ ଦେବ ! ଏତା ଭୋଳକରେ
ପିଣ୍ଡ୍ର ଅଶା ପରାଣର ।
ବନସ୍ତେ ତାହାକୁ ବନ୍ଧିଲ ବାନ୍ଧିକି
ଜାଲେ ଜନ୍ତାଙ୍କୁ ସଙ୍ଗ
ମାଂସଲୋଭେ ଯେବେ ଧଇଲୁ, ପ୍ରଥମୁଁ
ଜାଣିଲୁ ନାହିଁ କପାଇ ।
କୌତୁକ ନିମନ୍ତେ ବାନ୍ଧିଥିଲେ ଏବେ
ସଇଛି ତୋର କୌତୁକ
ଛଡ଼ପଥ ବନା ଅପରାଧେ କିପାଁ
ବଢ଼ାଉଛୁ ମୋର ଦୁଃଖ ।
ପ୍ରିୟଜନଙ୍କର ଅଦର୍ଶନେ ଏଣୁ
ପ୍ରାଣ ହୁଏ ଉତ୍କଣ୍ଠିତ
ତୁଚ୍ଛ ମଧ୍ୟ ପ୍ରାଣୀ ଜାଣୁଥ ବରଷ୍ଣି
ପ୍ରାଣୀମାନଙ୍କର ଚିତ୍ତ ।
ଉତ୍ତରିଲା ବ୍ୟାଧ କର୍କଶ ସ୍ୱରରେ
ଜାଣରେ ମୂଢ଼ି ଚଣ୍ଡାଳ
ମାହ ତୋ ସାମାନ୍ୟ ମାଂସ ଲୋଭ ଅଶେଷ
ପାଣ୍ଡ ନଥିଲ ଏ ଜାଲ ।
ଆମ୍ଭମାନଙ୍କର ପାଳକ ପକ୍ଷ୍ମଣ (୨)
ପ୍ରଦେଶର ଅଧିପତି
ସର୍ବ ସୁଲକ୍ଷଣା ତାହାଙ୍କର ଏକ
କୁମାରୀ ବର ଅଛନ୍ତି ।

---

(୨) ଦେଶର ନାମ ।

ଯେମନ୍ତ ସୁନ୍ଦରୀ ତେମନ୍ତ ଗୁଣୀଳା
ସେ ଚଣ୍ଡାଳ ରାଜକନ୍ୟା
ରୂପେ ଗୁଣେ ବାଳା ବନିତା ମଣ୍ଡଳେ
ସକଳରୂପରେ ଧନ୍ୟା
ଶୁଣିଥିଲେ ସେହୁ ଏକ ଶୁକ ଅଛି
ଜାବାଲି ମୁନି ମଠରେ
ସେ ପକ୍ଷୀ ଉତ୍ତମ କଥା କହୁ ପାରେ
ମନୁଷ୍ୟମାନଙ୍କ ସ୍ୱରେ
ଶୁଣିଲି ଜନରୁ କୁତୂହଳେ ସେହୁ
ବିଦୁଷୀ ହ୍ୱାଡ଼ନନ୍ଦନା
ତାହାକୁ ଧରିବା ପାଇଁ ଦେଇଛନ୍ତି
ପୁରସ୍କାରର ଘୋଷଣା ।
ତୁମ୍ଭ ସେହି ଶୁକ ଧରିବାକୁ ମୁହି
ଖୋଜୁଥିଲି ହରବରେ
ଅନୁକୂଳଭାଗ୍ୟ ଭେଟାଇଛି ଆଜି
ନେଇଦେବି ତାଙ୍କ କରେ ।
ପୁରସ୍କାର ସହି ବହୁ ଧନରତ୍ନ
ଲଭିବି କରିଛି ଆଶ
ସ୍ୱାମୀ ମନୋରଥ ପୂର୍ଣ୍ଣିଲାଗି ସଦା
ଉତ୍ସୁକ ନୁହେ କି ଦାସ ?
ସେ କନ୍ୟା ତୋହର ବାନ୍ଧିବା, ରଖିବା,
ଅଥବା ଛାଡ଼ିବା ପ୍ରଭୁ
ତାଙ୍କ କୃପା ହେଲେ ମିଳିପାରେ ତୋତେ
ମୁକ୍ତି ସ୍ୱାଧୀନତା ସବୁ ।
ଚଣ୍ଡାଳର ବାକ୍ୟେ ଢପାଦେ ବିଦୀର୍ଣ୍ଣ
ହେଲା ମୋ ହୃଦୟସ୍ଥଳ
ଫାଟିଯାଏ ଯଥା ଉତ୍ତପ୍ତ କାଚରେ
ପଡ଼ିଲେ ଛିଞ୍ଚ ଜଳ ।
ଚଳିଲି ମନରେ ଫଙ୍ଗାରେ ସହଳ
ଠାରୁ ମୁହିଁ ଭାଗ୍ୟହୀନ

ଦୁର୍ନିବାର ଚନ୍ତା ହୁତାଶନେ ଦଗ୍ଧ
ହେଉଛ ରଜନୀ ଦିନ ।
ପ୍ରଥମରେ ଥିଲି ତପସ୍ୟା କରତ
ଋଷି ଦିବ୍ୟଲୋକବାସୀ
ତହୁଁ ସାଧାରଣ ନର ହେଲି ଏହୁ
ପୃଥିବୀ ତଳକୁ ଆସି ।
ପଡ଼ିଲି ବାୟୁରେ ଶୁକଜାତି ମଧ୍ୟେ
ଭାଗ୍ୟଦୋଷେ ଅବଶେଷେ
ପିଞ୍ଜର ଭିତରେ ଦିନ ହରିବି ମୁ
ଏଣିକି ଚଣ୍ଡାଳ ଦେଶେ ।
ଚଣ୍ଡାଳ ପିଲଙ୍କ କ୍ରୀଡ଼ନକ ହୋଇ
ସେ ପଲ୍ଲୀରେ ଅନୁକ୍ଷଣ
ଏ ଦେହ ରଖିବି ପିନା ଖାଇ ଖାଇ
ମ୍ଲେଚ୍ଛ ଅପବିତ୍ର ଅନ୍ନ ।
ହା ମାତଃ ମୁ କିପାଁ ଜନମ ପୂର୍ବରୁ
ମଲି ନାହିଁ ତୋ ଉଦରେ
ହେ ପିତା ଏ କଷ୍ଟ ସହୁ ହେଉ ନାହିଁ
ରକ୍ଷା କର ଆସି ଥରେ ।
ହେ ବିଧାତା ତୁମ୍ଭ ମାନସରେ ସବି
ଥିଲା ଏହି ଅଭିଲାଷ
ଋଷି କୁମାରକୁ ବାଡ଼ିଦେବ ନେଇ
ଚଣ୍ଡାଳ ଗୃହରେ ଗ୍ରାସ ।
ଏତିକେ ବହୁତ କାନ୍ଦି କାନ୍ଦି ମୁହିଁ
ପୁଣି ଚଣ୍ଡାଳକୁ ଚାହିଁ
ବିନୟ ବଚନେ ନିବେଦି ମଧୁରେ
ଧୀରେ କହିଲି ହେ ଭାଇ,—
'ଦିବ୍ୟଲୋକ ବାସୀ ମୁହିଁ ଜାତଶ୍ରେଷ୍ଠ
ଜାବାଲି ମୁନି କୁମର
କିପାଁ ବାଡ଼ଘରେ ନେଇ ଅପବିତ୍ର
କରିବୁ ଏ କଳେବର ।

ଛଡ଼ଦଅ ମୋତେ ତୋହର ସପକ୍ଷେ
ହୋଇବ ପୁଣ୍ୟ ସଞ୍ଚୟ
ପାଦେପଡ଼ି ପୁନଃ ପୁନ ଏହୁ ସ୍ୱରେ
କଲି କେତେ ଅନୁନୟ ।
ଦୟା ନ ଜନ୍ମିଲା ତଥାପି ପାଷାଣ୍ଡି
ପାଷାଣ ଅନ୍ତଃକରଣେ
କୁକ୍କୁର ଲାଙ୍ଗୁଳ ସଳଖ ହୁଅଇ
କେବେ କି ? ତୈଳମର୍ଦ୍ଦନେ ।
କହିଲା ପାମର ନ ଶୁଣିଲୁ ପର
ପ୍ରକଟାଇ ମୁଖଭଙ୍ଗି
ପରାଧୀନ ବ୍ୟକ୍ତି କେବେ କି ସ୍ୱାମୀର
ଆଦେଶ ପାରଇ ଲଙ୍ଘି ?
ବନ ଲଣ୍ଠକାର ସ୍କନ୍ଧେ ପକ୍ଷବେଣୀ
ବାନ୍ଧି କ୍ରୂର ମନସୁଖେ
ଚଳିଲା ନିଷ୍ଠୁରେ ବାଗୁରା ସହିତେ
ହାଡ଼ସାହି ଅଭିମୁଖେ
କିଛିଦୂର ଯାଇ ଦେଖିଲି ଗୃହର
ଅଗେ ବସି ହାଡ଼ମାଳ
କେ ଖାଳେ(୧) କାଣ୍ଡିଆ(୨) କିଏ ଗୁନ୍ଥୁଥିଲା
ପକ୍ଷୀ ଧରିବାକୁ ଜାଲ ।
ଦେଉଥିଲା କିଏ ଶିଳେ ଘଷି ଘଷି
ଥୁନ୍ତାଠେଙ୍ଗିଅରେ ଶାଣ
କିଏ ଛାଉଁଥିଲା ପରପଙ୍କ କରି
ଗୋରୁର ଚର୍ମେ ନିଶାଣ ।
ଭଙ୍ଗି ବାଉଁଶର ପତାରେ କେ ଅବା
ଗୁନ୍ଥୁଥିଲା ବୋଝଡ଼ାଲା
କାଟୁଥିଲା କିଏ ପାଣି ବୋହିବାକୁ
ସୁଦୀର୍ଘ କାଠଙ୍ଗନଳା

(୧) ଖାଳିବା ଅର୍ଥ ନିର୍ମାଣ କରିବା, ଦେଶଜ । (୨) ଯଠାବାଠି

ହସ୍ତେ ଧରିଥିଲ    ଟାହ୍ମଣର ସହ
କିଏ ବା ଚଣ୍ଡକୋଦଣ୍ଡ
ରାଜୁଥିଲ ବାହା    ହସ୍ତରେ ପବଣ
ନାଶକାରୀ ଲୌହଦଣ୍ଡ ।
ସହିଙ୍କ ଅବାର    ବକଠାଳ ପୁଣି
ଝଣୁଥିଲ ଝଙ୍ଖଣ
ସର୍ବଦା ହାଣ୍ଡିଆ    ପିଇବାରୁ ଚକ୍ଷୁ
ହୋଇଥିଲ ଜବାବର୍ଣ୍ଣ ।
ମୃତ ମୃଗଶିଶୁ    ପରେ ବାନ୍ଧି ମାଛି
ବସୁଥିଲେ ଉଡ଼ି ଉଡ଼ି
ଖଣ୍ଡେ ଖଣ୍ଡେ ଖାଉ-    ଥିଲେ ସେ ମାଂସରୁ
ପାଣ ପିଲେ ପୋଡ଼ି ପୋଡ଼ି ।
କର୍ଣ୍ଣପୀଡ଼ାଦାୟୀ    ଝଙ୍ଖିବା ସ୍ୱରେ
ମୁଖର ସଦା ଗଗନ
ବସି ରହୁଥିଲେ    ଖଣ୍ଡେ ଦୂରେ ତାର
ବାୟସ ଶକୁନଗଣ ।
ଟାହ୍ମହରକାରେ    କାଟୁଥିଲ କେହୁ
ଖଣ୍ଡ ଖଣ୍ଡ ଶବମାଂସ
କେବା ତାର ଅନ୍ତ—    ନାଡ଼ୀ ଟାଣୁଥିଲ
ଉଠେ ଘୋର ଅଟ୍ଟହାସ୍ୟ ।
ପ୍ରାଙ୍ଗଣେ କେତେବ    ଗଦାକୁ କୁକ୍କୁଟେ
ଚରଣ ନଖରେ ରାମ୍ପି
ଖାଉଥିଲେ ତହିଁ    ଖୁଣ୍ଟି ଖୁଣ୍ଟି ଖୁଦ
ରୋଷେ ପରସ୍ପରେ ଝାମ୍ପି
ଭଙ୍ଗା ହାଣ୍ଡି ସହ    ପଡ଼ିଥିଲ ସେଜ
ନଳାରେ ପାଉଁଶ ଗଦା
ଭଣଭଣ ଶବ୍ଦେ    ପଣପଣ ମାଛି
ତହିଁ ଉଡ଼ୁଥିଲେ ସଦା ।
କାଉମାନେ ନିଜ    ପକ୍ଷ ପବନରେ
ସେ ମାଛି କୁଳ ଘଉଡ଼ି

ଅଲକ୍ଷିତ ଭାବେ — କୁକ୍କୁଡ଼ା ରୂପଙ୍କୁ
ଘେନଯାଉଥିଲେ ଉଡ଼ି ।
ଧୀରେ ଧୀରେ ଡେଇଁ — ସେ ସ୍ଥାନରେ ମହା
ଆନନ୍ଦେ ବଣି ଚଢ଼ାଇ
ଚେଁ ଚେଁ ସ୍ୱରେ — ଖାଉଥିଲେ ସ୍ୱର
ପାଖରୁ ପୋକ ଠୁଳାଇ ।
ଆବର୍ଜନା ପରେ — ବସି ହାଡ଼ପିଲେ
କ୍ଷଣେ କ୍ଷଣେ ଘଡ଼ ଘୁର
ନିଜ କୁଳ ବିଦ୍ୟା — ଶିଖୁଥିଲେ ରଙ୍ଗେ
ବଜାଇ ଢୋଲ ମହୁର ।
ସମସ୍ୱରେ ଗୀତ — ଗାଇ ଗାଇ ସୁଖେ
ହାଡ଼ିଆଣୀମାନେ ସ୍ନେହେ
କଥା ଭଣୁଥିଲେ, — ଅଧୀରେ (୧) ଅରଟ
କରୁଥିଲ୍ଲ କେଏଁ କେଏଁ ।
କ୍ଷୁଧାତୃଷା ବଶେ — ବିହଙ୍ଗେ ଆରତେ
ରବୁଥିଲେ ପିଞ୍ଜରାରେ
କେହୁ ଟୋପେ ପାଣି — ଦେଉ ନଥିଲେ ସେ
ପକ୍ଷୀମାନଙ୍କୁ ଦୟାରେ ।
ଏ ସକଳ ଦେଖି — ସହଜେ ବୁଝିଲ
ଏ ନିଶ୍ଚେ ଚଣ୍ଡାଳପଲ୍ଲୀ
ଭଦର୍ଫ ଦଶିଲ୍ଲ — ମୋ ମନେ ସେସ୍ଥାନ
ଯମଆଲୟରୁ ବଳ ।
ଜଣା ଯାଉଥିଲ୍ଲ — ଚଣ୍ଡାଳମାନଙ୍କ
ନିକୃଷ୍ଟ ଅବସ୍ଥାରୁ
ଝଲେମାନ ଜଳ — ଲଗେ ନାହିଁ ଜାହା
ହୃଦୟେ ଦୟା ସାଗରୁ ।
ସମର୍ପିଲ୍ଲ ତହୁଁ — ନେଇ ସେ ଜଗତ
ହାଡ଼ି କନ୍ୟାହାତେ ସୁଖେ

(୧) ରେଃହିଁଟି ।

ବାରଣ ଯେମନ୍ତ ମୃଣାଳ ଛିଣ୍ଡାଇ
ଢଅର କରଣୀ ମୁଖେ ।
ସାନନ୍ଦେ କୁମାରୀ ବନ୍ଧ କଲ ନେଇ
କାଠପିଞ୍ଜରାରେ ମୋତେ
ଅଠକାନ୍ତ ସ୍ୱେର ଦସ୍ୟୁକୁ କାରାରେ
ନର୍ଦ୍ଧ୍ୟେ ଲୋକେ ଯେମନ୍ତେ ।
ପିଞ୍ଜରାରେ ରହି ଭାବିଲ୍ ଯେବେ ମୁ
ଆତ୍ମମୋଚନର ପାଇଁ
ପ୍ରାର୍ଥୀ ହେବ ଏହି କନ୍ୟା ସନ୍ନିକଟେ
ହୃଦୟ ଦୁଃଖ ଦେଖାଇ ।
ତା ହେଲେ ଯେ ଲାଗି ଧରିଅଛି ତାର
ପାଇବ ସେ ପରିଚୟ
ମୋ ମୁଖୁଁ ବଚନ ଶୁଣି ଚଣ୍ଡାଳୁଣୀ
ଛାଡ଼ିବ ନାହିଁ ନିଶ୍ଚୟ ।
କଏବା ସଂସାରେ ନିଜର ବାଞ୍ଛିତ
ପ୍ରିୟପଦାର୍ଥକୁ ପାଇ
ବର୍ଜଇ ସହଜେ ପରସୁଖ ଲାଗି
ଦସ୍ୟୁଧର୍ମ ମୁଖ ସ୍ୱହିଁ ?
ଯେବେ କିଛି କଥା ନ କହି ରହିବ
ମଉନେ ଏକନସ୍ଥାରେ
ତେବେ ଶଠପଣ ଦେଖାଉଛି ବୋଲି
ଯାତନା ପ୍ରଦାନ ପାରେ ।
ବିଷମ ସଙ୍କଟେ ପଡ଼ିଲି ଶେଷରେ
ମନେ ମନେ କଲି ସ୍ଥିର
ନ କହିବ କଥା କଦାପି ପଛକେ
ଛାଡ଼ିବ ଏହି ଶରୀର ।
ନର ପରି କଥା କହିଲେ ବନ୍ଧନ
ହେବ ନାହିଁ ବିମୋଚନ
ଜାଣେ ସୁଧାକୃଷ୍ଣ ଯେ ବୋଲେ ତାହାର
ସୁବୁଦ୍ଧି ହୁଏ ବନ୍ଧନ ।

ନ କହିଲେ କଥା ଚଣ୍ଡାଳ କୁମାରୀ
ଅନାଦରେ ଅବଜ୍ଞାରେ
ରଖିବାର ଅନା— କଶ୍ୟପ ଈଶ୍ବର
ଛାଡ଼ିଲେ ବା ଛାଡ଼ି ପାରେ
ଏହା ପାଞ୍ଚି ଦେବ ! ରହିଲି ପିଞ୍ଜରେ
ମଉନରେ ଅନୁକ୍ଷଣେ
ନ କହିଲି କଥା ସେ ଯେତେ ଉପାୟ
କରିଲେ ମୌନ ଭଞ୍ଜନେ ।
ଖାଇବାକୁ ବାଳା ଫଳ ମୂଳ ମୋର
ପିଞ୍ଜରାକୁ ଦେଇ ଆଣି
ନ ଖାଇଲି ସେହି ଫଳ ମୂଳ ପୁଣି
ନ ପିଇଲେ ଟୋପେ ପାଣି ।
ପରଦିନ ଏହି ବ୍ୟବହାର ଦେଖି
ବୋଧିଲା ଆସି କୁମାରୀ
କପାଇଁ ବିହଙ୍ଗ ନଖାଉଛୁ କ୍ଷୁଧା—
ତୃଷାରେ ହେଲେହେଁ ଘାରି ।
କ୍ଷୁଧାତୁର ହୋଇ ନ ଖାଇବା ପଣ
ପକ୍ଷୀ ପକ୍ଷେ ଅସମ୍ଭବ
ଯେ କ୍ଷୁଧାବେଗକୁ ନ ସହି କୁକର୍ମ
କରନ୍ତି ସଦା ମାନବ ।
ଜାତି ଶ୍ରେଷ୍ଠ ବୋଲି କରୁଛୁ କିଅବା
ଭକ୍ଷ୍ୟାଭକ୍ଷ୍ୟ ବିବେଚନା ।
ଚଣ୍ଡାଳ ପୁରର ଅପବିତ୍ର ଦ୍ରବ୍ୟ
ଛୁଇଁବାକୁ ଯେଣୁ ମନା ।
ଅତୀତ ଜନ୍ମରେ ଯା ଥିଲୁ ଏକ୍ଷଣି
ଜନ୍ମିଛୁ ପକ୍ଷୀକୁଳରେ
ବିହଙ୍ଗର ଜାତି ବିଚାର ତୁ କାହିଁ
ଶୁଣିଛୁ କେଉଁ କାଳରେ ?
ବିଶେଷରେ ମୁହିଁ ସଦ୍ୟ ଫଳ ମୂଳ
ଆହରି ଆଣିଛି ଏବେ

ନୀଚ ଜାତି ହସ୍ତୁଁ       ଫଳ ଖାଇ ଜାତି
ଯାଏକି କାହାର କେବେ ?
ଶାସ୍ତ୍ରେ ଲେଖାଅଛି       ପାନୀୟ କଦାପି
ନ ହୁଅଇ ଅପବନ
ସେ କଥା ଉପେକ୍ଷି       ଉପାସେ ରହିବା
ଚରତ ତୋର ବଚନ ।
ଚଣ୍ଡାଳ ପୁତ୍ରୀର       ନ୍ୟାୟ କଥାମାନ
ଆକର୍ଣ୍ଣି ହେଲି ବିସ୍ମିତ
ଯୁକ୍ତିଯୁକ୍ତ ବାକ୍ୟେ       ସମ୍ମତ ନୁହେଁ କି
ସବୁଙ୍କେ ସୁଜ୍ଞାନଚିତ୍ତ ।
ଫଳ ମୂଳ ଖାଇ       ଜଳ ପିଇ ସତ୍ୟ
ବିନାଶିଲି କ୍ଷୁଧା ତୃଷା
ମାତ୍ର ମୋ ହୃଦୟେ       ସେ ଦିନରୁ କଲ୍ପ
ବିଷମ ଅଶାନ୍ତି ଦଶା ।
କାହାକୁ କହିନ୍ତୁଁ       ବଚନ ନସ୍ଫୁରି
ରହିଲି ସଦା ମଉନେ ।
ଦିନେ କଳେବର       ଢାଳି ଅଚେତନି
ପ୍ରବେଶ ହେଲି ସ୍ୱପନେ
ଦିନେ ଶୋଇଥିଲି       ପିଞ୍ଜରି ଭିତରେ
ଦେଖିଲି ସକାଳୁ ଉଠି
ଉଜ୍ଜ୍ୱଳ ସୁବର୍ଣ୍ଣ       ଦୀପ୍ତି ବହୁଅଛି
କାଠର ପିଞ୍ଜରା ଗୋଟି ।
ସେ ଚଣ୍ଡାଳ ପଲ୍ଲୀ       ଦେବପୁରୀ ପରି
ଦିଶୁଛି ସୁକାନ୍ତିମୟ
ସୁବର୍ଣ୍ଣ ପ୍ରାଙ୍ଗଣେ       ଶୋଭୁଛି ଉଜ୍ଜ୍ୱଳ
ସୁବର୍ଣ୍ଣର ଗୃହଚୟ ।
ଚଣ୍ଡାଳ କନ୍ୟାର       ଦେଖୁଛନ୍ତି ଘମୁ !
ଯେରୂପ ଏବେ ସୁରୂପ
ନିଦ୍ରାରୁ ଜାଗି ମୁଁ       ଅକସ୍ମାତ ତାର
ନଦେଖିଲି ସେହି ରୂପ ।

ସ୍ୱବଥିଲ ତାକୁ    ପଞ୍ଜର ବୁଝିବ
ଆରମ୍ଭିତ ଏ କାହାଣୀ
ଲକ୍ଷ ମଧ୍ୟେ ଘମୁ    ସ୍ୱପ୍ନେ ଯେ କୁମାରୀ
ମୋତେ ଭେଟିଅଛୁ ଆଣି ।
କିଏ ଏ କୁମାରୀ ?    କର୍ପାଉ ନଜରୁ
କୋଉଏ ସ୍ୱାଙ୍ଗର ଝିଅ ?
ନୀଚକୁଳେ ଜନ୍ମ    କର୍ପାଉ ଏହାର
ଅସ୍ତ୍ରର ପ୍ରଶଂସନୀୟ ?
କାହିଁକି ଏ ମୋତେ    ଧରଛି ? କପାଉଁ
ଆଣିଛି ରାଜସଦନ ?
କହମାନ ମୁହି    ଅବଗତ ନୁହେଁ
ଏଦଣା ମନ୍ତ୍ରମଣ୍ଡନ !
ପାଠକମାନଙ୍କୁ    ପଢିବା କାଳରେ
କୁଟବର ନବଗ୍ରନ୍ଥ
ଯେତେ ପଢୁଥିଲେ    ଠାଣୁଥାଏ ଯଥା
ତାର ପରବର୍ତ୍ତୀ ସନ୍ଧ ।
ତେସନ ଶୂଦ୍ରକ    ଶୁକ ବଦନରୁ
ଏ ଯାଏ ଶୁଣି ବୃତ୍ତାନ୍ତ
ଶେଷଅଂଶ ତାର    ଜାଣିବାକୁ ହେଲେ
ଅତ୍ୟନ୍ତ କୌତୂହଳାକ୍ରାନ୍ତ ।
ପ୍ରହରୀ ସେକାଳେ    କୁହୁକଳୀ ସେହି
ନରେଶଙ୍କ ଆଦେଶରେ
ଚଣ୍ଡାଳ କନ୍ୟାକୁ    ଘେନ ପ୍ରବେଶିଲ
ରୁଚିର ରାଜଭବନେ ।
ନୃପ ପାଶେ ମିଳ    ପ୍ରଣମି ପ୍ରଗଲ୍‌ଭେ
କହଇ ସେହି ଯୁବତୀ
ଆହେ ଚନ୍ଦ୍ରରଥ—    ଗନ୍ଧର୍ବ-ତନୁଜା-
କାଦମ୍ବରୀ-ପ୍ରାଣପତି ।
ତୁମ୍ଭେ ଅଟ ଦେବ !    ଭୁବନ-ଭୂଷଣ
ଚନ୍ଦ୍ରମାର ଅବତାର

ତୁମ୍ଭେ ଉତ୍ସଙ୍ଗିନୀ    ଯୁବରାଜ ତୁମ୍ଭେ
ତାରାପୀଡ଼ ଗଳାହାର ।
ଶୁଣିଲତ ଯେତେ    ଶୁକର ତୁମ୍ଭର
ଅତୀତ ଜନ୍ମ କାହାଣୀ
ମର୍ତ୍ତ୍ୟେ ଥର ଥର    ଜନମି ସଫଳ
କଲ ଋଷି ଶାପ ବାଣୀ
ମହାଶ୍ୱେତା ପୁରେ    ଯାଉଥିଲ ପକ୍ଷୀ
ଲଙ୍ଘି ଜନକର କଥା
ଜାଣି ତା ମହର୍ଷି    ଶ୍ୱେତକେତୁ ମନେ
ଲଭିଲେ ବଷମ ବ୍ୟଥା ।
ଲକ୍ଷ୍ମୀ ମୋର ନାମ    ଦେବଦେବ ! ମୁହିଁ ଏ
ହତଭାଗାର ଜନନୀ ।
କାଳସ୍ୱଦର୍ଶୀ    ଭୁବନ ପୂଜିତ
ଶ୍ୱେତକେତୁଙ୍କ ଘରଣୀ ।
ମୋହାନ୍ଧ ପୁତ୍ରର    କୁପଥେ ଏରୂପେ
ବାରବାର ହେଉଁ ଗଢ
ଧ୍ୟାନେ ସବୁ ଜାଣି    ଅନନ୍ୟ ଉପାୟେ
ଶ୍ୱେତକେତୁ ମହାମନ୍ତ ।
ଅଦେଖିଲେ ମୋତେ    ପୁତ୍ରର ହିତାର୍ଥେ
ପ୍ରବେଶି ଭୂମିତଳରେ
ଦୃଢ଼ସ୍ୱରେ ବାନ୍ଧ    ରଖିବାକୁ ତାକୁ
ନର୍ଦ୍ଦୟେ କାଠପିଞ୍ଜରେ ।
ଅକଟେ ରଖିଲ    ତେଣୁ ପିତା ଧର
ଅସ୍ପର୍ଶ୍ୟ ଚଣ୍ଡାଳ ଘରେ
ସ୍ୱନକାର୍ଯ୍ୟ ଦେଖି    ଘୋର ଅନୁତାପ
ହୋଇବ ତୋର ମନରେ ।
ବଚନ ନଥିଲା    ଏଥିସ୍ୱରେ ବନ୍ଦୀ
ନୋହିଥିଲେ ଅଜପାଏ
ପଡ଼ିଥାନ୍ତା ସେହି    ସ୍ତ୍ରୀଠାରୁ ଅନ୍ୟ
ନୀଚ ଜାତରେ ସ୍ୱେଚ୍ଛାଏ ।

କିଛିହିଁ ଅସାଧ୍ୟ ନାହିଁ କୁକର୍ମର
ସ୍ୱାଭାବିକ ଧର୍ମ ତାର
ଯେତେ କ୍ଷମା ହେଉ ତା ସ୍ପର୍ଶେ ଅପଥେ
ମନ ଦ୍ୱଏ ଆଗୁସାର ।
ଅଟକାଇ ଥିଲ ଏ ପାପ ଶୁକକୁ
ତାହାର ମଙ୍ଗଳ ପାଇଁ
ପାପ ଶେଷ ହେଲା ଉଭୟଙ୍କୁ ଏଣୁ
ଦେଉଛି ଅଙ୍କ ମିଳାଇ ।
ଶାପ ଦେହ ଛାଡ଼ି ପ୍ରିୟତମା ସହ
ଏବେ ସୁଖେ କାଳ ହର
କିଏ ବା ଜଗତେ ଦୁଃଖରେ ନପଡ଼ି
ଦେଖାଇ ମୁଖ ସୁଖର ।
ଆଶୀର୍ବାଦ କରେଁ ତୁମ୍ଭମାନଙ୍କର
ବାସନା ହେଉ ସଫଳ
ବିରହ ବହ୍ନିକି ଲଭିଲ ଅନ୍ତରେ
ବର୍ଷୁ ନବ ଶାନ୍ତିଜଳ ।
ଏହା କହି ଲକ୍ଷ୍ମୀ ଗଗନ ବକ୍ଷରେ
ଲୀନହେଲେ ତରତରେ
ତୋ-ମାଳ ଗାତ୍ରକୁ ଉଲ୍ଲାକାରେ ରଞ୍ଜି
ସ୍ୱକାନ୍ତି ପ୍ରଭା ପୁଞ୍ଜରେ ।
କ୍ଷଣେ କ୍ଷିତୀଶଙ୍କ ପୁର୍ବର ସକଳ
ବୃତ୍ତାନ୍ତ ପଡ଼ିଲା ମନେ
ମନମୋହିନୀର ମୋହନ ମୂରତି
ନାଚିଲା ଆସି ନୟନେ ।
ମନୋହର ଭାବ ହାବ ଭାବ ହୃଦେ
ସ୍ମୃତି ଜମାଇଲା ଆଣି
ସେ ଭବକୁ ଶରେ ମାଡିଦେଲା ପୁଣି
କୁସୁମ କୋଦଣ୍ଡ ପାଣି ।
ସର୍ବ ସୁକୁମାରୀ ସେ ହେମ ଗୌରୀର
ବିରହ ରୂପ ମୂରତି

ସ୍ମରଣ କରନ୍ତେ ନରେଶ ମଣ୍ଡନ
ଅନ୍ତୁରେ ହେଲେ କରଣ ।
ଏତେକ ବସନ୍ତ— କାଳ ହସୁଥିଲ
ଅନନ୍ଦେ ସର୍ବ ଜଗତ
ମୃଦୁଳ ମଳୟା— ନିଳେ କମ୍ପୁଥିଲ
ରସାଳବଲ୍ଲୀ ସନ୍ତତ ।
ପ୍ରମତ୍ତ କୋକିଳ କୁହୁ କୁହୁ ରବେ
ଚଉଦିଗ ଉଚ୍ଛୁଳଇ
ଗାଉଥିଲା ବସି ପଞ୍ଚମ ତାନରେ
ବସନ୍ତ ଉତ୍ସବ ଗୁହିଁ ।
ଅଶୋକ, କିଂଶୁକ, ନିପାଳୀ, ଚମ୍ପକ,
ବକୁଳ ପାଦପଚୟ
କୁସୁମ ସମ୍ଭାରେ ମୋହୁଥିଲେ ମନ
ଉତ୍ଫୁଲ୍ଲ ଅଙ୍ଗା ବଳୟ ।
ବକୁଳ ଫୁଲର ମୃଦୁଗନ୍ଧେ ଅନ୍ଧ
ପ୍ରମତ୍ତ ଅଳି ନିକର
ଝଙ୍କାର ଶବଦେ ଭ୍ରମୁଥିଲେ ତରୁ
ସ୍ଥିରପାଖେ ଅହରହ ।
ବସନ୍ତେ ତରୁଏ ହୋଇଥିଲେ ନବ
ପଲ୍ଲବରେ ମନଲୋଭା
ବିମଳ ସଲିଳେ ହେମ ମୁକ୍ତ ପଦ୍ମ-
କୂଳ ପାଉଥିଲେ ଶୋଭା ।
ସ୍ପର୍ଶ ସୁଖକର ମଳୟ ସମୀର
ବହୁଥିଲା ଅବିରତ
ମନୋଜ୍ଞ ମଦନ ମହୋତ୍ସବ ବେଳ
ହୋଇଥିଲା ସମାଗତ ।
ଦିନେ କାଦମ୍ବରୀ ସାୟାହ୍ନେ ସେ କାଳେ
ଶ୍ରୀଅଙ୍ଗ ପଖାଳି ସରେ
ପାଦ୍ୟ ଅର୍ଘ୍ୟ ଦେଇ ଅନଙ୍ଗ ଦେବଙ୍କୁ
ପୂଜଣ ଭକତଭରେ ।

ଚନ୍ଦ୍ରାପୀଡ଼ଙ୍କର ଦେହ ଧୋଇ ଦେଇ
ଚନ୍ଦନ ରସ ମଖାଇ
କଣ୍ଠେ ଫୁଲମାଳା କର୍ଣ୍ଣରେ ଅଶୋକ
ସ୍ତବକ ସ୍ନେହେ ଲଗାଇ ।
ସମୀପରେ ବସି ଅଚେତନ ଦେହେ
ସୁବାସ କୁସୁମ ଯୋଗି
ସତୃଷ୍ଣ ନୟନେ ଦେଖୁଥିଲି ସେହି
ମୂର୍ତ୍ତିକୁ ଚନ୍ଦ୍ରମାମୁଖୀ
ଏତେକ ସୁଖଦ ବସନ୍ତ ବାସର
ହୁଜେ ସ୍ଳାନ ନବାଙ୍ଗନ
ବେଳ ଜାଣି ଠାଣି ଶର ମାରୁଥିଲି
ତୁହାଇ ମୀନକେତନ ।
ଉନ୍ନଦ୍ଧ ଶକୃତ ଚଉଠି ଅସ୍ତବ୍ୟସ୍ତ
ଉଦ୍ଭ୍ରାନ୍ତେ ଗଜସୁନ୍ଦର
ଗଳିତ ଭ୍ରମରେ ଯେମନ୍ତ କାନ୍ତର
ମୃତ କଳେବର ଧରି ।
ପ୍ରଣୟ ଆବେଗେ ଗାଢ଼ ଆଲିଙ୍ଗନ
ରସ ଆରମ୍ଭିବା ବେଳେ
ପୁନଃ ପ୍ରାଣ ଲଭି ଚନ୍ଦ୍ରାପୀଡ଼ ଉଠି
ବସିଲେ ସମ୍ଭ୍ରମେ ହେଲେ ।
ଦାଡେ ରମ୍ଭାପଦ ପରସ୍ପେ ଥରଇ
ଦେଖି ଭୟେ ତମ୍ବାଗୋଷ୍ଠୀ
କହିଗଲି ଝାଳ ସର୍ବାଙ୍ଗୁ ପ୍ରଖରେ
ଉଠିଲି ଲୋମ ଠାକୁର ।
ହସି ହସି ଯୁବା କହିଲେ ସୁନ୍ଦରି !
କି ଭୟ କାହାକୁ କର
ଅନାଥ ଏଣିକି ଜୀଇଁ ଲଭିଲଣି
ମୋର ପୂର୍ବ କଳେବର ।
ଚମ୍ପା ନଗରେ ଏତେଦିନ ଥିଲି
ଶୁଦ୍ରକ ନାମରେ ଭୂପ

ସେ ଶବର ଛଡ଼ି ବହୁଛି ଅଛି ମୁଁ
ପୂର୍ବ ଚନ୍ଦ୍ରାପୀଡ଼ ରୂପ ।
ଦୁରନ୍ତ ଦୁଷ୍କୃତ ଗଲାଣି ବାହୁଡ଼ି,
ଖଣ୍ଡିଲାଣି ପାପ ଶାପ
ଚନ୍ଦ୍ରାପୀଡ଼ ମୁହିଁ ନ ଡର ସୁନ୍ଦରୀ !
ସ୍ୱଚ୍ଛନ୍ଦେ କର ଆଳାପ ।
ମାଗୁଛି ଏତିକି ପୂର୍ବରେ ଯେମନ୍ତ
ମୋଠାରେ ଥିଲା କରୁଣା
କରୁଣା ବରୁଣା— ଲକ୍ଷ୍ମୀ ! ସେ କରୁଣା
ଯେଣ୍ଟେ ତଳେ ନୋହେ ଊଣା ।
ସରସ ସ୍ମୃତିରେ ହରଷେ ପୂରିଲା
ରସବତୀର ହୃଦୟ
ଲଜ୍ଜାରେ ପାଟଳ ହେଲା ଗଣ୍ଡସ୍ଥଳ
କାହିଁ ପଳାଇଲା ଭୟ ।
ଲଜ୍ଜା ନମ୍ରମୁଖେ ଅଡ଼ କରି ମୁଖ
ରହିଲା ଚନ୍ଦ୍ରମାମୁହିଁ
ସଙ୍ଗେ ସଙ୍ଗେ କେତେ ପ୍ରବୋଧିଲା ଯୁବା
ବଚନେ ଅଧୀର ହୋଇ ।
ଆଶ୍ୱାସନା ଦେଇ ପୂର୍ବ କାହାଣୀରେ
ମାନସ ତୋଷି ବାଳାର
ମନ ଘେନା ନାନା ମିଷ୍ଟାଳାପେ ସେହ
ପ୍ରକାଶିଲା ଶିଷ୍ଟାଚାର ।
ଲକ୍ଷିଲେ କିଶୋର ସୁହାଗେ ଆଦରେ
କିଶୋରୀର କର ଧରି
ତୁମ୍ଭ ପ୍ରିୟସଖୀ ମହାଶ୍ୱେତାଙ୍କର
ପୂରିଛି ବାଞ୍ଛା ସୁନ୍ଦରି !
ଖଣ୍ଡିଛି ତାହାଙ୍କ ପ୍ରିୟ ଚନ୍ଦ୍ରମାଙ୍କ
ଦୁରୁତର ଶାପ ଅତି
ସରିଛି ମହର୍ଷି ଶ୍ୱେତକେତୁଙ୍କର
ପୁଣି ଦେବକାର୍ଯ୍ୟ ସତି ।

କର୍ଣ୍ଣ କର୍ଣ୍ଣ ଏହା    ନବୀନ କମଳ
ଆଲୋକେ ରଞ୍ଜି ଗଗନ
ଚନ୍ଦ୍ରଲୋକୁ ଖସି    ଆସିଲେ ଭୂଲୋକେ
ମହାଶ୍ୱେତା ପ୍ରାଣଧନ ।
ଦଶଦିଗ ଯାଚି    ନୀରଦ କୋଳରୁ
ଚପଳା ଖସିଲା ଯେବେ
ରଜନୀକୁ ରଞ୍ଜି    ଅଗ୍ନେୟ ଶଳାକା
ପଡ଼ିଲା କି ଅବନୀରେ ।
କଣ୍ଠେ ଏକାବଳୀ    ମାଳ ରାଜୁଥିଲା
ବାମ ପାର୍ଶ୍ୱେ କପିଞ୍ଜଳ
ଝଟକ ହାଟକ    ପ୍ରାୟ ଝଣୁଥିଲା
ଶରୀର ଶିରୀ ଉଜ୍ଜ୍ୱଳ ।
ସମାଦରେ ତାଙ୍କୁ    ଉଡ଼ି ଚନ୍ଦ୍ରାପୀଡ଼
ଆଲିଙ୍ଗିଲା ଦୃଢ଼େ ଧରି
ଆନନ୍ଦାଶ୍ରୁ ନୀରେ    ବେନିଙ୍କର ସ୍ୱର
ବିଲୋଚନ ଗଲା ଭରି
କାଦମ୍ବରୀ ଧାଇଁ    ପ୍ରିୟସଖୀ ପାଶେ
ଏ ପ୍ରିୟସମ୍ବାଦ ଦେଇ
ସତେ କି ତାହାକୁ    ସୁମଧୁର ସୁଧା-
ସ୍ରୋତେ ବୁଡ଼ାଇଲା ନେଇ ।
ଚିତ୍ରରଥ, ହଂସ,    ମଦିରା, ଗଉରୀ,
ଏହି ଶୁଭ ସମାରୋହରେ
ଦଳ ବଳ ସହ    ମହୋଲ୍ଲାସେ ଆସି
ପ୍ରବେଶିଲେ ସେ କାନ୍ତାରେ ।
ତାରାପୀଡ଼ ଶୁକ—    ନାସ ମନୋରମା
ମହିଷୀ, ବିଳାସବତୀ
ସେମାନଙ୍କ ସହ    ଏ ମହା ମିଳନ—
ମହୋତ୍ସବେ ହେଲେ ବ୍ରତୀ ।
ପଣ୍ଡରୂପେ ଚନ୍ଦ୍ରା—    ପୀଡ଼କୁ ଲଭିଲା
ଗନ୍ଧର୍ବ ରାଜକୁମାରୀ

ପୁଣ୍ଡରୀକ ହର ଧଇଲ ସ୍ଥାନରେ
ମହାଶ୍ୱେତା ସୁକୁମାରୀ ।
ଚନ୍ଦ୍ରାପୀଡ଼ ରୂପେ ଚନ୍ଦ୍ରମା ଜନମ
ହୋଇଥିବାରୁ ଧରାରେ
ପତ୍ରଲେଖା ରୂପ ଧରି ଆସିଥିଲେ
ରୋହିଣୀ ତାଙ୍କ ସେବାରେ ।
ରାଜକୁମାରଙ୍କ ମଣିଂ ଭାର୍ଯ୍ୟା ଶେଷ
ଯାଏ ନଜସ୍ଥାନେ ଯାଇ
ବଳଭଦ୍ର ଦେବ ସ୍ୱପର ଏ ଗୀତେ
ରହିଲେ ତାଙ୍କୁ ଅନାଇଁ ।

---

କାଦମ୍ବରୀ ସମାପ୍ତ



# ସ୍ନେହାଞ୍ଜଳି

ବୀର ଶ୍ରୀମଣ୍ଡାଳଚେରାଧୀଶ୍ୱର କିଶୋରଚନ୍ଦ୍ର ବୀରବର
ହରିଚନ୍ଦନ ଦେବ

ସୁହୃଦ୍‌ବରେଷୁ

ଅସେଚନକ ।

ସାହିତ୍ୟ କାନନ          କୁଞ୍ଜ ପଞ୍ଚାନନ
ଭାରତ ଅବର୍ଣ୍ଣନୀୟ
କଲ୍ପନା ତୁଳୀରେ          କାବ୍ୟପଟେ ଯେହୁ
ଆଙ୍କିଲେ ଅପୂର୍ବଛବି । ୧ ।

ନୀରସ ମାନସ—          (ମାରବେ) ଯାହାଙ୍କ
କବିତା ସୁଧା ସ୍ରବନ୍ତୀ
ପ୍ରବାହିତ ହୋଇ          ଉତ୍ପାଦନ କରେ
ସରସ ଜ୍ଞାନ ବ୍ରତତି । ୨ ।

ଲଜ୍ଜାଶୀଳା ବାଳା—          ପ୍ରେମୋଚ୍ଛ୍ୱାସ ପରି
ଯାହାଙ୍କ ଭାବଲହରୀ
ରସିକ ହୃଦୟ—          ସରେ ଲୀଳାକରେ
କଲ୍ପନା-ବାତେ ସଞ୍ଚରି । ୩ ।

ସାରସ୍ୱତ ସାର—          ମଧୁମାସର ଯେ
ସୁସ୍ୱର ମତ୍ତକୋକିଳ
ବାଣୀ ପ୍ରିୟଶିଷ୍ୟ          କବି-କୁଳ-ଗୁରୁ
କାବ୍ୟୋଦ୍ୟାନ ମଳୟାନିଳ । ୪ ।

ଯାହାଙ୍କ ଭାରତୀ          ପଦ ଅଳଙ୍କାର
ଭାବେ ହୋଇ ପରିପୂର୍ଣ୍ଣ
ମଣ୍ଡିତ ଅମର—          ବଧୂରେଖାଧର—
ମାଧୁରୀ କରଇ ଚୂର୍ଣ୍ଣ । ୫ ।

ଯେଉଁ ଉଜ୍ଜ୍ୱଳିମା ସାରସ୍ୱତ ମଣି
ନିଜ ତେଜେ ଦେଶେ ଦେଶେ
ମାନବ ନିକର ହୃଦୟ କନ୍ଦର—
ଧ୍ୱାନ୍ତ ହରନ୍ତି ବିଶେଷେ । ୬ ।
କାବ୍ୟ କୁନ୍ଦେନ୍ଦୁ ଜଳ-ମନ-ମୁଗ୍ଧା—
ଉପରେ ସ୍ୱଗୁଣମଣି
ବସାଇଛନ୍ତି ଯେ ଭାରତୀ ବଖାଣି
ଖୋଳି କଳପନା ଖଣି । ୭ ।
ସେହି ମହାକବି କାଳିଦାସଙ୍କର
ଷଟ୍‌କୃତି ସଂଗ୍ରହସାର
ବାଗ୍‌ଦେବୀ ରସନା— ଲେଖନୀ ନିଃସୃତ
ଏ ରତ୍ନ-ସମ୍ଭାରହାର । ୮ ।
କୁତୁହଳ ବଶେ ଉତ୍କଳାନୁବାଦ
କରିଅଛି ମୁହିଁ ଯାହା
ଅହେ ପ୍ରିୟଭାଇ ! ତୁମ୍ଭ କଣ୍ଠଦେଶେ
ଲମ୍ବାଇ ଦେଉଛି ତାହା । ୯ ।

୧୫ । ୨ । ୧୯୦୩
ମୁ । ଦେବଗଡ଼
କା । ବାମଣ୍ଡା

ଆପଣଙ୍କର
ଶ୍ରୀ ବଳଭଦ୍ର ଦେବ
ପଟ୍ଟାୟିତବନ୍ଧୁ



# ଋତୁ ସଂହାର

## ପ୍ରଥମ ସର୍ଗ

## ଗ୍ରୀଷ୍ମ

(ସମବେଶ)

ଯେ କାଳେ ପ୍ରଚଣ୍ଡ ମିହିର,
      ଚନ୍ଦ୍ର କରେ ଆଦର,
ସଦା ସ୍ନାନେ ନୀର ନିକର
      ହୁଏ ଅଭିଳତର,
ଦିନ ଅବସାନ ସୁନ୍ଦର,
      ଶାନ୍ତ କୁସୁମ ଶର,
ଉପଗତ ହେଲା ସଜନ !
      ସେହି ଗ୍ରୀଷ୍ମ ବାସର । ୧ ।
କଳାକର କର ହୁରତ
      ଅନ୍ଧକାର ରଜନୀ
ସରଳ ଚନ୍ଦନ, ଶୀତଳ—
      କଳାନାୟକ ମଣି ।
ନାନା କାରୁକାର୍ଯ୍ୟେ ଖଚିତ
      ଜଳଯନ୍ତ୍ର ସଦନ
ଏ ସକଳ ପ୍ରିୟେ ! ନିଦାଘେ
      ସେବା କରନ୍ତି ଜନ । ୨ ।
ସୁବାସିତ ଜଳେ ବାସିତ
      ରମ୍ୟ ସଉଧ ତଳ
କାମ ସନ୍ଦୀପନ ସୁତନ୍ତ୍ରି—
      ଯନ୍ତ୍ର ସ୍ୱର କୋମଳ ।

ପ୍ରେୟସୀ-ବଦନ ଉଚ୍ଛ୍ୱାସ—
ବଶେ କମ୍ପିତ ମଧ
ବିଳାସିଏ ସେବା କରନ୍ତି
ଏହା କଦାପେ ବନ୍ଧୁ ! । ୩ ।
ଦୁକୂଳ ମେଖଳା ନିତମ୍ବ—
ହମ୍ୱେ ଅରମ୍ୱେ ଖଞ୍ଜି
ହାର ଆଭରଣ ଭୂଷିତ—
ସ୍ତନେ ଚନ୍ଦନ ରଞ୍ଜି
ସ୍ନାନେ ଗନ୍ଧଦ୍ରବ୍ୟ ସୁରଭି
କରି, କୁନ୍ତଳପନ୍ତି
କାମୀଙ୍କ କଦାଷ ଯାତନା
କାମିନୀଏ ହରନ୍ତି । ୪ ।
ଅଳକ୍ତା ରାଗରେ ରଞ୍ଜିତ
ଦଳ ସିନ୍ଦୂର ବର୍ଣ୍ଣ
କାଳେଣି ନୂପୁର ଭୂଷିତ
ନିତମ୍ବିନୀ ଚରଣ
ପଦ ପଦେ ହଂସ କୂଜନ
ଅନୁକରଣ କରି
କାମ ଉପୁଜାଇ ମାନବ—
ମନ ନଅଇ ହରି । ୫ ।
ଗନ୍ଧସାର, ପଙ୍କେ ଚର୍ଚ୍ଚିତ
ଘନ ତୁଷାର ଗୋର
ବହୁ ମୂଲ୍ୟ ମଣି ମାଳରେ
ପୂର୍ଣ୍ଣ ଉରଜ ତୋର ।
ପୃଥୁଳ ନିତମ୍ବ କଟକ
ହେମମୟ ରସନା
କେଉଁ ବିଳାସୀକୁ ସେ ଅବା
ନକରନ୍ତି ଉନ୍ମନା । ୬ ।
ନଜର ଶରୀରସନ୍ଧିରୁ
ଜାତ ଝାଳରେ ସିକ୍ତ

ମୋଠା ବସନକୁ ସମ୍ପ୍ରତି
କରି ଅପସାରିତ ।
ଉନ୍ନତ ଉରଜା ଯୌବନା—
କଟୀ ପ୍ରମଦାଗଣ
ନବେଶ କରନ୍ତି ଉରକେ
ସ୍ତୁରୁ କ୍ଷୀଣ ବସନ । ୭ ।
ଚନ୍ଦନାମ୍ବୁସିକ୍ତ ବ୍ୟଞ୍ଜନ—
ଜାତ-ଶୀତ ପବନେ
ହାରମାଳେ ପରିଶୋଭିତ
ସ୍ତନ ମଣ୍ଡଳାର୍ପଣେ ।
ବୀଣାଝଙ୍କାରରେ ମିଶ୍ରିତ
ସୁମଧୁର ଗାୟନ—
ଯୋଗେ ଜାଗି ଉଠେ, ନଦ୍ରିତ
ଥିଲାପରି ମଦନ । ୮ ।
ରଜନୀରେ ସୁଧା ଧବଳ—
ରମ୍ୟହର୍ମ୍ୟ ଉପରେ
ସୁଖସୁପ୍ତ ବିଳାସିନୀଙ୍କ
ମୁଖ ଦେଖି ଆଦରେ ।
ଅତି ଉତ୍ସୁକରେ ରଜନୀ
ଯାପି ତାରାରମଣ
ହୁଅନ୍ତି ଲଜ୍ଜାରେ କି ଅବା
ପ୍ରାତେ ପାଣ୍ଡୁ ବରଣ । ୯ ।
ଅସହ୍ୟ-ପବନ-ଚୂଳିତ—
ତପ୍ତ ଧୂଳି ଜଡ଼ିତ
ଖର ରବି କରେ ତାପିତ
ଏହି ମହୀଙ୍କ ମିତ ।
ପ୍ରେୟସୀ ବିରହ ଅନଳେ
ଦଗ୍ଧ ହୋଇ ମନରେ
ଦେଖିବାକୁ ଇଚ୍ଛା କରଇ
କିଏ ଏହି କାଳରେ ? । ୧୦ ।

ସୂର୍ଯ୍ୟ କିରଣରେ ଅତ୍ୟନ୍ତ
ସନ୍ତାପିତ ଜୀବନ
ପିପାସା ଅତ୍ରୁରେ କଣ୍ଠସ୍ଥ—
ତାକୁ କୁରଙ୍ଗଗଣ ।
ଦଳିତ ଅଞ୍ଜନ ସମାନ
ନୀଳ ନଭକୁ ଦେଖି
ଧାଇଁଛନ୍ତି ବନେ ଚପଳେ
ଜଳ ପିଇବା ପାଇଁ । ୧୧ ।
ରତନ ଭୂଷିତା ରମଣୀ—
ମାନେ ବିଭ୍ରମ ବଶେ
କୁଟିଳ କଟାକ୍ଷ ନକ୍ଷେପି
ପ୍ରବାସୀଙ୍କ ମାନସେ ।
କାମ ଉଦ୍ଦୀପନ କରନ୍ତି
ଏବେ ହୋଇ ଉପଗତ
ସ୍ଥିରୁ ଶଶିକଳା ଶୋଭିତ
ସାୟଂ ସମୟ ବ୍ରତ । ୧୨ ।
ଦଗ୍ଧ ହୋଇ ସୂର୍ଯ୍ୟ କିରଣେ
ପୁଣି ତପ୍ତଧୂଳିରେ—
ଅଧୋବଦନରେ ସର୍ପୀରେ
ସଦାବକ୍ର ଗତିରେ ।
ମୁହୁର୍ମୁହୁଃ ଅତି ପ୍ରଖର—
ଶ୍ୱାସ ନିର୍ଗତ କରି
କଳାପି-କଳାପ ତଳରେ
ଫଣୀ ରହଇ ଡରି । ୧୩ ।
ମହା ପିପାସାରେ ହେବାରୁ
ବଳ ଉଦ୍ୟମ ହତ
ରସନା ଲମ୍ବାଇ କମ୍ପାଇ
ଜିହ୍ୱା-ଅଗ୍ର ସତତ ।
ବିସ୍ତାରି ବଦନ ଉତ୍ତପ୍ତ—
ଶ୍ୱାସ ଛାଡ଼ି କେଶରୀ

ମାରିବାକୁ ନାହିଁ ବଳେକ
ପାର୍ଶ୍ୱ ବହାଗ୍ରି କରୀ । ୧୪ ।
ଦିନକର ଖର କିରଣ—
ଜାଳେ ହୋଇ ତାପିତ
ବିଷମ ପିପାସା ବେଗରେ
ଅତିଶୟ ପୀଡ଼ିତ ।
ସଲିଳ ନ ଲଭି ବିଶୁଷ୍କ—
କଣ୍ଠ କରି ଜଙ୍କରେ
ଡରିବାକୁ ନାହିଁ ସିଂହକୁ
ସୁଦ୍ଧା ଦେଖି ପାଖରେ । ୧୫ ।
ହୃତ ହୁତାଶନ ସଦୃଶ
ଚଣ୍ଡଭାନୁ କିରଣ
ଯୋଗେ ଅବସନ୍ନ ହେବାରୁ
ନିଜ ଶରୀର ମନ
ଛୋଡ଼ାଇ ସୁନ୍ଦର ଆନନ
ଶିଖି-ଶିଖା ମଣ୍ଡଳେ ।
ବଧିବାକୁ ନାହିଁ ସମୀପ—
ବର୍ତ୍ତୀ ଭୁଜଙ୍ଗ ଦଳେ । ୧୬ ।
* ଭଦ୍ରମୁସ୍ତାପୂର୍ଣ୍ଣବିଶେଷେ
ଶୁଷ୍କ କର୍ଦ୍ଦମ ସରେ
ଚଣ୍ଡସ୍ୱନ୍ତ ଚଣ୍ଡ ମୟୂଖେ—
କ୍ଳାନ୍ତ ବନ୍ୟ ଶୂକରେ ।
ସର୍ବଦା ଚଞ୍ଚଳେ ଖୋଳନ୍ତି
ଅର୍ଦ୍ଧ ଘୋଣା ମଣ୍ଡଳେ
ପ୍ରବେଶିବାପାଇଁ କିଅବା
ଭେଦ୍ୟ ବସୁଧା ତଳେ । ୧୭ ।
ବିକର୍ତ୍ତନ ତୀକ୍ଷ୍ଣ କିରଣ—
ମାଳେ ଅଭିତାପିତ

* ପାଣିମୁଥା

ପଙ୍କିଳ ପଲ୍ୱଳ ତଳରୁ
ଭେକ ହୋଇ ଉତ୍ଥିତ ।
ତେଜି ତପାତୁର ଭୁଜଙ୍ଗ
ଫଣା ଛତର ତଳେ
ନିର୍ଭୟେ ନିକଟେ ବସିଛି
ଅଣ୍ଡଜସ୍ତୁ ସକଳେ । ୧୮ ।
ଉତ୍ପାଟିତ କରି ସମ୍ପୂର୍ଣ୍ଣ
ରୂପେ ମୃଦୁ ମୃଣାଳ
ଚପଳ କଚ୍ଛପ ମୀନାଳୀ,
ବୁଲ ଶ୍ୱେତମରାଳ ।
ପରସ୍ପର ଉତ୍ପୀଡ଼ନରେ
ଗଜେ ସଂଗ୍ରାମଶୀଳ
ଚରଣ ମର୍ଦ୍ଦିତ କର୍ଦ୍ଦମେ
ପଦ୍ମାକର ପଙ୍କିଳ । ୧୯ ।
ଝଳଝଳ ଜଳେ ମିହିର
କରେ ଯା ଜ୍ୱଳେ ମଣି
ଚପ, ଦାବାନଳ, ଆତପ—
ତାପେ ତପ୍ତ ସେ ଫଣୀ ।
ଚଞ୍ଚଳ ରସନା ଯୁଗଳେ
କରି ବାତ ଲେହନ
କରୁନାହିଁ ତୃଷା ଅନ୍ତର
ହୋଇ ଭେକ ଭକ୍ଷଣ । ୨୦ ।
ଊର୍ଦ୍ଧ୍ୱମୁଖ ହୋଇ ଲୋହିତ
ଜିହ୍ୱା କରି ଚାଳନ
ଫେନ ପରିପୂର୍ଣ୍ଣ ଚଞ୍ଚଳ
ବିସ୍ତାରିତ ବଦନ ।
ପିପାସା ବ୍ୟାକୁଳେ ମହିଷ—
ବୁଲ ନଦେଖି ଜଳ
ପର୍ବତ ଗହ୍ୱରୁ ବାହାରୁ—
ଛନ୍ତି ହୋଇ ଚଞ୍ଚଳ । ୨୧ ।

(ବଙ୍ଗଳାଶ୍ରୀ)

ମଉଳ ଯାଉଛି ଦାବାନଳ ତେଜେ
ଯହିଁ ନବଜାତ ତୃଣ
ତପ୍ତ ପବନରେ ଇତସ୍ତତଃ କ୍ଷିପ୍ତ
ବିଶୁଷ୍କ ପତ୍ରେ ଯେ ପୂର୍ଣ୍ଣ
ପ୍ରଭାକର କର— ତାପେ କ୍ଷୀଣତର
ନିର୍ଝରଣୀ ବିଶେଷରେ
ଅରଣ୍ୟାନୀଚୟ— ଠାବେ ଠାବେ ଭୟ
ଜାତ କରଇ ମନରେ । ୨୨ ।
ଗୁଳ୍ମପାଦପରେ ବସିଣ ଧକାଇ
ହେଉଛନ୍ତି ପକ୍ଷିପୁଞ୍ଜେ
କ୍ଳାନ୍ତ ହୋଇ କପି— ବୁଲି ଯାଉଛନ୍ତି
ସାନୁମାନ ମଞ୍ଜୁ କୁଞ୍ଜେ
ନୀର ଖୋଜି ଖୋଜି ଭ୍ରମଣ କରନ୍ତି
ଅରଡେ ଗବୟଦଳ
ଅଷ୍ଟାପଦ ମୃଗ ବିବର୍ଦ୍ଧେ ଲଙ୍ଘି
କୂପରୁ ପିଅନ୍ତି ଜଳ । ୨୩ ।
ବିକଚ ନୂତନ କୁସୁମ୍ଭ * କୁସୁମ
ପରାଏ, ସିନ୍ଦୂର କାନ୍ତି
ପ୍ରବଳ ପବନ— ବେଗ—ସମୁଦ୍ଭୂତ—
ବେଗ ବଶୁଁ ବେଗେ ମାତି
ବ୍ୟାକୁଳିତ ହୋଇ ନିକଟ ବିଟପି—
ବଲ୍ଲୀକୁଳ ଆଲିଙ୍ଗନେ
ଦଗ୍ଧ ହେଉଅଛି ବନ ଭୂମିମାନ
ବନ ହୁତାଶନ ଷଣେ । ୨୪ ।
ଭୂଧର କନ୍ଦରେ ଜଳେ ଦାବାନଳ
ପବନେ ହୋଇ ବର୍ଦ୍ଧିତ
କଠୁନାଦେ ପୁଣି ଶୁଖିଲ୍ଲ ବାଉଁଶ
ସ୍ତମ୍ଭେ ହୁଏ ସ୍ଫୁଲିଙ୍ଗିତ

* ପୁଷ୍ପ ବିଶେଷ

ମୁହୂର୍ତ୍ତିକେ ପୁଣି ବୃଦ୍ଧି ଲଭ ଶୁଷ୍କ—
ତୃଣମାନଙ୍କେ ପ୍ରସର
ସମ୍ମୁଖ ବହ୍ନିରେ କୃଷ୍ଣସାର ଯୂଥେ
ଦେଉଛ ଅତୁଳ କର । ୨୫ ।

ଶାଳ୍ମଳୀ ବନରେ ପ୍ରଜ୍ୱଳିତ ଅଗ୍ନି
ଦିଶଇ ଅଦ୍ଭୁତ ପରି
ପାଦପ କୋଟରେ ଗୌରବର୍ଣ୍ଣେ ନଏ
କନକର କାନ୍ତି ହରି
ଥରେ ଥରେ କାହିଁ ଶୁଷ୍କପତ୍ର ବୃକ୍ଷ—
ତାହମାନଙ୍କରେ ଦିଶେ
ପବମାନ ଯୋଗେ ତେଜିଁ ତେଜିଁ ବନେ
ବନାଗ୍ନି ଖେଳଇ କ ସେ ? ।୨୬।

ବୈଶ୍ୱାନର ତାପେ ସନ୍ତପ୍ତ ଶରୀର
ଗଜ ଗବୟ କେଶରୀ
ମିଳି ପରସ୍ପର— ମିତ୍ର ପରି, ଶର
ବୈରୀଭାବ ପରିହରି
ବହ୍ନି ତାପେ ତପ୍ତ ଗିରୀନ୍ଦ୍ର ଗହ୍ୱରୁ
ସତ୍ୱରେ କରି ଗମନ
ବିପୁଳ ପୁଳିନ ପାଳିତ ନିମ୍ନଗା—
ନୀରେ କରନ୍ତି ମଜ୍ଜନ । ୨୭ ।

( ରସକୁଲ୍ୟା )

ଯେ କାଳେ ଫୁଟଇ ପାଟଳଫୁଲ *
ଜଳେ ବ୍ୟାପ୍ତ ହୁଏ କମଳକୁଳ
ସୁଖ ଲଗେ ଶୀତ-ନୀରେ ମଜ୍ଜନ
ଚନ୍ଦ୍ର କିରଣରୁ ବଳଇ ମନ
ଏହି ନିଦାଘ ବାସର ଯେ
ସୁଖେ ସୁବୁଗୀତେ ! ସଜନୀ ସହିତେ
ପ୍ରାସାଦେ ଯାଉ ତୋହର ଯେ । ୨୮ ।

---

* ପୁଷ୍ପ ବିଶେଷ ।

# ଦ୍ୱିତୀୟ ସର୍ଗ

## ବର୍ଷା

(ଖଣ୍ଡ କାମୋଦୀ)

ପ୍ରମତ୍ତ କୁଞ୍ଜର ପରି ସଞ୍ଚରଇ
ଘନ ପଟଳ,
ଧ୍ୱନନ୍ତ ଯାର ବିଦ୍ୟୁତ, କୁଳିଶ
ନାଦ ମର୍ଦ୍ଦଳ
ଚାମିକନନ୍ଦକୁ ସ୍ନେହ ଶୋଭା ସିନ୍ଧୁ
ମାଧୁରୀ ମୟ,
ନରନାଥ ପରି ଆସନ୍ତ ସୁନ୍ଦର !
ଘନ ସମୟ । ୧ ।
ଚାହିଁ ଅଣ୍ଡଶଯ୍ୟ ନୀଳ କୁବଳୟ—
ସମ ସୁନ୍ଦର
ଚାହିଁ ବା ଦଳିତ—କଜ୍ଜଳ—କଳିତ—
* ସୁଷମାକର
କେଉଁଠାରେ ପୁଣି ସସତ୍ତ୍ୱା ତରୁଣୀ—
ଚୁଚୁକ-ରୁଚି—
ମେଘମାଳେ ବ୍ୟାପ୍ତ ହେବାରୁ ବିୟତ †
ଯାଉଛି ଲୁଚି । ୨ ।
ପିପାସା ଆତୁର ଚାତକ ମାନଙ୍କ
ଆଶା ପୂରିଲା
ନବ ଜଳଦରେ ବିଶେଷ ସ୍ୱରରେ
ଜଳକୁ ଲଭି
ବରଷି ପ୍ରଚୁର, ଶ୍ରବଣ ମଧୁର—
ଗମ୍ଭୀର-ସ୍ୱନ—
ଧାରାଧରବୃନ୍ଦ କରୁଛନ୍ତି ମନ୍ଦ—
ମନ୍ଦ ଗମନ । ୩ ।

---

* ଶୋଭାର ଖଣି ।  † ଗଗନ

ଜଲଦେ, ଦମ୍ଭୋଳି-ଶବଦ-ମର୍ଦ୍ଦଳ
ଘୃଷ୍ଟଣ କର
ଚପଳା ଶିଞ୍ଜିନୀ-ସଂଯତ ବାସବ—
କୋଦଣ୍ଡ ଧର ।
ଅବଚ୍ଛିନ୍ନତର ବୃଷ୍ଟି ଧାରା ଖର—
ଶର ପ୍ରହାର
ପ୍ରବାସୀ ଜନର ମାନସ ଚଞ୍ଚଳେ
ତଅନ୍ତ ସାର । ୪ ।
ଶାଣଲ୍ଲଡ଼ ପୀତମଣି ନବ ତୃଣ—
ଅଙ୍କୁର ଜାଲେ
ରକ୍ତ ଇନ୍ଦ୍ରଗୋପେ ନବଜାତ * ଦ୍ରୋଣ—
ପର୍ଣ୍ଣୀ ପ୍ରବାଳେ ।
ବ୍ୟାପ୍ତ ହୋଇ କ୍ଷିତ କୃଷ୍ମାରୁଣ ନାନା
ରତ୍ନେ ଭୂଷିତା—
ବସୁନ୍ଧରା ପରି ହୋଇଅଛି ଅତ—
ଶସ୍ୟ ଶୋଭିତା । ୫ ।
ପ୍ରସାରିତ କରି ସୁବସ୍ତୀର୍ଣ୍ଣ ସ୍ୱରୁ—
ବର୍ହ ମଞ୍ଜୁଳ
ପରସ୍ପର ଆଲିଙ୍ଗନ, ଚୁମ୍ବଦାନେ
ହୋଇ ଅକୁଳ—
ନୀଳକଣ୍ଠକୁଳ ଅତୁଳ-ହରଷେ
ଫୁଲାଇ ଗଳ
ମନୋଜ୍ଞ ନାଦରେ ଗାଇଛନ୍ତି ଅଛ
ନୃତ୍ୟରେ ମତ୍ତ । ୬ ।
କଳୁଷିତ ଜଳ ପ୍ରବାହ ପ୍ରବଳ—
ତରବେଗରେ
ଉପାଡ଼ ପକାଇ ଜରସ୍ଥ ତଟର
ତରୁ ନଦରେ

* କଦଳୀ

ସନ୍ତତ ବିବିଧ ବ୍ୟଭିଗ୍ନରେ ରତ
ରମଣୀ ପର
ପାପାନ୍ତ ନଦୀଏ ମାର୍ଗରେ ବିଭ୍ରମ
ବିସ୍ତାର କର । ୭ ।
ଚହାଙ୍ଗ ଚଞ୍ଚଳ ହରଣୀ ହରଣ
ମୁଖେ ଖଣ୍ଡିତ—
ନବ ଅଙ୍କୁରିତ କୁଶାଙ୍କୁର ଜାଲେ
ହୋଇ ମଣ୍ଡିତ
ବୃକ୍ଷମାନଙ୍କର ନବ ପଲ୍ଲବରେ
ଦେଖ ଶୋଭାଇ
ବିନ୍ଧ୍ୟ ଗିରିବନ କାହା ମନ ଅବା
ହରଇ ନାହିଁ । ୮ ।
ଲୋଳ ଲୋଚନର ଉତ୍କୃଷ୍ଟ ଯୁଗଳେ—
ମଞ୍ଜୁଳାନନ
ଭୟରେ ବିଧୁର ଚହ୍ର କଳେବର—
କୁରଙ୍ଗ ଗଣ ।
ଠାବେ ଠାବେ କୁଣ୍ଡ ହେବାରୁ ଅଖଣ୍ଡ—
ଶିକତାମୟୀ
ବନସ୍ଥଳୀ କର ମାନସକୁ ସମୁ—
ତ୍ସୁକ କରଇ । ୯ ।
ସନ୍ତତ-ଗମ୍ଭୀର-ନାଦୀ ଜଳଧର—
ମାଳେ ଜଡ଼ିତ
ଗାଢ଼-ଅନ୍ଧକାର କବଳ ଖଟଂଗ—
ମଧ୍ୟେ ସ୍ଫୁରିତ
ସୌଦାମିନୀ-ଦାମ ଫୁଟିକ ଆଲୋକେ
ଅଭିସାରିକା ।
ସଙ୍କେତ ସରଣୀ ବୁଝି ବୁଲୁଥାନ୍ତି
ପ୍ରେମ ରସିକା । ୧୦ ।
ଚପଳା ଖେଳାରେ ଭୟ ଉଠିବାରୁ
ମନେ ସମଙ୍କି

କାଦମ୍ବିନୀ ମାଳ ଘୋଷଣ ଗମ୍ଭୀର
ସ୍ୱନେ ଚମକ
କାମିନୀଏ ନିଜ ଅଭିମାନ ଲାଜ
କରଣ ବାକ
ଅପରାଧକାରୀ ପତିଙ୍କୁ କୋଡ଼ରେ
ପକାନ୍ତି ଯାକ ।୧୧।

ବଧୂଲୋଚନ-ଇନ୍ଦୀବର-ବାରିବିନ୍ଦୁ-
ଭରେ ସର୍ବଦା
ବିମ୍ବାଧର-ସ୍ଫୁରୁ-ପଲ୍ଲବ ପଖାଳ
ପାନ୍ଥ-ପ୍ରମଦା
ଶୋକଭରେ ତେଜି ମାଲ୍ୟ ଆଭରଣ
ଅନୁଲେପନ
ଖରଶ୍ୱାସ ମାରି ନିଶ୍ୱାସେ କରନ୍ତି
ଦିନ ଯାପନ ।୧୨।

କଣ୍ଠୀ ରଜ-ତୃଣ ପଟଳେ ଆବୃଳ
ଅଷ୍ଟ ଅଚଳ
ଭୁଜଙ୍ଗମ ପରି ବକ୍ରଗତି କରି
ନଦ ସବଳ
ଉସ୍ୱରେ ଅସ୍ଥିର ଦର୍ଦ୍ଦୁରମାନଙ୍କୁ
ହୃଦରେ ବହି
ନିମ୍ନଦେଶ ଅଭିମୁଖରେ ତ୍ୱରିତେ
ଯାଉଛି ବହି ।୧୩।

ଶୁଣି ମନୋହର ଶବ୍ଦେ ଉତ୍କଣ୍ଠିତ
ମୂଢ଼ ଭ୍ରମରେ
ତ୍ୟାଗ କରି ବୃଷ୍ଟିଧାରା ଜର୍ଜ୍ଜରିତ—
ପଦ୍ମ ନିକରେ
ନୃତ୍ୟ ପରାୟଣ ମୟୂର କଳାପ—
ଚତ୍ର, ଲଳିତ

ଦେଖି କୁବଳୟ ପଣ୍ୟେ ହୁଅନ୍ତି
ତହିଁ ପତିତ । ୧୪ ।
କମଳ ଉତ୍ପଳ ନବ ପ୍ରସ୍ୱଯୁକ୍ତ
କପୋଳ ଦେଶେ
ଭୃଙ୍ଗଯୂଥସହ ମଦଜଳେ ଶୋଭ
ବନ୍ଧ ବଶେଷେ
ନୂତନ ବାରଦ ସ୍ୱନେ ମଦୋତ୍କଟ
ବନ୍ୟ ବାରଣେ
ଅଣ୍ଡ ଉଠେ କରୁଛନ୍ତି ମୁହୁର୍ମୁହୁ
ଧ୍ୱନି ଗର୍ଜନେ । ୧୫ ।
ଧବଳ ଉତ୍ପଳ କାନ୍ତି-ମେଘ ଚୁମ୍ବି-
ଶିଳା·ଶୋଭିତ
ଇତସ୍ତତଃ ମୃଦୁନାଦୀ ପ୍ରସ୍ରବଣ—
ନାଦେ ବେଷ୍ଟିତ
ଭୂଧରେ ବ୍ୟାକୁଳ ହୋଇ ନୃତ୍ୟକାରୀ—
କେକୀ ନଚିନେ
ନିତାନ୍ତ ଉତ୍କଣ୍ଠା ସଞ୍ଚାରିତ କରୁ—
ଅଛନ୍ତି ମନେ । ୧୬ ।
ନବଜଳକଣାଯୁକ୍ତ ମେଘସଙ୍ଗେ—
ଶୀତ ପବନ
ପୁଷ୍ପିତ, କେତକୀ କଦମ୍ବ ଅର୍ଜ୍ଜୁନ
ଶାଳ, କାନନ
ପ୍ରକମ୍ପିତ କରି, କୁସୁମ ସୁଗନ୍ଧେ
ହୋଇ ବାସିତ
କାହାର ମାନସ କରୁ ନାହିଁ ଅବା
ଉତ୍କଣ୍ଠିତ । ୧୭ ।
ଶ୍ରୋଣୀ ତଟପାଏ ଲମ୍ବାଇ କୁଞ୍ଚିତ—
କେଶ ବନ୍ଧନ
ସୁରଭିତ ଫୁଲକଢ଼ିରେ ବିରଚି
କର୍ଣ୍ଣ ଭୂଷଣ

ହାରମାଳେ ଭୂଷି ଉରଜ ମଣ୍ଡଳ,
* ସୀଧୁ ବଦନେ
ବାମ ଲୋଚନାଏ କାମଉପୁକାନ୍ତ
କାମୀଙ୍କ ମନେ । ୧୮ ।
ବିଭୂଷିତହୋଇ ଚଞ୍ଚଳ ଚପଳା
ଇନ୍ଦ୍ରଧନୁରେ
ବର୍ଷାଜଳସ୍ୱରେ ଅଣ୍ଡ ଅବନଦ୍ଧ
ମେଘ ନିକରେ
ପୂର୍ଣ୍ଣ କାଞ୍ଚୀ ମଣି କୁଣ୍ଡଳେ ଉଜ୍ଜ୍ୱଳ
ରମଣୀଗଣ
ପ୍ରବାସୀ ମାନସ ଏକାବେଳେ କରୁ—
ଛନ୍ତି ହରଣ । ୧୯ ।
କଦମ୍ବ, ନୂତନ ବକୁଳ, କେତକୀ—
ଫୁଲେ ଗ୍ରଥିତ—
ମନୋହରମାଳା ସାନନ୍ଦେ ମସ୍ତକେ
କର ନିହିତ
କକୁଭ କଳିକା ଇଚ୍ଛା ଅନୁକୂଳେ
କର୍ଣ୍ଣ ପାଶରେ
ଅବତଂସ ରଚ ଧରନ୍ତି ସୁରୁଏ
ଅଛ ଅଧରେ । ୨୦ ।
ପୁଷ୍ପମୟ କର୍ଣ୍ଣ ଅଳଙ୍କାରେ ଅମୋ—
ଦିତ କୁନ୍ତଳା
ସୁବାସିତ ଚୂଅ ଚନ୍ଦନେ ଚର୍ଚ୍ଚିତ
ହୋଇ ଅବଳା
ପ୍ରଦୋଷ ସମୟେ ଘନଘନ-ଘନ
ସ୍ୱନ ଶ୍ରବଣେ
ଛନ ଛନ ଯାନ୍ତି ଗୁରୁଜନ ଗୃହୁଁ
ଶଯ୍ୟା ସଦନେ । ୨୧ ।

* ଏକପ୍ରକାର ମଦ ।

( ବଙ୍ଗଳାଣୀ )

କୁବଳୟ ଦଳ ପତ୍ରଏ ସୁନୀଳ
ସଲିଳ ଭରେ ନାମିତ
ଉଦ୍ବେଷ୍ଟିତ, ମୃଦୁ ମରୁତ କମ୍ପନେ
ମନ୍ଥରେ ପରିଚାଳିତ
ଇନ୍ଦ୍ରଚାପଯୁକ୍ତ କାଦମ୍ବିନୀ ଏବେ
କରୁଛ ଅପହରଣ ?
କାହିଁକି ହରନ୍ତ ବିଧୁର ପଥିକ
ଜନ ସୀମନ୍ତିନୀ ମନ । ୨୨ ।
ନବ ଜଳ ଲଭି ତାପ ଦୂର କରି
ଅଛି ଅରଣ୍ୟ ପ୍ରାନ୍ତର
ପ୍ରଫୁଲ୍ଲିତ ହେଲ— ପର କୁସୁମିତ
କଦମ୍ବେ କି ମନୋହର ।
ପବନ କମ୍ପିତ ପାଦପ ଡାଳରେ
ନୃତ୍ୟ କଲା ପର ଦିଶେ
କନକଗଉରୀ କେତକୀ କୁସୁମ
କଣ୍ଟକେ ହସୁଛି କିସେ ? ।୨୩
ଏହି ବଲାହକ ସମସ୍ତ ନାୟକ
ପରି ବାମା କୁନ୍ତଳରେ
ଖଞ୍ଜି ଦେଉଅଛି ମାଲତୀ, ବଉଳ
ଫୁଲ ଅତ୍ୟନ୍ତ ଆଦରେ .
ପୁଣି ବିକଶିତ କଦମ୍ବ, ମାଧବୀ
ମାଆଲୀ ନବୀନ ଫୁଲେ
କିଶୋର କଦମ୍ବେ ଅବତଂସ ରଚି—
ଅଛି ବେନି କର୍ଣ୍ଣମୂଳେ । ୨୪ ।
ଉନ୍ନତ ପୃଥୁଳ— ତର ପୟୋଧରେ
ମୁକୁତା ହାର ଲମ୍ବାଇ
ବିପୁଳ ମଞ୍ଜୁଳ ନିତମ୍ବ ମଣ୍ଡଳେ
କ୍ଷୀଣ ବସନ ବେଢ଼ାଇ ।

ଲଳିତ ବିଜୁଳି ଶୋଭିତ ଜଳଦ
ଦେଖେ ଅଙ୍ଗନାଏ ଅଙ୍କ
ଧରୁଛନ୍ତି ନବ— ଜଳକଣା ସେକ—
ଜାତ ପ୍ରେମାଙ୍କୁର ଗୁଚ୍ଛ । ୨୫ ।
ଶ୍ରାବଣ ମାସର ବରଷା ଝଡ଼ରେ
ସୁଶୀତଳ ହୋଇ ଅଛି
ମୃଦୁଳ ପବନ ଫୁଲଭରେ ନତ
ନଚ୍ଚାଇ ତରୁ ବ୍ରତତି ।
କେତକୀ ପରାଗ ଜନିତ ସୁରମ୍ୟ—
ଗନ୍ଧେ ସୁରଭିତ ହୋଇ
ଲଳନା ଲଳସୀ ପ୍ରବାସୀ ମାନସ
କମ୍ପାଉଛି ରହି ରହି । ୨୬ ।
ଅମ୍ବୁଦରେ ନମ୍ର ହେବାକାଳେ ଏହି
ଆମ୍ଭ ର ହେବ ଆଶ୍ରୟ
ଏହା ଭାବି କିବା ସଲିଳ ବୃଷ୍ଟିରେ
ଜଳନମ୍ର ଘନଚୟ ।
ଅତ୍ୟନ୍ତ ନିଷ୍ଠୁର ନିଦାଘ ଅନଳ—
ଶିଖା ତାପେ ସନ୍ତାପିତ
ଅଭ୍ରଭେଦୀ ଶୀର୍ଷ ପର୍ବତବରକୁ
କରୁଛନ୍ତି ଆପ୍ୟାୟିତ । ୨୭ ।

( ରସକୁଲ୍ୟା )

ନାନାବିଧ ସଦଗୁଣେ ସୁନ୍ଦର
ରସିକମାନଙ୍କ ହୃଦୟ ଚୋର ।
ବୃକ୍ଷ, ଲତାଙ୍କର ବନ୍ଧୁ ସମାନ,
ନିର୍ବିକାର, ପ୍ରାଣୀମାନଙ୍କ ପ୍ରାଣ
ଏହି ଶାରଦ ସମୟ ଯେ—
ଚାରୁ ସମ୍ପାଦନ ମନୋରଥମାନ
ତବ ଅଛି ରସମୟ । ୨୮ ।

———

# ତୃତୀୟ ସର୍ଗ

## ଶରତ୍

(ସମବେଶ)

ଉତ୍ଫୁଲ୍ଲ କମଳ ମନୋଜ୍ଞ-
                    ମୁଖୀ କାଶ ଦୁକୂଳା
ମତ୍ତ-ହଂସ ରବ-ମଞ୍ଜୀର
                    ମଞ୍ଜୁ ନାଦେ ମଞ୍ଜୁଳା
ପରିପକ୍ୱ ଶସ୍ୟ ରୁଚିର
                    କୃଶ ଗାତ୍ରବଲ୍ଲରୀ
ନବ ବଧୂପରି ଆସିଲା
                    ଦେଖ ଶରତ୍ ସୁନ୍ଦରୀ । ୧ ।
କାଶତଣ୍ଡି ଫୁଲେ ଧରଣୀ,
                    ସାଜି ଚନ୍ଦ୍ର କିରଣେ
ରାଜହଂସେ ନଦୀ ସଲିଳ ;
                    ସର କୁମୁଦ ବନେ
ଫୁଲସରେ ନତ ସପତ
                    ଛଦ-ଦ୍ରୁମେ କାନନ
ମାଳତୀ ଫୁଲରେ ଉଦ୍ୟାନ
                    ଦିଶେ ଶ୍ୱେତ ବରଣ । ୨ ।
ଚଞ୍ଚଳ ସୁନ୍ଦର ଶଫରୀ-
                    କାଞ୍ଚୀ-ଦାମ-ଶୋଭନୀ
ତୀରେ ବସିତ ଧବଳ
                    ବିହଙ୍ଗମ-ମାଳିନୀ—
ସରିତେ, ବିଶାଳ-ପୁଳିନ-
                    ପ୍ରାନ୍ତେ-ନିତମ୍ବବତୀ
କରନ୍ତି ସମଦା ପ୍ରମଦା
                    ପରି ମନ୍ଥରେ ଗତି । ୩ ।

ପଦ୍ମକଳ୍ପ-ଶଙ୍ଖ ରଜତ
ଗୌର ଲଘୁ-ନିର୍ମ୍ମଳ—
ମେଘ ଶତସ୍ୱଗେ ପବନ
ବେଗେ ହୋଇ ଚଞ୍ଚଳ
ଗମନ କରନ୍ତେ, ଭ୍ରମର
ଚୟେ ଉପଶୋଭିତ—
ସ୍ୱଜନ ଓସ୍ୱଏ ଗଗନ
କାହିଁ ହୁଏ ଲକ୍ଷିତ । ୪ ।
ଦଳିତ କଜ୍ଜଳ ସମାନ
ଏହି ନବ ମଣ୍ଡଳ
ବନ୍ଧୁଲି ଫୁଲରେ ଶୋଭିତ
ରମ୍ୟ ଧରଣୀ ତଳ
ନୂତନ ପାଚିଲା କଳମ *
ଧାନ୍ୟେ ବୃତ କେଦାର
କରୁନାହିଁ ମନ ଅସ୍ଥିର
କହ କେଉଁ ଯୁବାର ? ୫ ।
ମତ୍ତ-ମଧୁବ୍ରତ-ଶୋଭିତ-
ମଧୁ-ସେଚନ ଲଭି
ଫୁଲ ଫୁଟିବାରୁ ତେଙ୍ଗରେ
ଧରି ସୁନ୍ଦର ଛବି
ମନ୍ଦ ପବନରେ କମ୍ପିତ-
ଶାଖା-ଶିଖେ ବାହାର (୧)
† ଢୋକଦାର ମନ ନକରେ
କଦାଗତ କାହାର । ୬ ।
ମେଘ ଆବରଣୁ ବିମୁକ୍ତ,
ହୋଇ ଚନ୍ଦ୍ରବଦନୀ
ଉଜ୍ଜ୍ୱଳ ତାରକା ରତନ
ଭୂଷା ଖଞ୍ଜି ରଜନୀ

* ଅଶୁ ଧାନ୍ୟ (୧) ସୁନ୍ଦର । † ବଣୀଧର

ବିମଳ କୌମୁଦୀ ଦୁକୂଳ
ପରିଧାନ କରଣ
ବଢୁଅଛି ବାଳା ପ୍ରମଦା
ପରି ଦିନକୁ ଦିନ । ୭
ଜଳପକ୍ଷୀ-ପକ୍ଷେ ଖଣ୍ଡିତ-
ବୀଚି-ହ୍ରଦେ ନଚ୍ଚାଇ
ହଂସ ଚକ୍ରବାକମାନଙ୍କୁ
ତୀର ଭୂମେ ବସାଇ
ତଟିନୀ ନଳିନୀ ପରାଗ-
ଭରେ ହୋଇ ପାଟଳ
ହଂସ ରବେ ନର ମାନସ
କରୁଅଛି ଶୀତଳ । ୮ ।
ହୁଦହାସୀ ସୁଧା କିରଣ
ଶୋଭି, ନେତ୍ର ଉତ୍ସବ,
ଅହ୍ଲାଦକ, ଶୀତ ଶୀକର
ବର୍ଷୀ, ତାରି ବାନ୍ଧବ
ପ୍ରିୟତମ ପନ୍ଥ ବିରହ
ବିଷ—ଦିଗ୍ଧିଖେ କ୍ଷତ
ବରବର୍ଣ୍ଣିମାଙ୍କୁ କରଇ
ଅତିଶୟ ଆରତ । ୯ ।
ଫଳଭରେ ନତ * କଳମ
କୂଳ କମ୍ପିତ କରି
ନଚ୍ଚାଇ କୁସୁମ ବିନମ୍ର-
ତରୁ-ବର ବଲ୍ଲରୀ
ପ୍ରଫୁଲ୍ଲ ପଙ୍କଜ ବନରେ
ନଳିନୀଙ୍କୁ ଦୋଳାଇ
ଗନ୍ଧବହ ବହେ ଚଞ୍ଚଳେ
ଯୁବା ଚିତ୍ତ କମ୍ପାଇ । ୧୦ ।

* ଧାନ

ଉନ୍ନତ ସାରସ ମିଥୁନ
ଯୋଗେ ଅତି ଶୋଭିତ
ବିମଳ ପ୍ରଫୁଲ୍ଲ କମଳ
ଦଳେ ହୋଇ ଭୂଷିତ
ପ୍ରଶ୍ରିତ ବାତରେ ଉଦ୍ଭିତ
ରମ୍ୟ ବୀଚି ମାଳିକା
ସରସୀ ସହସା ନେଉଛି
ଏବେ ହୃଦୟ କଣି । ୧୧ ।
ଏବେ ଘନ ଗର୍ଭେ ଯାଉଛି
ଇନ୍ଦ୍ର କୋଦଣ୍ଡ ଲୁଚି
କବେ ପଥଦାତେ ନଭକୁ
ଦେଉ ନାହାନ୍ତି ବିଷି
ବିସୃତ କେତନ ତତତ
ହେଉ ନାହିଁ ସ୍ଫୁରିତ
ନ ନାଚନ୍ତି କେକୀ ଉର୍ଦ୍ଧ୍ୱକୁ
ଥାଉ ଦେଖି ଦେଖିତ । ୧୨ ।
କଦମ୍ବ କୁଟରେଁ ଅର୍ଜ୍ଜୁନ
ସର୍ଜ କେଳକଦମ୍ବେ ,
ଉପେକ୍ଷି, କୁସୁମ ଫୁଟିଛି
ସପ୍ତ-ଛଦ କଦମ୍ବେ †
ସ୍ୱର ପୁଣି ନୃତ୍ୟ ଆମୋଦ—
ଶୂନ୍ୟ ମୟୂରଚୟ—
ଛାଡ଼ି ମୃଦୁନାଦ ମଦ୍ଗଲେ
କରୁଅଛି ଆଶ୍ରୟ । ୧୩ ।
ମନୋହର ଗଙ୍ଗଶିଉଳୀ
ଫୁଲ ଗନ୍ଧେ ବାସିତ
ସ୍ୱସ୍ଥଭାବେ ସ୍ଥିତ ପକ୍ଷୀଙ୍କ
ରବେ ପ୍ରତିଧ୍ୱନିତ

† ସମୂହ

ସଞ୍ଚାରଣୀ ମୃଗୀ ନୟନ
କ୍ଷଣଳୟେ ଶୋଭିତ
ଉପବନ ପୁଂସ୍କ ମାନସ
କରେ ଉତ୍କଣ୍ଠିତ । ୧୪ ।
କହ୍ଲାର କମଳ କୁମୁଦେ
ବାର ବାର ଦୋଳାଇ
ସେମାନଙ୍କ ଅଙ୍ଗ ସ୍ପର୍ଶରୁ
ଶୀତ ସ୍ୱଭାବ ପାଇ
ପତ୍ର ଅଗ୍ରେ ଲଗ୍ନ ହିମ
ବାରି କରି ଉଦ୍ଧୂତ
ପ୍ରସୃତ ପବନ ମାନବ
ହୃଦେ ଢାଳେ ଅମୃତ । ୧୫ ।
ହୃଷ୍ଟଚିତ୍ତେ ସୁପ୍ତ ପ୍ରଚୁର
ଧେନୁ ଯୂଥେ ମଣ୍ଡିତ
ମୁହୁର୍ମୁହୁ ହଂସ ସାରସ
ମାଳେ ପ୍ରତିନାଦିତ
ପରିପକ୍ୱଶାଳୀ କେଦାର—
କୂଳେ ହୋଇ ଅଖଣ୍ଡ
ପ୍ରାନ୍ତର ନିକର ହୃଦୟେ
କରେ ମୋଦ ଅଖଣ୍ଡ । ୧୬ ।
ହଂସଗମନକୁ ନିନ୍ଦଇ
ଏବେ ଲଲନା ଗତି
ବିକଚ ପଦ୍ମକୁ ଧିକ୍କାର
କରେ ସ୍ତ୍ରୀମୁଖ ଜ୍ୟୋତି
ମଦରେ ମନ୍ଥରନୟନ
ଗଞ୍ଜେ ନୀଳଉତ୍ପଳେ
ଭୁରୁଭୁରୁ ଭଙ୍ଗୀ ଜିଣଇ
ଚଳ ହିଲ୍ଲୋଳ ଦଳେ । ୧୭ ।
ଅଶୋକ କୁସୁମେ ଜଡ଼ିତ
ହୋଇ ନବମାଳିକା

ଚୁଚୁକରେ ଦନ୍ତ ପ୍ରସ୍ତରେ
ବାମା ହାସ ଚନ୍ଦ୍ରକା
ପୁଣି ପୁଷ୍ପେ ନବ ପଲ୍ଲବ—
ଶାଳୀ ଶ୍ୟାମା ବଲ୍ଲରୀ
ନଅଇ ତାହାଙ୍କ ଭୂଷିତ—
ବାହୁ ସୁଷମା ହର । ୧୮ ।

ଉଜ୍ଜ୍ୱଳ କାଞ୍ଚନ କୁଣ୍ଡଳ
ଯୋଗେ ସ୍ଫୁରୁ ଶ୍ରବଣ
ନାନା ଜାତି ମାଳ ଉତ୍ପଳେ
ମୋଦେ କର ମଣ୍ଡନ
ଖଞ୍ଜନ୍ତ ସୁନୀଳ କୁଞ୍ଚିତ
ଘଞ୍ଚ କୁନ୍ତଳପନ୍ତ
ଖେଳାଖଞ୍ଜରୀଠ ଦୃଶାଏ
ଯହେଁ ନବ ମାଳତୀ । ୧୯ ।

ଉରଜକୁ ଭୂଷି ଚନ୍ଦନ
ସୁବାସିତ ମାଳରେ
ମେଖଳାକୁ ଖଞ୍ଜି ପୃଥୁଳ
ବେନ ଶ୍ରୋଣୀ ତଟରେ
ଚରଣ କମଳ ମଧୁର—
ନାଦୀ-ମଞ୍ଜୁ-ମଞ୍ଜୀରେ
ଆନନ୍ଦ ମନରେ ନାଚିଏ
ମଣ୍ଡୁ ଛନ୍ଦ ରଙ୍ଗରେ । ୨୦ ।

(ବଙ୍ଗଳାଶ୍ରୀ)

ବଗଦ କୁମୁଦ ଫୁଲ ଫୁଟିଅଛି
ହଂସେ ସ୍ୱସୁଛନ୍ତ ଯହିଁ
ଦଳାଞ୍ଜନ ନଭ ମରକତ ମଣି—
ପରି ଯା ଜଳ ଦିଶଇ
ସେହି ରମଣୀୟ ଜଳାଶୟ ଛବି
କରିଛି ଏବେ ବନ୍ଧନ
ଚନ୍ଦ୍ର ତାରକାରେ ସୁଶୋଭିତ ହୋଇ
ମେଘମୁକ୍ତ ଏ ଗଗନ । ୨୧ ।

କୁମୁଦର ସଙ୍ଗୀ ଶୀତଳ ସମୀର
ବହୁଇ ଏ କାଳେ ଧୀରେ
ମେଘମାଳ-ମୁକ୍ତ ହୋଇ ଦିଗ୍‌ମଣ୍ଡଳ
ମାନସ ହରେ ଅଚିରେ ।
ସୂର୍ଯ୍ୟକରେ ଜଳ ହୋଇଁ ଅନ୍ତରତ
ଶୁଷ୍କ-ପଙ୍କା ହେଲ ମଧ୍ୟ
ପ୍ରସନ୍ନ ଚନ୍ଦ୍ରିକା ଚନ୍ଦ୍ର ତାସ୍ରମାଳେ
ଆକାଶ ତୋସ୍ର ଦଶଇ । ୧୨ ।

ଏବେ ପ୍ରଭାତରେ ନାରୀମାନଙ୍କର
ମୁଖ ସମା ପୂର୍ଣ୍ଣସାକ
ପଦ୍ମକର ଭରେ ବିକଶିତ ହୋଇ
ଶୋଭା ପାଉଛି ଅଧିକ ।
କୁମୁଦିନୀ ପୁଣି ଅସ୍ତାଚଳ ଗତ
ନଦେଖି ସୁଧାକରକୁ
ପ୍ରୋଷିତଭର୍ତ୍ତୃକା— ନାରୀ ହାସ୍ୟ ପରି
ଭଜଇ କ୍ଷୀଣ ଛବିକୁ । ୧୩ ।

ଅନୁରକ୍ତ ନବ ନୀଳୋତ୍ପଳେ ନିଜ
ପ୍ରିୟାର ନୟନ ଠାଣି
ଶୁଣି ମଦମତ୍ତ ମରାଳ ସ୍ୱରରେ
ମଧୁର ମେଖଳା ବାଣୀ ।
ଅଧର ରୁଚିର— ଶୋଭା ବନ୍ଧୁଜୀବେ
ପଥିକେ କର ଦର୍ଶନ
ଭ୍ରାନ୍ତଚିତ୍ତେ ଏବେ କରୁଛନ୍ତି ସ୍ୱୀୟ
ଓଷ୍ଠ ଅଧୀରେ ସ୍ୱେଦନ । ୧୪ ।

ତ୍ୟାଗ କର ପୂର୍ଣ୍ଣଚନ୍ଦ୍ରମା—
କାନ୍ତ ମହିଳା ମୁଖେ
ରମଣୀସ୍ତ ହଂସ ବହୁତ
ମଣି ମଞ୍ଜୀରେ ସୁଖେ

ବନ୍ଧୁକ ପୁଷ୍ପର ସୁଷମା
ତାଙ୍କ ରମ୍ୟ ଅଧରେ
ସଧୀରେ ଧରନ୍ତି ଶରତ-
ଲକ୍ଷ୍ମୀ ଗମନ କରେ । ୨୫ ।

( ରସକୁଲ୍ୟା )

ନବ ବିକଶିତ ପଦ୍ମ-ବଦନା
ଫୁଲ୍ଲ ଇନ୍ଦୀବର ରମ୍ୟ ନୟନା
କାଶ କୁସୁମରେ ଶ୍ୱେତ ବସନା
କୁମୁଦ କଳାପେ ସ୍ଫୁରୁ ବରନା
ଏହି ଶରତ୍ ସମୟ ଯେ
ଅବତରଣ କରୁ ମନ୍ଦମନ୍ଦ ହସୁ
ଭରଏ ସୁଖ ଜଗତ୍ସୁ ଯେ । ୨୬ ।

# ଚତୁର୍ଥ ସର୍ଗ

## ହେମନ୍ତ

(ବମକେଶ)

ଜନମାଇ ନବ ଭାବର
ପକ୍ୱ ଭର ପତର
ଲୋଧ୍ର ଫୁଲମାଳ ଫୁଟାଇ
ଶସ୍ୟ ରୁଚିରତର
ପଙ୍କଜ—କାନନ—ବିନାଶୀ—
ଶୁଭ୍ର ତୁଷାରବନ୍ତ
ଆଗତ ହୋଇଲା ହେ ସଖି !
ହିମମୟ ହେମନ୍ତ । ୧ ।

ଅତି ମନୋହର କୁଙ୍କୁମ
ରାଗେ ରକ୍ତ ବରଣ
କୁନ୍ଦ କଳାକର ତୁଷାର—
ନଭ ହାରେ ବହନ
ପୀନ ପୟୋଧର—ଶାଳିନୀ—
ମତ୍ତକାମିନୀ ବ୍ରଜ
ବିଭୂଷିତ କଲୁନାହ୍ଲାନ୍ତ
ନିଜ ନିଜ ଉରଜ । ୨ ।

ବଳୟ କେୟୂର ବନିତା—
ବାହୁ—ବଲ୍ଲି—ମୂଳେ
ନବୀନ ଦୁକୂଳ ବିଶାଳ
ଗୋଲ—ନିତମ୍ବ ସ୍ଥଳେ
ଝୀନବାସ ପୁଣି ଉନ୍ନତ
ଗୁରୁ ପୟୋଧରରେ
ଲଭିବାକୁ ନାହିଁ ଆଶ୍ରୟ
ଅହା ଏହି କାଳରେ । ୩ ।

ସ୍ମୀକରମୟ ଅଧର—
ରତ୍ନ ଯୋଗେ ମଞ୍ଜୁଳ
କଳନାଦ—କାଞ୍ଚୀ କଳାପେ
ଶ୍ରୋଣୀ ତଟ ବିପୁଳ

ହଂସରୁତ ପରି ମଧୁର—
ନାଦୀ ମଞ୍ଜୀରେ ପୂର୍ଣ୍ଣ
ଭୃଙ୍ଗ—ଗୁଞ୍ଜି—ମୃଦୁପଦକୁ
ନ ଭୂଷନ୍ତି ତରୁଣୀ । ୪ ।
ଶରୀର ଲଢକା କରନ୍ତି
ମୃଗମଦେ ଚର୍ଚ୍ଚିତ
ଗନ୍ଧଯୁକ୍ତ କାଳ ଅଗୁରୁ—
ଧୂପେ କେଶ ବାସିତ ।
ବଦନ କମଳେ ମଞ୍ଜୁଳ—
ପତ୍ରାବଳୀ ରଚନା
ସୁରତ ଉତ୍ସବ କମିତ୍ତ
ପ୍ରମୋଦରେ ଅଙ୍ଗନା । ୫ ।
ରତି ଶ୍ରମ ବଶେ ନତାନ୍ତ—
କୃଶ ପାଣ୍ଡୁ ବଦନା
ଦୟିତ—ଦଶନେ—ଖଣ୍ଡିତ—
ଓଷ୍ଠ ଦେଖି ଲଳନା
ହୋଇଲେହେଁ ଅତି ହରଷ
ମାନସରେ ଉଦୟ
ଉଚ୍ଚସ୍ୱରେ ହସୁ ନାହାନ୍ତି
ଏବେ ହୋଇ ସଭୟ । ୬ ।
ପ୍ରସ୍ଫୁଟେ ତୃଣାଗ୍ର ମିଳତ
ହିମ—ଶୀକର ବୃନ୍ଦି
ମନେ ହୁଏ, ବାମା ଉରଜ
ଉର ପ୍ରଦେଶ ପାଇ
ସେ ପୀଡ଼ା ଜନିତ ଯାତନା
ଯୋଗେ ହୋଇ କପଣ୍ଟ
କରୁଅଛି କବା ଅଧୀରେ
ଶୀତକାଳ ବନ୍ଦନ । ୭ ।
ପରିପକ୍ୱ, ଶାଳୀ ଧାନର
ଫଳ ସ୍ତରେ ମଣ୍ଡିତ

ବିଚିତ୍ର ବରଣ କୁରଙ୍ଗ
ବଧୂ ଯୂଥେ ଭୂଷିତ
ମନୋହର କୌଞ୍ଚ ନିନାଦେ
ମୁହୁଃ ପ୍ରତିନାଦିତ—
ପ୍ରାନ୍ତର ପ୍ରଦେଶ ମାନସ
କରୁଅଛି ମୋହିତ । ୮ ।
ସୁଶୋଭିତ, ନବ-ବିକଚ—
ନୀଳ ଉତ୍ପଳ ଫୁଲେ
ପୁଣି ଅଳଂକୃତ, ଉନ୍ନତ
ମଞ୍ଜୁ କାଦମ୍ବ କୁଳେ
ସୁନିର୍ମ୍ମଳ ଜଳେ ପୂରିତ,
ଅତିଶୟ ଶୀତଳ—
ସରୋବର ନର ମାନସ
କରୁଅଛି ବିମଳ । ୯ ।
ହେ ପ୍ରିୟେ ! ପ୍ରିୟଙ୍ଗୁ ଲତିକା
ହିମ ସଂସର୍ଗେ ଶୀତ—
ମନ୍ଦଗନ୍ଧବହ ଚାଳନେ
ଧୀରେ ଧୀରେ କମ୍ପିତ
ପରିପକ୍ୱ ହୋଇ ବିରହୀ
କାମାତୁର ମହିଳା—
ପରି ଏ ଧାରଣ କରିଛି
ଏବେ ପାଣ୍ଡୁର ଲୀଳା । ୧୦ ।
ପୁଷ୍ପାସବ ମୋଦେ ବାସିତ—
ମୁଖଚନ୍ଦ୍ର ରୁଚିର
ଶ୍ୱାସ-ସୁମଧୁର-ସମୀରେ
ସୁବାସିତ ଶରୀର
କାମରସ ଗାଢ଼ ଆବେଶେ
ଯୁବା ଯୁବତୀଗଣ
ପରସ୍ପର ତନୁ ଜଡ଼ାଇ
କରୁଛନ୍ତି ଶୟନ । ୧୧ ।

ନାୟକ—ବଦନ—ଚନ୍ଦ୍ରରେ
ଅଳଂକୃତ ଅଧରେ
ଭାଳ—ଇନ୍ଦୁ ବକ୍ର କରଜା—
ଙ୍କିତ ପୟୋଧରରେ
ନବ ପଲ୍ଲବନ ଶାଳମା—
ବର ସୀମନ୍ତିନୀଙ୍କ
ନର୍ବସ୍ୱ ସମ୍ଭୋଗ ଦ୍ୱୟର
ପ୍ରସ୍ଫୁରିତ ଅଧିକ । ୧୨ ।

(ଖଣ୍ଡିତା ବାମୋବା)

ଆଦରଣ ଶୋକ ବେଦଳି ଅଦରଣୀ
ଭାଳାତପରେ—
ଅବସ୍ଥାନ କର, ବଦନାରବିନ୍ଦ
ଭୂଷିତ କରେ
ଦୟିତନସୀଦସାର, ଦନ୍ତ ଶିଖେ—
ଛିନ୍ନ ଅଧର—
ଆକର୍ଷଣ କର ବାର ବାର ଦେଖେ
ହୋଇ କାତର । ୧୩ ।
ଅତ୍ୟନ୍ତ ପ୍ରବଳ ସୁରତ ଶ୍ରମରେ
କ୍ଳାନ୍ତ ଶରୀର
ରଜନୀ-ଜାଗର-ବପାଟଳ-ନେତ୍ରେ-
ପଦ୍ମେ ରୁଚିର
ସ୍ତବକଦେଶ-ଚ୍ୟୁତ-ଲୁଲିତ * ବ୍ୟାକୁଳ—
ଘନ-କୁନ୍ତଳା
ମୃଦୁ ସୃଷ୍ଟିକରେ ଶୟନ କରୁଛି
କେଉଁ ଅବଳା । ୧୪ ।
ପୃଥୁଳ-ଉନ୍ନତ-ଉରଜେ ନମିତ—
ଗାତ୍ର-ବ୍ରତତି—
ନବ ନୀରଧର ନବ ନୀଳବେଣୀ
ଅନ ପ୍ରବତୀ

* ଶୈଥିଲ ।

ମନୋଜ୍ଞ ସୌରଭ ସ୍ନାନ—ପର୍ଯ୍ୟାପିତ
                    ମାଳା, ଚନ୍ଦନ—
ଦୂରକର ଶିରଦେଶୁ, କରୁଅଛ
                    କେଶ ବନ୍ଧନ । ୧୫ ।
ଲମ୍ବିତ-ଲଳିତ-ମାଳାଲେକେ
                    ଅଳଙ୍କୃତ-ଭୂଷଣା
ଦେଖି ପ୍ରିୟ-ପରିଭୁକ୍ତ-ଗାତ କେଉଁ
                    ଲୋଳ ଲୋଚନା
ମନ୍ଦ ମନ୍ଦହାସେ ସ୍ମରୁ ଶୋଭ ପ୍ରକ—
                    ଠାଇ ଅଧରେ
ନଖକ୍ଷତ ଦେହା ସ୍ନେଳ † ପରିଧାନ
                    କରେ ଆଦରେ । ୧୬ ।
ସୁଚିର ସୁରତ-କେଳି-ପରିଶ୍ରମ—
                    ଭରେ ଦୁର୍ବଳା
ପୁଣି ଅନିଶୟ ଶିଥିଳ ଶରୀର,
                    ଘନ କୁନ୍ତଳା
ପୁଲକିତ—ପୀନ ପୟୋଧର—ଯୁଗେ
                    ଲୁଟରିବର
ତନୁରେ ସୁରଭି ତଇଳ ଚର୍ଚ୍ଚିତ
                    କରେ ଅପର । ୧୭ ।

(ଋଷକୁଞ୍ଜା)

ମନୋହର ଗୁଣଗଣେ ସୁନ୍ଦର,
କମଳମୁଖିଙ୍କ ଆନନ୍ଦ କର,
ରମଣୀୟ, ପୁଣି କୌଞ୍ଚ ନିନାଦ ;
ପକ୍ୱ ଶସ୍ୟ ଗ୍ରାମ୍ୟ ସୀମା ଅଚ୍ଛାଦ
    ଏହୁ ହେମନ୍ତ ବାସର
ବେଗେ ପୂର୍ଣ୍ଣ କରୁ        ବନ୍ଧୁବନ ସ୍ମରୁ
    ବାସନା ସବୁ ତୋହର । ୧୮ ।

---

† ବାସଗ୍ଲ

## ପଞ୍ଚମ ସର୍ଗ

# ଶିଶିର

(ଖଣ୍ଡ କାମୋଦୀ)

ମନୋହର ଷଟ୍‌ପଦ-ଶାଳୀ କେଣ୍ଡା
ଭରେ ଶୋଭିତ
କାହୁଁବା ପାଦପ-ବହ୍ନାଗ୍ନି ବଳାକା—
ରୂପେ ଗ୍ରଥିତ
କାମ ଶରବନ୍ଧୁ, କାମଲୋଚନାଙ୍କ
ପ୍ରେମ ସ୍ୱଜନ
ଉପଗତ ହେଲା ଶିଶିର ବାସର
ଶୁଣରେ ଧନ ! । ୧ ।
ବାତାୟନ-ଅବରୁଦ୍ଧ-ରମଣୀୟ—
ପୁର-ଭିତର
ପ୍ରଜ୍ୱଳିତ ହୁତାଶନ, ପ୍ରଭାକର
ପ୍ରଖର କର
ଲବସ୍ତ୍ର ପୁଣି ସଯୌବନା ଗଜ—
ଗମନା ପନ୍ତ
ଏକାଳେ ରସିକ ନଗରର ରୁଚି—
କର ହୁଅନ୍ତି । ୨ ।
ହରୁନାହିଁ ମନ ଚନ୍ଦ୍ରିକା-ଶୀତଳ
ଚନ୍ଦନ-ପଙ୍କ
ସୁଖ ଲଭୁ ନାହିଁ ଶରଚନ୍ଦ୍ର ଶୁଭ୍ର—
ସଉଧ-ଅଙ୍କ
ସାନ୍ଦ୍ର ହିମକଣ ଶୀତ ସମୀରଣ—
ମନ୍ଦ ହିଲ୍ଲୋଳ
ସନ୍ତ୍ରସ୍ତ ମାନବ ମନ କରୁଅଛି
ଦୁଃଖେ ଚଞ୍ଚଳ । ୩ ।

ଧବଳ ବରଣ ତୁଷାରପତନ
  ଯୋଗେ ଭାକର
ରଜନୀ ନାୟକ କିରଣରେ ଅତି
  ଶୀତଳତର
ଉଜ୍ଜ୍ୱଳ ତାରକାମଣ୍ଡଳରେ ଅତି
  ସ୍ତୁତ ଭୂଷିତ
ଶିଶିର ସମୟ ରଜନୀ ନିଚୟ
  ନ ହୁଏରେ ଚାରୁ । ୪ ।
ନାଗବଲ୍ଲୀଦଳ, ବିଲେପନ, ନାନା
  ଜାତୀୟ ସ୍ରକ । (୧)
ଶୋଭନ; ସୁଖାସବ ବାସିତବଦନା
  ବନିତା ବ୍ରଜ ।
କାଳାଗୁରୁ-ଧୂପଧୂମ-ସୁରଭିତ—
  ଶଯ୍ୟା ସଦନେ
ପ୍ରବେଶ କରନ୍ତି ବିଳାସ ଭଙ୍ଗୀରେ
  ଉତ୍ସୁକ ମନେ । ୫ ।
ପୂର୍ବକୃତ ଅପରାଧ ଯୋଗୁଁ ବାର—
  ବାର ତର୍ଜ୍ଜିତ
କମ୍ପିତ କଳେବର, ପୁଣି ଭୟ ଭରେ
  ଚଳୁପ୍ରଚାରୁ
ପ୍ରିୟତମଗଣ, ସୁରତ କାମନା
  କରନ୍ତେ ଧୀରେ
କାମିନୀଏ ତାଙ୍କ ଅପରାଧ ଭୁଲି—
  ଛନ୍ତି ଅଚରେ । ୬ ।
ଦୀର୍ଘଯାମା ତ୍ରିଯାମାରେ କାମାତୁର
  ଯୁବା ନିକର
ଚିରକାଳ—ଅନ୍ତକ୍ଷୟ ଧନର୍ଦ୍ଧ୍ୟ—
  ସର—ସମର—

---

(୧) ମାଳା ।

ପରଶ୍ରମ-ଜାତ-ଖେଦେ ବ୍ୟାକୁଳିତ—
ହୋଇ ମନ୍ଥରେ
ଗମନ କରନ୍ତି ଗଜ—ଗମନାଏ
ନିଶା ଶେଷରେ । ୭ ।
ସୁସ୍ପଷ୍ଟ କାଞ୍ଚିଲ୍ଲ ପରବୃତ ଘନ—
ଘୃଷ୍ଟ ଉରଜା
ରକ୍ତବର୍ଣ୍ଣ କୌଶେୟକେ ‡ ଉରସ୍ଥଳ—
ମଣ୍ଡି ; ସଲଜ୍ଜା
ଘନ କୁନ୍ତଳାଏ କୁନ୍ତଳ କଳାପେ
କୁସୁମ ଖଞ୍ଜି
ଶିଶିର କାଳକୁ ହର୍ଷେ ଏବେ ଦେଉ—
ଅଳକ୍ତ ରଞ୍ଜି । ୮ ।
ପଦ୍ମବଦନାଙ୍କ-ନବଯଉବନେ
ଉଷ୍ଣ ସମ୍ପୂର୍ଣ୍ଣ
ସୁଖ ସେବ୍ୟ, ପୁଣି କୁଙ୍କୁମ ପରଶେ
ପିଞ୍ଜର ବର୍ଣ୍ଣ—
ପୀନପୟୋଧର ପ୍ରପୀଡିତ-ଉର
ହୋଇ ଯୁବକେ
ଶୀତପରିଭବକର ନିଦ୍ରା ଯାଉ—
ଛନ୍ତି ପୁଲକେ । ୯ ।
କାମୀ ସହ ସଙ୍ଗେ ମଗ୍ନହୋଇ ମତ୍ତ—
କାମିନୀଗଣ
ସୁରତି—ନିଶ୍ୱାସବାତ କମ୍ପିତ—
ପଦ୍ମେ ଅଳକ
ରତପତ ରଚ ରସାୟନ-ଅନ୍ତ—
ସ୍ମରୁ ମନ୍ଦର
ନିଶାବଶେ ବାର ବାର ପିଉଛନ୍ତି
ହୋଇ ଅଧୀର । ୧୦ ।

‡ ପଟ୍ଟବସ୍ତ୍ର

ପ୍ରାଣନାଥ ପ୍ରେମାଳିଙ୍ଗନେ ନବଷ୍ଟ—
ଲୁଚ-ମଣ୍ଡଳା ।
ମଦରାଗ ବିବର୍ଜିତ ନିତମ୍ବିନୀ
ଆଜ ଅବଳା
ପ୍ରିୟ ପରିତ୍ୟକ୍ତ—ଶରୀର ପ୍ରତ୍ୟେ
କରି ଲେବନ
ବସି ବସି ଶଯ୍ୟା ସଦନ୍ତୁ ପାଉଛ
ଅନ୍ୟ ସଦନ । ୧୧ ।
ବିସ୍ତାରିତ କରି ଅଗୁରୁ ସୁରଭି—
ଧୂପେ ବାସିତ—
କୁଟିଳ କୁନ୍ତଳ, ପର୍ଯ୍ୟୁଷିତ-ପୁଷ୍ପ-
ମାଳ ବର୍ଜିତ
ପୀବର ନିତମ୍ବ କମ୍ପା ବିମ୍ବାଧରୀ—
ଶୋଭା ଶାଳିନୀ
ତେଜୁଅଛି ଶଯ୍ୟା, ପ୍ରାତେ କ୍ଷୀଣମଧ୍ୟା
କେଉଁ କାମିନୀ । ୧୨ ।
ସଦ୍ୟ-ଜଳ-ଧୌତ-ହେମ ପଦ୍ମସମ
କାନ୍ତି-ଆନନେ
ଆକର୍ଣ୍ଣ ବିସ୍ତାରି ମଧୁର ପାଟଳ—
ବର୍ଣ୍ଣ ଲୋଚନେ
ସ୍କନ୍ଧ ଦେଶେ ବିଲମ୍ବିତ-କେଶମାଳେ
ବର ଯୁବତୀ
ଗୃହଲକ୍ଷ୍ମୀ ପରି ଗୃହେ ଏବେ ଉଷା
କାଳେ ଶୋଭନ୍ତି । ୧୩ ।
ଅବଲୋକି ସ୍ୱାମୀ—          ନଖକ୍ଷତାଙ୍କିତ
ନିଜନିଜ ପୟୋଧର
ସ୍ପର୍ଶ କରି ପୁଣି          ଦଶନ-ଖଣ୍ଡିତ—
ଓଷ୍ଠ-ପଲ୍ଲବ ଶିଖର
ରଜନୀର ଅନ୍ତ          —ଭୁକ୍ତ କେଳି ରସ
ଅନୁଭବ ରାମା ଗଣ

ମିହିର ଉଦୟ ଢାଙ୍କେ ସାନୁଚ୍ଛନ୍ନ
ବଦନ ସ୍ୱଭାବ ଅନ୍ଧ । ୧୪ ।
ତ୍ୟାଗ କର କେଳି— ବେଶ ଅଳ୍ପ ଘନ—
ଜଘନେ ପୀଡ଼ିତ ମନା
ଅଲ୍ପ ଅବନତ ମଧ୍ୟା-ଅହା ! କେଉଁ
ଘନ ଜଘନା ଲଳନା
ଅନ୍ତଭର ଭୂତ— ସ୍ୱରେ କ୍ଳାନ୍ତ ହୋଇ
ମନ୍ଥରେ କର ଗମନ।
ଶିଶିର ଦିବସ ଉପଯୁକ୍ତ ବେଶ
କରୁଛି ହର୍ଷେ ଗ୍ରହଣ । ୧୫ ।

(ରସକୁଲ୍ୟା)

ଯେ ସମୟେ ଜନ୍ମେ ଶୀକର ଖଣ୍ଡ
ରଣରଣ ରଣ ହୁଏ ପ୍ରଚଣ୍ଡ
ସ୍ୱାଦୁ ଇକ୍ଷୁକାଣ୍ଡେ ଦିଶେ ସୁନ୍ଦର
କନ୍ଦର୍ପ ଦର୍ପରେ ହୁଏ ପ୍ରଖର
ସେହି ଶିଶିର ବାସର ଯେ
ବରବର୍ଣ୍ଣିନାସି— ମନସ୍ତାପକାସି
କରୁ ମଙ୍ଗଳ ତୋହର ଯେ । ୧୬ ।

---

## ଷଷ୍ଠ ସର୍ଗ

# ବସନ୍ତ

(ବଳହଂସ କେଦାର)

ଅମ୍ବ ବଉଳ ରୂପ * ସାୟକ ଧରି
ମଧୁକର ମାନଙ୍କୁ ଶିଞ୍ଜିନୀ—କରି
ବସନ୍ତ ଯୋଦ୍ଧା କାମାତୁର—ହୃଦୟେ
ଆସିଲ ସଖି ! ବିନ୍ଧିବାକୁ ନିର୍ଦ୍ଦୟେ । ୧ ।
ପୁଷ୍ପେ ପାଦପ ଶୋଭେ, ପଦ୍ମେ ସଲିଳ,
କାମେ କାମିନୀ, ସ୍ବରୁ ଗନ୍ଧେ ଅନିଳ
ସୁଖକର ପ୍ରଦୋଷ ରମ୍ୟ ବାସର
ସର୍ବେ ଏକାଳେ ପ୍ରିୟେ ରୁଚିର ତର । ୨ ।
ରମ୍ୟ ବାପୀ ଉଦକ, ସ୍ବରୁ ମେଖଳା
ଶ୍ଲାଘ୍ୟ ଚନ୍ଦ୍ର ଚନ୍ଦ୍ରିକା, ସ୍ନେହୀ ଅବଳା
ସହକାର ବିଟପୀ ପୁଷ୍ପ-ଶୋଭନ,
ସୁରଭି ମାସ ଯୋଗେ ହରଇ ମନ । ୩ ।
କୁସୁମ୍ଭ ରାଗେ ରଙ୍ଗ ଝୀନ ବାସରେ
ନିତମ୍ବିନୀ-ନିତମ୍ବ ମନକୁ ହରେ
କୁଙ୍କୁମ ରେଣୁ-ଗୌର—ରକ୍ତ ବସନେ
ସ୍ତନମଣ୍ଡଳ ଲକ୍ଷି ହରେ ନୟନେ । ୪ ।
ନବୀନ କର୍ଣ୍ଣିକାର କର୍ଣ୍ଣ ଯୁଗଳ
ଅଶୋକ ହାର, ନୀଳ ଚୂର୍ଣ୍ଣ କୁନ୍ତଳ,
ପୁଣି ନବମଲ୍ଲିକା ଫୁଲ ମଞ୍ଜରୀ
କାମିନୀ କାନ୍ତି ଦିଏ ବିସ୍ତାର କରି । ୫ ।
ବନିତାଙ୍କ କଣ୍ଟୁକ ରମ୍ୟ ବାହୁର
ଶୋଭା ବଢ଼ାଉଅଛି ବଳା କେୟୂର, †
ଶୁଭ୍ର ଚନ୍ଦନ ସିକ୍ତ—ହାରରେ ସ୍ତନ
ପରଶୋଭିତ, କାଞ୍ଚୀ ଦାମେ ଜଘନ । ୬ ।

---

* ମନୋହର  † ବାଜୁବନ୍ଧ ।

ପତ୍ରଚିହ୍ନିତ, ହେମ କମଲ—ସର—
ବାମା ବଦନେ ସ୍ୱେଦ ବିନ୍ଦୁ ପ୍ରସର
ରତ୍ନ ଖଚିତ ମୁକ୍ତା ସଙ୍ଗତେ ମିଶି—
ବକ୍ଷତର ପର୍ଯ୍ୟନ୍ତେ ଯାଉଛି ବହି । ୭ ।
ନିକଟେ ନିଜ ନିଜ ନାୟକେ ଦେଖି
ଏକାଳେ ତରୁଣୀଏ ଧୈର୍ଯ୍ୟ ଉପେକ୍ଷି
ଶ୍ଲଥ ବନ୍ଧନ, ସ୍ମର—ଚଞ୍ଚଳ ଗାତ୍ର—
ପୁଲକାଭ ଉତ୍ସୁକ ହୁଅନ୍ତି ମାତ୍ର । ୮ ।
ଶ୍ରମାନ୍ତକର ଅନ୍ତ, ରତ ରମଣ
କରୁଛି କଳେବର ପାଣ୍ଡୁବରଣ
କୃଶକର ଆଳସ୍ୟ, ଜୃମ୍ଭାରେ * ଭର
ଖେଳାଉଅଛି ଆଣି ଶୋଭା ଲହରୀ । ୯ ।
ଅଙ୍ଗନାଗଣ୍ଡେ ପାଣ୍ଡୁ, କୁଚେ କଠିନ
ଉଦରେ ନମ୍ର ପୁଣି ଜଘନେ ପୀନ
ମଦାଲସ ନେତ୍ରେ ଚଞ୍ଚଳତର
ହୋଇ ନାନା ପ୍ରକାର ବଶୁଛି ସ୍ମର । ୧୦ ।
ଅଙ୍ଗ ବିଭ୍ରମଯୁକ୍ତ ନିଦ୍ରା—ଅଳସ
ବାକ୍ୟ କମ୍ପିତ ପୁଣି ମଦ ଲାଳସ
ଭ୍ରୂଭଙ୍ଗୀରେ କୁଟିଳ ଦର୍ଶନ—ଠାଣି
କରେ ବାମାଙ୍କ ଫୁଲ୍ଲ କୋଦଣ୍ଡ ପାଣି । ୧୧ ।
ମଦାଲସୀଏ ବେଶ ବିଳାସ ସାଜି
ହୋଇଅଛନ୍ତି ଗୋରା ଉରଜେ ଅତି
ପ୍ରିୟଙ୍ଗୁ କାଳୀୟକ † କସ୍ତୁରୀ ଘୋର
ଚନ୍ଦନରେ କୁଙ୍କୁମ ମିଶ୍ରିତ କରି । ୧୨ ।
ମଦନ ମଦେ ମଜ୍ଜି ମାନବେ ଅଜି
ତେଜି ସତ୍ୱର ସ୍ୱର ଦୁକୂଳ ସଜି
ଲଘା ଲେହୃତ, କାଳାଗୁରୁ ଧୂପିତ—
ଝୀନ ବସନେ ଦେଉଅଛନ୍ତି ଚିତ୍ତ । ୧୩ ।

* ହାଇ † କୃଷ୍ଣାଗୁରୁ ।

ମଞ୍ଜୁ ହୋଇ ରସାଳ ମଧୁ ପାନରେ
ପ୍ରେୟସୀକୁ ଚୁମ୍ବଇ ପିକ ସ୍ନେହରେ
ଭୃଙ୍ଗ କମଳେ ପଶି ମଧୁ ଗୁଞ୍ଜନେ
ପ୍ରିୟାକୁ ପ୍ରିୟବସ୍ତୁ କରେ ବଚନେ । ୧୪ ।
ତାମ୍ର-ବର୍ଣ୍ଣ ପଲ୍ଲବ-ଭରେ ନମିତ
କୁସୁମିତ ସୁନ୍ଦର ଶାଖା ଶୋଭିତ
ବାତ କମ୍ପିତ ଚୂତ-ପାଦପଗଣ
ଉତ୍ସୁକ କରୁଛନ୍ତି ମହିଳା ମନ । ୧୫ ।
ପ୍ରବାଳ ପରି ରକ୍ତ ପୁଷ୍ପେ ସଂକୁଳ
ସୁନ୍ଦର କିଶଳୟ-କୂଳେ ଆକୁଳ
ଯୁବା ଯୁବତୀ ହୃଦେ ଏହି ଅଶୋକ
ଦର୍ଶନ ମାତ୍ରେ ଜାତ କରୁଛି ଶୋକ । ୧୬ ।
ପ୍ରମତ୍ତ ଭ୍ରମର ଚୁମ୍ବିତ-ବୃନ୍ତ ଫଇବାହୁମା
ମଳୟ-ଅନଳେ ଅକୁଳ ମୃଦୁ-ନମ୍ର ଦଳମା
ମନୋହର-ଚୂତ-କଳିକା କାମାତୁର ମାନସେ
ଦରଶନ ମାତ୍ରେ ଉତ୍କଣ୍ଠା ଜନମାଏ * ରଭସେ । ୧୭ ।
କାନ୍ତା କାନ୍ତ ମୁଖ ସୁଷମା-ହାର ନବ ନିର୍ଗତ
କୁରୁବକ-ଦ୍ରୁମ-ମଞ୍ଜରୀ ଶୋଭା ଦେଖି ନୟତ
ଝପମଝଶିଖ ଝଶିଖେ ହେବ ନାହିଁ ବ୍ୟଥିତ
କେଉଁ ସୁହୃଦୟ ମାନବ ମନ କହ ହେ ମିତ !। ୧୮ ।
ପ୍ରଜ୍ୱଳିତ ଅଗ୍ନି ସଦୃଶ ପୁଣି ବାତେ ବଧୂତ
କୁସୁମ ଭନମ୍ର-ପଳାଶ-ବନେ ହୋଇ ଆବୃତ
ନବୀନ ବସନ୍ତ ସମୟେ ଏହି କାନନ ସ୍ଥଳୀ
ରକ୍ତାଂଶୁକା ନବ ରସିକା ଶୋଭା ଦେଉଛି ଦଳ । ୧୯ ।
ଚନ୍ଦ୍ରମୁଖୀ ମୁଖେ ନିହିତ ଯୁବା ଜନଙ୍କ ମନ
ଶୁକ ମୁଖ ଛବି କିଂଶୁକ ନ କର କି ଦଂଶନ,
ଦହି ନ ପାରଇ କଅବା କର୍ଣ୍ଣିକାର ପ୍ରସୂନ ?
ପିକ ସେଣୁ ମଧୁ ବଚନେ ପୁଣି କରୁଛି ଲୁନ । ୨୦ ।

* ଶୀଘ୍ର ।

ମୃଦୁ ବିକଶିତ ମଧୁର ଗୀତି ପିକ କଣ୍ଠରେ
ଉନ୍ନତ ଗମ୍ଭୀର ଅବ୍ୟକ୍ତ ନାଦ ମଞ୍ଜୁ ଭ୍ରମରେ
କୁଳ ଗୃହେ କୁଳବଧୂଙ୍କ ଲଜ୍ଜାଭରେ-ପୂରିତ
ସଜନସ୍ୱ ମନ କ୍ଷଣକେ କରୁଛନ୍ତି ମୋହିତ । ୨୧ ।

କୁହୁକ ବନ୍ଧନ ହେବାରୁ ରମଣୀୟ ସମୀର
ଏକାଳେ ଧସ୍ତାର ସକଳ ଦେଶେ କୋକିଳ ଗୀର
ପୁଣି କୁସୁମିତ ରସାଳ-ଡାଳ କମ୍ପିତ କରି
ମନ୍ଦେ ପ୍ରବାହିତ ହେଉଛି ପୁଂସ ହୃଦୟ ହରି । ୨୨ ।

କଳାସ କଳସ ଲଳନା ହାସ ପରି ଧବଳ
କୁନ୍ଦ ପୁଷ୍ପେ ହୋଇ ଉଜ୍ଜ୍ୱଳ ଉପବନ ସକଳ
ସନ୍ତ ବୀତରାଗ-ହୃଦୟ କରୁଛନ୍ତି ହରଣ
ଅନୁରାଗୀ ଯୁବା ମାନସ କଥା କହିବ ଗଣନ । ୨୩ ।

ଦର୍ପକର-ଦର୍ପେ ଶିଥିଳ କଳେବର କଣ୍ଟକୀ
ପିକ ଭୃଙ୍ଗ ନାଦ ସହିତେ ପିନା କବାଅଧରୀ
ରସନାରେ ମଣ୍ଡି କଦମ୍ବ, କୁଚମଣ୍ଡଳ ମାଳେ
ଯୁବା ହୃଦ ହରନ୍ତି ଏହି ବସନ୍ତ କାଳେ । ୨୪ ।

ମନୋହର ନାନା ଜାତୀୟ ଫୁଲ ବୃକ୍ଷେ ଭୂଷିତ
କୃଷ୍ଣ-ପରପୁଷ୍ଟ (୧) କୂଜନ କୂଳ ସାନ୍ଦ୍ର ମଣ୍ଡିତ
(୨) ଶୈବାଳ ଜାଳରେ ଆବୃତ ଶିଳା ଶୋଭା ଶିଖରୀ
ପ୍ରମୋଦିତ ହେଉଅଛନ୍ତି ଲୋକେ ସେବନ କରି । ୨୫ ।

ଦେଖି ସନ୍ଧ୍ୟାର ପାଦପ କୁଳେ ଫୁଲେ ଭୂଷିତ
ବନିତା ବରହେ ବଧୂର ସାନ୍ତ୍ୱ ବସନ୍ତ ଚାହିଁ
ଅଧୀରେ ଚଞ୍ଚଳେ ନାସିକା କରେ ବେଦନ କରେ
କେବଳ ବୁକେ, ଶୋକ ପ୍ରକାଶେ ପୁଣି କାନ୍ଦେ କାତରେ । ୨୬ ।

---

(୧) କୋକିଳ

(୨) ସୁରକ ବୃକ୍ଷ ବିଶେଷ ।

(ଉପକୂଳ୍ଣା)

କଣ୍ଠକାରେ କୁସୁମିତ ରସାଳେ,
ରମଣୀୟ ମଧୁମାସ ଏକାଳେ
ମଞ୍ଜୁ ମଧୁକର ପିକ କୂଜନେ
ଖାଉନା ଦଅଇ ମାନମା ମନେ
ଆବା ଉତ୍କେଳନା ଲଗି
କରେ କ ଭେଦନ ଖାଣଲଳ୍ପବାଣ
ଘଣେ କାମ ଅନୁରାଗୀ । ୨୭ ।

(ଶ୍ରେଣୀ)

କୋଦଣ୍ଡ କଂଶୁକ ଯାର ଶିଞ୍ଜିନୀ ଅଳି ନକର
ଶ୍ଵେତଛତ୍ର ନିଷ୍କଳଙ୍କ ରଜନୀ କର
ମଳୟାନଳ କୁଞ୍ଜର ପରଭୃତ ସ୍ତୁତିକାର
ସେ ଚୂତ ମଞ୍ଜୁ ମଞ୍ଜରୀ ସାୟକ କର
ବଣ୍ଣଜୟୀ-କାମ ରାଜନ
ମଧୁସଖା, କରୁ ତୁମ୍ଭ ହିତସାଧନ । ୨୮ ।

ଋତୁ ସଂହାର ସମାପ୍ତ ।



PRINTED AT THE ORISSA MISSION PRESS, CUTTACK,
BY SRI P. K. PRADHAN.